ହଁ, ମୋତେ କେବେ ଆକାଶ ଡାକେ, କେବେ ସମୁଦ୍ର ଡାକେ ପୁଣି କେବେ ଜୀବନ। କେବେ ଚଢ଼େଇ ତ ପୁଣି କେବେ ସବୁଜ ପାହାଡ଼। ବଉଳଫୁଲର ବାସ୍ନା କେବେ ଆନମନା କରେ ତ ପୁଣି କେବେ ମୁଗ୍ଧ ବିହ୍ୱଳ ହୋଇଯାଏ କାଶତଣ୍ଡୀର ଶୁଭ୍ର ଲମ୍ବା ଧାଡ଼ି ଦେଖି। ସତେକି ସଫେଦ୍ ଚାଦରଟି ବିଛେଇ ପଡ଼ିଛି। କେବେ ଜହ୍ନର କିରଣ ଭିଜାଏ, କେବେ ସ୍ମୃତିରେ ଗାଧାଏ। ପୁଣି ଜୀବନର ଭଙ୍ଗାଗଢ଼ାର ଛକରେ ଠିଆ ହୋଇ ନିଜକୁ ଅଣ୍ଡାଳେ। ଏସବୁର ମିଶ୍ରିତ କୋଲାଜ୍ ମୋ 'ନିଜ କଥା'।

**ନିଜ କଥା** (ଆତ୍ମଜୀବନୀ) ପ୍ରଥମ ଭାଗ ■ ଲେଖିକା: କବିତା ବାରିକ, ଗଣେଶ୍ୱରପୁର (ତେନ୍ତୁଳା ଠାକୁରାଣୀ ମନ୍ଦିର ପଛ), ପୋ - ଜାନୁଗଞ୍ଜ, ବାଲେଶ୍ୱର-୭୫୬୦୧୯, ଓଡ଼ିଶା, ଫୋନ୍ : ୯୪୩୭୧୧୭୬୨୭, web : www.kabitabarik.org ■ ସତ୍ତ୍ୱାଧିକାରୀ: ଡକ୍ଟର ଦୀନବନ୍ଧୁ ବେହେରା, ବାଲେଶ୍ୱର ■ ପ୍ରଥମ ସଂସ୍କରଣ: **୨୦୧୩** ■ ପ୍ରକାଶକ: **ପଢ଼ାପଢ଼ି,** ବି.ଏଲ୍-୭, ଭି.ଏସ୍.ଏସ୍ ନଗର, ଭୁବନେଶ୍ୱର ■ ବିତରକ: **ଲେଖାଲେଖି,** ବି.ଏଲ୍-୭, ଭି.ଏସ୍.ଏସ୍ ନଗର, ଭୁବନେଶ୍ୱର, ଫୋନ୍ : ୯୯୩୭୪୭୬୧୭୩ ■ ପ୍ରଚ୍ଛଦ: **ବିଜୟ ପ୍ରଧାନ** ■ ମୂଲ୍ୟ: **୨୦୦ ଟଙ୍କା**



**NIZA KATHA** ■ *Biography of* **Kabita Barik** (First Chapter), At - Ganeswarpur, (Behind Tentula Thakurani Temple), P.O : Januganj, Balesore-756019, Odisha, Phone: 9437117627, web: www.kabitabarik .org ■ Copy Right: Dr. Dinabandhu Behera, Balesore ■ 1st Edition: **2013** ■ Publisher: **Padhapadhi,** B.L-7, V.S.S Nagar, Bhubaneswar ■ Distributor: **Lekhalekhi,** B.L-7, V.S.S Nagar, Bhubaneswar, Phone: 9937476173 ■ Cover Design: **Bijay Pradhan** ■ Price: **₹ 200/-**

# ଅର୍ପଣ

ମୁଁ ଜାଣେ ଆଜି ମୋ ଜୀବନର ଅଙ୍ଗେଲିଭା କଥାକୁ ସଜଳ ସ୍ମୃତିର ନାଁ ଦେଇ ଯାହା ଲେଖୁଛି ତାହା ଦିନେ ପୁରୁଣା ହେଇଯିବ । ନିଜେ ମୁଁ ସ୍ମୃତିର ଅତୀତ ହୋଇଯିବି । ମୋ ଭବିଷ୍ୟତମାନେ ମୋ ଜୀବନ ପୃଷ୍ଠା ଓଲଟାଇ କଣ ପାଇବେ ମୋତେ ଜଣାନାହିଁ । ଡ. ବିଷ୍ଣୁପ୍ରଭାକର ଶରତଚନ୍ଦ୍ରଙ୍କ ଜୀବନୀ 'ଆୱାରା ମସୀହା'ରେ ଲେଖିଛନ୍ତି, 'କୈସେ ଏକ୍ ଆୱାରା ଲଡ଼୍‌କା ଅନ୍ତମେଁ ପୀଡିତ ମାନବତାକା ମସୀହା ବନ୍‌ଗୟା । ଆୱାରା କେ ସାମ୍‌ନେ ଦିଶା ନହିଁ ହୋତୀ । ଜିସ୍‌ଦିନ୍ ଉସେ ଦିଶା ମିଲ୍ ଯାତୀ ହେ ଉସୀ ଦିନ୍ ୱହ ମସୀହା ବନ୍ ଯାତା ହେ ।'

ମୁଁ ଏଯାଏଁ ନିଜର ଦିଶା ବା ଲକ୍ଷ୍ୟ ଖୋଜି ହେଉଛି । ଏ ଜନ୍ମରେ ମସୀହା ବନିବା ସମ୍ଭବ ନୁହେଁ । ତେବେ ଶ୍ରଦ୍ଧାର ନଈଟିଏ ପାଲଟି ମୋ ପାଠକର ମନ ଭିତରେ ସାଇତା ସ୍ମୃତି ହେଇ ରହିଥାଏ ସବୁଦିନ, ଏହା ହିଁ କାମନା ।

ମୋତେ ଭଲପାଉଥିବା ଶ୍ରଦ୍ଧାଳୁ ପାଠକଙ୍କ ହାତରେ ମୋର ଏ ଆତ୍ମଜୀବନୀ 'ନିଜ କଥା' ସମର୍ପି ଦେଉଛି ।

**କୃତଜ୍ଞତା:**

ମାସିକ ସାହିତ୍ୟ ପତ୍ରିକା 'ସାଗରିକା'ରେ ଏହି 'ନିଜ କଥା' ତିନିବର୍ଷ ଧରି (୨୦୦୯ରୁ ୨୦୧୨ ଯାଏଁ) ଧାରାବାହିକ ଭାବେ ପ୍ରକାଶ ପାଇଥିଲା । ତେଣୁ 'ସାଗରିକା'ର ସଂପାଦିକା ସୈରିନ୍ଧ୍ରୀ ସାହୁଙ୍କୁ ବିଶେଷଭାବେ କୃତଜ୍ଞତା ଜଣାଉଛି ।

- ଲେଖିକା

# ସ୍ୱୀକାରୋକ୍ତି

ଏକଥା ସତ ଯେ ଆତ୍ମଜୀବନୀ ଲେଖୁଥିବା ଲେଖକଟିଏ ବହୁ ଆଗରୁ ନିଜ କଥା କହି ସାରିଥାଏ ପରୋକ୍ଷରେ ତା ସୃଷ୍ଟ ଚରିତ୍ରମାନଙ୍କ ମାଧ୍ୟମରେ । ସ୍ମୃତି କୁହ କି ଅତୀତ, ତାକୁ ଛାଡ଼ି କ'ଣ ସର୍ଜନା ସମ୍ଭବ ? ସେମାନେ ଛାଇଭଳି ଚାଲିଥାନ୍ତି ଲେଖକ ସହ ।

Our sweetest songs are those that tell of a saddest thoughts.- P.B. Shelley.

ଏହାକୁ ହିନ୍ଦୀରେ ଅନୁବାଦ କରି କୁହାଯାଇଛି:

'ଜୀନ୍ ଗୀତୋଁ ମେଁ ଶାୟର / ଆପ୍‌ନା ଗମ୍ ରୋତେଁ ହୈ / ୱେ ଉନ୍‌ନେ ସବ୍‌ସେ ମିଠା ନଗ୍‌ମେଁ ହୋତେ ହୈ ।' (ଅନୁବାଦ: ଡକ୍ଟର ହରିବଂଶ ରାୟବଚ୍ଚନ)

ବାସ୍ତବିକ ଆମର ମଧୁରତମ ସଂଗୀତ ହିଁ ଗଭୀର ଦୁଃଖର ଦ୍ୟୋତକ ।

ଏସବୁ କହିବାର ଅର୍ଥ ହେଲା ମୋର ଆତ୍ମଜୀବନୀରେ ଅଛି ଏହି ଗଭୀର, ମଧୁରତମ ଦୁଃଖର କାହାଣୀ । ଏହା ହିଁ ମୋତେ ପ୍ରେରଣା ଯୋଗାଇ ଗାଳ୍ପିକାରେ ପରିଣତ କରି ଦେଇଛି । ଲେଖକଟିଏ ଯେଉଁ ଲେଖା ଲେଖେ ବା କବିଟିଏ ଯେଉଁ କବିତା ରଚନା କରେ ତା'ର ସେ ପ୍ରଥମ ପାଠକ ସାଜିଥାଏ । ତେଣୁ ସ୍ରଷ୍ଟା ପ୍ରଥମେ ତା' ସୃଷ୍ଟି ଭିତରେ ହସେ କିମ୍ବା କାନ୍ଦିଥାଏ । ତାପରେ ଯାଇ ତାହା ପାଠକର ଦରବାରରେ ପହଁଚେ । ପାଠକର କାନ୍ଦ କି ହସକୁ ଅନ୍ୟମାନେ ଦେଖି ଦେବାର ସୁଯୋଗ ରହିଛି, ହେଲେ ସ୍ରଷ୍ଟା ଯେତେବେଳେ ଏକାକୀ ସୃଷ୍ଟି ରଚନା କରୁଥାଏ ତା' ହସ, ଲୁହର ଭାଗୀଦାର ସେ ନିଜେ ହିଁ ହୋଇଥାଏ । ସେଠି ଭାଗ ବସାଇବାକୁ କି ସାକ୍ଷୀ ପଡିବାକୁ କେହି ନଥାନ୍ତି । ଆଜି ସେହିଭଳି କିଛି ସୁଖଦୁଃଖକୁ ମୁଁ ମୋର ଜୀବନୀ 'ଖୋଲାପୃଷ୍ଠା'ରେ ପରିବେଷଣ କରି ଦେଉଛି ପ୍ରିୟ ପାଠକଙ୍କ ପାଖରେ । ଜାଣେନା ମୋର ଅଙ୍ଗେ ନିଭା ଅନୁଭୂତିକୁ ପାଠକ କିଭଳି ଗ୍ରହଣ କରିବେ । ତେବେ ମୁଁ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ଭଳି ବିଶ୍ୱାସ ରଖେ, 'ଯଦି ଡାକ୍ ଶୁନେ ତୋର୍ କେଉ ନା ଆସେ, ତବେ ଏକ୍‌ଲା ଚଲୋ, ଏକ୍‌ଲା ଚଲୋ, ଏକ୍‌ଲା ଚଲୋରେ... ।'

ମୋର ସାରାଜୀବନ ଏକ ଅନ୍ତଃହୀନ ଯାତ୍ରା ଯାହା ନିରୁଦ୍ଦିଷ୍ଟ, ନିଃସଂଗ ଆଉ ଅବଲମ୍ବନହୀନ । ନିଜ ସହ ନିଜର ଲଢ଼େଇ ପିଲାଦିନରୁ । ମୁଁ ନଈ ହୋଇ ପାରିଛି କିନ୍ତୁ କୂଳ ପାଇ ନାହିଁ । ସାହାରା ପାଲଟିଛି କିନ୍ତୁ ସାହାରା ପାଇନାହିଁ । ମୁଁ ଯେମିତି ଏକ ଦୁଃଖର ବରଗଛ, ମୋ ସ୍ମୃତିର ଓହଳରେ ଖାଲି ହତାଶା, ବିଷାଦ, ହରାଇବାର ନାଁ ଲେଖା ଯାଇଛି । ସ୍ନେହ,ଶ୍ରଦ୍ଧା, ପ୍ରେମ ଖୋଜିଖୋଜି ଥକି ପଡିଛି ମୁଁ । ଟଙ୍କାରେ ମୋର ସବୁକି ମୂଲ୍ୟାଙ୍କନ ହେଇଛି । ଚାକିରି କରିଥିବାରୁ ମୁଁ ସୁନାଅଣ୍ଡା ଦେଉଥିବା ହଂସୀର ପଦବୀ ପାଇଛି । ଅଥଚ ଅର୍ଥର ପାହାଚ ପଛରେ ଲୁଚିଥିବା ମୋର ଲହୁଲୁହାଣ ମନ, ହୃଦୟକୁ କେହି ପଢ଼ିପାରି ନାହାଁନ୍ତି କି ଚିହ୍ନିପାରି ନାହାଁନ୍ତି । ଟିକିଏ ସ୍ନେହ, ଆନ୍ତରିକତା ଆପଣାର ଲୋକଙ୍କ ଠାରୁ ପାଇବା ପାଇଁ ମୁଁ ଚାତକ ସାଜିଛି । କିନ୍ତୁ ମେଘର ପ୍ରତ୍ୟୟ ସୃଷ୍ଟି କରୁଥିବା ନିର୍ଜଳା ଶରତର ଆକାଶ କି କେବେ ବର୍ଷିପାରେ ? ମରୀଚିକା ପଛରେ ଶୋଷକୁ ନେଇ ଧାଇଁ ଧାଇଁ ମୁଁ ଥକି ପଡିଛି । ତେବେ ମୋ ଶ୍ରଦ୍ଧାଳୁ ପାଠକ, ବଂଧୁ, ଶୁଭେଚ୍ଛୁ, ପରିଚିତ ଅପରିଚିତ ମାନେ ମୋତେ ଯେଉଁ ବିପୁଳ ଶୁଭେଚ୍ଛା, ଶ୍ରଦ୍ଧା ଓଜାଡି ଦେଇଛନ୍ତି ଆଜି ସେମାନଙ୍କ କଥା ଭାବିଲେ ଆଖି ମୋର ବତୁରି ଯାଉଛି । ଏମାନେ ନଥିଲେ ସତରେ ଏ ସ୍ୱାର୍ଥପର ଦୁନିଆରେ କେମିତି ବଂଚନ୍ତା ମୋ ଭଳି ସ୍ନେହ ଖୋଜୁଥିବା ଜୀବନମାନେ ? କେତେ ବିରଳ ହେଇ ଯାଉଛି ଆସ୍ତେ ଆସ୍ତେ ଆପଣାର ଭାବସବୁ ! ସତରେ ଆପଣା କରି ନେଉଥିବା, ମାନବିକତାର ସ୍ନିଗ୍ଧତାରେ ବାଂଧି ରଖୁଥିବା ମଣିଷଙ୍କ ସଂଖ୍ୟା କ୍ରମଶଃ ପତଳା ହେଇଯାଉଛି । ତା' ସହିତ ବିରଳ ହେଇଯାଉଛି ସ୍ନେହ, ବଂଧୁତ୍ୱର ଅତୁଟ ଭାବନା । ଦୂରରେ ଥିଲେ 'ଆ' ପାଖକୁ ବୋଲି ସ୍ନେହରେ ଡାକନ୍ତି, ପାଖକୁ ଗଲେ କରଛଡା ଦିଅନ୍ତି । ହିସାବ କରନ୍ତି କେତେଦିନ ଆତିଥ୍ୟ ଦେଲେ ବା ଆତିଥ୍ୟ ଦେବାକୁ ଆଉ କେତେଦିନ ପଡିବ ।

ଆଜି ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ଯେ ମୁଁ କେବେ ଛଳନା ସାଜି କାହାକୁ ଭଲପାଇ ନାହିଁ କି ଧୋକା ଦେଇ ନାହିଁ କି ସ୍ୱାର୍ଥ ରଖି ସାହାଯ୍ୟ କରି ନାହିଁ । ତଥାପି ମୁଁ ଯେମିତି ଏକ ଅବୁଝା ଦୁର୍ବୋଧ କବିତା । ସମୟ ସହିତ ସାଲିସ୍ କରିପାରି ନାହିଁ କେବେ । ତେଣୁ ବହୁ ପଛରେ ପଡି ଯାଇଛି । ସମୟର ପାଣିପାଗ ମୋତେ ଡେଇଁ ବହୁ ଆଗକୁ ଚାଲି ଯାଇଛି । ପ୍ରଚାର ପ୍ରସାର ଠାରୁ ରହିଛି ଅନେକ ଦୂରରେ । କେବଳ ଏତିକି ସାନ୍ତ୍ୱନା ଦେଇଛି କାଳ ହିଁ ସବୁଠାରୁ ଶ୍ରେୟ କଷଟି ପଥର । ସେ ହିଁ ମୂଲ୍ୟାଙ୍କନ କରିବ । ସାଧନା କରିଯାଅ, ଫଳାଫଳକୁ ଅପେକ୍ଷା କରନାହିଁ ।

ମୋ କ୍ଷୁଦ୍ର ଅନୁଭୂତିର ଜୀବନ ଭିତରେ ଏତିକି ବୁଝିଛି ଆମେ ସମସ୍ତେ ଜଣେ ଜଣେ ମାଛଧରାଳି ମାତ୍ର । ସାଂସାରିକ ସମୁଦ୍ରରେ ସୁଖର ଜାଲ ଫିଙ୍ଗି ଫିଙ୍ଗି ହିଁ କଟିଯାଏ

ସାରା ଜୀବନ । ନା ମିଳେ ସଫଳତା ନା ସାର୍ଥକତା । ବରଂଚ ଆମେ ସବୁ ପାଇବା ଭିତରେ ବଡ ନିଃସଂଗ ହୋଇଯାଉ । ସ୍ୱାର୍ଥପର ବି ପାଲଟୁ । ଅନ୍ତିମ ଆଶା ପୂରଣ ହେଲାବେଳକୁ ବା ହେବା ଆଗରୁ ମୃତ୍ୟୁ ତାର ଘଣ୍ଟି ବଜାଇ ଦେଇଥାଏ । ଅପୂର୍ଣ୍ଣ ହୋଇ ରହିଯାଏ ଖାଲି ଆଶା, ସ୍ୱପ୍ନ, ଭଲପାଇବା । ଆଶ୍ଚର୍ଯ୍ୟ ! ତଥାପି ମଣିଷ ପ୍ରିୟଜନଙ୍କୁ ହରାଇ ବଂଚିବା ପାଇଁ ସଳଖି ଠିଆ ହୁଏ । ଜୀବନରେ ପୁଣି ଫୁଲ ଫୁଟେ । ପ୍ରେମର ପତ୍ର କଅଁଳେ । ସ୍ୱପ୍ନର ଫଳ ଧରେ । ମନେହୁଏ ଏ ଜୀବନରେ ଯେମିତି କେବେ ବି ସୂର୍ଯ୍ୟାସ୍ତ ହୁଏନା । ବିଦାୟ ଆସେନା । କଢ଼ି ଯେତେବେଳେ ଫୁଲ ସାଜେ ସେ କ'ଣ ମଉଳି ଯିବା କଥା କେବେ ଭାବିଥାଏ ? ତେଣୁ ଜୀଇଁବାକୁ ପଡେ । ଜୀବନକୁ ବେକାରି, ଦାରିଦ୍ର୍ୟ, ଘୃଣା, ସମସ୍ତ ଅବଶୋଷ ଭିତରେ ବି ଭଲପାଇବାକୁ ପଡେ । ମୋର ମନେହୁଏ ଆମେ ସବୁ ଜୀବନକୁ ଭଲପାଉ ବୋଲି ବୋଧହୁଏ ଦୁଃଖ ଆମର ପିଛା ଛାଡେନା । ଟିକିଏ ଟିକିଏ କଥାରେ ଭାବପ୍ରବଣ ହେଉ ବୋଲି କଷ୍ଟପାଉ ।

ଏକଥା ସତ ଯେ ଏମିତି ଏକ ଦିନ ଆସିବ ଯେତେବେଳେ ମୁଁ ରହିବି ନାହିଁ । ମୋର ସ୍ୱପ୍ନ, ଆଶା, କାମନା, ଲୋଭ, ଈର୍ଷା, ଭାବପ୍ରବଣତା, ବିଷାଦ, ଦୁଃଖ, ଶୋଚନା ସବୁ କିଛି ମାଟି ଦେହ ସହ ପୋଡି ହୋଇଯିବ । ପାଇ ହରାଇବା ଆଉ ହରାଇ ପାଇବାର ଭାଗଶେଷ, ଗଣନା ଶେଷ ହୋଇଯିବ । କାହାରି କାନ୍ଦିବା, ଶୋକ କରିବା, ସମାଲୋଚନା କରିବାର ଉର୍ଦ୍ଧ୍ୱକୁ ମୁଁ ଚାଲିଯାଇଥିବି । ତାପରେ ଦିନ ପୁରୁଣା ହୋଇଯିବ । କ୍ୟାଲେଣ୍ଡର ପୃଷ୍ଠାରେ ମସିହା ଯେତେ ବଦଳୁଥିବ କାନ୍ଥରେ ଝୁଲୁ ଥିବା ଛବିର ମଣିଷଟିର ସ୍ମୃତି ଫିକା ପଡି ଯାଉଥିବ । ଏଥିରେ ନୂଆ କିଛି ନାହିଁ । ଯିବାଟା ହିଁ ସତ୍ୟ । ଏହି ସତ୍ୟଟିକୁ ବଂଚିଥିଲାବେଳେ ମାନିନେବା ଭାରି କଷ୍ଟକର । ତେବେ ମୋ ସୃଷ୍ଟ ଚରିତ୍ର କିଛି ଯଦି ମୋ ବହିରୁ ପାଠକ ଛାତିକୁ ଓହ୍ଲାଇ ଆସନ୍ତି, ତାହା ହିଁ ହେବ ମୋ ଜୀବନର ବଡ ସାର୍ଥକତା ।

ଆଜି ମୋ ଅଂଗେଲିଭା କଥା କିଛି ଲେଖିଲା ବେଳକୁ ଦ୍ୱିଧା ନାହିଁ କହିବାକୁ ଯେ ଜୀବନରରେ ଅନେକ ଅଭାବ, ଦାରିଦ୍ର୍ୟ, ଲାଞ୍ଛନାର ମୁଁ ସାମ୍ନା କରିଛି । ତଥାପି ଜୀବନ ମୋତେ ହରାଇ ପାରିନି । ମୁଁ କେବେ ମୋ ସଂକଳ୍ପରୁ ଓହରି ନାହିଁ । ଚରୈବେତୀ ନ୍ୟାୟରେ ଆଗେଇ ଚାଲିଛି । ଅତୀତର ସଂଗ୍ରାମରତ ଜୀବନକୁ ନିଜର ପ୍ରେରଣା ବୋଲି ଧରି ନେଇଛି । ତେଣୁ ଦୁଃଖ କେବେ ମୋତେ ବତୁରାଇ ଦେଇ ନାହିଁ କି ଡରାଇ ପାରିନାହିଁ । ବରଂ 'ଦୁଃଖେର ଯାଦେର ଜୀବନ ଗଡ଼ା, ତାଦେର୍ ଆବାର ଦୁଃଖ୍ କି' ନ୍ୟାୟରେ ହସି ହସି ଆଖି ଲୁହପୋଛି ନେଇ କହିଛି, ଏଇୟା ଥିଲା ମୋ ଭାଗ୍ୟରେ । କପାଳ ଲିଖନକୁ କିଏ

ଲିଭାଇପାରିବ ? କିଏ ସଂପୂର୍ଣ୍ଣ ପାଇଛି ଜୀବନରେ ? କାହା ଜୀବନରେ ଅବଶୋଷ ନାହିଁ ? କିଏ ନହରାଇଛି ତା' ଜୀବନକାଳ ଭିତରେ ? ଗୌତମବୁଦ୍ଧଙ୍କର କିମ୍ବା ଗୌତମୀର ସୋରିଷ ମଗା ଘଟଣାକୁ ସ୍ମରଣ କରି ମୁଁ ଆଶ୍ୱାସନା ନିଜକୁ ଦେଇଛି ଆଉ ଜୀବନ ନଉକାକୁ ଆଗକୁ ନେଇଯାଇଛି । ତା' ନହେଇଥିଲେ କେବେଠାରୁ ପଥର ଗଦାଟିଏ ପାଲଟି ଯାଇଥାନ୍ତି । ଯେତେ ଯାହା ହେଲେ ବଂଚିବାକୁତ ପଡିବ । ଜୀବନକୁ ତ ଫୋପାଡି ଦେଇ ହେବନାହିଁ ।

ପ୍ରତ୍ୟେକଟି ସୂର୍ଯ୍ୟାସ୍ତ ପରେ ପୁଣି ସକାଳ ଆସେ । ସୂର୍ଯ୍ୟୋଦୟର ସେ କଅଁଳ ସୁନେଲି ସକାଳକୁ ପକ୍ଷୀ ଗୀତରେ ସ୍ୱାଗତ ଜଣାଏ । ସବୁ ସଂଗ୍ରାମର ଅନ୍ଧାର ଭିତରେ ମୁଁ ସକାଳକୁ ଅପେକ୍ଷା କରିଥାଏ ଆଉ ବିଶ୍ୱାସ କରେ ଯେ ଯେତେଦିନ ଯାଏଁ ପକ୍ଷୀର କଣ୍ଠରୁ ଗୀତ ହଜି ନାହିଁ, ବଇଁଶୀର ସ୍ୱର ଅଛି, ଗାଈର ହମ୍ବା ରଡି ଅଛି ସେତେ ଦିନ ଯାଏଁ ଜୀବନରୁ ସମ୍ପୂର୍ଣ୍ଣ ସକାଳ ନଷ୍ଟ ହେବ ନାହିଁ । ତେଣୁ ମୋ ଜୀବନରେ ସକାଳ ଆସିବ । ନିଶ୍ଚେ ଆସିବ । ଏହି ଆତ୍ମବିଶ୍ୱାସ ନେଇ ମୁଁ ବଂଚି ଚାଲିଛି । ସକାଳ ଖୋଜୁ ଖୋଜୁ ମୋ ଜୀବନରେ ସଂଜ କେବେ ଯେ ହେଇଯିବ ସେକଥା ବି ମୋତେ ଜଣାନାହିଁ । ଆମେ ସବୁ ବେଳେବେଳେ ଏମିତି ମୃତ୍ୟୁ ଠାରୁ ବଳିୟାନ ହେଇଯାଉ ଆତ୍ମବିଶ୍ୱାସ ନେଇ । ଯାହା ଫଳରେ ମୃତ୍ୟୁ ହାର୍‌ମାନେ । ଲଜ୍ଜିତ ହୁଏ । ପୁଣି ସେ ବ୍ୟକ୍ତିସତ୍ତାଟି କବିପ୍ରାଣ ହୋଇଥିଲେ ତ ତା' କଲମରେ ମୃତ୍ୟୁ ଲଳିତ କବିତା ପାଲଟିଯାଏ । ବାସ୍ତବିକ ଲେଖା ମୋ ରକ୍ତ ମାଂସ ଅସ୍ଥିରେ ମିଶିଯାଇଛି । ଭାବପ୍ରବଣତା ମୋର ଅଙ୍ଗେ ଅଙ୍ଗେ ଜଡିଯାଇଛି । ମୁଁ ଜାଣେନା ମୋ ଜୀବନକାଳ ଭିତରେ ବାରମ୍ବାର ମୃତ୍ୟୁ ଶବ୍ଦ କାହିଁକି ଆସିଛି । ବିଷାଦ, ନିଃସଂଗତା ଘାରିଲା ବେଳେ ମୁଁ ମରଣ କଥା ଚିନ୍ତା କରିଛି । ବରାମ୍ବାର ନିଜ ଭିତରେ ମରି ବି ଜୀଇଁଛି । ତେବେ ମୁଁ ଜୀବନକୁ ଭଲପାଏ । ମୋର ଅଧିକାଂଶ ଗଳ୍ପ ଜୀବନକୈନ୍ଦ୍ରିକ । ମୋ ଲାଗି ଜୀବନ ଅଦ୍ଭୂତ, ବିଚିତ୍ର, ବହୁରଂଗୀ । ତାକୁ ଚିହ୍ନି ବି ଚିହ୍ନି ହୁଏନା, ପଢ଼ି ବି ପଢ଼ି ହୁଏନା । ଛୁଇଁ ବି ସେ ଅଛୁଁଆ । ଅନୁଭବ ଭିତରେ ସେ ଅପ୍ରକାଶ୍ୟ । ଆଉ ଯିଏ ଯେଉଁ ଜୀବନ ଖୋଜି ହେଉଥାଏ ତାକୁ ସେ ଜୀବନ ଆଦୌ ଧରାଛୁଆଁ ଦିଏନା । ଖୁବ୍ ଅଳ୍ପ ଭାଗ୍ୟବାନ ଅଛନ୍ତି ଯେଉଁମାନଙ୍କୁ ଏ ସୌଭାଗ୍ୟପ୍ରାପ୍ତି ହୁଏ । ଶୋକ, ବିଚ୍ଛେଦ, ଦୁଃଖ, ଅନାହାର, ମୃତ୍ୟୁ, ରୋଗ, ବ୍ୟାଧି, ଯନ୍ତ୍ରଣା, କଳଙ୍କ, ଜରା ସତ୍ତ୍ୱେ ଜୀବନ ଆକର୍ଷଣୀୟ । ପିଆଜର ପାଖୁଡା ଛଡାଇଲା ଭଳି ଜୀବନ ସଂପର୍କରେ ମୋ ଗଳ୍ପରେ ବ୍ୟାପକ ଅନ୍ୱେଷଣ ଅଛି । ପ୍ରତିଟି ଗଳ୍ପରେ ଜୀବନ ହିଁ କେନ୍ଦ୍ରବିନ୍ଦୁ । ଜୀବନ ପୃଥିବୀ ସଂପର୍କରେ ଅନେକ କାହିଁକିର ପ୍ରଶ୍ନବାଚୀ ମୋ ଗଳ୍ପ । କାରଣ ମୁଁ ନିଜେ ବି ଏଯାଏଁ ଜୀବନକୁ ବୁଝିପାରି ନାହିଁ । ଜୀବନ କ'ଣ ଜାଣିବା ବୁଝିବା ଆଗରୁ ମୋର ଶୈଶବ,ପିଲାଦିନ ଉପରେ ଦୁଃଖର ପାହାଡ

ଗଦେଇ ପଡିଲା । ତେଣୁ ଜୀବନ ମୋ ପାଇଁ କେଉଁଠି ଅଦ୍ଭୁତ, ବିଚିତ୍ର, ଅସହାୟ, ନିଃସଂଗ ତ ପୁଣି କେଉଁଠି ବେକାରୀ, ଦାରିଦ୍ର୍ୟ, ଅବହେଳା ଭିତରେ ନିକ୍ଷେପିତ । ଅତୀତ ପ୍ରତି କେମିତି ଗୋଟାଏ ମୋହ ମୋ ଗଛରେ । ତେଣୁ ଅନେକ ସମୟରେ ସ୍ମୃତି ଅଧିକାର କରିଯାଏ ମୋ ଚରିତ୍ରର ଚେତନାକୁ । ପାଇ ହରାଇବା ଆଉ ହରାଇ ପାଇବା ପୁଣି ଖୋଜିବା ଏହିଭଳି ଏକ ଲୁଚକାଳି ଖେଳ ଭିତରେ ବଂଚିବା ହିଁ ମୋ ଗଛ । ମୁଁ ମୋ ଚରିତ୍ର ଭିତରେ ହଜିଛି, କାନ୍ଦିଛି, ବତୁରିଛି, ମରିଛି, ଜିଇଁଛି । ଏହି ଜୀଇଁବା ହିଁ ମୋ ପାଇଁ ସବୁଠାରୁ ସତ୍ୟ । ତେବେ ମୋ ପରେ ମୋ ଗପର ଗୋଟିଏ ବି କାହାଣୀ ଯଦି କେଉଁ ପାଠକ ମନରେ ବଂଚି ରହେ, ତାଙ୍କୁ ପ୍ରେରଣା ଦିଏ, ଜୀବନରେ ଆଲୋକ ଦେଖାଏ, ବଂଚିବାର ରାସ୍ତା ଫିଟାଏ ତାହା ହିଁ ହେବ ମୋ ଜୀବନର ସାର୍ଥକତା । ମୋ ପାଇଁ ସବୁଠୁ ବଡ ଶ୍ରଦ୍ଧାଞ୍ଜଳି ।

କହିବା ବାହୁଲ୍ୟ ମୁଁ ଖୋଲା ପୃଷ୍ଠାଟେ ହେବାକୁ ଚାହୁଁଛି । ତେଣୁ ଯାହା ଲେଖୁଛି ନିଛକ । ଛଳନା ନାହିଁ । ମୁଁ ମୋ ଭାବନାର ସାମ୍ରାଜ୍ଞୀ ପାଲଟିଛି ବିଭିନ୍ନ ସମୟରେ । ମୁଁ ଜାଣେ ମଣିଷର ଜୀବନ କାଳ ଭିତରେ ଘଟଣାର ଶେଷ ନାହିଁ । ମଣିଷ ନିଜେ ତ ଅସରନ୍ତି ଘଟଣାର ସମାହାର ମାତ୍ର । ସେ ଭିତରୁ ସ୍ମରଣୀୟ ଘଟଣାଗୁଡିକ ହିଁ ସେ ସାଇତି ରଖେ ଯାହା ସ୍ମୃତି ପାଲଟି ଯାଏ ପରବର୍ତ୍ତୀ ଜୀବନରେ ।

ପ୍ରତ୍ୟେକ ମଣିଷର ଜୀବନଶୈଳୀ ଭିନ୍ନ । ପ୍ରତ୍ୟେକେ ପ୍ରତ୍ୟେକଙ୍କ ଠାରୁ ଚେହେରା, ପ୍ରକୃତିରେ ଅଲଗା ହେଲା ଭଳି ଜୀବନକୁ ନିଜ ରୁଚିରେ ଗ୍ରହଣ କରିଥାନ୍ତି, ଯଦିଓ ପରିବେଶ କେବେ କାହାକୁ ପ୍ରତିକୂଳ ହେଇଥାଏ, ନିଜ ଇଛାମୁତାବକ ବଂଚିବାକୁ ଦିଏ ନାହିଁ । ତେବେ ପ୍ରତ୍ୟେକେ ଯେ ଜୀବନର ଆବେଦନ ପାଖରେ ବତୁରି ଯାଆନ୍ତି ନିଶ୍ଚିତ ଭାବରେ ସ୍ୱୀକାର କରିବେ । ଏ ଜୀବନ ମୋତେ କେବେ ସୁନ୍ଦର ପୂର୍ଣ୍ଣମୀ ଜହ୍ନ ଭଳି ଆକୃଷ୍ଟ କରିଛି ତ କେବେ ସମୁଦ୍ରର ଫେନିଳ ଜୁଆର ଭଳି ଜୀବନର ବିପୁଳତା ମୋ ଭିତରେ ଅହରହ ଆବେଗ, ସ୍ୱପ୍ନର ତରଂଗ ସୃଷ୍ଟି କରିଛି । ପାଦେ ପାଦେ ଜୀବନ ଲାଗିଛି ଅଦ୍ଭୁତ, ନୂଆ ଆଉ ବିଚିତ୍ର । ତଥାପି ତାହାକୁ ମୁଁ ମୋ ଆଂକୁଳାରେ ଟେକି ନେଇଛି । ତିକ୍ତ, ମଧୁର ଯାହା ମିଳିଛି ନୀଳକଣ୍ଠୀ ସାଜି ପିଇ ଯାଇଛି । ମୋ ଭିତରୁ କିଏ ଜଣେ ବାରମ୍ବାର କହିଛି, Look at the ocean, not at the waves.

ମୁଁ ଜାଣିଛି ମୁଁ ସେମିତି ବିଖ୍ୟାତ ଲେଖିକାଟିଏ ନୁହେଁ ଯାହାର ଜୀବନୀକୁ ସାହିତ୍ୟ ବା ଇତିହାସର ଅମୂଲ୍ୟଗ୍ରନ୍ଥ କହି ସାଇତି ହେବ । ତଥାପି କାହିଁକି କେଜାଣି ନିଜକୁ ଖୋଲାମେଲା କରି କାଳିକଲମର ନିର୍ଜୀବ ପୃଷ୍ଠା ଉପରେ ପ୍ରକାଶ କରିବାର ଲୋଭ ସମ୍ବରଣ

କରିପାରୁ ନାହିଁ । ଏହା ମୋର ଦୁର୍ବଳତା ହୋଇପାରେ । ବାର୍ଦ୍ଧକ୍ୟ ଆସିଲେ ବା ପାକଳ ବୟସରେ ସମଗ୍ର ଜୀବନର ଅନୁଭୂତିକୁ ନେଇ ଲେଖକ, ଶିଳ୍ପୀ, କଳାକାର, ନେତା, ମହାପୁରୁଷମାନେ ଜୀବନୀ ଲେଖିଥାନ୍ତି । ମୁଁ ନା ସେମିତି ଲେଖକ ନା ଏତେଟା ବାର୍ଦ୍ଧକ୍ୟ ଆସିଛି । ତଥାପି ଯେ ଜୀବନ ଅନିଶ୍ଚିତ । ଆଜିର ଜୀବନ କାଲିକି ଥିବ କି ନାହିଁ କେଜାଣି । ତେଣୁ ଏ ଜୀବନୀ ଲେଖା ଆରମ୍ଭ ହେଉ । କେତେଦୂର ଚାଲିଥିବ ଚାଲିଥାଉ । ଏମିତି ଏକ ମାନସିକତା ଭିତରୁ ଏହାର ଅୟମାରମ୍ଭ ।

ମୋର ବେଳେ ବେଳେ ମନେହୁଏ ମୋ ଜୀବନ ଦୀପରୁ କ୍ରମଶଃ ତେଲ ସରି ଆସୁଛି । ହେଲେ ମୋର ଯେ ଅନେକ କିଛି କହିବାର ଅଛି, ଜାଣିବାର ଅଛି, ପଢ଼ିବାର, ଲେଖିବାର ଅଛି । ମୋ ହାତରେ ସତରେ କ'ଣ ସମୟ ଖୁବ୍ କମ୍ ? ଏହା ହିଁ ଯଦି ସତ ହୁଏ ତାହାଲେ ନିଜକୁ ପ୍ରକାଶ ନକରି ପାରିବାର ଅବଶୋଷ ରହିଯିବ । ତେଣୁ ଏ ଯାଏଁ ବଂଚି ଆସିଥିବା ଜୀବନକୁ ନେଇ କିଛି ଅଂଗେ ଲିଭା କଥା ଲେଖାଯାଉ । ସେଥିରେ କ'ଣ ଅଛି ? ଜୀବନ ଅଛି ଯେତେବେଳେ ମରଣ ତ ଆସିବ । ସକାଳ ଆସିଲେ ନିଶ୍ଚେ ସଂଜ ହେବ ।

ଅନେକ ମୋତେ ନୈରାଶ୍ୟବାଦୀ ବୋଲି କହିଥାନ୍ତି । ସତରେ ନିଜ ଅନୁଭବର ପୃଥିବୀ ଭିତରେ ଜୀବନକୁ ଯେତେ ଦେଖିଛି, ତନଖିଛି ସେତେ ନିରାଶ ହୋଇଛି । ଜୀବନର ମାନ ଯେତେ ଉନ୍ନତ, ସ୍ୱଚ୍ଛଳ ହେବାରେ ଲାଗିଛି ମନେ ହେଉଛି ସେତେସେତେ ମୁଁ କେମିତି ନିଃସଂଗ ହୋଇଚାଲିଛି । ଜୀବନରେ ଯେତିକି ପାଇଛି ତା'ଠୁ ଢ଼େର ବେଶି ହଜାଇ ଦେଇଛି । ହଜାଇବାର ଦୁଃଖ ମୋତେ ଭାଂଗି ଦେଲାବେଳେ ପାଇବାର ମୋହ ମୋତେ ଆଗକୁ ଚାହିଁବାର ଶକ୍ତି ଦେଇଛି ।

କେବେ କେବେ ଭାବିଛି, ନା ଜୀବନର ଗୋଟିଏ ମୁହୂର୍ତ୍ତର ଅସଫଳତା ସଂପୂର୍ଣ୍ଣ ଜୀବନ ନୁହେଁ ବା ସଂପୂର୍ଣ୍ଣ ବିଫଳତା ନୁହେଁ । ବରଂଚ ଏହି ଅସଫଳତା ହିଁ ମୋତେ ସଂପୂର୍ଣ୍ଣ ଜୀବନ ପାଇଁ ପ୍ରେରଣା ଦେଇଛି । ଏହି ମନବଳ ମୋତେ ଜୀବନ ପ୍ରତି ବାରମ୍ବାର ଆକୃଷ୍ଟ କରିଛି, ସାନ୍ତ୍ୱନା ଦେଇଛି ଓ ଜୀବନର ଆବେଦନ ପାଖରେ ମୁଁ ଗୋଟାପଣେ ବତୁରି ଯାଇଛି । ତେଣୁ ଜୀବନକୁ ମୁଁ ଶ୍ରଦ୍ଧା କରେ, ପୂଜା କରେ । ଜୀବନ ଯାହା ହେଲେ ବି ଆନନ୍ଦମୟ, ସ୍ୱର୍ଗୀୟ । ଜୀବନର ଆଲୋକମୟ ଦିଗ ଓ ଘଂଚ ଅନ୍ଧାର ଅର୍ଥାତ୍ ସୁଖଦୁଃଖ ଦୁଇଟି ସାରାର ଅନୁଭବ ମୋ ଭିତରେ ଫେଣ୍ଟିଯାଇଛି ।

ମୋ ଜୀବନଟା ହେଲା ନଈର ଧାରା ଭଳି । ନଈ ଯେମିତି ଅନେକ ଗାଁ ଗଣ୍ଡା ପାରି ହୋଇଥାଏ ମୁଁ ଜୀବନର ବହୁ ଅଂକାବଂକା ପର୍ଯ୍ୟାୟ ପାରି ହୋଇଛି । ନଈ ଯୋଗୁଁ

କିଏ ଶସ୍ୟଶ୍ୟାମଳା ହୋଇ ଯାଏ ତ କିଏ ପୁଣି ବନ୍ୟା ପାଇଁ ସର୍ବସ୍ୱାନ୍ତ ହୋଇଯାଏ । ନଈର କିନ୍ତୁ ଶୋଚନା ନଥାଏ । ସେ କେତେ ବହୁରଂଗୀ, ବିଚିତ୍ର ମଣିଷ, ଜୀବଜନ୍ତୁ, ଗଛଲତାର ସଂସ୍ପର୍ଶରେ ଆସେ କିନ୍ତୁ ସବୁ କିଛିକୁ ପଛରେ ପକାଇ ଦେଇ ଆଗକୁ ମାଡ଼ିଯାଏ ଓ ମାଡି ଯିବାଟା ହିଁ ସତେ କି ନଈର ଧର୍ମ । ମୁଁ ନଈ ଭଳି ଆଗେଇଛି, ମୋଡ ନେଇଛି । ଅନେକଙ୍କ ସହ ପରିଚୟ, ଆତ୍ମୀୟସ୍ୱଜନ, ସୁହୃଦ୍‌ଙ୍କର କୋଳାହଳ । କିନ୍ତୁ କେହି ବାଂଧି ରଖି ନାହାଁନ୍ତି । ସମସ୍ତଙ୍କୁ ପାଇଛି ପୁଣି ପାଇ ନାହିଁ । ସମସ୍ତେ ମୋ ପାଖରେ ଥାଇ ନଥିଲା ଭଳି । ପୁଣି ନ ଥାଇ ବି ଥିଲା ଭଳି । ମୋ ଜୀବନ ସୁଅରେ କେତେ କଣ ଭାସି ଯାଇଛି । ତେଣୁ ତ ମୋର ସମଗ୍ର ଜୀବନ ଏକ ଅନିର୍ଦ୍ଦିଷ୍ଟ ଲକ୍ଷ୍ୟହୀନ, ଅସରନ୍ତି ଯାତ୍ରା । ମୁଁ ଏଭଳି ଏକ ଯାତ୍ରୀ ଯାହା ଜୀବନର ଆରମ୍ଭ ଦୁଃଖର ରାସ୍ତାରୁ, ସଂଗ୍ରାମ, ଅବହେଳା ଭିତରୁ । ପ୍ରତିକୂଳ ପରିସ୍ଥିତି ଭିତରେ ସଂଗ୍ରାମ କରି କରି ଶକ୍ତ ହେଇ ଯାଇଛି ଯାହାକୁ କୁହାଯାଏ self- made । ତେଣୁ ଅଳ୍ପ ବୟସରୁ ଅନୁଭୂତି ଗଭୀର, ପରିପକ୍ୱ ହେଇ ଯାଇଛି । ଏଇଥିପାଇଁ ବୋଧହୁଏ ବିଷାଦର ବଳୟରୁ ପାରି ହେଇପାରି ନାହିଁ । ଅନେକଙ୍କ ଜୀବନରେ ସବୁଜ ଉପତ୍ୟକାଟେ ସାଜିବାକୁ ଚେଷ୍ଟା କରିଛି କିନ୍ତୁ ନିଜ ଜୀବନ ଉପତ୍ୟକା ଧୂଷର ହେଇଯାଇଛି । ସବୁବେଳେ ମନେହୋଇଛି ଜୀବନ କେତେ ବ୍ୟାପକ, ବିଚିତ୍ର ଆଉ ଘଟଣା ବହୁଳ ସତରେ । ମୋ ଭଳି ଛୋଟିଆ, କ୍ଷୁଦ୍ରତମ ଲେଖିକାଟି ବର୍ଣ୍ଣିଳ ଜୀବନର ପ୍ରବଳ ସୁଅରେ ଭାସି ଯାଇଛି । ଠେଲି ହୋଇ ଯାଇଛି । ତେବେ ମୋ ଜୀବନର ଦୁର୍ଦ୍ଦିନରେ ମୁଁ ଅନେକଙ୍କୁ ଆହରଣ କରି ସାହସ ପାଇଛି । ଚେକଭଙ୍କ ଜୀବନରେ ଯଦି ନୈରାଶ୍ୟ ନଥାନ୍ତା, ଦୁଃଖଦ ଦାମ୍ପତ୍ୟ ଜୀବନଟେ ନଥାନ୍ତା, ସେ କ'ଣ ଏତେ ବଡ ବିଖ୍ୟାତ ଲେଖକ ହୋଇ ପାରିଥାନ୍ତେ ? ଦସ୍ତଭୋସ୍କି , ଟଲଷ୍ଟୟଙ୍କ ଦୁଃଖପୂର୍ଣ୍ଣ ଜୀବନ ହିଁ ସେମାନଙ୍କୁ ଏତେବଡ ରଚନାକାର କରିଦେଇଛି । ବିଖ୍ୟାତ ବଂଗଳା ଔପନ୍ୟାସିକ ଶରତଚନ୍ଦ୍ରଙ୍କ 'ଆୱାରା ଜୀବନ' ତାଂକୁ ଅମର ଶିଳ୍ପୀର ହାର ପିନ୍ଧାଇ ଦେଇଛି । ବେଳେବେଳେ ଆମ୍ଭମାନଙ୍କ ଜୀବନରେ ଦୁର୍ବଳତା, ଅଭାବବୋଧ ହିଁ ଆମର ସାହାରା, ମାଧ୍ୟମ ପାଲଟିଯାଏ । ମିଲଟନ ନିଜ ଜୀବନରେ ଏତେ ସୁନ୍ଦର କାବ୍ୟ ଏଇଥିପାଇଁ ଲେଖି ପାରିଥିଲେ କାହିଁକି ନା ସେ ଅନ୍ଧ ଥିଲେ । ବିଥବିନ୍ ଉତ୍କୃଷ୍ଟ ସଂଗୀତ ରଚନା କରି ପାରୁଥିଲେ ଏଇଥିପାଇଁ ଯେ ସେ ମୂକ ଥିଲେ । ହେଲେନ୍ କେଲରଙ୍କ ସ୍ମରଣଶକ୍ତି ଅତି ପ୍ରଖର ଥିଲା କାହିଁକି ନା ସେ ଅନ୍ଧ, ମୂକ, ବଧିର ଥିଲେ । ଭୀମଭୋଇ, ଯୀଶୁଖ୍ରୀଷ୍ଟ, ଶିରିଡି ବାବାଙ୍କ ଠୁ ଆରମ୍ଭ କରି ଶିଳ୍ପୀ ବିମ୍ୱାଧର ବର୍ମା, ସ୍ୱଭାବକବି ଗଂଗାଧର ମେହେର, ସରସ୍ୱତୀ ଫକୀରମୋହନ ସେନାପତିଙ୍କ ପର୍ଯ୍ୟନ୍ତ ଅସଂଖ୍ୟ ମହାପୁରୁଷ, ସାହିତ୍ୟିକଙ୍କୁ ଆଦର୍ଶ ବନାଇ ମୁଁ ନିଜକୁ ବୁଝାଇଛି ଜୀବନରେ ଯଦି

ତିକ୍ତତା ମିଳିଛି ତାକୁ ମିଷ୍ଟାନ୍ନ ଭାବି ଗ୍ରହଣ କରିନେବି । ସବୁବେଳେ ତେଣୁ ନିଜର ବ୍ୟକ୍ତିଗତ ଦୁଃଖକୁ ଭୁଲି ହସିବାକୁ ଚେଷ୍ଟା କରିଛି । ଯେତେବେଳେ ଦୁଃଖ ବେଦନାର ଓଜନ ସହି ନପାରିଛି ଆଖି ବର୍ଷିଯାଇଛି ଅଥବା ଈଶ୍ୱର ନାମକ ସେହି ବିଶ୍ୱାସର ଅଦୃଶ୍ୟ ଶକ୍ତି ପାଖରେ ନିଜକୁ ସମର୍ପଣ କରିଦେଇଛି ।

ମୋ ପରେ ମୋତେ ନେଇ ହୁଏତ କେତେ ମନଗଢ଼ା କାହାଣୀର ଜନ୍ମହେବ । କିଛି ନିନ୍ଦା ଓ ପ୍ରଶଂସା, ଘୃଣା ଆଉ ପ୍ରେମ ହେବ ମୋ ମୃତ୍ୟୁର ଶ୍ରଦ୍ଧାଞ୍ଜଳି । ହେଲେ ସେ ସବୁର ବହୁ ଊର୍ଦ୍ଧ୍ୱକୁ ସେତେବେଳେ ମୁଁ ଚାଲି ଯାଇଥିବି । ଏହା ହିଁ ତ ଜୀବନ । କେବେ ଏ ଜୀବନରେ କିଏ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିଥାଏ ତ ପୁଣି କେବେ ମଞ୍ଜିଲକୁ ଛୁଇଁବା ଆଗରୁ ଶେଷ ହୋଇଯାଇଥାଏ । ଫିରାଖ୍ ଗୋରଖ ପୁରୀଙ୍କ ଭାଷାରେ କହିଲେ- 'ହର୍ ସଫର୍ ହୋ ଯାତାହେ ଖତମ୍ / କହିଁ ମଂଜିଲ୍ ପେ, ଔର କହିଁ ମଂଜିଲ୍ ସେ ପେହେଲେ ।'

ତଥାପି ଚାଲିବି, ନ ପଡିବି ଥକି ବୁଜିବା ଆଗରୁ ଆଖି ମୁଁ । 'And miles to go before I sleep', yes before I sleep.

## ଯେଉଁମାନେ ମୋତେ ଏ ଆତ୍ମଜୀବନୀ ଲେଖିବାକୁ ପରୋକ୍ଷରେ ପ୍ରେରଣା ଯୋଗାଇଛନ୍ତି ସେମାନଙ୍କ ଆତ୍ମଜୀବନୀ ଗଛ ପୃଷ୍ଠାରୁ କିଛି ଅଂଶ :

ଅନେକ ସମୟରେ ନିଜର ଆତ୍ମଜୀବନୀ ଲେଖିବି କି ନା ଚିନ୍ତା କରିଛି । ପୁଣି ଅନ୍ୟ ମାନଙ୍କର ଆତ୍ମଜୀବନୀ ପଢ଼ିଲା ବେଳେ ସାହସ ଜୁଟାଇଛି ନିଶ୍ଚେ ଲେଖିବି ବୋଲି । ଜୀବନର ଚଲାପଥରେ ତେଣୁ ଯେଉଁମାନେ ମୋତେ ପ୍ରେରଣା ଯୋଗାଇଛନ୍ତି ସେମାନଙ୍କ ଶବ୍ଦରୁ କିଛି ଉଦ୍ଧୃତ ନକଲେ ନିଜକୁ ଦୋଷୀ ମନେ ହେବ । ସେଥିପାଇଁ ଏହି ପରିଚ୍ଛେଦଟି ମୁଁ ମୋ ଆତ୍ମଜୀବନୀରେ ଯୋଡିବାକୁ ଇଚ୍ଛାକଲି ।

"ଯେତେ ଦେଖିଲି, ଶୁଣିଲି, ବୁଝିଲି, ତଥାପି ବାକି ଯେ ରହିଗଲା ଅନେକ ଅନେକ । ସେ ବାକି ଖାତା କେବେ କେଉଁଠି କ'ଣ ପୂରଣ ହୁଏ ?"

- ପଦ୍ମଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ - (ଅଙ୍ଗେ ଯାହା ନିଭାଇଛି )

"ପ୍ରକୃତରେ ଲେଖକ ଜୀଇଁରହେ ପାଠକର ସ୍ୱପ୍ନର ରଙ୍ଗରେ, ତା' ଜୀବନର ଅନ୍ଧାରି କୋଣରେ + + + + ଜୀବନରେ ଅଛି କଥାଟି କେତେବେଳେ ଥିଲା ହୋଇଯାଏ ଜାଣି ହୁଏ ନାହିଁ ।"

ଅମୃତା ପ୍ରୀତମ୍ - (ରେଭିନ୍ୟୁଟିକେଟ୍)

‘ମେରା ଜୀବନ ଅନ୍ତତଃ ମାନୋ ଏକ୍ ଉପନ୍ୟାସ୍ ହୀ ହେ । ଇସ୍ ଉପନ୍ୟାସ ମେଁ ସବ୍ କୁଛ କିୟା ପର-ଛୋଟାକାମ୍ କଭି ନହୀଁ କିୟା । ଜବ୍ ମରୁଙ୍ଗା ନିର୍ମଳ ଖାତା ଛୋଡ ଯାଉଙ୍ଗା, ଉସ୍‌କେ ବିଚ୍ ସ୍ୱାହିକା ଦାଗ୍ କହୀଁ ଭି ନହୀଁ ହୋଗା ।”

‘ଶରତଚନ୍ଦ୍ରଙ୍କ ଜୀବନୀ ‘ଆୱାରାମସିହା’-ବିଷ୍ଣୁପ୍ରଭାକର ।

“ମୋର ଅନୁଭୂତି, ଜୀବନ ଏକ ଛାଇଆଲୁଅର ଖେଳ । ଯେଉଁଠି ଛାଇ, ସେଠି ମଧ୍ୟ ଆଲୁଅ । ଛାଇ ନଥିଲେ ଆଲୁଅଟାକୁ ବୋଧେ ଉପଭୋଗ କରି ହୁଅନ୍ତା ନାହିଁ । ଏଇ ଅମାବାସ୍ୟା ଓ ପୂର୍ଣ୍ଣିମା ପରି । ସେଥିପାଇଁ ପୂର୍ଣ୍ଣିମାର ଜ୍ୟୋତ୍ସ୍ନା, ଅମାବାସ୍ୟାର ଅନ୍ଧକାର ମୋ ଆଖିରେ ଦୁହେଁ ସୁନ୍ଦର ଓ ପରିପୂରକ । ମୁଁ ଏକ ନିଃସଙ୍ଗ ବ୍ୟକ୍ତି । କାରଣ ମୋ ପକ୍ଷରେ ଗୋଠରେ ମିଶିବା ଯେତିକି ଉତ୍ପୀଡକ, ମଠ ଗଢ଼ିବା ସେତିକି ଅରୁଚିକର ।”

ସୁରେନ୍ଦ୍ର ମହାନ୍ତି - ‘ପଥ ଓ ପୃଥିବୀ’

“ଜୀବନ କୀ ସଚ୍ଚୀ ତସ୍‌ବୀର ଆପ୍‌କେ ସାମ୍‌ନେ ରଖୁଙ୍ଗା-ଜୀବନ୍ ଔର ଶବ୍ଦ ଏକ ଦୁସ୍‌ରେ ସେ ବହୁତ ଅଲଗ୍‌ସ୍ତର କୀ ଚିଜେଁ ହୈ + + + ଜୀବନ୍‌କା ସତ୍ୟ ଔର ଶବ୍ଦକା ସତ୍ୟ ଅଲଗ୍ ଅଲଗ୍ ଇକାଇୟାଁ ହୈ । ସଂସାରକା ସାରା ସାହିତ୍ୟ ଯୋ ଶବ୍ଦକା ସାହିତ୍ୟ ହୈ, ଜୀବନ୍‌କୋ ପକଡନେ କା ଏକ ବହୁତ ନିର୍ମଳ ଔର ନିଷ୍ଫଳ ପ୍ରୟାସ ହୈ । ଜୀବନ କେ ସତ୍ୟ ଔର ଶବ୍ଦ କେ ସତ୍ୟ ମେଁ କୋୟି ସାମ୍ୟ ନହୀଁ ହୈ । ଔର ଜୀବନ୍ କୀ ଦୃଷ୍ଟି ସେ ଶବ୍ଦୋଁକା ସତ୍ୟ ଏକ୍ ବହୁତ ବଡା ଲେକିନ୍ ବହୁତ ସୁନ୍ଦର ଝୁଠ୍ ହୈ ।”

ଡକ୍ଟର ହରିବଂଶ ରାୟ ବଚ୍ଚନ - ‘କ୍ୟା ଭୁଲୁଁ କ୍ୟା ୟାଦ୍ କରୁଁ ।’

‘ମନୁଷ୍ୟ ଏକ ଚିର ରହସ୍ୟମୟ ଶେଷହୀନ ଗ୍ରନ୍ଥ ଯାହାକୁ ଆମେ ଓ ଆମର ପୂର୍ବପୁରୁଷମାନେ ଆଜି ପର୍ଯ୍ୟନ୍ତ ଅଧ୍ୟୟନ କରି ଆସିଛେ ଓ ଆମର ପରବର୍ତ୍ତୀ ପୁରୁଷମାନଙ୍କ ପାଇଁ ତଥାପି ଏତେ ଅବଶିଷ୍ଟାଂଶ ଗଚ୍ଛିତ ରହିବ ଯାହାକୁ ସେମାନେ ସେମାନଙ୍କର ଉତ୍ତରାଧିକାରୀମାନଙ୍କ ପାଇଁ ଛାଡିଯିବାକୁ ବାଧ୍ୟ ହେବେ ।’

-ଅଖିଳ ମୋହନ ପଟ୍ଟନାୟକ ଓ ‘ଅନ୍ଧଗଳି’

‘ମୋର ପଦତ୍ୟାଗ ବିଶ୍ରାମ ପାଇଁ ନୁହେଁ, ଶ୍ରମ ପାଇଁ । ତେବେ ସେଇଟା ମୋର

ସାଧନାର ଅଙ୍ଗ । ମୋର ସାଧନା ହେଉଛି ରୂପର ସାଧନା । ଶିଳ୍ପୀର ସାଧନା ତଥା ପ୍ରେମର ସାଧନା । ଜୀବନଟାଯାକ ମୁଁ ଏହି ଦୁଇଟି ସାଧନାର ପାହାଚ ପରେ ପାହାଚ ଉତ୍ତୀର୍ଣ୍ଣ ହୋଇଛି । ମୋର ଲେଖା ହେଉଛି ରୂପୋତ୍ତୀର୍ଣ୍ଣ ତଥା ରସୋତ୍ତୀର୍ଣ୍ଣ । କିନ୍ତୁ କାଳୋତ୍ତୀର୍ଣ୍ଣ ହେବ କି ନାହିଁ କହିପାରୁ ନାହିଁ ।"

ସବୁଜ କବି ଅନ୍ନଦାଶଙ୍କର ରାୟ- 'ନବେ ବର୍ଷ ପାର ହୋଇ'

'ସମଗ୍ର ଜୀବନ ଧରି ମୁଁ କେବଳ ନାଟକ ହିଁ ଲେଖି ଆସିଥିଲି । ଏହି ସ୍ମୃତିକଥା, ସ୍ମୃତିସଂଳାପ ମୋର ପ୍ରଥମ ଅଣ-ନାଟକ । + + + + ସେ ସମୟର ବହୁସ୍ଥାନ, ଘଟଣା, ଅନୁଭୂତି, ଦୃଶ୍ୟ ଓ ବିଚିତ୍ର ପରିସ୍ଥିତି ମୁଁ ପରବର୍ତ୍ତୀ ସମୟରେ ଭୁଲି ପାରୁନଥିଲି । ମୁହଁ ସଞ୍ଜରେ ଆକାଶରେ ଏଠିସେଠି ଜହ୍ନିଫୁଲ ଫୁଟି ଉଠିଲା ପରି, ସ୍ମୃତିର ଦ୍ୱାର ଖୋଲି ସେସବୁ ମୋର ବାରମ୍ବାର ମନେ ପଡୁଥିଲା । + + +'

ମନୋରଞ୍ଜନ ଦାସ - 'ସ୍ମୃତିସଂଳାପ'

'ଗଳ୍ପତ ଅନେକ ଲେଖା ହୋଇଛି ଓ ପ୍ରତି ମୁହୂର୍ତ୍ତରେ ହେଉଛି ମଧ୍ୟ । ତଥାପି ମନେ ହେଉଛି ଗଳ୍ପ ସରି ନାହିଁ । ସବୁବେଳେ ଯେମିତି କିଛି କାହାଣୀ, କିଛି ଚରିତ୍ର ଓ କିଛି ବକ୍ତବ୍ୟ ରହିଯାଇଛି । ପରିବର୍ତ୍ତିତ ପୃଷ୍ଠଭୂମିର ଚେତନା ଓ ଚିନ୍ତାର ଦିଗନ୍ତ ସୁଦୂର ପ୍ରସାରୀ । ସେଥିପାଇଁ ଆଜିର ଗାଳ୍ପିକ ନିୟତ ଯନ୍ତ୍ରଣାରେ ଜର୍ଜରିତ, ବ୍ୟସ୍ତ ବିବ୍ରତ । ତେଣୁ ତ ସମୟ ସହିତ ସଙ୍ଘର୍ଷ । ଏପରିକି ନିଜ ସହିତ ନିଜର ଯାହା ଗାଳ୍ପିକ ଓ ପାଠକ ଉଭୟ ଅନୁଭବ କରନ୍ତି । ସେହି ସଙ୍ଘର୍ଷ ଓ ଯନ୍ତ୍ରଣାରୁ ଜନ୍ମ ପାଟଦେଈ ।

ଗାଳ୍ପିକା ବୀଣାପାଣି ମହାନ୍ତି - 'ପାଟଦେଈ ଆତ୍ମଲିପି (ମୁଖବନ୍ଧ)'

'ଜୀବନରେ ଯାହା ଯାହା କରିଛି ତାହା ଜୀବନୀ ନୁହେଁ । ଜୀବନରେ ଯେଉଁ ଆଦର୍ଶ ଓ ମୂଲ୍ୟବୋଧର ରୂପାୟନ ହୋଇଛି ତାହା ଜୀବନୀ । + + + ସାହିତ୍ୟ ଜଗତରେ ଜୀବନୀ ସାହିତ୍ୟ ଏକ ଧାରା ଓ ଆତ୍ମଜୀବନୀ ତାହାର ଏକ ଉପଧାରା ରୂପେ ନିଜର ଆସନ ସାବ୍ୟସ୍ତ କରି ସାରିଛି । ପୃଥିବୀର ଆଦିକାବ୍ୟ ରାମାୟଣ ହେଉଛି ଶ୍ରୀରାମଚନ୍ଦ୍ରଙ୍କ ଜୀବନୀ । ମହର୍ଷି ବାଲ୍ମୀକିଙ୍କ ଲେଖନୀ ପ୍ରସୂତ ଏହି ଅମୃତମୟ ଜୀବନ କାହାଣୀ ପୃଥିବୀର ଆଦିଜୀବନୀ ସାହିତ୍ୟ ବୋଲି ଧରିନିଆ ଯାଇପାରେ । ବ୍ୟାସଦେବଙ୍କ

ବିରଚିତ ଶ୍ରୀମଦ୍‌ଭଗବତର ଦଶମ ଓ ଏକାଦଶ ସ୍କନ୍ଧକୁ ଭଗବାନ ଶ୍ରୀକୃଷ୍ଣଙ୍କ ଦିବ୍ୟ ଜୀବନୀ ବୋଲି ଆମେ ଗ୍ରହଣ କରି ଆସିଛୁ । + + + ଓଡ଼ିଆ ସାହିତ୍ୟରେ ମୋ ଜାଣିବାରେ ଜଗନ୍ନାଥ ଚରିତାମୃତ ହେଉଛି ପ୍ରଥମ ଜୀବନୀ ଓ ଅରକ୍ଷିତ ଦାସଙ୍କ 'ମହାମଣ୍ଡଳଗୀତା' ହେଉଛି ପ୍ରଥମ ଆତ୍ମଜୀବନୀ ଗ୍ରନ୍ଥ । + + + ଓଡ଼ିଆ ସାହିତ୍ୟରେ ପ୍ରଥମ ଜୀବନୀ ଓ ଆତ୍ମଜୀବନୀ ଲେଖା ହୋଇଛି ପଦ୍ୟରେ ।'

ପ୍ରଫେସର ଶ୍ରୀ ହୃଦାନନ୍ଦ ରାୟ - 'ଜାଣେ ଅନୁଭବୀ ଅନୁଭବରେ'

"ଚନ୍ଦ୍ର ପିଠିରେ ମଣିଷ ଏବେ ପାଦଦେଇ ଫେରି ଆସିଲାଣି । ତଥାପି ମଣିଷ ମନରେ କୁମୁଦ ବାନ୍ଧବ ଚନ୍ଦ୍ର ଆଜି ବି ପ୍ରେମ ଏବଂ ଆନନ୍ଦର ପ୍ରତୀକ । + + ତାଙ୍କ ପିଲାଦିନର ଏଇ ଗାଁ ଠିକ୍ ସେମିତି - ନିଖୁଣ ନୁହେଁ କିନ୍ତୁ ଅତି ସ୍ନେହ ଏବଂ ପ୍ରୀତି ଭରା । ଶୈଶବରେ ଏଇ ମା'ର ବୁକୁରେ ହିଁ ସେ ଲାଳିତପାଳିତ ହୋଇଥିଲେ । ଆଜି ଜୀବନର ଏଇ ସାୟଂକାଳେ ସେ ସେହି ମା'ର ସୁକୋମଳ କୋଳକୁ ଫେରି ଆସିଛନ୍ତି ।"

ପ୍ରଫେସର ଭୁବନେଶ୍ୱର ବେହେରା - 'ଗାଁର ଡାକ'

"ଆତ୍ମଜୀବନୀ ଲେଖିବା କ'ଣ ଅପରାଧ ? ଆତ୍ମଜୀବନୀର ପ୍ରଧାନ ସର୍ତ୍ତ ତ ଜୀବନର ସବୁକିଛିକୁ ଖୋଲି ମେଲି ଧରିବା । କୌଣସି ଗୋପନ କଥା, କୌଣସି କିଛିର ତଳେ ଲୁଚାଇ ରଖାଯିବ ନାହିଁ । ଯାହା କିଛି ଗୋପନ, ଯାହା କିଛି ଅଜଣା, ତାହା କରିବାପାଇଁ ତ ଆତ୍ମଜୀବନୀ । + + + ସବୁ ପ୍ରକାର ଅଭିଜ୍ଞତା ଭିତର ଦେଇ ମୋର ବଡ ହେବା ବା ବଡ ହୋଇ ଉଠିବାର ଘଟଣାଗୁଡିକୁ ମୁଁ ବର୍ଣ୍ଣନା କରିଛି । ମୋର ଦର୍ଶନ, ଅଦର୍ଶନ, ମୋର ହତାଶା - ଆଶା, ମୋର ସୁନ୍ଦର-ମୋର କୁତ୍ସିତ, ମୋର ଶୋକ ସୁଖ, ମୋର କ୍ରୋଧ ଆଉ କାନ୍ଦଗୁଡିକର କଥା ହିଁ ମୁଁ କହିଛି । କୌଣସି ସ୍ପର୍ଶକାତର ବା ଉତ୍ତେଜକ ବିଷୟକୁ ଜାଣିଶୁଣି ବାଛି ନେଇନି । ମୋର ଜୀବନଟିକୁ ମୁଁ ବାଛି ନେଇଛି ଏହି ଜୀବନୀ ଲେଖିବାପାଇଁ । ଏହି ଜୀବନୀଟି ଯଦି ସ୍ପର୍ଶ କାତର ଓ ଉତ୍ତେଜକ ହୁଏ, ତେବେ ଏହି ଜୀବନର କଥା ଲେଖିବାକୁ ଗଲେ ମୁଁ ଅସ୍ପର୍ଶକାତର ଓ ଅନୁତ୍ତେଜକ ବିଷୟ କେଉଁଠି ପାଇବି ?'

ତସ୍‌ଲିମାନାସ୍‌ରିନ୍ - 'ଦୁଃଖିନୀ ଝିଅର ଗୀତ'

# ମୋ ଭିତରର ଲୋଭନୀୟ ଇଚ୍ଛା

ମୋ ଭିତରେ ଏକ ଆକର୍ଷଣୀୟ ଇଚ୍ଛାଟେ ଅଛି ସୁନ୍ଦର ମୃତ୍ୟୁଟେ ପାଇଁ । ଧୀରେ ସେ ଆସି ମୋତେ ଆଲିଙ୍ଗନ କରିନେବ । ସେତେବେଳେ ମୋ ଆଖିରେ ପୃଥିବୀର ରଙ୍ଗ କେବଳ ସବୁଜ ଥିବ । ଭିତରେ ରହିଥିବ ବଞ୍ଚିବାର ପ୍ରଚୁର ସ୍ୱପ୍ନ । ମୋ ଚାରିପଟେ ଆତ୍ମୀୟ, ବନ୍ଧୁବାନ୍ଧବ, ଶୁଭେଚ୍ଛୁ, ପାଠକ, ପ୍ରଶଂସକ ଘେରେଇ ରହିଥିବେ । ଯେତେବେଳେ ମୋର ପ୍ରୟୋଜନ ସବୁଠୁ ଅଧିକ ଥିବ ସେତିକି ବେଳେ ହିଁ ମୋ ମୃତ୍ୟୁ ଆସିବ । କାହିଁକି ନା କାହାରି ଅବହେଳା, ଅଶ୍ରଦ୍ଧା, ଘୃଣା ଯେମିତି ମୋ ମୃତ୍ୟୁକୁ ଅପମାନିତ କରିବ ନାହିଁ । ମୁଁ କାହାପାଇଁ ବୋଝ ପାଲଟି ନଥିବି । ସେତେବେଳେ ଆକାଶରେ ସୂର୍ଯ୍ୟ କି ଚନ୍ଦ୍ର ଥିବ । ମୋ ଚାରିପଟେ ରବୀନ୍ଦ୍ର ନାଥଙ୍କ ପ୍ରିୟ ସଙ୍ଗୀତ, ଯଦି ଡାକ୍ ଶୁନେ ତୋର କେଇନା ଆସେ ଏକ୍‌ଲା ଚଲୋ, ଏକ୍‌ଲା ଚଲୋ, ଏକ୍‌ଲା ଚଲୋରେ... ଗୁଣୁଗୁଣୁ ହେଇ ପବନରେ ଖେଳାଇ ରହିଥିବ । ମୁଁ ମୃଦୁ ଉଚ୍ଚାରଣ କରୁଥିବି, ଆଜି ଦିନଟି ସତରେ କେଡେ ସୁନ୍ଦର । 'Today shall never come, tomorrow or ever.' ମୋ ମୃତ୍ୟୁ ସେତେବେଳେ କେତେ ମୁଗ୍ଧକର ନଦିଶିବ ! ଏତେ ଖୁସି ସତେ କି ମୁଁ ସହି ପାରୁନଥିବି । କେବେ ଆସିବ କେଜାଣି ସେ କୃଷ୍ଣ ସାଜି ? ଶୋଇ ଦେବ ମୋତେ ମହାନିଦ୍ରାରେ । ତା'ପାଇଁ କେତେ ଯୁଗ, କେତେ ବର୍ଷ, କେତେ ରାତି ମୋତେ ପ୍ରତୀକ୍ଷା କରିବାକୁ ପଡିବ କିଏ ଜାଣେ ? ଅଭିସାରିକା ସାଜି ଅନେଇ ରହିବାକୁ ହେବ ? ସେତେବେଳେ ନିଶ୍ଚେ ମୋ ମୁଣ୍ଡ ପାଖରେ କେହି ଭାଗବତରୁ ପଦେ ବୋଲି ଦେଉଥିବ-

'ବୃକ୍ଷର ଜଳେ ଯେହ୍ନେ ଆସି, ପଥିକ ବିଶ୍ରାମନ୍ତି ବସି
ପୁଣି ଚଳନ୍ତି ଶ୍ରମସାରି, ସେ ବୃକ୍ଷ ନୁହଇ କାହାରି
ତେମନ୍ତ ମାୟା ଏ ସଂସାର,
କେପିତା, କେ କାହା କୁମର ।'

walt whitman ଠିକ୍ କହିଥିଲେ, 'Nothing can happen more beautiful than death.'

ମୋ ମୃତ୍ୟୁ କ'ଣ ସତରେ ବିଉଟିଫୁଲ ହେବ ? ହେ ଈଶ୍ୱର ! ତମକୁ ଧନଜନ, ଖ୍ୟାତି କିଛି ମାଗୁନାହିଁ । ମାଗୁଛି ସୁନ୍ଦର ମୃତ୍ୟୁଟେ । ନୀଳ ଆକାଶରୁ ଝିଲମିଲ-ପୋଷାକ ପିନ୍ଧି ମୃତ୍ୟୁ ଯେତେବେଳେ ଓହ୍ଲେଇ ଆସୁଥିବ, ସେ ସ୍ନିଗ୍ଧ ଅଦୃଶ୍ୟକୁ କ'ଣ ମୁଁ ସମ୍ଭାଳି ପାରିବି ? ଆନନ୍ଦରେ ପାଗଳୀ ହେଇ ଯିବନି ତ ?

ମୋର ଯଦି ସ୍ୱାଭାବିକ ମୃତ୍ୟୁ ନହୋଇ କୌଣସି ଦୁର୍ଘଟଣାରେ କିମ୍ୱା କାହା ଦ୍ୱାରା

ହତ୍ୟା ହୋଇଯାଏ ତେବେ ତ ଏହା ନିଶ୍ଚେ ଦୁର୍ଭାଗ୍ୟର କଥା ହେବ । ଆଉ ମୁଁ ଯଦି କେବେ ଆତ୍ମହତ୍ୟା କରେ ? ହେ ମୋର ନମସ୍ୟ ପ୍ରିୟ ପାଠକମାନେ ! ମୋତେ କେବେ ଭୁଲ ବୁଝିବେନାହିଁ । ମୋ ଲାଗି ମନଦୁଃଖ କରିବେନାହିଁ । ପାରିବେତ ଶ୍ରଦ୍ଧାର ଲୁହ ଠୋପାଏ ଦେବେ । ଏତିକି ଜାଣିବେ ତମ ପ୍ରିୟ ଲେଖିକାଟି ତା' ଜୀବନ ଉପରୁ ସମ୍ପୂର୍ଣ୍ଣ ଆସ୍ଥା ହରାଇ ଦେଇଛି । ଜୀବନର ସବୁ ଆକର୍ଷଣ ହଜିଯାଇଛି ଅଥବା ଜୀବନ ପ୍ରତି ସବୁ ରଙ୍ଗ, ସ୍ୱପ୍ନ, ବିଶ୍ୱାସ ସରି ଯାଇଛି । ଆଉ ତା'ପରେ ତମେମାନେ ଛାଏଁ ଛାଏଁ ଉପଲବ୍ଧ କରିବ ଯେ ମୋର ଆଉ ବଞ୍ଚିବାର ଅଧିକାର ନାହିଁ । ଭଗବାନ ନକରନ୍ତୁ ଏଭଳି ଦୁର୍ଦ୍ଦିନ କେବେ ନ ଆସୁ ।

ପୃଥିବୀରୁ ଯେତେବେଳେ ମୁଁ ସବୁଦିନ ପାଇଁ ହଜି ଯାଉଥିବି, ମିଳାଇ ଯାଉଥିବି ସେତେବେଳେ ବି କେହିନା କେହି ଜନ୍ମ ହେଉଥିବ ଦୁନିଆର କୌଣସି କୋଣରେ । ଏମିତି ମଣିଷର ଜୀବନଯାତ୍ରା ଚାଲିଥିବ । ଜନ୍ମ ପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ । କିଣାବିକା, ଭଙ୍ଗାଗଢ଼ା, ହାଟପସରା ମେଳା ହେଉଥିବ । ସମୁଦ୍ରରେ ଢ଼େଉ ଉଠି କୂଳ ବାଡେଇ ଫେରି ଯାଉଥିବ ଆଉ ଆକାଶରେ ମେଘ କିମ୍ବା ତାରା ଭଳି ହୋଇ ଯାଇଥିବ । ଦିନ ହେଉଥିଲେ ସୁନେଲି ସୂର୍ଯ୍ୟ କିରଣ ବିଛାଇ ଯାଉଥିବ । କିନ୍ତୁ ମୁଁ ନଥିବି । ସେଥିଲେ କ'ଣ ଯାଏ ଆସେ ? କେଉଁ ନୂଆ କଥାଟେ ଯେ ମରିବାଟା । କଣ ଗୁରୁତ୍ୱ ଯେ ମୋର ଥିବା ନଥିବାଟା । ସେମିତି ଋତୁ ପରିବର୍ତ୍ତନ, ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଚାଲିଥିବ । ମଣିଷତାର ସ୍ୱାଭାବିକ ଜୀବନଯାତ୍ରାରେ ନିଜକୁ ହଜେଇ ଦେଇଥିବ ଅଥଚ ଏସବୁ ଦେଖିବାକୁ, ମନଭରି ଉପଭୋଗ କରିବାକୁ ମୁଁ ନଥିବି । ବାସ୍ !

## ଅବଶୋଷ

ସବୁତ ମିଳେନା ଜୀବନରେ । ନ ମିଳେ ବୋଲିତ ଜୀବନରେ ଅନେକ ଅବଶୋଷ ରହି ଯାଏ । ସେଥିରୁ ମୁଁ ବା ବାଦ୍ ଯିବି କେମିତି ?

ବହୁତ ସ୍ୱପ୍ନଥିଲା ମୋର । ଅନେକ ଭାବପ୍ରବଣତା ବି ସାଇତି ରଖିଥିଲି । ହେଲେ ଅଧିକାଂଶ ଭାସିଗଲା ସମୟର ସୁଅରେ । ଯେଉଁମାନଙ୍କୁ ଆତ୍ମୀୟ, ଆପଣାର କହି ଗୋଟାଇଲି ସେମାନେ ସମସ୍ତେ ସ୍ୱାର୍ଥପର ହୋଇ ବାହାରିଲେ । କେବଳ ନିଜ କାର୍ଯ୍ୟ ହାସଲପାଇଁ, ଅର୍ଥ ହାସଲ ପାଇଁ ନିଜର ହେବାର ବାହାନା କଲେ । ଛଳନାର ଗୋଟାଏ ଗୋଟାଏ ମୁଖାପିନ୍ଧି ନିଜର ହେବାର ପ୍ରତ୍ୟୟ ଦେଲେ । ଯାହାଙ୍କ ହାତ ଧରିଲି ସେ ବା କେତେ ବୁଝିଲେ ? ପାଖରେ ଥାଇ ବି ଅନେକ ଦୂରରେ । ଯେମିତି ଅଚିହ୍ନା, ଅଜଣା

ମଣିଷ । ସ୍ୱାମୀ ବନ୍ଧୁ ଆସନକୁ ଓହ୍ଲାଇଲେ ସିନା ନିଜ ଦୁଃଖ ସୁଖ ବାଣ୍ଟି ହେବ । ପିଲାଦିନରୁ ମୁଁ ନିଃସଙ୍ଗ । ଆଜି ବି ନିଃସଙ୍ଗତାର ସେହି ଲମ୍ବାଛାଇ ମୋ ପିଛା ଛାଡି ନାହିଁ । ଛାଡିବକି ନାହିଁ ବି ଜଣା ନାହିଁ । ମାଆ ତ ପିଲାଦିନରୁ ଯାଇଥିଲା । ଦାରିଦ୍ର୍ୟ, ସଂଗ୍ରାମ ଭିତରେ କିଶୋରୀ ହେଲି । ସେଠୁ ବନ୍ଧୁ ଘାତ, ପ୍ରତିଘାତ ଭିତରେ ପାଠ ପଢ଼ିଲି । ସୂକ୍ଷ୍ମ ଭଲପାଇବାରେ ବି ଆଘାତ ସହିଲି । ଆଜି ଯାଏଁ ମନ ବୁଝିଲା ଭଳି, ନିଜକୁ ପଢ଼ିଲା ଭଳି, ନିଜର ଭଲପାଇବାର ଅନୁଭବକୁ ଓଜାଡି ଦେଲାଭଳି ମଣିଷଟେ ସହିତ ମୋର ଦେଖାହେଲା ନାହିଁ । ଏହା ହିଁ ମୋର ଅବଶୋଷ । ଯେଉଁ ନାରୀ କୌଣସି ପୁରୁଷ ପାଇଁ ପ୍ରାଣଠୁ ବଳି ମୂଲ୍ୟବାନ ନ ପାଲଟିଗଲା, କେହି ତା ପାଇଁ ଆତ୍ମାରେ ଝୁରି ହେଲାନାହିଁ ସେ ନାରୀର ବଞ୍ଚିବା ମରିବାର କ'ଣ ବା ସାର୍ଥକତା ଥାଏ ?

ବାପା ଥିଲେ ମୋର ସବୁଠାରୁ ବଡ ସାହାରା । ବେଶି ଆପଣାର । ମୋର ସମଗ୍ର ଜୀବନର ପ୍ରେରଣା । ତାଙ୍କର ଆଶୀର୍ବାଦ ଫୁଲ ହୋଇ ବର୍ଷୁଥିଲା । ତାଙ୍କର ଅବର୍ତ୍ତମାନରେ ବି ସେ ଆଶୀର୍ବାଦ ସତେକି ସେମିତି ରହିଛି । ତାଙ୍କ ଭିତରେ ମୁଁ ସମଗ୍ର ପୃଥିବୀ ଦେଖୁଥିଲି । ଭାବୁଥିଲି ମା' ନଥିଲେ କ'ଣ ହେଲା ବାପା ତ ଅଛନ୍ତି । ସେ ମୋତେ ଅପେକ୍ଷା କରନ୍ତି, ମୋ ଚିଠିକୁ ଚାତକ ଭଳି ଅନାଇଥାନ୍ତି । ଝିଅର ପ୍ରଶଂସା, କୃତିତ୍ୱ ଶୁଣିଲେ ତାଙ୍କ ଆଖିରେ ଆନନ୍ଦର ଲୁହ ଭର୍ତ୍ତି ହୋଇ ଯାଉଥିଲା । ସେ ବି ଦିନେ ଅଧାବାଟରେ ଛାଡି ଦେଇ ଚାଲିଗଲେ । ଗୁଡାଏ ଅବଶୋଷକୁ ନେଇ ମୁଁ ସେଇ ଯେ ବାଟ ଚାଲିବାକୁ ଆରମ୍ଭ କରିଥିଲି, ସେ ଯାତ୍ରା ଶେଷ ହୋଇ ନାହିଁ । ଆଗରେ ଏବେ ଅସରନ୍ତି ଅନ୍ଧାରି ଅରଣା ବାଟ । କେମିତି ଚାଲିବି ବୁଦ୍ଧି ଦିଶୁନାହିଁ । ନିଜକୁ ପଚାରୁଛି, ଏଥିରୁ କ'ଣ ମୋର ମୁକ୍ତି ନାହିଁ ? ଯଦି ମୁକ୍ତି ଅଛି ତେବେ ଆସିବ କେବେ ? କ'ଣ ତା'ର ଠିକଣା ? ସତରେ ସେ ଠିକଣାରେ ମୁଁ କେବେ ପହଞ୍ଚିପାରିବି ଏ ଜୀବନରେ ?

- କବିତା ବାରିକ

# ସତ୍ୟପାଠ

ମୋର ଏହି ଆତ୍ମଜୀବନୀରେ ଯାହା ଲେଖିଛି ତାହା ନିଛକ ସତ୍ୟକଥା । ଅତିରଞ୍ଜନ ନାହିଁ କି ବାହ୍ୟାଡ଼ମ୍ୱର ନାହିଁ । କାହା ମନରେ ଦୁଃଖ ହେବ, ଆଘାତ ଲାଗିବ ବା ମୁଁ ସମାଲୋଚିତ ହେବି ବୋଲି କ'ଣ ଅଙ୍ଗେନିଭା ଜୀବନ ଉପରେ ଚଦର (ପର୍ଦ୍ଦା) ଘୋଡାଇ ଦେଇଥାନ୍ତି ? ଯଦି ତାହାହିଁ କରିଥାନ୍ତି, ତାହେଲେ ମୋ କଥା ଆଉ 'ନିଜ କଥା' ହୋଇ ରହିଥାନ୍ତା କି ? ବରଂ ସତ୍ୟର ଅପଳାପ କୁହାଯାଇଥାନ୍ତା । ଆତ୍ମୀୟମାନେ କ'ଣ ଭାବିବେ, ଜାଣିଜାଣି ଶତ୍ରୁତା ମୁଣ୍ଡେଇବାକୁ ହେବ ଏଇୟା ଭାବି କ'ଣ ଆତ୍ମଜୀବନୀରେ ରଙ୍ଗ ମାରିଥାନ୍ତି ? ରଙ୍ଗ ନ ମାରି ପାରିବା ହୋଇପାରେ ମୋର ଅପାରଗତା । ଶବ୍ଦର ମିଛ ଖେଳରେ ମୋର ବିଶ୍ୱାସ ନାହିଁ । ତାକୁ ଯଦି ମୋର ଅହଂ କହି କେହି ସମାଲୋଚନା କରନ୍ତି କି ମୁହଁ ଫେରାଇ ନିଅନ୍ତି ସେଥିରେ ମୋର ବା ଦୋଷ କ'ଣ ?

ଏ ଆତ୍ମଜୀବନୀ ଲେଖିଲାବେଳେ ମୋ ଆଖିରୁ କେତେ ଲୁହ ଝରିଛି, ଛାତିରୁ କେତେ ରକ୍ତ ନିଗିଡିଛି ତାକୁ କିଏ ଦେଖିଛି ନା ପଢ଼ିଛି ନା ପୋଛିଦେଇଛି ?

- ଲେଖିକା

## ଲେଖିକାଙ୍କ କେତୋଟି ଅନବଦ୍ୟ ଗ୍ରନ୍ଥ

### ଗବେଷଣାତ୍ମକ ପ୍ରବନ୍ଧ ପୁସ୍ତକ :

୧. ମୋ ଦୃଷ୍ଟିରେ ନାରୀ - ୧୯୯୭
୨. ଶହେବର୍ଷର ଆଧୁନିକ ଓଡିଆ କ୍ଷୁଦ୍ରଗଳ୍ପ :ଏକ ତାତ୍ତ୍ୱିକ ବିଶ୍ଳେଷଣ (୧୮୯୮-୧୮୯୯) - ୧୯୯୯
୩. କୁନ୍ତଳା କୁମାରୀ : କୃତି ଓ କୃତିତ୍ୱ - ୨୦୦୪
୪. ଚେତନା - ୨୦୧୧
୫. ଓଡିଆ ସାହିତ୍ୟକୁ ମୟୂରଭଞ୍ଜର ଦାନ - ୨୦୧୧
୬. ବାମା - ୨୦୧୧
୭. ଓଡିଆ ଗଳ୍ପରେ ମାନବିକ ଚେତନା - ୨୦୧୨

### ଗଳ୍ପ ସଂକଳନ :

୧. ଭିନ୍ନ ସହର - ୧୯୮୭
୨. ଛକ - ୧୯୯୦
୩. ସଞ୍ଜ ଯେବେ ଆସେ - ୧୯୯୯
୪. ଗଙ୍ଗାସ୍ନାନ - ୨୦୦୦
୫. ଜୀବନ କେବେ କେମିତି - ୨୦୦୧
୬. ପବିତ୍ର ନିରଞ୍ଜନା - ୨୦୦୪.
୭. ଭଲଦିନର ଠିକଣା - ୨୦୦୮
୮. ନିଃସର୍ତ୍ତ ଉଚ୍ଚାରଣ - (ଯନ୍ତ୍ରସ୍ଥ)

### ଉପନ୍ୟାସ :

୧. ପର୍ଦ୍ଦା ପଛର ଗୀତ - ୧୯୮୧
୨. ସଂପର୍କ - ୧୯୯୨
୩. ମନର ଘର - ୧୯୯୩
୪. ଜୀବନ ନଈ - ୨୦୦୨
୫. ଛପସିତ ସକାଳ - ୨୦୦୪
୬. ପୃଷ୍ଠା - (ଯନ୍ତ୍ରସ୍ଥ)

# ଏଇଠୁ ଆରମ୍ଭ ମୋ ଜୀବନର ଖୋଲାପୃଷ୍ଠା

## (ଏକ)

ସ୍ମୃତି ତ ଶୋଇଛି ମୋ
 ଅତୀତ ଦିନକୁ ଭିଜାଇ
ଓଦାମାଟିରେ ବାସ୍ନା ମହକିଛି
 ମୋ ଜୀବନ ଚାରିପଟେ
ମିଶିଛି ରକ୍ତ ମାଂସ ଦେହଠି
 ଆଶା, ସ୍ୱପ୍ନ ବୈତରଣୀ ସାଜିଛି
ତେଣୁ ହେ ମୋ ଅଙ୍ଗେଲିଭା,
 ଗତାୟୁ ଦିନର ସ୍ମରଣୀୟ ବନ୍ଧୁ !
 ସ୍ମୃତିରୁ ବା ମୁକ୍ତି କାହିଁ ମୋର ?

ହଁ, ପିଲାଦିନ ମୋର ଘୋଡାଘୋଡି ହେଇ ଶୋଇ ରହିଛି ସଜଳ ସ୍ମୃତିର କୋଠରିରେ । କେଉଁଠାରୁ ଆରମ୍ଭ କରିବି ଅଙ୍ଗେଲିଭା ଅନୁଭୂତି ଭାବିପାରୁ ନାହିଁ । ପିଲାଦିନରୁ ସବୁକଥା ତ ମନେନାହିଁ । କିଛି ଝାପ୍‌ସା ମନେପଡୁଛି । ପିଲାଦିନକୁ ମନେ ପକାଇବା ଅବସରରେ କବି ବ୍ରଜନାଥ ରଥଙ୍କ କବିତାର କିୟଦାଂଶ ଉଚ୍ଚାରଣ କରାଯାଇପାରେ-

'ମୁଁ ଛାଡି ଆସିଛି ମୋ ପିଲାଦିନ ବହୁଦିନ ତଳେ
କେତେଦୂରେ ସ୍ମୃତିର ଜଙ୍ଗଲ
ଅତୀତର କାହିଁ କେଉଁ ଘନ ନିକାଞ୍ଚନେ
ଆଜି ଯାହା ଉଡନ୍ତା ବାଦଲ ଭଳି
ଭାସିଯାଏ ଏଇ ମୋର ମନେ । (ପିଲାଦିନ)

ମୁଁ ପିଲାଦିନେ କେତେ ପ୍ରଜାପତି ଧରୁଥିଲି କି ନଡିଆ ସଢ଼େଇରେ ଭାତ ରାନ୍ଧୁଥିଲି ସେ କଥା ଗୁରୁତ୍ୱପୂର୍ଣ୍ଣ ନୁହେଁ । ବାପାଙ୍କ ଠାରୁ 'ମା' ବୋଲି ଯେଉଁ ସ୍ନେହ ବୋଳା ସମ୍ବୋଧନ ଶୁଣୁଥିଲି ତାହା ହିଁ ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ । ପାଠପଢ଼ାରେ ସେତେବେଳେ ସେମିତି କିଛି ଖାସ୍ ଝୁଙ୍କ୍ ନଥିଲା । ହେଲେ ଧୂଳିଖେଳ ନସରୁଣୁ ଜୀବନର ସବୁଜତା କ୍ରୁର ସମୟ ଆସି ଅଚାନକ ଉଡାଇ ନେଲା । ଭାଙ୍ଗିଗଲା ନଡିଆ ସଢ଼େଇ, ବାଲିଦେଉଳ, ସୁକୁମାରୀ ସ୍ୱପ୍ନ ।

ମୃତ୍ୟୁର ଜୟଯାତ୍ରାରୁ ମୁଁ ମୋର ଜୀବନୀ ଆରମ୍ଭ କରୁଛି । ଯଦିଓ ସେତେବେଳେ ମରଣ କ'ଣ ଜାଣିବାର ଏତେଟା ବୟସ ହୋଇନଥିଲା । ମୋର ଛଅ କି ସାତ ବର୍ଷ ହୋଇଥିବ ବୋଧହୁଏ । ମୋ ତଳଭାଇ ତପନର ଚାରିବର୍ଷ ପୂରିଥାନ୍ତା । ଅଳ୍ପ କେଇଟାଦିନ ଥାଏ ତା' ଜନ୍ମଦିନକୁ । ପିଠା କରାଯିବ ବୋଲି ଆଣ ବିରି ଶୁଖାଇଥାଏ ଖରାରେ । ତପନର କାଶ ଛାଡୁନଥାଏ । ପରୀକ୍ଷାରୁ ଜଣାଗଲା ଡିଫ୍‌ଥେରିଆ । ସେତେବେଳେ ଏହାର କୌଣସି ବିକଳ୍ପ ଚିକିତ୍ସା ନଥାଏ ଅପରେଶନ ବ୍ୟତୀତ । ତଣ୍ଟିରେ ଛୋଟ କଣା କରି ବାରିପଦା ଟି.ବି ହସପିଟାଲରେ ଅପରେସନ ତୁରନ୍ତ କରିବାକୁ କହିଲେ ଡାକ୍ତର । ତପନର ଏକା ଜିଦ୍ କାଶ ଭଲ ନହେଉ ଡାକ୍ତରଖାନାରେ ସେ ରହିବ ନାହିଁ । ମୋର ଝାପ୍‌ସା ମନେଅଛି ସେ ସେଦିନ ଫିକା ଆକାଶୀ ରଙ୍ଗର ସାର୍ଟଟେ ପିନ୍ଧିଥିଲା । କାଶିକାଶି ନାଲି ପଡି ଯାଉଥିଲା ତା'ର ଗୋରା ତକ୍ ତକ୍ ଚେହେରା । ତଥାପି ଗପିବାକୁ ଛାଡୁ ନଥିଲା । ଆମ ସମସ୍ତଙ୍କର ରଙ୍ଗ ଶ୍ୟାମଳ ହେଲେ ହେଁ ମାଆଙ୍କ ଭଳି ସେ ଥିଲା ଗୋରା ଆଉ ଡଉଲ ଡାଉଲ ।

ଅପରେସନ ଟେବୁଲ ଉପରୁ ସେ କୁଆଡେ ଦୁଇ ତିନିଥର ଉଠିଆସିଛି । ମୋତେ ଛାଡିଦିଅ, ମରିଯିବି, ମରିଯିବି ବୋଲି ଚିତ୍କାର କରିଛି । ସେତେବେଳେ ଅଚେତ କରାଇ ଅପରେସନ ହେଉଥିଲା କି ନାହିଁ କେଜାଣି । ମୁଁ ମରିଯିବି ବୋଲି ଚିତ୍କାର କରିବା ଭିତରେ ସେ ବୋଧହୁଏ ଜାଣିପାରିଥିଲା ତା' ଜୀବନ ଦୀପରୁ ତେଲ ଶୁଖି ଆସିଲାଣି ବୋଲି । କେମିତି ତା' ତଣ୍ଟି ଜହ୍ଲାଦ ଡାକ୍ତରମାନେ କାଟିଦେଲେ କେଜାଣି ଭାଇଟି ମୋର ସେହି ଟେବୁଲ ଉପରେ ଢ଼ଳିପଡିଲା । ନିସ୍ତେଜ ହୋଇଗଲା କଥାକୁହା କଣ୍ଠେଇଟି, ଯାହାର ଦୁଇତିନିଦିନ ପରେ ଜନ୍ମଦିନ ହୋଇଥାନ୍ତା । ଯିଏ ବାଛିବାଛି ବାପାଙ୍କ ସହିତ ଯାଇ ପସନ୍ଦର ସାର୍ଟପ୍ୟାଣ୍ଟ କିଣି ଆଣିଥିଲା । ସେପଟୁ ତାକୁ ମଶାଣିକୁ ନିଆଯାଇଥିଲା । ଛୋଟପିଲା ହୋଇଥିବାରୁ ପୋତିଦିଆ ଯାଇଥିଲା । ନିଜେ ବାପା ତାକୁ କାନ୍ଧେଇ ଶ୍ମଶାନ ଘାଟ ନେଇ ଯାଇଥିଲେ । ଆଞ୍ଜୁଳା ଆଞ୍ଜୁଳା ମାଟି ଦେଇ କୁନିପୁଅଟିକୁ ମାଟିର ସମାଧି

ଦେଇଥିଲେ । ପୋତିଦେଇ ଆସିଥିଲେ ଡାକ୍ତରଖାନାକୁ ନେଇ ଯାଇଥିବା ତା'ର ସମସ୍ତ ଖେଳଣା, ସାର୍ଟପ୍ୟାଣ୍ଟ । ବାପାଙ୍କୁ କାନ୍ଧେଇ ଯିଏ ଦିନେ ମଶାଣି ନେଇଥାନ୍ତା ତାକୁ ଫେର୍ ବାପାଙ୍କୁ କାନ୍ଧେଇବାକୁ ପଡିଲା ।

ରଜାପୁଅ ଭଳି ଦେଖିବାକୁ ଥିଲା ତପନ । ଭୁଲରେ ଆମ ଘରେ ବୋଧହୁଏ ଜନ୍ମ ନେଇଥିଲା ବୋଲି ଭଗବାନ ତାଙ୍କ ଭୁଲ ସୁଧାରି ତାକୁ ନିଜ ପାଖକୁ ଡାକି ନେଇଗଲେ ଆମମାନଙ୍କୁ ଲୁହର ସମୁଦ୍ରରେ ଭସାଇ । ଏହା ଥିଲା ମୋର କଅଁଳ ବୟସର ପ୍ରଥମ ଧକ୍କା । ତପନ କେବଳ ମୋର ସାନଭାଇ ନଥିଲା, ଥିଲା ମୋର ସବୁଠୁ ଭଲ ଦୋସ୍ତ । ଚାଲିଗଲା ସବୁଦିନ ପାଇଁ ଦୋସ୍ତି ତୁଟେଇଦେଇ... । ମାଆ ମୁଣ୍ଡପିଟି ବାଡେଇ ବାଡେଇ କାନ୍ଦୁଥିଲେ ଆଉ ଚେତା ହରାଇଥିଲେ । ଆଈ ପଥର ଭଳି ବସି ରହିଥିଲା । ମୁଁ ସେତେବେଳେ ବୁଝିପାରି ନଥିଲି ଯେ ତପନର କ'ଣ ହୋଇଛି ବା ସେ କେବେ ବି ଆଉ ଫେରିବ ନାହିଁ ବୋଲି । ମରଣ ସମ୍ପର୍କରେ ସ୍ପଷ୍ଟ ଧାରଣା ନଥିଲା ତ ଅନେକଦିନ ଯାଏଁ ଭାବିଥିଲି ସେ କୁଆଡେ ବୁଲି ଯାଇଛି ବୋଲି । ଘରେ ତା'ର ଯାହା ପ୍ୟାଣ୍ଟ ସାର୍ଟ ଥିଲା ସବୁ ଭିଖାରୀମାନଙ୍କୁ ବାଣ୍ଟି ଦେଇଥିଲେ ବାପା । ଫଟୋ ବି ନଷ୍ଟ କରି ଦେଇଥିଲେ ମାଆ ସବୁବେଳେ କାନ୍ଦିବ ବୋଲି । ମୁଁ ତା'ଠାରୁ ଅଢ଼େଇକି ତିନିବର୍ଷ ବଡ ଥିଲି । ଖରାବେଳେ ଆଚାରହାଣ୍ଡିରୁ ଆଚାର ଚୋରାଇ ଖାଇବା, ପିଜୁଳି ଗଛରେ ଚଢ଼ି ପିଜୁଳି ତୋଳିବା, ଡେଇଁବା, ବରକୋଳି ପାରିବା, କଣ୍ଢେଇର ଲୁଗାପଟା ସଜାଡିବା ପ୍ରଭୃତି କାମରେ ସେ ଥିଲା ମୋର ଡାହାଣ ହାତ । ଚାଲିଗଲା ସବୁଦିନ ପାଇଁ ହାତକାଟି ଦେଇ ।

ତପନ ସହିତ ଏକାଦିନରେ ଜନ୍ମ ହୋଇଥିବା ଆମ ସାଇର ପିଲାଟା ଏବେ ଇଂଜିନିୟର ଅଛି । ବଞ୍ଚିଥିଲେ ତପନ ଆମର କ'ଣ ବନିଥାନ୍ତା କେଜାଣି । ବାହା ସାହା ହୋଇ ଘରକରଣା କରି ଦରବୁଢ଼ା ହୋଇ ଯାଆନ୍ତାଣି । ଆଜି ବହୁବର୍ଷପରେ ତା' କଥା ଲେଖିଲା ବେଳେ ଆଖିରେ ପାଣି ରହୁନାହିଁ । ଅମାନିଆ ବର୍ଷାସବୁ ବର୍ଷି ଯାଉଛନ୍ତି ଯେ ରୋକିପାରୁ ନାହିଁ । ସ୍ମୃତି ଫେର୍ ଏତେ ତାଜା ! ଆଜିବି ସମସ୍ତଙ୍କର ଚେହେରା ଜଳଜଳ ଦିଶୁଛି । ଅଥଚ ବର୍ତ୍ତମାନକୁ ଫେରି ଆସିଲେ ସମୟ ସୁଅରେ କିଏ କୁଆଡେ ହଜି ଗଲେଣି । କେତେ ଦେହ ଏ ଭିତରେ ପାଉଁଶ ହୋଇଗଲାଣି । ଭାଇଭଉଣୀ ସମସ୍ତେ କିଏ କାହାଠାରୁ ବିଚ୍ଛିନ୍ନ ହୋଇଗଲେଣି । ଅଥଚ ସ୍ମୃତି ସାଉଁଟିବାକୁ ସତେକି ମୁଁ ଶାମୁକା ଭଳି ପଡିରହିଛି ।

ତାପରେ ମାଆଙ୍କ ଦେହ ଏତେଟା ଭଲ ରହିଲା ନାହିଁ । ସବୁବେଳେ ସେ ପୁଅକୁ ଝୁରୁଥାଏ । ଯଦିଓ ତପନ ଗଲାପରେ ଆଉ ଜଣେ ଭାଇର ଜନ୍ମ ହେଇଥିଲା । ଆମେ ଏବେ ପାଞ୍ଚ ଭାଇଭଉଣୀ । ମୁଁ ମଝିଆଁ । ମୋ ଉପରେ ବଡ ଭାଇଭଉଣୀ ଓ ତଳେ

ସାନଭାଇ ଭଉଣୀ । ମୋର ଜନ୍ମବେଳକୁ ଜେଜେବାପା, ଜେଜୀମା ବଞ୍ଚିନଥିଲେ । ଅଜାଙ୍କୁ ମୁଁ ଦେଖିନାହିଁ । କିନ୍ତୁ ଆଈକୁ ହେତୁ ହେଲା ଦିନଠାରୁ ଦେଖିଛି ଆମ ଘରେ । ଆଈର ଗୋଟିଏ ପୁଅ, ଗୋଟିଏ ଝିଅ (ମୋ ମାଆ) । ପୁଅ ବାହାକରି ଆଈ ଯାହାକୁ ବୋହୂ କରି ଆଣିଥିଲେ ସେ ତାଙ୍କୁ ସେଠି ରଖେଇ ଦେଲେନି । ଆଈର ସମ୍ପର୍କୀୟମାନେ ସମସ୍ତ ସମ୍ପତ୍ତି ଆତ୍ମସାତ୍ କରି ତାକୁ ବାହାର କରି ଦେଇଥିଲେ । ମୋ ମାମୁଙ୍କ କଥା ମନେ ନାହିଁ । ଶୁଣିଛି ମାଇଁ ତାଙ୍କୁ ବଶୀଭୂତ କରିବାପାଇଁ ଗୁଣି ଗାରେଡିର ସାହାଯ୍ୟ ନେଇ ଖାଇବାରେ କ'ଣ ମିଶାଇ ଦେଇଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ମୁଣ୍ଡ ଖରାପ ହୋଇ ଯାଇଥିଲା । ତାଙ୍କୁ ହସ୍‌ପିଟାଲରେ ଭର୍ତ୍ତି କରାଯାଇଥିଲା । ଚିକିତ୍ସିତ ହେଉଥିବା ଅବସ୍ଥାରେ ଦିନେ ରାତିରେ ନିରୁଦ୍ଦିଷ୍ଟ ହୋଇଗଲେ ସେ । ପତ୍ତା ମିଳିଲାନି । ଖୋଜାଗଲା । ଥାନାରେ ଏତାଲା ଦିଆଗଲା । ସେହିଦିନଠାରୁ ସେ ନିରୁଦ୍ଦିଷ୍ଟ । କେହି କେହି କହିଲେ ଦୁର୍ଘଟଣାରେ ମରିଯାଇଛନ୍ତି ତ କେହି କହନ୍ତି ତାଙ୍କୁ ମାରି ଦିଆଯାଇଛି । ଥାନାରେ ଓ ଖବର କାଗଜରେ ବି ଦିଆଗଲା । କିନ୍ତୁ ଆଜିଯାଏଁ ସେ ଫେରିଲେ ନାହିଁ । ବାରବର୍ଷ ଅପେକ୍ଷା କଲାପରେ ମାଇଁ ବିଧବା ହେଲେ । ଆଈ ଆସି ଝିଅ ପାଖରେ ଆଶ୍ରୟ ନେଲା । ତା'ଛଡା ତା'ର ଆଶ୍ରା ବୋଲି କେହି ନଥିଲେ । ତେଣୁ ହେତୁ ହେଲା ଦିନଠାରୁ ଆଈକୁ ଦେଖିଛି ଆମ ଘରେ ମୁଁ । ଆଈଙ୍କୁ ବାପା ଆମ ଘରେ ରଖିଥିବାରୁ ମୋ ପିଉସୀ, କକା, ଖୁଡୀମାନେ ଖୁବ୍ ଅସନ୍ତୁଷ୍ଟହୋଇ ଆମ ସହିତ ସମ୍ପର୍କ ତୁଟେଇ ଭିନ୍ନେ ହୋଇ ଯାଇଛନ୍ତି । ତେବେ ବାପାଙ୍କର ସହୃଦୟତା, ମଣିଷପଣିଆ ଯୋଗୁଁ ମଲା ପର୍ଯ୍ୟନ୍ତ ଆଈ ଆମ ପାଖରେ ଥିଲେ । ସେ ଏକ ହତଭାଗିନୀ ଚରିତ୍ର । ପରେ ତାଙ୍କ କଥା କହିବି ।

ଆମ ସମସ୍ତଙ୍କର ଜନ୍ମ ବାରିପଦାରେ । ବାପା ମ୍ୟୁନିସିପାଲଟିର ଟ୍ୟାକ୍ସ କଲେକ୍ଟର ଥିଲେ । ଶୁଣିଥିଲି ମୋ ଜେଜେବାପା ୰ନାରାୟଣ ବାରିକ କୁଆଡେ ସେତେବେଳେ ବାରିପଦା ମହାରାଜାଙ୍କର ଓକିଲ ଥିଲେ । ଶ୍ରୀରାମଚନ୍ଦ୍ର ଭଞ୍ଜ କି ପୂର୍ଣ୍ଣଚନ୍ଦ୍ର ଭଞ୍ଜ ସଠିକ୍ କହି ପାରୁନାହିଁ । ତେଣୁ ମହାରାଜାଙ୍କ ଦତ୍ତ ଯାଗାରେ ଆମର ଘର ଥିଲା ଯାହା ଏବେ ବାରିପଦା ଥାନାଛକ ପଛପଟେ । ଅଭିନେତା ଉତ୍ତମ ମହାନ୍ତିଙ୍କ ଘର ପାଖାପାଖି, ଷ୍ଟେଟ୍ ବ୍ୟାଙ୍କକୁ ଲାଗିଛି ।

ବାପାଥିଲେ ଘରର ବଡପୁଅ । ତାଙ୍କ ଉପରେ ଦୁଇ ଭଉଣୀ ଓ ତଳେ ଦୁଇ ଭାଇ । ମୋର ଜନ୍ମବେଳକୁ ବାପାଙ୍କର ବଡଭଉଣୀ, ଜେଜେ, ଜେଜୀମାଙ୍କର ମୃତ୍ୟୁ ହୋଇସାରିଥିଲା । ବାପାଙ୍କ ବଡଭଉଣୀ କୁଆଡେ ପ୍ରସବ ସମୟରେ ମୃତ୍ୟୁବରଣ କରିଥିଲେ । ତାଙ୍କର ଗୋଟିଏ ଝିଅ ସେ ଛାଡି ଯାଇଥିଲେ । ପରେ ସେ ଝିଅ ବି

କୁଆଡେ ମରି ଯାଇଥିଲା ।

ମୋ ବଡଭଉଣୀ ନାଁ ଗୀତା, ସାନ ଭଉଣୀର ନାଁ ରୀତା । ଗୀତା ଅପାର ମାତ୍ର ଅଷ୍ଟମ ଶ୍ରେଣୀରେ ପଢୁଥିଲାବେଳେ ବାହାଘର ହୋଇଯାଇଥିଲା । ସେତେବେଳେ ନାବାଳିକା ବିବାହ ଆଇନ୍ ଲାଗୁଥିଲା କି ନାହିଁ କେଜାଣି । ସେ ଯାହା ହେଉ ମୋ ଭିଣୋଇ ନରସିଂହ ବାରିକ ଆଇ.ଏ. ପଢୁଥିଲେ । ବାରିପଦାର ପ୍ରସିଦ୍ଧ ଆଦର୍ଶ ଶିକ୍ଷକ ଦୈତାରି ବାରିକ (କବି ସୌରୀନ୍ଦ୍ର ବାରିକଙ୍କ ବାପା)ଙ୍କ ପାଖକୁ ସେ ନିୟମିତ ଆସୁଥିଲେ । ଇଂରାଜୀରେ ଜଣେ ଦକ୍ଷ ଶିକ୍ଷକ ଥିବଲେ ଦୈତାରୀ ବାରିକ । ତାଙ୍କରି ପାଖକୁ ସେ ବ୍ୟାକରଣ ବୁଝିବାକୁ ଆସୁଥିଲେ । ଦୈତାରୀ ମଉସା ବାପାଙ୍କୁ କହିଥିଲେ ଭଲ ପିଲାଟା । ଝିଅ ପାଇଁ ପ୍ରସ୍ତାବ ପକାଅ । ମାଆ ବି ଏତେ ଅଳ୍ପ ବୟସରୁ ଝିଅକୁ ବାହା ଦେବାଲାଗି କାହିଁକି କେଜାଣି ତରତର ହେଲେ । ସେ ନିଜେ ତେରବର୍ଷରେ ବାହା ହୋଇଥିଲେ । ସେତେବେଳେ ଚଳୁଥିଲା । ତେବେ ବାହାଘର ପରେ ବି ସେ ପଢ଼ି ପାରିବ ଏହା ହିଁ ଅପା ଲାଗି ଆଶ୍ୱାସନା ଥିଲା । ପଢ଼ିଲା ବି ପରେ । ବିଏ ପାଶ୍ କରି, ବି.ଇ.ଡି ଟ୍ରେନିଂ ନେଇ ଭଞ୍ଜପୁର ବାଳିକା ହାଇସ୍କୁଲ, ବାରିପଦାରେ ଶିକ୍ଷୟିତ୍ରୀ ହେଲା ।

କୁହାଯାଏ ଦୁର୍ଦ୍ଦିନ ଯେତେବେଳେ ଆସେ ତା'ର ବନ୍ଧୁବାନ୍ଧବଙ୍କୁ ଧରି ଆସେ । ତାହା ହିଁ ଘଟିଲା । ମୁଁ ଚତୁର୍ଥ କି ପଞ୍ଚମ ଶ୍ରେଣୀରେ ପଢୁଥାଏ । ମୋ ସାନଭଉଣୀ ସ୍କୁଲ ଯାଇନଥାଏ । ସବା ସାନ ଭାଇ ମାତ୍ର ଏଗାର ମାସର ହୋଇଥାଏ । ସେଦିନ ଥାଏ ଦୁର୍ଗା ମହାଷ୍ଟମୀ । ଖରାବେଳୁ ମାଆଙ୍କ ଡିସେଣ୍ଟ୍ରି ଓ ମୁଣ୍ଡଧରା ଆରମ୍ଭ ହୋଇଥାଏ । ଝାଡାବନ୍ଦ ହେଲାନି କି ମୁଣ୍ଡବିନ୍ଧା କମିଲା ନାହିଁ । ସନ୍ଧ୍ୟାବେଳକୁ ତାଙ୍କୁ ଡାକ୍ତରଖାନାରେ ଆଡମିସନ କରାଗଲା । ପରୀକ୍ଷାରୁ ବୋଧହୁଏ ଜଣାପଡିଲା ବ୍ରେନ୍ ମ୍ୟାଲେରିଆ । ରାତି ନଅ କି ଦଶ ହେବ କେଜାଣି ମୁଁ, ମୋ ସାନଭଉଣୀ ରୀତା ଓ ଏଗାର ମାସର ଭାଇ ବାବୁ ଘରେ ଥାଉ । ଆମ ସମସ୍ତଙ୍କୁ ସେହି ରାତିରେ ନିଆଗଲା ସାନକକାଙ୍କ ଘରକୁ । ପରଟା, ଆଳୁଦମର ବାସ୍ନା ହେଉଥାଏ । ଭୁବନେଶ୍ୱରରୁ ଆସିଥାନ୍ତି ପିଉସୀମା । ସକାଳ ହେଲେ ଡାକ୍ତରଖାନାକୁ ଯିବୁ ବୋଲି କୁହାଗଲା । ଅପାର ପିଲାପିଲି ହେବାର ଥାଏ । ସେ ଥାଏ ତା'ର ଶାଶୁଘରେ । ଭିଣୋଇ ନରସିଂହ ଭାଇ, ଆଇ, ବଡଭାଇ ଅଶୋକ ଓ ବାପା ଥାନ୍ତି ଡାକ୍ତରଖାନାରେ । ମାଆର କ'ଣ ହେଇଛି କିଛି ଜାଣିପାରୁନଥାଏ । ବାରମ୍ୱାର ଭଗବାନଙ୍କୁ ଡାକୁଥାଏ ତାକୁ ଭଲ କରିଦିଅ ବୋଲି । ଆମକୁ କିଏ ଜଣେ ଖାଇବା ପାଇଁ କହିଲା ମନେ ନାହିଁ । ଆମେ ମନା କଲୁ । ସାନଭାଇ ବାବୁଟା ନୂଆନୂଆ ମାଆ ଡାକ ଶିଖିଥାଏ ଓ ଗୁରେଣ୍ଡୁଥାଏ । ତେଣୁ ମାଆ ମାଆ ହୋଇ ଜମା ଶୋଉ ନଥାଏ । ହେଲେ

ସେତେବେଳେ ଯେ ଆମ ପାଇଁ ମା' ଶବ୍ଦଟି ଚିରଦିନ ପାଇଁ ହଜି ସାରିଲାଣି କେମିତି ଜାଣିଥାନ୍ତୁ ଆମେ ? ଦୁର୍ଗାଷ୍ଟମୀରେ ଚାରିଆଡେ ସମସ୍ତେ ପୂଜା ଆନନ୍ଦରେ ବ୍ୟସ୍ତଥିଲାବେଳେ ଯମରାଜ ଚୁପ୍‌କି ଓହ୍ଲାଇ ମାଆ ଭଳି ମମତାମୟୀକୁ ଆମ ପାଖରୁ ଛଡାଇ ନେଇ ଯାଇଥିଲେ । ପରେ ଅବଶ୍ୟ ଯେତେବେଳେ ସତ୍ୟ ଘଟଣାଟି ଜାଣିଲି, ମନରେ ପ୍ରଶ୍ନ ଉଠିଥିଲା ମାଆ ତ ହସ୍‌ପିଟାଲରେ ରାତି ସାଢ଼େ ଆଠଟା ଭିତରେ ମରି ସାରିଥିଲେ । ଏକଥା ଜାଣିବି ମୋ ସାନକକାଙ୍କ ଘରେ କେମିତି ରାତି ଦଶଟାରେ ଖିଆପିଆ ଲାଗି ରହିଥିଲା ? ପୁଣି ଆଳୁଦମ୍, ପରଟାର ବାସ୍ନା ? ଆମକୁ ବି କେମିତି ଖାଇବା ପାଇଁ ଯଚା ହେଉଥିଲା ? ଏ ପ୍ରଶ୍ନର ଉତ୍ତର ଆଜି ବି ମୋପାଇଁ ରହସ୍ୟାବୃତ୍ତ ।

ସକାଳେ ଆମକୁ ଡାକ୍ତରଖାନାକୁ ନିଆଗଲା । ଶବ ବାସି ହୋଇଗଲାଣି । ରାତିରେ କୁଆଡେ କକାମାନେ ନେବାପାଇଁ ଆଗ୍ରହ ଦେଖାଇଲେ ନାହିଁ । ଯେଉଁ ଦୁଇ ଦିଅରଙ୍କୁ ବେକର ହାର, ହାତର ବଳା ବିକି ମାଆ ପାଠ ପଢ଼ାଇଥିଲେ, ପୁଅ ଭଳି ମଣିଷ କରିଥିଲେ ସେମାନେ ଶେଷରେ ମାଆଙ୍କ ଶବକୁ ବାସି କରିଦେଲେ । ଶବ ଡାକ୍ତରଖାନାରେ ପଡିଥିଲାବେଳେ ଆଳୁଦମ, ପରଟା ବନାଇ ଖାଉଥିଲେ । ଚାଦର ଘୋଡାଇ ହୋଇ ଶୋଇଥିଲା ମାଆ ମୋର । ମୁଁ ନିଜେ ମୁହଁରୁ ଚାଦର ଉଠାଇଥିଲି । ସରୁ ପିମ୍ପୁଡି ଧାରଟି ଆଖି ପର୍ଯ୍ୟନ୍ତ ଲମ୍ବିଯାଇଥିଲା । ସତୁରୀ ବର୍ଷର ଆଈ ଆଉ ଚାଳିଶ କି ପଇଁଚାଳିଶ ବର୍ଷର ବାପା ମାଆର ମୁଣ୍ଡ ପାଖରେ ବସି ରହିଥିଲେ ପଥର ଗଦାଟେ ଭଳି । ରାତିସାରା କାନ୍ଦିଥିବାରୁ ଆଖି ଫୁଲି ମନ୍ଦାରଫୁଲ ଭଳି ନାଲ ଦିଶୁଥିଲା । ମୁଁ ମାଆ ମରିଯାଇଛି ବୋଲି ଜାଣିପାରୁନଥିଲି । ମୁହଁରୁ ଚାଦରଟି କାଢ଼ି ପିମ୍ପୁଡି ଝାଡିଦେଇ ତାକୁ ଦେଖୁଥିଲି । ଆଈ ଭୋ' କି କାନ୍ଦିଉଠି କହୁଥିଲା, ଆଉ କ'ଣ ଦେଖୁଛୁରେ ଇତିଲୀ (ମୋ ଡାକ ନାଁ) ତୋ ମାଆ ତମକୁ ଭସାଇ ଚାଲିଯାଇଚି । ମୁଁ ନିଆଁ ଲାଗି ଖାଲି ବଞ୍ଚି ରହିଛି ଯାହା ଏଇୟା ଦେଖିବି ବୋଲି । ପୁଅ ଯାଇଥିଲା, ସ୍ୱାମୀ ଯାଇଥିଲା, ଶେଷରେ ଝିଅ ବି ଗଲା । ଆମେ ସବୁ କାନ୍ଦି ଉଠିଥିଲୁ । କାନ୍ଦି କାନ୍ଦି ମା ଉପରେ ଗଡୁଥିଲୁ । ନରସିଂହ ଭାଇ, କେତେଜଣ ସମ୍ପର୍କୀୟ ବୁଝାବୁଝି କରୁଥିଲେ । ବାବୁ ଗୁରୁଣ୍ଡିଗୁରୁଣ୍ଡି ମାଆ ମାଆ ହେଇ ଧାଇଁ ଯାଉଥିଲା । ତାକୁ ସେଠୁ ଉଠାଇ ଆଣିବାରୁ ମାଆ ପାଖକୁ ଯିବ ବୋଲି ରାହାଧରି କାନ୍ଦୁଥିଲା ।

ବଡ ଡାକ୍ତରଖାନା ସାମ୍ନାରେ କୋକେଇ ବନ୍ଧା ହେଲା । ସେଠି ଚାଦରମିଶା ଟେକିନେଇ ମାଆଙ୍କୁ ଶୋଇ ଦିଆଗଲା । ହଳଦୀ, ସିନ୍ଦୂର, ନୂଆଚୁଡି, ନୂଆଶାଢୀ ନାଇ ମାଆ ମୋର ଅପୂର୍ବ ଦିଶୁଥିଲା । ଗୋଡରେ ଅଳତା ଲଗାଇ ଦିଆଗଲା । ଆଖିର ପିମ୍ପୁଡି ଝାଡି କଜ୍ଜଳ ଦିଆଗଲା । ଉପରେ କିଛି ଫୁଲ ସଜାଇ ଦିଆଗଲା । ଝୁଣାହାଣ୍ଡି, ଖଇ,

କଉଡି, ଖୁଚୁରା ପଇସା ବିଞ୍ଚି କେତେଜଣ ରାମନାମ ସତ୍ୟ ହେ କହି ମାଆକୁ କାନ୍ଧରେ ଟେକି ନେଇଗଲେ ସବୁଦିନ ପାଇଁ ମଶାଣିକି ପାଉଁଶ କରିବାପାଇଁ ।

ବାରିପଦା ଡାକ୍ତରଖାନାରେ କେତେ ରୋଗୀ, ଦର୍ଶକ ତଳୁ, ଉପରୁ ଗଦା ହୋଇଥିଲେ । ଏଠୁ ଶବ ଯିବାଟା କିଛି ନୂଆ ଦୃଶ୍ୟ ନୁହେଁ । ଆମ ପାଇଁ ହିଁ ଥିଲା ନୂଆ । ଆମକୁ କିଛି ସହାନୁଭୂତି ଆଖିରେ ଚାହୁଁଥିଲେ ଓ କହୁଥିଲେ ଆହା ! ପିଲାଗୁଡା ଅନାଥ ହୋଇଗଲେ । ମାଆ ନାହିଁ ତ ସାହା ନାହିଁ । କେମିତି ବଞ୍ଚିବ ଛୋଟ ଛୁଆଟା କେଜାଣି । ମାଆକୁ କାହିଁକି ସେମିତି ନେଇ ଯାଉଛ କହି ମୁଁ ରଡି କରି ଉଠି କୁଆଡେ ପଛେ ପଛେ ଧାଇଁଥିଲି । ଫ୍ରକ୍‌ରେ ଲୁହ ଯେତେ ପୋଛୁଥିଲେ ବି ଝରିବା ବନ୍ଦ ହେଉନଥିଲା । ଏ ଦୃଶ୍ୟ, ଅନୁଭୂତି ମୋ ଜୀବନରେ ଭୁଲିବାର ନୁହେଁ । ତେଣୁ ମାଆକୁ ଖଇ ଝୁଣା ଭିତରେ ନେଇ ଯିବାର ଦୃଶ୍ୟ ମୋର ଅନେକ ଲେଖାରେ ରୂପାନ୍ତରିତ ହୋଇଛି । 'ସ୍ମୃତିର-ସହର', 'ମାଆ ଚାଲିଗଲା ପରେ ଗଳ୍ପରେ କିମ୍ବା ମୋର 'ମନର ଘର', 'ସମ୍ପର୍କ' ଉପନ୍ୟାସରେ ଏହା ଚିତ୍ରିତ । ପାଠକ ଯଦି ଏ ସବୁର ପୃଷ୍ଠା ଓଲଟାନ୍ତି ସହଜରେ ଜାଣି ପାରିବେ ଯେ ଏହି ଲେଖିକାଙ୍କର ମାଆ ନାହାଁନ୍ତି ବୋଲି ।

ମୁଁ ବିଶ୍ୱାସ କରେ, ଲେଖକର ବ୍ୟକ୍ତିଗତ, ଅନ୍ତରଙ୍ଗ ଅନୁଭବ ହିଁ ଜୀବନର ପ୍ରତିଛବି । ଯିଏ ତାକୁ ଯେତେ ଜୀବନ୍ତ କରି ପରିବେଷଣ କରିପାରିଲା ତାହା ସେତେ ମନକୁ ଛୁଇଁବାରେ ସଫଳ ହୁଏ । କିଛି ଅନୁଭୂତି, ଘଟଣା ଅଛି ଯାହାକି ସମ୍ବେଦନଶୀଳ ପୁଣି ସୃଜନଶୀଳ ମଣିଷଟି ଭୁଲିପାରେ ନାହିଁ । ବାରମ୍ବାର ସ୍ମୃତି ରୋମନ୍ଥନ କରିବାକୁ ବାଧ୍ୟହୁଏ । ତାକୁ ଯେକୌଣସି ମାଧ୍ୟମରେ (ଗଳ୍ପ, କବିତା, ଉପନ୍ୟାସ କି ପତ୍ର ଏମିତି କିଛି) ହେଉ ପ୍ରକାଶ କରିବାକୁ ସ୍ରଷ୍ଟା ବ୍ୟାକୁଳ ହୋଇପଡେ । ଭଗବାନଙ୍କୁ ଅଶେଷ ଧନ୍ୟବାଦ ଯେ ମୋତେ ପ୍ରକାଶ କରିବାର ଶକ୍ତି କଲମ ମାଧ୍ୟମରେ ଦେଇଛନ୍ତି । ନହେଲେ ପାଗଳ ହେଇଯାଇଥାନ୍ତି କି ଆଉ କ'ଣ କିଛି ପଦକ୍ଷେପ ନେଇଥାନ୍ତି । ଏହି କଲମ ହିଁ ହେଇଛି ମୋର ସାହାରା । ସାଥୀହୀନ ଏଇ ବିରାଟ ଦୁନିଆରେ ଦୁଃଖ ସୁଖ ବାଣ୍ଟିବା ପାଇଁ ମଣିଷ ମହଙ୍ଗା ହେଲାବେଳେ କାଗଜକଲମ ହେଇଯାଇଛି ମୋର ପରମବନ୍ଧୁ । ସେଥିପାଇଁ ମୋ ଚାରିପଟେ ଅନେକ ସୁହୃଦଙ୍କ କୋଳାହଳ ସତ୍ତ୍ୱେ କେହି ମୋତେ ସେମିତି ମାୟାର ନିବିଡ ବନ୍ଧନରେ ବାନ୍ଧି ପାରିନାହାଁନ୍ତି । ମୁଁ ପ୍ରତିକୂଳ ପରିସ୍ଥିତି ଭିତରେ ସଂଗ୍ରାମ କରି କରି ଶକ୍ତ ହୋଇଯାଇଛି । ପିଲାଦିନରୁ ସଂଘର୍ଷ କରି ଜୀଇଁ ପାରିଥିବାରୁ ଅଜାଣତରେ ସୁନାଭଳି ଝଟକିଛି । ନିଜ ଗୋଡରେ ଆଜି ଠିଆ ହୋଇ ପାରିଛି ଯାହାକୁ କୁହାଯାଇ ପାରେ ସେଲ୍‌ଫ୍ ମେଡ୍ ।

× × × × ×

'The creature cause pain by being born and live by inflicting pain and in pain the mostly die.'

( S. Lewis "The Problem of pain")

ଅର୍ଥାତ୍ ଜୀବନ ଦୁଃଖମୟ । ସଂସାରରେ ମନୁଷ୍ୟ ଜନ୍ମ ଗ୍ରହଣ କଲେ ହିଁ ଦୁଃଖର ସମ୍ମୁଖୀନ ହୁଏ । ମାତ୍ର ଦୁଃଖ ତା'ର ଅକାଂକ୍ଷିତ ନୁହେଁ । ତେଣୁ ଦୁଃଖ ବିରୁଦ୍ଧରେ ସଂଘର୍ଷ ହିଁ ଜୀବନର ପ୍ରଧାନ କାର୍ଯ୍ୟ ହୋଇପଡେ କିନ୍ତୁ ନିଜ ଇଚ୍ଛା ଅନୁଯାୟୀ ଦୁଃଖ କଷ୍ଟକୁ ସେ ଜୀବନ କ୍ଷେତ୍ରରୁ ଦୂର କରି ପାରେ ନାହିଁ । ଏହା ହିଁ ଭରି ଦିଏ ଅସହାୟତା ଆଉ ଯନ୍ତ୍ରଣା ।

ତାହା ହିଁ ଘଟିଥିଲା ଆମ ଘରେ । ମାଆ ଚାଲିଗଲା ପରେ ପିଉସୀ, କକାଖୁଡୀ କି ଅନ୍ୟାନ୍ୟ ଆତ୍ମୀୟ କେହି ଆମକୁ ଅନେଇ ନାହାଁନ୍ତି । ଏମିତି ଆମର ମାମୁଘର ନଥିଲା କି ମଉସା, ମାଉସୀ, ଅଜା କେହି ସେ ଆଡୁ ନଥିଲେ । ମାଆ ଗୋଟେ ଝିଅ ଥିଲା ବୋଲି ଆଈ ଆଶ୍ରା ନେଇଥିଲା । ସତରେ ଆଈ ଯଦି ଆମ ପାଖରେ ନଥାନ୍ତା କ'ଣ ହୋଇଥାନ୍ତା ଆମ ଅବସ୍ଥା ? ଏଗାର ମାସର ସାନଭାଇ ବାବୁକୁ କ'ଣ ସତରେ ବଞ୍ଚାଇ ହୁଅନ୍ତା ? କେମିତି ବାପା ରନ୍ଧାବଢ଼ା କରି, ଘର ସମ୍ଭାଳି ଆମକୁ ମଣିଷ କରିଥାନ୍ତେ ? ବାବୁ ମାଆ ବୋଲି ଆଈକୁ ଅନେକ ବର୍ଷ ଯାଏଁ ଜାଣିଥିଲା । ତାକୁ ମାଆ ବୋଲି ଡାକୁଥିଲା । ତାକୁ ଛାତିରେ ପକାଇ ଥାପୁଡାଇ ଥାପୁଡାଇ ବାପା ଶୋଇ ଦିଅନ୍ତି ନିଜେ ରାତି ରାତି ଅନିଦ୍ରା ରହି । ଷ୍ଟୋଭ୍ ଜାଳି ରାତିରେ କ୍ଷୀର ବୋତଲ ପାଇଁ ପାଣି ଗରମ କରାଯାଏ ଓ ଅମୁଲ ଗୋଳାଇ ପିଇବାକୁ ଦିଆଯାଏ । ମାଆ ମାଆ ବୋଲି ସେ ଯେତେବେଳେ ତା' ଦରୋଟି ପାଟିରେ ଉଚ୍ଚାରଣ କରୁଥାଏ ସତୁରି ବର୍ଷର ଆଈ ଲୁଗାକାନିରେ ଲୁହ ପୋଛି କହେ, ହତଭାଗା ! ମାଆକୁ ତ ଖାଇଲୁ ଆଉ ଆସିବ କୁଆଡୁ ?

ମୁଁ ଯେତେ ଯେତେ ବଡ ହୋଇଛି ଏହି ଖାଲିପଣ ମୋତେ ସେତେ ଗ୍ରାସ କରିଛି । 'ମାଆ ନାହିଁ ଯାର ସାହା ନାହିଁ ତା'ର' କଥାଟା ଅକ୍ଷରେ ଅକ୍ଷରେ ସତ । ମୁଁ ତ ତା'ର ଭୁକ୍ତଭୋଗୀ । କେଉଁ ମାଆ ଝିଅକୁ ଆକଟକଲେ, ମୁଣ୍ଡ କୁଣ୍ଡାଇ ଦେଉଥିଲେ କି ଖୁଆଇ ଦେଉଥିବା ଦେଖିଲେ ଆପେ ଆପେ ଆଖିରେ ପାଣି ଆସିଯାଏ । ଝିଅକୁ ଧରି ମାଆମାନେ ମାର୍କେଟ୍, ମନ୍ଦିର ଯାଉଥବା ଆଖିରେ ପଡିଲେ କି ହଷ୍ଟେଲରେ ଥିଲାବେଳେ ମାଆମାନେ ଝିଅକୁ ଦେଖିବାକୁ ଆସିଲେ, ଭଲମନ୍ଦ ବୁଝାବୁଝି କରୁଥିଲାବେଳେ ଅଥବା ମାଆର ସ୍ନେହବୋଳା ଚିଠିଟେ କେଉଁ ବାନ୍ଧବୀ ପଢୁଥିଲାବେଳେ ମୋ ଜୀବନର ଖାଲିପଣ ଜଳଜଳ ଦିଶେ । ଭାବେ କେତେ ଭାଗ୍ୟବତୀ ଏମାନେ । ମାଆ ବୋଲି ଡାକୁଛନ୍ତି, ମାଆକୁ

କୁଣ୍ଢାଇ ଧରି ଗେହ୍ଲା ହେଉଛନ୍ତି । ମମତାର ସେ ଲୁଗାକାନି ମୋ ପାଇଁ ସବୁଦିନ ଲାଗି ହଜିଯାଇଛି । ଏହି ମହାର୍ଘ ଆନନ୍ଦରୁ ଈଶ୍ୱର ମୋତେ ବଞ୍ଚିତ କରିଛନ୍ତି । ଆଗ ଜନ୍ମରେ ନିଶ୍ଚେ ମୁଁ କିଛି ବଡ ପାପ କରିଥିବି ଯେ ଏ ଜନ୍ମରେ ମାତୃହରା ଦୁଃଖ ଭୋଗୁଛି । ବିଶେଷ କରି ମୋ ରୁମ୍‌ମେଟର ମାଆ ଚିଠି ଦେଲାବେଳେ ମୋ ବାନ୍ଧବୀ ଯେତେବେଳେ ଖୁସିରେ ପଢୁଥାଏ ବି କେହି ମାଆ ପିଠା ପଠାଇଛନ୍ତି କହି ଖାଇବାକୁ ଡାକେ ବା ମାଆଠାରୁ ମୁଁ ଅମୁକ ନାଚ, ଅମୁକ ଗୀତ ଶୁଣିଛି ବୋଲି କହେ ସେ ସବୁ ମୋତେ ଛାଏଁ ଛାଏଁ ଦୁଃଖୀ କରିଦିଏ । କେବେ କେବେ ଇଚ୍ଛା ହୁଏ କୌଣସି ଏକ ନିଛାଟିଆ ଯାଗାକୁ ଚାଲି ଯାଆନ୍ତି ଆଉ ମନଭରି ଗଳାଫଟାଇ ଚିତ୍କାର କରି ମନବୋଧ ହେଲାଯାଏଁ ମାଆ-ମାଆ-ମାଆ ଡାକନ୍ତି । ତା'ର ପ୍ରତିଧ୍ୱନି ମାଟିକୁ ଦୋହଲାଇ ଦିଅନ୍ତା । ଆଖପାଖର ସମସ୍ତ ପଶୁ, ପକ୍ଷୀ, ଜୀବଜନ୍ତୁ, ମଣିଷ ସେ ଡାକରେ ଉଠି ପଡନ୍ତେ । ଗଛ ଚମକି ପଡନ୍ତା, ଝରଣା ଥରି ଉଠନ୍ତା, ପାହାଡର ଧ୍ୟାନଭଗ୍ନ ହୁଅନ୍ତା । କେତେ ମଜା ହୁଅନ୍ତା ସତରେ ! ମା' ଠାରୁ ବିପୁଳ ଶବ୍ଦ, ମମତାମୟୀ ଆଉ କ'ଣ ଥାଇପାରେ ? ସେ ସମୟରେ ମୋ ମନରେ ଏକ କୌତୁହଳୀ ଇଚ୍ଛା ଜାଗି ଉଠି ଥିଲା । ଯଦି ମୁଁ ବାହାହେବି ତେବେ ମୋର ଶାଶୁଟେ ଥିବା ଦରକାର । ସେ ଯାହା ହୁଅନ୍ତୁ ପଛେ ଅତ୍ୟନ୍ତ ମୁଁ ତ ତାଙ୍କୁ 'ମାଆ' ବୋଲି ଡାକି ପାରିବି । ମାଆ ଡାକ ଭିତରେ ଅନ୍ତତଃ ମୁଁ ପିଲାଦିନର ଅଭାବବୋଧକୁ କିଛିଟା ପାଇ ପାରିବି । ପ୍ରକୃତରେ ମୁଁ ଯେଉଁଠି ବାହା ହୋଇଛି ଶ୍ୱଶୁର ନଥିଲେ । ଶାଶୁଙ୍କୁ ମାଆ ରୂପରେ ପାଇବାର ସୌଭାଗ୍ୟ ମିଳିପାରିଛି ।

× × × × ×

ଦିନ ପୁରୁଣା ହୋଇଗଲା । ସମୟ ବା କାହାପାଇଁ ଅଟକିଛି ? କଟାଘା' ଉପରେ ବକଳା ବାନ୍ଧିବାର ଛଳନା କରି ଯୁଗେ ଯୁଗେ ମଣିଷ ଜୀଇଁ ଆସିଛି । ନହେଲେ ଆତ୍ମୀୟ ସ୍ୱଜନଙ୍କୁ ହରାଇ ମଣିଷ ପାଗଳ କି ସନ୍ନ୍ୟାସୀ ହୋଇ ଯାଆନ୍ତା ଅଥବା ବିରହ ସହି ନପାରି ମୃତ୍ୟୁବରଣ କରନ୍ତା । ପିଲାମାନଙ୍କୁ କେମିତି ମଣିଷ କରିବ କହି ପୁଣିଥରେ ବାହା ହେବାକୁ ଅନେକେ ବାପାଙ୍କ ଉପରେ ଚାପ ପକାଇଲେ । କେତେବା ବୟସ ହୋଇଛି ? ହେଲେ ବାପା କୌଣସି ପ୍ରକାରେ ରାଜି ହେଲେ ନାହିଁ । ଓଲଟି କହିଲେ ଏମିତି ମା' କାନିଧରି ଅଝଟ ହେବା, ମା' ହାତରୁ ମୁଠାଏ ଖାଇବା, କୋଳରେ ଶୋଇ ଧୋରେ ବାଇୟା ଧୋ ଗୀତ ଶୁଣିବାର ସୌଭାଗ୍ୟ ଭଗବାନ ତାଙ୍କଠାରୁ ଛଡାଇ ନେଇଛନ୍ତି ପୁଣି ବାହା ହେଲେ ଏ ହତଭାଗାମାନେ ବାପାଙ୍କୁ ବି ହରାଇ ମଝି ନଈରେ ଭାସିଯିବେ । ଏମାନଙ୍କ ମୁହଁକୁ ଚାହିଁ ମୁଁ ଆଉ ସେ ଭୁଲ କରିବି ନାହିଁ ।

ବାପା ଶେଷ ପର୍ଯ୍ୟନ୍ତ ନିଜ ନିଷ୍ପତ୍ତିରେ ଅଟଳ ରହିଥିଲେ । ନିଜର ଯୌବନ, ନିଜର ନିଃସଙ୍ଗତା ସବୁକିଛିକୁ ସେ ଆମପାଇଁ ତ୍ୟାଗ କରିଥିଲେ । ଏତେ ତ୍ୟାଗ, ଏତେ ଧୈର୍ଯ୍ୟ, ସହନଶୀଳତା ତାଙ୍କ ଭିତରେ କେଉଁଠୁ ଆସୁଥିଲା କେଜାଣି । ସୁଖରେ ଉଲ୍ଲସିତ କି ଦୁଃଖରେ ଭାଙ୍ଗିପଡିବା ମୁଁ ଦେଖି ନାହିଁ । କାହାର ଅନିଷ୍ଟ କଥା କେବେ ସେ ଚିନ୍ତା କରି ନାହାଁନ୍ତି । ସେ ଯାହାହେଉ ସତୁରି ବର୍ଷର ଆଈ କୋଳରେ ଆମେ ବଢ଼ିଲୁ । ଝିଅର ମୃତ୍ୟୁକୁ ଭୁଲି ନାତିନାତୁଣୀଙ୍କ ଗହଣରେ ଆଈ ବି ତା'ର ଆଉ ଗୋଟିଏ ଜୀବନ ଆରମ୍ଭ କରିଥିଲା । ଦାଦାଖୁଡୀ, ପିଉସାପିଉସୀ ସମସ୍ତେ ଥିଲେ । କେହି ଅନାଇଲେନି କି ପଚାରିଲେନି । ମା' ଗଲାପରେ ମା' ଛେଉଣ୍ଡପିଲାମାନେ କ'ଣ କରୁଛନ୍ତି ବି ଥରେ ଦେଖିବାକୁ ଆସିଲେନି । କ'ଣ ଖାଉଛନ୍ତି, କେମିତି ଚଳୁଛନ୍ତି, ଛୋଟ ଛୁଆଟାକୁ କେମିତି ପାଳୁଛନ୍ତି ସେ କଥା ଜାଣିବାକୁ କି ବୁଝିବାକୁ ତାଙ୍କର ଆଗ୍ରହ ନଥିଲା । ମଣିଷ ଯେ ଏତେ ନିଷ୍ଠୁର, ସ୍ୱାର୍ଥପର ହୋଇପାରେ ସେହି ପିଲାଟି ଦିନରୁ ମୁଁ ଅନୁଭବ କରିଥିଲି । ଆତ୍ମୀୟସ୍ୱଜନ ବିପଦ ବେଳେ ହିଁ ଦୂରେଇ ଦେଲେ କାଳେ କିଛି ଦେବାକୁ ପଡିବ, ଦାୟିତ୍ୱ ନେବାକୁ ପଡିବ ସେଥିଲାଗି ମୁହଁ ମୋଡି ଦେଲେ । ଏପରିକି ଆମେ ତାଙ୍କର ଝିଆରୀ ପୁତୁରା କି ବାପା ତାଙ୍କର ଭାଇ ବୋଲି ପରିଚୟ ଦେବାକୁ କୁଣ୍ଠା ପ୍ରକାଶ, ଘୃଣା କଲେ । ବ୍ୟବହାରରେ ଥାଏ କେମିତି ଅଚିହ୍ନା ଅଚିହ୍ନା, ଛାଡଛାଡ ଭାବ । କେବେ ସେମାନଙ୍କ ଘରକୁ ଗଲେ ବଡ ଦୟା ଦୃଷ୍ଟିରେ ଦେଖନ୍ତି ଯେଉଁଠି ହେୟଭାବ, ଛାଡଛାଡ ଭାବ ରହିଥାଏ । ସେମାନଙ୍କ ଚାହାଁଣି ସାମ୍ନାରେ ଆମେ ସାଙ୍କୁଡି ଯାଉ । ବଡ ଦୟନୀୟ ଦିଶୁ । ଅଥଚ ଏହି ଜକାମାନଙ୍କ ପାଇଁ ବାପା କ'ଣ ନକରିଛନ୍ତି । ଜେଜେବାପା, ଜେଜେମା' ମୃତ୍ୟୁବରଣ କଲାପରେ ବାପା ହିଁ ବଡଭାଇ ହିସାବରେ ଦୁଇଭାଇଙ୍କୁ ମଣିଷ କରିଥିଲେ । ବଡଭାଇତ ନଥିଲେ, ଥିଲେ ବାପା । ଦୁଇ ଦିଅରଙ୍କୁ ପୁଅ ଭଳି ସ୍ନେହ, ମମତା ଦେଇଥିଲେ ମାଆ । ନିଜେ ନଖାଇ ଭଲମନ୍ଦ ଖୁଆଉଥିଲେ । ନିଜେ ନପିନ୍ଧି ଭଲ ପୋଷାକପତ୍ର ଖଂଜି ଦେଇଥିଲେ । ପିଲାଭଳି ସେମାନଙ୍କୁ ଗାଧୋଇ, ସଜାଇ ସ୍କୁଲ ପଠାଉଥିଲେ । ଦେହଖରାପ ହେଲେ ରାତିରାତି ଜଗୁଥିଲେ । ଏପରିକି ମାଆର ଗହଣା ବିକ୍ରୀ କରି ବାପା ସେମାନଙ୍କ ପଢ଼ାଖର୍ଚ୍ଚ ତୁଲାଇଥିଲେ ବୋଲି ସାଇ ଲୋକଙ୍କଠାରୁ ମୁଁ ଶୁଣିଛି ।

ମାଆଙ୍କର କୁଆଡେ ଗୋଟାଏ ବଡ ମଣିପୁରୀ ସୁନାହାର ଥିଲା । ଅଜା ଅତି ଯତ୍ନରେ ଗୋଟିଏ ଝିଅ ବୋଲି ସେ ହାର ଗଢ଼ାଇଥିଲେ । କଲେଜରେ ଭାଇ ଦୁଇଜଣଙ୍କର ଆଡମିସନ ପାଇଁ, ବହିପତ୍ର, ଡ୍ରେସ୍ କିଣିବାପାଇଁ ବାପାଙ୍କର ଟଙ୍କା ଦରକାର ପଡିଲା । ଆଗରୁ ମାଆଙ୍କର କିଛି ଗହଣା ଏ ବାବଦରେ ବାପା ବନ୍ଧା ଦେଇ ମୁକୁଳାଇ ପାରି ନଥିଲେ । ତେଣୁ ଏଇ

ହାରଟି ଯାହା ମାଆଙ୍କର ଅତ୍ୟନ୍ତ ପ୍ରିୟ ଥିଲା ମାଗିବାକୁ ବାପାଙ୍କର ସାହସ ହେଲାନାହିଁ । ସେହିଭଳି ଏକ ଡିଜାଇନ୍‌ର ରୋଲ୍ ଗୋଲଡ୍ ହାର ବା ନକଲି ହାରଟି ତା'ର ଗହଣା ବାକ୍ସରେ ରଖି ବାପା ଅସଲି ହାରଟି ବିକି ଭାଇମାନଙ୍କର ଡ୍ରେସ୍, ଅନ୍ୟାନ୍ୟ ଆବଶ୍ୟକତକୁ ପୂରଣ କରିଥିଲେ । ଭାଇମାନେ ଚାକିରୀକଲେ ସେମାନଙ୍କ ମାଆ ଭଳି ଭାଉଜ ପାଇଁ ହାରଟେ କରି ଦେବେନି ? ଏହିଭଳି ଏକ ଆପଣା ଭାବ ନେଇ ସେ ଦୁଇଭାଇଙ୍କୁ ମଣିଷ କରିବାରେ ଲାଗି ପଡିଥିଲେ । ସେ କ'ଣ ଜାଣିଥିଲେ ଆଜି ଯାହାଙ୍କୁ ଦୁଗ୍ଧ ଦେଇ ପୋଷୁଛନ୍ତି କାଲି ସେମାନେ ଫଣା ଟେକି ଦଂଶିବେ ବୋଲି ?

ଅନେକ ଦିନ ଯାଏଁ ମାଆଙ୍କୁ ଜଣାନଥିଲା ଯେ ତାଙ୍କର ପ୍ରିୟ ହାରଟି ବିକ୍ରି ହୋଇ ଯାଇଛି ବୋଲି । ସେ ସମ୍ପର୍କରେ ବି ଏକ କୌତୂହଳୀ କାହାଣୀ ଶୁଣିଛି । କୌଣସି ଏକ ବାହାଘର କିମ୍ୱା ଏମିତି କିଛି ଉତ୍ସବ ଉପଲକ୍ଷେ ମାଆ ହାରଟି ବାହାର କରି ପିନ୍ଧିବାକୁ ଚାହିଁଲେ । ସେତେବେଳେ ରମା ଅପା (କବି ସୌରୀନ୍ଦ୍ର ବାରିକଙ୍କ ପତ୍ନୀ, ମୋ ବଡବାବାଙ୍କ ଝିଅ ଯାହାଙ୍କୁ ମାଆ ଝିଅ କରିଥିଲା ଅନେକ ଦିନଯାଏଁ ପିଲାପିଲି ହେଉନଥିବାରୁ)ଥାନ୍ତି ମା' ପାଖରେ । ସେ ମାଆଙ୍କୁ ସାନ ମାଆ ବୋଲି ଡାକନ୍ତି ଓ ଆମେ ତାଙ୍କୁ ସାନ ଅପା ବୋଲି ଡାକିଥାଉ । ରମା ଅପା ଯେତେବେଳେ ତା'ର ସାନମାଆ ବେକରେ ହାରଟି ପିନ୍ଧାଇ ହୁକ୍ ଲଗାଇବାକୁ ଗଲା ସେତେବେଳେ ରୋଲଡ୍ ଗୋଲଡ୍ ଲେଖା ଯାଇଥିବା ଦେଖିଲା । ସେଠୁ ସତ୍ୟ କ'ଣ ଖୋଳୁ ଖୋଳୁ ଜଣାପଡିଲା ବାପା ଅସଲି ସୁନାହାରଟି କେବେଠୁ ବିକ୍ରି ଦେଇଛନ୍ତି ବୋଲି । ଯେଉଁମାନଙ୍କ ପାଇଁ ସେ ସ୍ତ୍ରୀର ହାର ବିକିଥିଲେ ସେହିମାନଙ୍କ ବାହାଘର ଖର୍ଚ୍ଚ ତୁଲାଇବା ପାଇଁ ନିଜ ପଟ ଅଂଶତକ ବନ୍ଧାଦେଲେ । ମଝିଆଁ ନଗେନ୍ଦ୍ରଦାଦା ଓ ସାନ ସୌରଦାଦା ବାହାଘର ପରେ ଯେତେବେଳେ ଜାଣିଲେ ବଡଭାଇଙ୍କ ଅଂଶ ବନ୍ଧାପଡିଛି ଓ ସୁଧ ମୂଳ ସେମାନଙ୍କୁ ସୁଝିବାକୁ ପଡିବ ସେତେବେଳେ କହିଲେ, ଆମେ ତ କହି ନଥିଲୁ ଘରବନ୍ଧା ଦେଇ ଆମ ବାହାଘର କର ବୋଲି । ତମେ ତମ କର୍ତ୍ତବ୍ୟ କରିଛ, ତା' ବୋଲି ଯେ ଆମେ ପ୍ରତିଦାନ ଦେବୁ କେମିତି ଆଶା କରୁଛି ।

ନଗଦାଦା, ସୌରଦାଦା ଭିନ୍ନେ ହେବାର ପ୍ରସ୍ତାବ ଦେଲେ । ବାପା କହିଲେ, ମୁଁ ବଞ୍ଚିଥିଲା ଯାଏଁ ଏକଥା ହୋଇପରିବି ନାହିଁ । ଘରେ ଚୁଲ୍ଲୀ ଜଳିଲା ନାହିଁ । ଦିନେ ଗଲା, ଦୁଇଦିନ ଗଲା । ସେତେବେଳେ କେବଳ ଗୀତା ଅପାର ଜନ୍ମ ହୋଇଥିଲା । ଦାଦାଖୁଡୀ ତାଙ୍କର ହୋଟେଲରୁ ମଗାଇ ଆଣି ଆରାମରେ ଖାଇଲେ । ପେଟ ବିକଳରେ ଅପା କୁଆଡେ ଭୋକ ଯୋଗୁଁ ମଝିଆ ଖୁଡୀଙ୍କ ପାଖକୁ ଖାଉଥିଲାବେଳେ ଚାଲିଯାଇଥିଲା । ଶୁଣିଛି ସେମାନେ ତା' ଉପରେ କୁଆଡେ ଅଇଁଠା ଶାଳପତ୍ରର ଦୋନା ଫିଙ୍ଗିଥିଲେ ।

ଶେଷରେ ପଡୋଶୀମାନେ ଆସି ବାପାଙ୍କୁ ବୁଝାଇଲେ ଚୋର ଉପରେ ମାନ ମାରି ଖପରାରେ ଖାଇଲେ ଲାଭ କ'ଣ ? ତମ ଛୁଆପିଲା ହିଁ ହଇରାଣ ହେଉଛନ୍ତି । ଏଭଳି ସ୍ୱାର୍ଥପର ଭାଇଙ୍କ ସହିତ ରହିବା ଅପେକ୍ଷା ବରଂ ସେମାନଙ୍କ ପ୍ରସ୍ତାବରେ ରାଜି ହେଇଯିବାଟା ଉଚିତ୍ ହେବ ।

ଯେଉଁ ଭାଇମାନଙ୍କୁ ପୁଅଠାରୁ ଅଧିକ କରିଥିଲେ, ସେମାନେ ତାଙ୍କର ଦିନେ ସାହାରା ହେବେ ବୋଲି ଭାବିଥିଲେ । ସେହିମାନେ ହିଁ ଅଣ୍ଟିଛୁରୀ ହେଇ ତଣ୍ଟି କାଟିଲେ । କୁହାଯାଏ, ଘର ଢ଼ିଙ୍କି କୁମ୍ଭୀର । ଶେଷରେ ଘର ତିନିଭାଗ ହେଲା । ଗୋଟାଏ ଯାଗାରେ ତିନିତିନିଟା ଚୂଲ୍ଲୀ ଜଳିଲା । ଇଟା ପାଚେରିର କାନ୍ଥ ମଝିରେ ଉଠିଲା । କେହି କାହାକୁ ଦେଖିବେ ନାହିଁ । କଂସା ବାସନଠୁ ଆରମ୍ଭ କରି ଘରର ଖଟପଲଙ୍କ, ଆସବାବପତ୍ର ସବୁ କିଛି ଭାଗ ହେଇଗଲା । ସେଠି ପୁଣି ଏତେ ଅଶାନ୍ତି, କଳିଝଗଡା ଉପୁଜିଗଲା ଯେ ବାପାଙ୍କ ଭଳି ଉଦାରବାଦୀ ମଣିଷ ତିଷ୍ଠିବା କଷ୍ଟକର ହେଇପଡିଲା । ତେଣେ ବନ୍ଧକ ସୁଧ ବଢ଼ିଚାଲିଲା । ଶେଷରେ ବାପା ନିଜ ଅଂଶତକ ବିକିଦେଇ ସହରଠାରୁ ଦୂରକୁ ଯାଇ ରହିଲେ । ଏସବୁ ହେତୁ ହେଲା ପରେ ବାପାଙ୍କଠାରୁ ଯେତେବେଳେ ଶୁଣିଛି ମୋତେ କାହାଣୀ ଭଳି ଲାଗିଛି ।

ବାରିପଦା ଥାନାଛକରେ ପୈତୃକ ଘର ବିକି ବାପା ବେଲଗଡିଆରେ ଯାଇ ରହିଲେ । ସେଇଠି ଥିଲାବେଳେ ମୋର ଜନ୍ମ । ପୁଣି ସେ ଘର ବିକି ସେ ଓ୍ୱାଲିଗଞ୍ଜ ଆସିଲେ । ସେଇଠି ତପନର ଜନ୍ମ ଆଉ ମୃତ୍ୟୁ । ତପନ ମଲାପରେ ମାଆ ଆଉ ସେ ଘରେ ରହିବାକୁ ଚାହିଁଲେ ନାହିଁ । ତା'ପାଖରେ ଆଉ ଗୋଟାଏ ଖପର ଘର କରି ବାପା ଉଠି ଆସିଲେ । ଘର ବଦଳାଇ ଦେଲେ କ'ଣ ଦୁର୍ଦ୍ଦିନ କେବେ କାହାକୁ ଛାଡେ ? ସେ ଘରେ ମାଆର ମୃତ୍ୟୁ ହୋଇଗଲା ।

କୌଣସି କଥାରେ ମୁଁ ଯେବେ ଭାଙ୍ଗିପଡିଛି ବାପା ବୁଝାଇ ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ସେହି ପଂକ୍ତିଟା ଉଦ୍ଧାର କରି କହନ୍ତି, 'ଦୁଃଖର ଯାଦେର ଜୀବନ ଗଡ଼ା ତା'ଦେର ଆବାର ଦୁଃଖ କି ?'

ଯାହାର କେହି ନାହାଁନ୍ତି ସଂସାରରେ ତା'ର ଭଗବାନ ଅଛନ୍ତି । ତାଙ୍କୁ ସ୍ମରଣ କଲେ ସେ ପାରି କରିଦେବେ । ଉଦ୍ଧାର କରିଦେବେ । ପୁଅ, ସ୍ତ୍ରୀ ହରା ବାପା ତଥାପି ଭଗବାନଙ୍କୁ ବିଶ୍ୱାସ କରନ୍ତି । କରି କରାଉ ଥାଉ ତୁହି, ତୋ ବିନା ଆନ ଗତି ନାହିଁ । ପାହାଡ ଭଳି ଧୈର୍ଯ୍ୟ ସେ ଏହି ଭଗବତ ବିଶ୍ୱାସରୁ ପାଉଥିଲେ । ତାଙ୍କର ସେ ଭଗବାନଙ୍କୁ ଦେଖିବାକୁ, ଭେଟିବାକୁ ବେଳେବେଳେ ମୋର ଖୁବ୍ ଇଛା ହୁଏ । କେମିତି ତାଙ୍କର

ରୂପ, ରଙ୍ଗ ? ଦେଖା ହେଲେ ପଚାରନ୍ତି, ଅତି ଅଳ୍ପ ବୟସରୁ ସେ କାହିଁକି ଆମ ମା'ଙ୍କୁ ନେଇଗଲେ ? ତାଙ୍କର ଆମେ କ'ଣ କ୍ଷତି କରିଥିଲେ ? କାହିଁକି ସେ ମଣିଷକୁ ଏତେ ଅସହାୟ କରି ଛାଡି ଦିଅନ୍ତି ? ସେ କେବଳ ଆମକୁ କଷ୍ଟ ଦେଉଛନ୍ତି ନା ଅନେକଙ୍କୁ ଦିଅନ୍ତି ? କଷ୍ଟ ଦେବା କ'ଣ ତାଙ୍କର ଧର୍ମ ?

ସେ ବୟସରେ ଏହିଭଳି ବହୁ ବିଚିତ୍ର ପ୍ରଶ୍ନ ମାନ ମନରେ ଉଠୁଥିଲା । ମୁଁ ବୁଝିପାରୁନଥିଲି ଯିଏ ଏତେ ଦୁଃଖ ଦିଏ, ସବୁକିଛି ଛଡାଇ ନିଏ ତାକୁ ପୁଣି ବାପା କେମିତି ଭରସା କରନ୍ତି ? ଉଦ୍ଧାର କର୍ତ୍ତାର ଆସନରେ ବସାନ୍ତି ? ବାପାଙ୍କ ଅତୀତ ଜୀବନ ଆଉ ତାଙ୍କ ଭାଇମାନଙ୍କ ସ୍ୱାର୍ଥପରତାକୁ ମୁଁ ମନରଘର ଉପନ୍ୟାସରେ ଚିତ୍ରିତ କରିଛି । ସେଥିରେ ଛଳନା ନାହିଁ କି ଅତିରିକ୍ତ ଚିତ୍ରଣ ନାହିଁ । ଯାହା ତାଙ୍କଠାରୁ ଶୁଣିଛି, ଅନ୍ୟମାନଙ୍କଠାରୁ ପାଇଛି ତାହାକୁ ହିଁ ମୁଁ ରୂପଦେଇଛି । କଳ୍ପନା ମଧ୍ୟରେ ଅନେକତ୍ର ବାସ୍ତବ ଜୀବନ ହିଁ ଆସିଯାଇଛି । ମୁଁ ନିଜକୁ, ନିଜ ପରିବେଶକୁ ବିଭିନ୍ନ ଗପରେ, ବିଭିନ୍ନ ଲେଖାରେ ପରୋକ୍ଷ ଭାବରେ ରୂପାୟିତ କରିଛି । ବିଶେଷକରି ମୋର ପ୍ରାରମ୍ଭିକ ଲେଖା ବା ପ୍ରଥମ ଦଶବର୍ଷ ଭିତରେ (୧୯୮୦ରୁ୧୯୯୦) ବେଶି ଭାବରେ ମୋର ବ୍ୟକ୍ତିଗତ ଜୀବନ ପ୍ରତିଫଳିତ ହୋଇଛି । ୧୯୯୦ ପରେ ଅବଶ୍ୟ ମୋର ଦୃଷ୍ଟିକୋଣ-ଚିନ୍ତାଧାରା, ଲେଖାର ବିଷୟବସ୍ତୁ, ଶୈଳୀ ବଦଳି ଯାଇଛି । କିନ୍ତୁ ପ୍ରଥମ ପର୍ଯ୍ୟାୟରେ ମୁଁ ହିଁ ବିଭିନ୍ନ ଭାବରେ ଆତ୍ମପ୍ରକାଶ କରିଛି । ମୋର ଅଙ୍ଗେଲିଭା କଥା ଅଧିକାଂଶ ଗପରେ ରୂପାୟିତ ହୋଇଛି । ଦୁଃଖ, ଦାରିଦ୍ର୍ୟ, ସଂଗ୍ରାମ, ଏକାକୀତ୍ୱ ଭିତରେ ମୋର ପିଲାଦିନର ଯେଉଁ ଚୂଲବୁଲି ଧୂଳିଖେଳର ଜୀବନ ଯୋଡି ହୋଇଗଲା ତାରି ଉପରେ ଜନ୍ମ ନେଲା ଏକ ଗମ୍ଭୀର, ବିଷାଦ ଚାଦରରେ ଘୋଡାଇ ହୋଇ ସଂଗ୍ରାମ ଭିତରର ନିଜଗୋଡରେ ଠିଆ ହେଉଥିବା ଝିଅ କବିତା ବାରିକ । ସେହି ଆଗରେ ପଡିଛି ପଥ ବହୁଦୂର ଆହୁରି କେତେ ଯେ ବାକି, ଚାଲିବି ଚାଲିବି ନପଡିବି ଥକି ବୁଜିବା ଆଗରୁ ଆଖି'ର ଶପଥ ଭିତରେ ସେହି ଯେ ଚାଲିଛି ଏ ଯାଏଁ ବାଟ ସରି ନାହିଁ । ଯାତ୍ରା ମୋର ଅନନ୍ତ ହେଲେ ଏ ଜୀବନ ବଡ କ୍ଷୁଦ୍ର ।

ହଁ, ଦୁଃଖର ଦିନ ଯେତେବେଳେ ଆସେ ଆଗରୁ କିଛି ବନ୍ଧୁ ବାନ୍ଧବଙ୍କୁ ଧରି ଆସେ । ଆମଭଳି ଏକ ନିମ୍ନ ମଧ୍ୟବିତ୍ତ ଘରେ ପ୍ରଥମ ଝଡ ଉଠିଥିଲା ମୋ ସାନଭାଇର ମୃତ୍ୟୁରେ । ଆଉ ତା'ପରେ ମା' ଚାଲିଗଲା । ସେତିକିରେ ଯେମିତି ଶେଷ ନଥିଲା ଘଟଣାର । ଯମ ସହିତ ରାହୁ, କେତୁ, ଶନି ସମସ୍ତେ ଯେମିତି ଏକଜୁଟ ହେଇ ଆକ୍ରମଣ କରିବାକୁ ଆରମ୍ଭ କରିଦେଇଥିଲେ । ଭଗବାନ ଶତ୍ରୁକୁ ମଧ୍ୟ ଆମଭଳି ଦୁର୍ଦ୍ଦିନ ନଦେଖାନ୍ତୁ

ଏହା ମୁଁ ଦିନରାତି ଗଡ଼ୁଥିବା ବିଶ୍ୱନିୟନ୍ତା ପାଖରେ ବାରମ୍ବାର ପ୍ରାର୍ଥନା କରେ ।

ମା'ଙ୍କର ମୃତ୍ୟୁର ବର୍ଷେ ନପୁରୁଣୁ ଖାତାପତ୍ରର ହିସାବ ଭୁଲ ଯୋଗୁଁ କେମିତି କେଜାଣି ବାପା ସସ୍‌ପେଣ୍ଡ ହେଇଗଲେ । ସେ ବାରିପଦା ମ୍ୟୁନିସିପାଲଟିରେ ଟେକ୍ସ କଲେକ୍ଟର ଥିଲେ । ତାଙ୍କ ସହିତ ସସ୍‌ପେଣ୍ଡ ହେଇଥିବା କର୍ମଚାରୀମାନେ କେସ୍ କଲେ । ବାପାଙ୍କର ଧନବଳ କି ମନବଳ ନ ଥିଲା । ଆମର ମଝିଆଁ ଦାଦା ତାଙ୍କୁ ପରାମର୍ଶ ଦେଲେ କେସ୍ କରନି ଜେଲ୍ ହେଇଯିବ । ତାଙ୍କର ଚାଲ ବାପା ବୁଝିପାରିଲେ ନାହିଁ । ପରେ ଯେଉଁମାନେ ସସ୍‌ପେଣ୍ଡ କି ଚାକିରୀରୁ ବହିଷ୍କୃତ ହେଇଥିଲେ ଚାକିରୀ ସମୟର ସମସ୍ତ ଟଙ୍କା ବାରିପଦା ପୌରପରିଷଦ କ୍ଷତିପୂରଣ ଆକାରରେ ଦେଇଥିଲା । ହେଲେ ବାପାଙ୍କର କିଛି ସମାଧାନ ହେଲାନାହିଁ । ଏହାପରେ ଅଭାବର ବିକଟ ରୂପ ରାହୁ ଗ୍ରାସ କଲାଭଳି ଆମକୁ ଗ୍ରାସିଗଲା । ଘରେ କଳାକନା ବୁଲିଗଲା । ଭାଇମାନଙ୍କୁ ମଣିଷ କରିବାରେ ଓ ଅପା ବାହାଘରରେ ବାପା ସବୁକିଛି ସଞ୍ଚିତ ଧନ ଖର୍ଚ୍ଚ କରିଦେଇଥିଲେ । ଜମିବାଡି ନଥିଲା । ମା'ର ଶୁଦ୍ଧିପରେ ଓ ଚିକିତ୍ସାରେ ସେ କପର୍ଦ୍ଦକ ଶୂନ୍ୟହୋଇ ଯାଇଥିଲେ । ଚାକିରୀଗଲା ପରେ ଆମ ଅବସ୍ଥା ଦାଣ୍ଡର ଭିକାରୀ ଭଳି ହୋଇଗଲା । ଚାରିଟା ପିଲା ଓ ବାପା ଆଉ ଏମିତି ମିଶି ଦିନକୁ ଛ'ଜଣ ଖାଇବା, ପିନ୍ଧିବା, ଚଳିବା, ପଢ଼ିବା ଅସମ୍ଭବ ହେଇଗଲା । ଦିନଥିଲା ବାପା ତାଙ୍କ ଓକିଲ ପିତାଙ୍କର ଏକମାତ୍ର ପୁଅ ଭାବରେ ପିଲାଦିନରୁ ଖୁବ୍ ଆଦର ଯତ୍ନରେ ବଢ଼ିଥିଲେ । ତା'ର ବହୁବର୍ଷ ପରେ ଆଉ ଦୁଇ ଭାଇ ଜନ୍ମ ହେଇଥିଲେ । କ୍ଷୀରରେ ଗାଧୋଇ ଥିବା ବାପା ଅତି ଆଦର, ସୌଖୀନ ପରିବେଶ ଭିତରେ ବଢ଼ିଥିବା ବାପା, ସବୁବେଳେ ଧଳାପଞ୍ଜାବୀରେ ସୁନାବୋତାମ, ଅଙ୍ଗୁଠିରେ ଦୁଇ ଚାରିଟା ସୁନାମୁଦି ଲଗାଉଥିବା ବାପା ଶେଷରେ ମୁଠାଏ ଭଲ କି ଖାଇବାକୁ ବା ଖୁଆଇବାକୁ ପାଇଲେନି ।

ଅଭାବ ତା'ର ବିକଟ ରୂପରେ ଚାଟିବାକୁ ଆରମ୍ଭ କରିଦେଇଥିଲା । ଘରର ସୁନାଗହଣା, ମାଆଙ୍କର ପାଟଶାଢ଼ୀ ସବୁ ପ୍ରଥମେ ବିକ୍ରୀ କଲେ ବାପା । ତାପରେ କଂସାବାସନ, ଗଗରା, ସିନ୍ଦୁକ, ଆଲମୀରା, ଶିଶୁକାଠର ପଲଙ୍କ ପ୍ରଭୃତି ବିକାଗଲା । ପରବର୍ତ୍ତୀ ସମୟରେ ମୁଁ ଓ ମୋ ସାନଭଉଣୀ ଯାହା କାନ ହାତରେ ଛୋଟ ଛୋଟ ଗହଣା ପିନ୍ଧିଥିଲୁ ଓ ରୂପାର ପାଉଁଜି ଲଗାଇଥିଲୁ ସେ ସବୁ ବିକାଗଲା । ଆଉ ହାତର ଦୁଇପଟ ସୁନାଖଡୁ ଓ ନାକଫୁଲକୁ ବି ବିକିବାକୁ ପଡିଲା । ଅନ୍ନ ଚିନ୍ତା ଚମତ୍କାର । ପେଟର ନିଆଁଠାରୁ, ଭୋକର ନିଆଁଠାରୁ ଆଉ ବଡ କ'ଣ ଥାଇପାରେ ? ବାପା ଆମ କାନ ହାତ ବେକ ଖାଲି କରି ସୁନା ଜିନିଷତକ ଖୋଲି ନେଇ ଥିଲାବେଳେ ଆମେ ଦେବୁନି ବୋଲି ରାହା ଧରି କାନ୍ଦୁଥିଲୁ । ବାପା ଲୁଚାଇ ଲୁଚାଇ ଆଖି ପୋଛି ଦେଉଥିଲେ ଆଉ କହୁଥିଲେ, ତମେମାନେ

ମୋର ପ୍ରକୃତ ଧନ । ଯଦି ତୁମେ ସବୁ ବଞ୍ଚି ରହୁ ସେସବୁ ଆପେ ଆପେ କରିପାରିବ ।
ମନେରଖିବ, ଧାନ ଅଗାଡି ସିନା ଭାସିଯାଏ, ମଣିଷ ଅଗାଡି କେବେ ଭାସି ଯାଏନା ।
ବାପାଙ୍କର ଗାଈ ପାଳିବା ବଡ ସଉକ ଥିଲା । ଆଠକାଳି ବାରମାସି ଆମ ଗୁହାଳରେ ଗାଈ
ସବୁ ରହୁଥିଲେ । ବର୍ଷସାରା ଦୁଧ ଛେନା, ଦହି ଆମେ ଖାଉଥିଲୁ ଓ ବଳକା କ୍ଷୀରତକ
ବିକ୍ରୀ କରାଯାଉଥିଲା । ବାପା କ୍ଷୀରରେ ଆଦୌ ପାଣି ମିଶାଉ ନଥିବାରୁ ଆମ କ୍ଷୀର
ନେବାପାଇଁ ସମସ୍ତେ ଆଗ୍ରହ କରୁଥିଲେ । ହେଲେ ସେହି ଦୁର୍ଦ୍ଦିନରେ ନିଜ ପିଲାଙ୍କୁ
ଖାଇବାକୁ ଦେବା ଯେତେବେଳେ କାଠିକର ହେଇଗଲା ଆଉ ଗାଈମାନଙ୍କୁ ଦେବେ
କ'ଣ । ତାପରେ ଗୋଟି ଗୋଟି କରି ଗାଈବାଛୁରୀ ବିକା ଆରମ୍ଭ ହେଲା ଓ ଦେଖୁ ଦେଖୁ
ଗୁହାଳ ଶୂନ୍ୟ ହେଇଗଲା । ମା'ଥିଲେ ଆମ ଘରର ଲକ୍ଷ୍ମୀ । ତାଙ୍କ ପରେ ସତରେ ଆମେ
ଲକ୍ଷ୍ମୀଛଡା ହୋଇଗଲୁ ।

ଆଜି ବି ମୋର ଗୋଟାଏ ଦୃଶ୍ୟ ସ୍ପଷ୍ଟ ଭାବରେ ମନେ ଅଛି । ଗାଈମାନଙ୍କୁ ବାପା
ନିଜ ଝିଅ ଭଳି ପାଳିଥିଲେ । ରାତିଦିନ ସେମାନଙ୍କର ଯତ୍ନ ନେଉଥିଲେ । ସେମାନଙ୍କର
ନାଁ ଦିଆଯାଇଥିଲା । ସେମାନଙ୍କୁ ବିକ୍ରୀ କଲାପରେ ଗୁହାଳ ଖାଲି ପଡିଯାଇଥିଲା ।
ଶୂନ୍ୟକାଳରେ ଠିଆହୋଇ ବାପା ପିଲାଙ୍କ ଭଳି କାନ୍ଦିବାର ଆମେ ଦେଖିଛୁ । ଗାଈମାନଙ୍କ
ବେକରେ ପଘା ବାନ୍ଧି ତା'ର ନୂତନ ଖାଉନ୍ଦ ଯେତେବେଳେ ଟାଣି ଟାଣି ନେଇଯାଉଥିଲା
ଗାଈମାନେ ବୁଝି ଯାଇଥିଲେ ଆମେ ସେମାନଙ୍କୁ ବିକ୍ରୀ କରିଦେଇଛୁ ବୋଲି । ସେମାନଙ୍କ
ଆଖିରୁ କଲାଲୁହ ନିଗିଡି ପଡୁଥିଲା । ମୂକ ପଶୁ ସିନା । ହେଲେ ସେମାନେ ବି ଆମ
ଅସହାୟତା କଥା ଅନୁଭବ କରିଥିଲେ । ଗଲାବେଳେ ଦୁବଘାସ ବି ସେମାନେ ଛୁଇଁ
ନଥିଲେ । ହୁଏତ ପରୋକ୍ଷରେ ପ୍ରକାଶ କରୁଥିଲେ ବିକି ତ ଦେଲ, ଆଉ ମମତାର
ଡୋରି କାହିଁକି ? ବାପା ମୁହଁ ବୁଲାଇ ନେଇ କହୁଥିଲେ ଯା ମା, ଯା, ସେଠି ଭଲରେ
ରହିବୁ । ପେଟପୂରା ଖାଇବୁ । ଆମ ସହ କାହିଁକି ଦହଗଞ୍ଜ ହେବୁ । ମୋ ଭଳି ମାଲିକ
ତୋତେ କେଉଁ ଜନ୍ମରେ ବି ନମିଳୁ । ଆମେ ଭାଇଭଉଣୀ ଛଳଛଳ ଆଖିରେ ସେ କରୁଣ
ଦୁଃଖ ଦେଖୁଥିଲୁ ଓ ସେଗୁଡିକ ଗଲାପରେ ଆଣ୍ଠୁ ସନ୍ଧିରେ ମୁହଁ ଗୁଞ୍ଜି କାନ୍ଦୁଥିଲୁ । କେବେ
କେବେ ପଘା ଟାଣି ଟାଣି ଆମର ନାଲି, ଧୂବୁଲୀ, କାଳି ଗାଈମାନେ ଅଦୃଶ୍ୟ ନହେଲା
ଯାଏଁ ଆମେ ଆଖି ବୁଜି ଧରୁଥିଲୁ । ପୁଣି ଏମିତି ହେଇଛି ନୂଆମାଲିକର ଗୁହାଳ ଘରୁ
ଦଉଡି ଛିଣ୍ଡାଇ ବାଟ ଖୋଜି ଖୋଜି ଗାଈମାନେ ରାତି ଅଧରେ ଆମ ଦ୍ୱାରରେ ପହଞ୍ଚି
ହମ୍ବାରଡି ଦେଇ ମାଆ ମାଆ ଡାକିଛନ୍ତି । ଆମ୍ଭେମାନେ ନିଦରୁ ଉଠି ସେମାନଙ୍କୁ ଦେଖି
ଆଶ୍ଚର୍ଯ୍ୟ ହେଇଯାଇଛୁ । ଆଉଁଷି ଦେଲେ କେତେ ଶ୍ରଦ୍ଧାରେ ସେମାନେ ଆମକୁ, ବିଶେଷ

କରି ବାପାଙ୍କୁ ଚାଟି ପକାନ୍ତି । ଏ ଦୃଶ୍ୟ ଏଭଳି ଭାବରେ ମୋ ଭିତରେ ଚେର ମାଡିଗଲା ଭଳି ମାଡି ଯାଇଥିଲା ଯେ ଏମ.ଏ.ପାଶ କରି ବାଣୀବିହାରରେ ଏମ୍.ଫିଲ୍ କଲାବେଳେ ମୁଁ 'ଗାଈ ବିକା' ନାଁରେ ଗୋଟାଏ ଗପ ଲେଖି ଥିଲି ଓ ତାହା 'ଇସ୍ତାହାର'ରେ ପ୍ରକାଶ ପାଇଥିଲା । ସେଠି ଗାଈକୁ ଟାଣି ଟାଣି ନୂଆମାଲିକ ନେଇ ଯାଉଥିବା ଓ ଦୁବଘାସ ନଖାଇ ଗାଈଟି କଳାଲୁହ ନିଗାଡି ଚାଲିଯାଉଥିବାର ବର୍ଣ୍ଣନା ରହିଛି । ପରବର୍ତ୍ତୀ ସମୟରେ 'ଗାଈବିକା' ଗପଟି ମୋର 'ଛକ' ନାମକ ଗଳ୍ପ ସଙ୍କଳନରେ ସଙ୍କଳିତ ହୋଇଛି । ଏହି ଗପଟି ଲେଖିଲାବେଳେ ମୁଁ ଆବିଷ୍କାର କରିଥିଲି ଯେ ପିଲାଦିନର ଅନେକ କଥା ମୁଁ ଭୁଲି ନାହିଁ । ଅଙ୍ଗେଲିଭା ଅନେକ ଦୃଶ୍ୟ ମୋ ପାଖରେ ସେମିତି ତାଜା ହୋଇରହିଛି । ଟିକିଏ ବି ସେଥିରେ ଧୂଳି ଜମି ନାହିଁ କି ଝାପ୍‌ସା ପଡିନାହିଁ ସେ ଅନୁଭୂତିର ଛବି । ଆହା, ବୟସ ତୁଳନାରେ ମୁଁ କେତେଶୀଘ୍ର ପରିପକ୍ୱ, ଅଭିଜ୍ଞ ହୋଇନଗଲି ! ଧୂଳି ଖେଳ ଛାଡି ଭାତ ରନ୍ଧା ଶିଖିଲି । ଫେସନର ଦୁନିଆରେ ବୁଡି ନରହି କଲମ ଚଳାଇବାକୁ ଆରମ୍ଭ କଲି ।

'ସେହି ଦୁର୍ଦ୍ଦିନ ସମୟରେ ଆମେ ଯଦି କେବେ ଆମ କକାଖୁଡୀ ଘରକୁ ଯାଉ, ଦାଣ୍ଡରେ ଠିଆ ହୋଇଥାଉ ଅଥବା ଡ୍ରଇଂ ରୁମ୍‌ରେ, ଭିତରକୁ କେହି ଡାକେନା । କାଳେ କିଛି ଦେବାକୁ ପଡିବ ଭାବି ଖୁଡୀମାନେ ସେମାନଙ୍କ ଦରମା ଅଣ୍ଟୁନି, କେମିତି କଷ୍ଟେମଷ୍ଟେ ଚଳୁଛନ୍ତି ତା'ର ଲମ୍ବା ତାଲିକା ବଢ଼ାନ୍ତି । କେବେ ଖାଇବା କଥା ପଚାରନ୍ତି ତ କେବେ ନାହିଁ । ଅଥଚ ନଗଦାଦା ଥିଲେ କଲେକ୍ଟରଙ୍କ କିରାନି ପରେ ହେଡକ୍ଲର୍କରେ ରିଟାୟାର୍ଡ କରିଥିଲେ । ଇଲେକସନ ଦାୟିତ୍ୱରେ ଥିଲାବେଳେ ହଜାର ହଜାର ଟଙ୍କା ମାରୁଥିଲେ ଓ ବିରାଟ କୋଠା ତିଆରି ଚାଲିଥିଲା । ସେମିତି ସାନ ସୌରଦାଦା ଥିଲେ ସପ୍ଲାୟ ଇନିକ୍ସପେକ୍ଟର । ଦୁର୍ନୀତି ଓ ମାରି ଖାଇବାରେ ଓସ୍ତାଦ । କଣ୍ଟ୍ରୋଲ ଚିନି, ଗହମ, ତେଲ ପ୍ରଭୃତି ସେ ବସ୍ତାବସ୍ତା ଆଣୁଥିଲେ କିମ୍ବା ବିକ୍ରି କରି ଦେଉଥିଲେ । ଭୁବନେଶ୍ୱରରେ ଥିବା ଆମର ଏକମାତ୍ର ପିଉସୀଙ୍କ ଘରକୁ ଏସବୁ ଜିନିଷ ବି ମୋଟା ଆକାରରେ ଯାଉଥିଲା । ତେଣୁ ସାନଦାଦା ପିଉସା ପିଉସୀଙ୍କର ବଡପ୍ରିୟ ଥିଲେ । ସମସ୍ତେ ବିରାଟ ବିଲଡିଙ୍ଗ୍ ତିଆରି କରୁଥିଲାବେଳେ ଆମେ ଓଳିଏ ଖାଇଲେ ଆରଓଳି ଓପାସ ରହୁଥିଲୁ । ଦିନେ ଦିନେ ଚୂଲ୍ଲୀ ବି ଜଳୁନଥିଲା । ମୁଢ଼ି ମୁଠାଏ ମୁଠାଏ ପାଟିରେ ପକାଇ ପାଣି ପିଇ ଦେଉଥିଲୁ । ଅଥଚ ଦିନ ଥିଲା ଦୁଧଗ୍ଲାସ ଆମକୁ ଗନ୍ଧାଉ ଥିଲା । ମାଂସ, ମାଛ ନହେଲେ ଭାତ ଖାଉ ନଥିଲୁ । କୁଣିଆ ମଇତ୍ର ଆମଘରେ ସବୁବେଳେ ପହଁଞ୍ଚୁ ଥିଲେ । ପିଠାପଣା, ପର୍ବପର୍ବାଣୀରେ ନୂଆଡ୍ରେସ୍ ନହେଲେ ଚଳୁନଥିଲା । ମାଆ ଆଣ ଯିଏ ଆସିଲେ ଖୁଆଇ ପିଆଇ ଛାଡୁ ନଥିଲେ । ଗଲାବେଳେ ନୂଆ ଲୁଗା ସହ ବାଟଖର୍ଚ୍ଚ, ବସଭଡା ଦିଆଯାଉଥିଲା । ପୁଣି

ଆମେ ସେମାନଙ୍କର ପୁତୁରା ଝିଆରୀ ବୋଲି ପରିଚୟ ଦେବାକୁ ସେମାନଙ୍କୁ ଖରାପ ଲାଗୁଥିଲା । କେହି ଆଉ ଆମ ଘରକୁ ଆସୁନଥିଲେ । ଆମେ ଆତ୍ମୀୟବିହୀନ ଅସହାୟ ହୋଇଯାଇଥିଲୁ । ବନ୍ଧୁବାନ୍ଧବହୀନ ହୋଇ ଦିନ କାଟିଲା ବେଳେ ବାପା ବୁଝାନ୍ତି ମଧୁସୂଦନ ରାୟଙ୍କ ଭାଷାରେ-

'ହଜି ନାହିଁ ଯା'ର କେଭେ କିଛି ହିଁ ରତନ
ଏ ମର୍ତ୍ତ୍ୟ ସଂସାରେ ସେହି ଦୀନ ଅକିଞ୍ଚନ
ସେ ପୁଣି ଦରିଦ୍ରତର ହରାଇ ରତନ
ଏ ଭବ ଭବନେ ତାହା ପାଶୋରେ ଯେ ଜନ ।'

ଜୀବନରେ ଯେ ହରାଇଛି, ସେ ହିଁ ସଂସାରରେ ମଣିଷ ହୋଇପାରିଛି ବୋଲି ବାପା ସାନ୍ତ୍ୱନା ଦିଅନ୍ତି । କହନ୍ତି ଦୁଃଖ ସବୁଦିନ ରହେନାରେ । ଆଲୁଅ ପରେ ଅନ୍ଧାର ଆସିବ ଆଉ ଅନ୍ଧାର ପରେ ଆଲୁଅ ଆସିବ ହିଁ ଆସିବ । ଦୁଃଖରେ କାତର ସୁଖରେ ଅଧୀର ହେବା ବିବେକୀର କର୍ତ୍ତବ୍ୟ ନୁହେଁ । ସ୍ଥିତପ୍ରଜ୍ଞ ଯିଏ ସେ ଦୁଃଖରେ କାତର କି ସୁଖରେ ଉଲ୍ଲସିତ ହୁଏ ନାହିଁ । ଏବେ ଯାହା ଘଟୁଛି ତାହା ତମମାନଙ୍କୁ ପରୀକ୍ଷା କରିବାକୁ ଭଗବାନ କରିଛନ୍ତି । ହେଲେ ଧୈର୍ଯ୍ୟ ସହିବାର ତ ଗୋଟାଏ ସୀମା ଅଛି । ବାପାଙ୍କ ଭଳି ଆମେ ଧୈର୍ଯ୍ୟ ଧରିପାରୁନଥିଲୁ । ପୁଅ ମଲାପରେ ସ୍ତ୍ରୀ ଗଲାପରେ, ଭାଇମାନେ ଧକ୍କା ଦେଲାପରେ, ପାର୍ଥିବ ସମ୍ପତ୍ତି ସବୁ ବିକ୍ରୀ ହୋଇଗଲା ପରେ, ଚାକିରୀ ଗଲାପରେ ବି ବାପା ଏକ ଭଲଦିନର ଅପେକ୍ଷାରେ ଆଶା ବାନ୍ଧିଥିଲେ । ସବୁଠୁ ବଡ ଭରସା ତାଙ୍କର ମୋ ଉପରେ ଥିଲା । କାରଣ ମୁଁ ଆମ ଭାଇଭଉଣୀଙ୍କ ଭିତରୁ ସବୁଠୁ ଭଲ ପଢୁଥିଲି ଓ ବାପାଙ୍କର ସେଣ୍ଟିମେଣ୍ଟକୁ ବୁଝିଥିଲି । ଭିତରେ ଘୁଣ ଖାଇ ଯାଉଥିଲେ ବି ଘା'ଆରେ ବନ୍ଧଳା ବାନ୍ଧି ସେ ହସୁଥିଲେ । ତାଙ୍କ ଭିତରର ସେହି ଉଇଖିଆ ହୃଦୟକୁ ମୁଁ ଚୁପ୍‌ଚାପ୍ ପଢୁଥିଲି । ସେହି ପିଲାଦିନରୁ ତେଣୁ ନିଜର ଭାବପ୍ରକାଶ ପାଇଁ କାଳି କଲମ, କାଗଜର ସାହାଯ୍ୟ ନେଇଥିଲି । ଯାହା ପରବର୍ତ୍ତୀ ସମୟରେ ମୋତେ ଲେଖିକାର ଆସନ ଦେଲା ।

ତାପରେ ଘର ସାମ୍ନାରେ ତେଜରାତି ଦୋକାନଟେ ବାପା ପକାଇଲେ । ହେଲେ ଗରିବ ଲୋକମାନଙ୍କୁ ଧାରଦେଇ ଫେରସ୍ତ ନପାଇବାରୁ ମୂଳ ବି ବୁଡିଗଲା । ବ୍ୟବସାୟରେ ଯିଏ ଧୁରନ୍ଧର ତା'ଦେଇ ସିନା ଦୋକାନ ବଜାର ଚାଲିବ । ଅଭାବରେ ପଡି ଯେ ଯାହା ମାଗିଲା ବାପା ମନା କରି ପାରିଲେ ନାହିଁ । କାହିଁକି ନା ସେ ସେହି ପରିସ୍ଥିତିରେ ସାମ୍ନା କରିଛନ୍ତି । ତେଣୁ ଧାରଦେଇ ସୁଝାଇ ନପାରିବାରୁ ଏହା ବୁଡିଗଲା । ପୁଣି ସେହି ଅଭାବର ବିକଟ ରୂପ । ଆଉ ସେମିତି କିଛି ନଥିଲା ବିକି ଭାଙ୍ଗି ଚଳିବାକୁ । ତାପରେ ବାରିପଦାର

ମ୍ୟୁନିସିପାଲିଟି ଛକ ପାଖରେ ଗୋଟାଏ ପାନଦୋକାନ ପକାଇଲେ । କିଛି ଦିନ ଚାଲିଲା । ତେବେ ଆୟଠୁ ବ୍ୟୟ ବଢ଼ି ଗଲା । ବାପା ତ ନିଜେ କେତେ ଆଦର ଯତ୍ନରେ ପିଲାଦିନୁ ବଢ଼ି ଆସିଥିଲେ । ଅଭାବ କ'ଣ ଜାଣିନଥିଲେ । ତାଙ୍କଭଳି ସହୃଦୟ ଲୋକ ପକ୍ଷରେ ବିଜ୍‌ନେସ୍ ହେଇ ପାରିବ ନାହିଁ । ତେଣୁ ସେ ଦୋକାନ ବି ବେଶିଦିନ ଚାଲିଲା ନାହିଁ । ତାହେଲେ କ'ଣ ଖାଇବା ? କେମିତି ବଞ୍ଚିବା ?

ସେ ବର୍ଷ ପ୍ରବଳ ଝଡ ବର୍ଷା ହେଇଥିଲା । ବୋଧହୁଏ ୧୯୭୪ ହେବ କି କ'ଣ । ଆମ ଘରର ଗୋଟାଏ ପଟ କାନ୍ଥରେ ଚାଳରୁ ପାଣି ଗଳି ପଡିଗଲା । ଭାଗ୍ୟ ଭଲ କେହି ଚାପି ହେଇ ନାହୁଁ । ମୋର ମନେ ଅଛି ଭଙ୍ଗା କାନ୍ଥକୁ ଲାଗି ବାଉଁଶର ଚାଞ୍ଚଡା ଟଙ୍ଗା ହେଇଥାଏ । ପାଣିପଡି ଘର ସନ୍ତସନ୍ତିଆ । ସେଇଠି ଆମେ ତିନି ଭାଇଭଉଣୀ କୁଙ୍କୁଡି କାଙ୍କୁଡି ଶୋଇଥାଉ । ରାତିରେ ସୁସୁ ପବନ ପଶି ଆସୁଥାଏ । ଯଦି ସାପ ବି କାମୁଡି ଦିଅନ୍ତା କି ପଶି ଆସନ୍ତା ଆଶ୍ଚର୍ଯ୍ୟ ହବାର ନଥିଲା । ହେଲେ ରଖେ ହରି ମାରେ କିଏ ନ୍ୟାୟରେ ଭଗବାନ ସବୁବେଳେ ଆମକୁ ବଞ୍ଚାଇ ରଖିଛନ୍ତି । ପୁଣି ରାନ୍ଧିଲା ବେଳେ ପବନ ଯୋଗୁଁ ଚୂଲା ବି ଜଳେନାହିଁ । ଓଦାକାଠ କୁହୁଳି ଅଙ୍ଗାର ହେଇଯାଏ । ଗଣ୍ଡାଏ ରାନ୍ଧି କି ଦେବ ବୋଲି ଚୂଲା ଫୁଙ୍କି ଫୁଙ୍କି ଆଈର ଆଖି ଲାଲ ହେଇଯାଏ । ଅଧା ଗରମ ପାଣିର ଡେକ୍‌ଚିକୁ ଭୋକିଲା ପେଟରେ ଆମେ ଚାହିଁ ରହିଥାଉ । କେବେ ସେଠି ଚାଉଳ ପୋଡେ ତ କେବେ ଭାତ ଜାଉ ହେଇଯାଏ । ତାକୁ ମୁଠାଏ ମୁଠାଏ ଖାଇ ଅନେକ ସମୟରେ ଆମେ ଜୀବନ ଧରିଛୁ । ଝିଅ ଜୋଇଁ ପାଖକୁ ଯାଇ ହାତ ପତାଇବାକୁ ବାପାଙ୍କର ବିବେକ ବାଧାଦିଏ । ଆମେ ସମସ୍ତେ ଏକ ଅସହାୟତାର ବଳୟ ଭିତରେ ହିଁ ସେହି ଭଗବାନଙ୍କୁ ଭରସା କରିଥାଉ । ଆଈର ପ୍ରବଳ ଦେହ ଖରାପ ହେଲା । ଅଶୀବର୍ଷ ଟପି ଗଲାଣି । ସେତେବେଳେ ମୁଁ ମେଟ୍ରିକ୍ ପରୀକ୍ଷା ଦେଇଥାଏ । ଚିକିତ୍ସା କରିବାକୁ ଅର୍ଥ ନଥାଏ । ଯଦିଓ ଆଈର ଏଇଟା ଶେଷ ଅବସ୍ଥା ବୋଲି ଆମେ ସମସ୍ତେ ଉପଲବ୍ଧି କରିଥିଲୁ, ତେବେ ଏ ସମୟରେ ତାକୁ ଭଲମନ୍ଦ ଖୁଆଇବାର ସାମର୍ଥ୍ୟ ନଥିଲା କି ତା'ର ବି ଶେଷ ସମୟରେ ଭଲ ମନ୍ଦ ପାଟିରେ ଦେବାର ଭାଗ୍ୟ ନଥିଲା । ସେ କେଉଁ ଜନ୍ମରେ କି ପାପ କରିଥିଲା କେଜାଣି ଆମ ସହିତ ଘାଣ୍ଟି ହେଇ ଶେଷ ଜୀବନ ଦୁଃଖ, ଦୈନ୍ୟ, ଅନାଟନରେ କଟାଇ ଦେଲା । କହିବାକୁ ଗଲେ ଆଉ କିଛି ବର୍ଷ ବଞ୍ଚିଥାନ୍ତା ବୋଧହୁଏ । ହେଲେ ଅନାହାର, ଅଚିକିତ୍ସାରେ ସେ ମରିଗଲା । ଆଈ ସତ୍ୟଜିତ ରାୟଙ୍କର ପଥେର ପାଞ୍ଚାଲୀର ଜେଜୀମା । ସେହିଭଳି ଟିପିକାଲ ଚେହେରା ସ୍ୱାସ୍ଥ୍ୟ । ପଥେର ପାଞ୍ଚାଲୀରେ ବୁଢ଼ୀମଲା ବେଳର ଦୃଶ୍ୟ ଦେଖିଲେ ମୋର ଆଈ କଥା ହିଁ ମନେପଡେ । ଏମିତି ବି ସମୟ ଥିଲା

ଭଲ ଭାବରେ ଶୁଦ୍ଧିକ୍ରିୟା କରିବାକୁ ଆମର ପଇସା ନଥିଲା । ପଥେର ପାଞ୍ଚେଲୀରେ ଦୁର୍ଗାକୁ ମଲାବେଳକୁ ଯେମିତି ଝଡ ଉଠି ଘର ଭାଙ୍ଗି ଯାଇଥିଲା ସେମିତି କୁଆଁରପୂର୍ଣ୍ଣମୀର ବର୍ଷା ରାତିରେ ଆମର କାନ୍ଥ ପଡିଯାଇଥିଲା । ଆଈ ଚାଲିପାରୁନଥାଏ । ସେ ବର୍ଷା, ବିଜୁଳି ରାତିରେ ବାପା ଆଈକୁ କାନ୍ଧରେ ଟେକି ନେଇ ଜଣକର ଚାଳିଆଘରେ ପହଞ୍ଚାଇ ଥିଲେ । ଆମେ ସମସ୍ତେ ବର୍ଷା ଜୁଡୁବୁଡୁ ହେଇ ଭିଜା ଲୁଗାରେ ରାତିସାରା ସେହି ସୁ ସୁ ପବନରେ ମେଲା ଚାଳିଆଘରେ ବସି ରହିଥିଲୁ । ଗୋଟେ ଗୋଟେ ସିନେମା ଦୃଶ୍ୟ, କାହାଣୀ ଜୀବନର ଯେ ଏତେ ନିକଟ ହେଇପାରନ୍ତି, ଏତେ ସତ୍ୟକୁ ଛୁଇଁ ଯାଇପାରନ୍ତି ଉପଲବ୍ଧ ନଥିଲେ ତାହା ଅନୁଭବ କରିହେବ ନାହିଁ । ୧୯୭୬ ମସିହା ଜୁନ୍‌ରେ ଆଈ ମରିଗଲା । ଆଉ ପଥେର ପାଞ୍ଚେଲୀ ସିନେମାଟି ଦେଖିବାର ସୁଯୋଗ ପାଇଲି ଟି.ଭିରେ ପ୍ରଥମକରି ୧୯୯୨,ମାର୍ଚ୍ଚ ମାସ ୨୪ ରାତିରେ । ସେତେବେଳେ ମୁଁ ଥିଲି ରାଉରକେଲା ସରକାରୀ ମହାବିଦ୍ୟାଳୟର ଅଧ୍ୟାପିକା । ଜୀବନ କେତେ ବଦଳି ଯାଇଥିଲା । କାହିଁ ୧୯୭୬ର ଜୀବନ ଆଉ କାହିଁ ୧୯୯୨ର ଜୀବନଯାପନ ପ୍ରଣାଳୀ । ହେଲେ ଟି.ଭିରେ ଏ ସିନେମାଟି ଦେଖି ଠପ୍ ଠପ୍ ହେଇ ମୋ ଆଖିରୁ ପାଣି ନିଗିଡି ପଡିଥିଲା । ମନେହେଲା ନାଁ, ମୋ ବାହାର ଦୁନିଆ ସିନା ବଦଳିଛି । ଭିତର କିଛି ବଦଳିନି । ଅବିକଳ ସେମିତି ସେ ଘା' କଞ୍ଚାଅଛି । ବାହାରେ ବକଳା ବାନ୍ଧିବାର ଯାହା ଛଳନା କରୁଛି । ମୁଁ ସେହିଦିନର ଇତିଲୀ ଯିଏ ଛିଣ୍ଡା ଫ୍ରକ୍ ପିନ୍ଧି ଓଳିଏ ଓପାସ ରହି ଡିବିରି ଆଲୁଅରେ ପାଠ ମୁଖସ୍ତ କରୁଥିଲା, ନିଜ ଗୋଡରେ ଠିଆ ହେବାର ସଂକଳ୍ପରେ ଦୃଢ଼ ହେଇଥିଲା । ଲେଖୁଲେଖୁ ମୂଳ ପ୍ରସଙ୍ଗଠୁ ଦୂରେଇ ଗଲିଣି । ହଁ, ଆଈ ଶୋଇଥାଏ ନିସ୍ତେଜ ହେଇ । ମୋ ସାନଭାଇ ସ୍କୁଲ ଯାଉଥାଏ ନୂଆହେଇ । ସେ ଆଈକୁ ହିଁ ଶେଷ ପର୍ଯ୍ୟନ୍ତ ମାଆ ବୋଲି ଜାଣିଥିଲା ଓ ମାଆ ମାଆ ଡାକୁଥିଲା ମଧ୍ୟ । ସେଦିନ ବାପା କାହାରିକୁ କୁଆଡେ ଛାଡି ନଥିଲେ । ଆମେ ତାକୁ ଘେରି ବସିଥାଉ । ମୁଣ୍ଡ ସାଉଁଳାଇ ଦେଉଥାଉ । ବାପାଙ୍କ ନିର୍ଦ୍ଦେଶରେ ମୁଁ ଚାମଚେ ଚାମଚେ ଗ୍ଳୁକୋଜ ପାଣି ତା' ପାଟିରେ ଦେଉଥାଏ । ତାକୁ ବି ଗିଳିବାକୁ କଷ୍ଟ ହେଉଥାଏ ଆଈକୁ । ବାପା ମୁଣ୍ଡ ପାଖରେ ବସି 'ଗୀତା' ପଢ଼ିବାକୁ ଲାଗିଥାନ୍ତି । ତାପରେ ଗଙ୍ଗାପାଣି ଆଣି କୈବଲ୍ୟ ମିଶାଇ ମୋତେ କହିଲେ ଦେ'ରେ ମାଆ । ସମୟ ସରି ଆସିଲା । ପାଟିରେ ଚାମଚେ ଚାମଚେ ଦେ । ବୋଧହୁଏ ଏଇ ଗଙ୍ଗା ପାଣି ଟିକକକୁ ଆଈ ଅପେକ୍ଷା କରିଥିଲା ନା କ'ଣ । ତାପରେ ହିକ୍‌କା ପରେ ହିକ୍‌କା ଉଠାଇଲା ଆଉ ଆଈ ଆଁ କରି ରହିଗଲା । ବାପା ଗୀତା ପଢ଼ା ବନ୍ଦ କରି ନାଡି ଦେଖିଲେ । ଆଖି ଦେଖିଲେ । ଛାତିରେ ହାତ ମାରିଲେ । ତାପରେ ଆଖି ଓ ପାଟି ମୁଦି ଦେଇ ଚାଦରଟା ମୁହଁରେ ଟାଣିଦେଲେ ।

ଆମେ ସମସ୍ତେ କଚାଡି ପଡିଲୁ ।

ଗୋଟେ ଗୋଟେ ଜୀବନ ଫେର ଏତେ ଅଭିଶପ୍ତ ଥାଏ ? ଆମକୁ ପାଳିବାକୁ, ମଣିଷ କରିବାକୁ, ବଞ୍ଚାଇବାକୁ ବୋଧହୁଏ ସେ ଆମ ଘରକୁ ଆସିଥିଲା । ନିଜେ ସେ କ'ଣ ପାଇଲା କେଜାଣି, ତେବେ ଆଈ ନଥିଲେ ମାଆ ପରେ ଆମେ ଭାସିଯାଇଥାନ୍ତୁ । ଆମର କକା, ଖୁଡୀ, ପିଉସା ପିଉସୀଙ୍କ ଛଡା ମାମୁଁ ଘର, ଜେଜେଘର ତରଫରୁ ଆଉ କେହି ଆତ୍ମୀୟ ନଥିଲେ । ଅଥଚ ସେମାନେ ହିଁ ଦୂର ଦୂର କଲେ । ମୁହଁକୁ ବି ଅନାଇଲେ ନାହିଁ । କାହାକୁ ନେଇ ଘରେ ପାଳିବା ତ ଦୂରର କଥା । ଆଈ ନିଜ ବୋହୂ ଠାରୁ କମ୍ ନିର୍ଯ୍ୟାତନା ସହିନାହିଁ । ଏକମାତ୍ର ପୁଅ ତାର କୁଆଡେ ଗଲା ଯେ କେହି କହି ପାରିଲେ ନାହିଁ । ଝିଅ ବି ତାରି ଆଗରେ ଆଖିବୁଜିଦେଲା । ଅସମୟରେ ଦିନେ ସେ ବିଧବା ହେଇଥିଲା । ଦିଅରମାନେ, ଜ୍ଞାତିକୁଟୁମ୍ବ ମାନେ ଟିପଚିହ୍ନ ନେଇ ତାର ସବୁ ସମ୍ପତ୍ତି ଲୁଟି ତାକୁ ବାହାର କରି ଦେଲେ । ପୁଣି ଆମ ଘରେ ଶେଷ ବେଳକୁ ଭଲ କରି ମୁଠାଏ ଖାଇବାକୁ ପାଇଲା ନାହିଁ । ନାତିନାତୁଣୀମାନଙ୍କୁ ମଣିଷ କରିବାର ଭାର ବୁଢ଼ୀ ବୟସରେ ମୁଣ୍ଡାଇବାକୁ ପଡିଲା । କୋଠାବାଡି ମାଲିକାଣୀ ସାଜିଥିବା ଆଈ ଶେଷ ଜୀବନରେ ଅତି ନିଃସ୍ୱ, ଅସହାୟ ଭାବରେ ଚାଲିଗଲା ।

ଆଉ ତା'ପରେ ? ଆଈ ଯାଗାରେ ମୁଁ ମାଆ ପାଲଟିଗଲି । ଘରର ସବୁ ଦାୟିତ୍ୱ ମୋ ଉପରେ ପଡିଲା । ଦିନ କାହାକୁ ଅପେକ୍ଷା କରିଛି ନା ଅଟକିଛି । ଦେଖୁଦେଖୁ ଶୁଦ୍ଧିକ୍ରିୟା ସରିଗଲା । ଆଈକୁ ହରାଇବାର ଦୁଃଖ, ତା' ବିନା ଘର ଖାଁ ଖାଁ ଲାଗିବା ସବୁକିଛି ଦେହସୁହା ପାଲଟିଗଲା । ତାପରେ ବାପା ଟ୍ୟୁସନ କରିବାକୁ ଆରମ୍ଭ କଲେ । କିଛିଦିନ ଭିତରେ ଛୋଟ ଛୋଟ ପିଲାଙ୍କର ଟ୍ୟୁସନ ମାଷ୍ଟର ହିସାବରେ ତାଙ୍କର ନାଁ ହେଇଗଲା । କେତେଜଣ ଅଧ୍ୟାପକ, ଇଞ୍ଜିନିୟରଙ୍କ ଘରକୁ ସେ ପଢ଼ାଇବାକୁ ଯାଉଥିଲେ । ଗ୍ରୁପ୍ ଟ୍ୟୁସନ ବି କରୁଥିଲେ । ଯେକୌଣସି ଉପାୟରେ ବଞ୍ଚିବାକୁ ତ ପଡିବ । ଯେତେ ଯାହାହେଲେ ବି ଆମ ପାଦତଳେ ମାଟି ଆଉ ମୁଣ୍ଡ ଉପରେ ତ ଆକାଶ ଅଛି । ଦୁଃଖ କ'ଣ ? ଆମଠାରୁ ବି ସଂସାରରେ ଆହୁରି ଅନେକ ଗରିବ ଅଛନ୍ତି । ଯେଉଁମାନଙ୍କର ଘର ନାହିଁ । ଫୁଟ୍‌ପାଥ କି ରେଲୱେ ଷ୍ଟେସନରେ ସେମାନଙ୍କୁ ଶୋଇବାକୁ ପଡେ । ପେଟପାଇଁ ଦ୍ୱାରେ ଦ୍ୱାରେ ଭିକ ମାଗିବାକୁ ପଡେ । ପୁଣି ଅନେକ ଛୋଟ ଛୋଟ ପିଲା ଅଛନ୍ତି ସେମାନଙ୍କର ବାପା ମା' ନାହାଁନ୍ତି । ଆହା ବୋଲି ପଦଟିଏ ସେମାନେ ଶୁଣି ନାହାଁନ୍ତି । କାହାକୁ ଅଇଁଠା ପ୍ଲେଟ୍ ଧୋଇବାକୁ ପଡେ ତ କିଏ ଟ୍ରେନ୍‌ର କୁଲି ସାଜେ । ପଢ଼ିବାର ସୁଯୋଗ କାହିଁ ? ଅନ୍ନ ଚିନ୍ତା ଚମତ୍କାର ନ୍ୟାୟରେ ଜୀବନ ଆରମ୍ଭ ହୁଏ ଆଉ ସେମିତି ବି ଶେଷ ହେଇଯାଏ ।

ଟିକିଏ ଟିକିଏ କଥାରେ 'ଶଳା' ଡାକ ସହ ଗୋଇଠା ମାଡ ମିଳେ । ସେ ତୁଳନାରେ ତ ଆମେ ବେଶ୍ ଭଲଅଛୁ । ବାପା ସବୁବେଳେ କହନ୍ତି, ତମେମାନେ ଉପରକୁ କାହିଁକି ଦେଖୁଛ ? ତମଠାରୁ କିଏ କେତେ ଭଲରେ, ସୁଖସମୃଦ୍ଧିରେ ଦିନ କାଟୁଛି ତାହା ଦେଖି କାହିଁକି ମନ ଊଣା କରୁଛ ? କାହିଁକି ଦେଖୁନା ତମ ତଳର ମଣିଷମାନଙ୍କୁ ? ସେମାନଙ୍କଠାରୁ ତ ତମେମାନେ ଭଲରେ ବଞ୍ଚୁଛ । ସେମାନେ ବି ତ ତମମାନଙ୍କୁ ଦେଖି ଦୁଃଖ କରୁଥିବେ । ଯିଏ ଯେଉଁ ଅବସ୍ଥାରେ ଥାଏ ସେ ସେହି ପରିସ୍ଥିତି, ସେ ପରିବେଶରେ ଖୁସି ହୁଏନା । ତା'ଠୁ କିଛି ଅଲଗା ଚାହେଁ, ଅଧିକା ଚାହେଁ ।

ସେଦିନ ମୋର ଆଖି ଖୋଲିଯାଇଥିଲା । ସତେତ ପୃଥିବୀରେ କାହାର କେତେ ପ୍ରକାରର ଦୁଃଖ, କେତେ ପ୍ରକାରର ସମସ୍ୟା । ବୋଧହୁଏ ମଣିଷ ଜୀବନଟା ଏଇୟା । ଏହାହିଁ ଥିଲା ମୋ ପ୍ରତିଭାର ଚାରାଭୂଇଁ । ମୋର ଅନୁଭୂତି ପ୍ରକାଶ ପାଇଁ ବାଟ ଖୋଜୁଥିଲା । ତାରି ଭିତରେ ବାପା ମୋର କେବେ ଯେ ପ୍ରେରଣା ପାଲଟିଗଲେ ଜଣାନାହିଁ ।

## ଦୁଇ

## ହାୟ ପିଲାଦିନ ! :

ମନେପଡେ - ରବୀନ୍ଦ୍ରନାଥଙ୍କ 'ମାନସସୁନ୍ଦରୀ' କବିତାରୁ ପଦେ -

'ବାରେ ବାରେ ଶୈଶବ କର୍ତ୍ତବ୍ୟ ହତେ
ଭୁଲାୟେ ଆମାରେ
ଫେଲେ ଦିଏ ପୁଥିପତ୍ର କେଡେନିଏ ଖଡି
ଦେଖାୟ ଗୋପନେ .. ।'

ସତରେ ପିଲାଦିନ, ସ୍ୱପ୍ନର, ଚଞ୍ଚଳତାର, ଚିତ୍ରିତ ପ୍ରଜାପତିର ଦିନ । ମୁଗ୍ଧ ବିଭୋରତାର ଦିନ । ସୁନେଲି ଛନଛନ କଅଁଳିଆ ସକାଳର ଦିନ । ଛନ୍ଦ ନାହିଁ, କପଟ ନାହିଁ । ହରିଣ ଭଳି ଚଞ୍ଚଳ ଆଉ ସବୁଜ ପାହାଡ ଭଳି ସୁନ୍ଦର । ମିଛିମିଛିକା ବାଲିରେ ଭାତଡାଲି ରନ୍ଧା, କଣ୍ଢେଇ ବାହାଘର । ମିଛମିଛିକା ବରକନିଆ ଖେଳ । ବାଲିରେ ଦେଉଳ ତୋଳାର ନାଁ ପିଲାଦିନ । ପୁଚିଖେଳ, ଡୁଡୁମା, ବୋହୂଚୋରୀ ଖେଳର ନାଁ ପିଲାଦିନ । କୌତୂହଳ, ଅସଂଖ୍ୟ ପ୍ରଶ୍ନର ଲହଡି ଆଉ କେତେଜଣ ଆଈମା କାହାଣୀ, ଭୂତ ପ୍ରେତର ଖଣିର ଗନ୍ତାଘର ହେଲା ପିଲାଦିନ ।

କିନ୍ତୁ ମୋ ଜୀବନରେ ସ୍ମରଣୀୟ ହେଲାଭଳି, ମନେ ପକାଇଲା ଭଳି ସେ ପିଲାଦିନ କାହିଁ ? ନିର୍ବୋଧ ବୟସରେ ହରାଇଥିଲି ମୋର ପ୍ରିୟ ସାନଭାଇକୁ । ଯେତେବେଳେ

ଧୂଳିଖେଳର ବୟସ ଥିଲା ସେତେବେଳେ ମା' ଚାଲିଗଲା, ଚକାଚକାଭଉଁରୀ ମାମୁଘର ଚଉଁରୀ କହିଲା ସମୟରେ ମୁଁ ମୋ ସାନଭାଇକୁ କାଖେଇ, ସାନଭଉଣୀର ହାତଧରି ମୋ ବୟସର ଖୁସିଖୁସିର ଚେହେରାକୁ ଚାହିଁ ରହୁଥିଲି । ବାଲି ଦେଉଳ ତୋଳିବା, ମିଛି ମିଛିକା ଭାତ, ତରକାରୀ ରାନ୍ଧିବା ବୟସରେ ମୁଁ ସତ ସତ ଭାତ ତରକାରୀ ରାନ୍ଧିବା ଆଈଠାରୁ ଶିଖୁଥିଲି । କେବେ ପେଜ ପଡି ହାତ ଫୋଟକା ହୋଇଯାଉଥିଲା ତ କେବେ ଧୂଆଁରେ ଆଖି ପୋଡି ପାଣି ନିଗିଡି ପଡୁଥିଲା । କେବେ ଅଧାପେଟରେ ପିଲାଦିନ କଟୁ ଥିଲା ତ କେବେ ମଶା, ଓଡ଼ିଶଙ୍କ କାମୁଡା ଭିତରେ ପିଲାଦିନ ଛଟପଟ ହେଉଥିଲା ।

ହାୟ, ନିଷ୍ଠୁର ପିଲାଦିନ, କେତେ ସଅଳ ଚାଲିଗଲା । ନା' ଧୂଳିରେ ଫ୍ରକ୍ ବୁଡିଛି ନା ପ୍ରଜାପତି ପଛରେ ଧାଇଁଛି । ଅବହେଳା ଆଉ ଦାୟିତ୍ୱ ଭିତରେ ପିଲାଦିନ ଚାଲିଗଲା ଆଉ ମୁଁ କିଶୋରୀ ବୟସରେ କେବେ ଯେ ପାଦ ଦେଲି ଜାଣିପାରିଲି ନାହିଁ ।

ମୋର ଅଝଟ ହେବା ସମୟରେ ହିଁ ମୁଁ ସାନଭଉଣୀଙ୍କର ଅଝଟପଣକୁ ସମ୍ଭାଳିଛି । ମୋ ବୟସର ଝିଅକୁ ତାଙ୍କ ବାପା ମା' ବୁଝାଇ ନାନାବାୟା ଗୀତ ଗାଇ ଶୁଆଇ ଦେଲାବେଳକୁ ମୋର ଛୋଟ ଭାଇକୁ କୋଳରେ ପକାଇ ମୁଁ ଗୀତ ଗାଇ ଶୁଆଇ ଦେଇଛି । ଆଜି ବି ସେଦିନ ଆଖିରେ ନାଚି ଯାଉଛି । ଗୋଡ ଲମ୍ବାଇ ତା'ଉପରେ ସାନଭାଇଟିକୁ ଶୋଇଛି । ସାନଭଉଣୀ ରୀତା ମୋ ପାଖରେ ବସି ଜୁଳୁଜୁଳୁ ଅନାଇଛି ଆଉ ମୁଁ ସେମାନଙ୍କୁ ପରି ରାଇଜର କାହାଣୀ, ଅସୁର ଅସୁରୁଣୀ,ରାଜକୁମାରୀ, କଲୁରୀ ବେଙ୍ଗର କାହାଣୀ ଶୁଣାଉଛି । ସେମାନଙ୍କର ଆଖି ବଡ ବଡ ହେଇଯାଉଛି । ଶୋଇଶୋଇ ଶୁଣୁଥିବା ସାନଭାଇ ବାବୁ ଭୟରେ ମୋତେ ଭିଡି ଧରୁଛି । ମୁଁ ସତେ କି ସେହି ମୁହୂର୍ତ୍ତରେ ଖୁବ୍ ବୟସ୍କା, ଅଭିଜ୍ଞା ନାରୀଟିଏ ପାଲଟି ଯାଇଛି । ସେମାନଙ୍କୁ ଆକାଶର ତାରା ଦେଖାଉଛି । ଜହ୍ନମାମୁ ସମ୍ପର୍କରେ କପୋଳକଳ୍ପିତ କାହାଣୀମାନ ଯୋଡୁଛି ।

ରୀତା ପଚାରୁଛି, ସମସ୍ତଙ୍କର ମାଆ ଅଛନ୍ତି, ଆମର ନାହିଁ କାହିଁକି ?

- ଆମ ମା' ପରା ଆକାଶର ତାରା ହେଇ ଯାଇଛି !

- ଆମେ ତା' ପାଖକୁ ଯାଇପାରିବାନି ? ସାନଭାଇ ଦରୋଟି ଭାଷାରେ ପଚାରୁଛି । ମୁଁ ଉତ୍ତର ଦେଇ ପାରୁନି । ମା' ଯେ ସବୁଦିନ ପାଇଁ ଗାଈ ଚରେଇ ଯାଇଛି । ସେ କ'ଣ ବଉଳା ଗାଈ ହେଇଛି ଯେ ବାଘ ମୁହଁରୁ ଫେରିବ ? ସତରେ କାହିଁକି ଗଲା ଯେ ? ଆଈ ଥିଲା ମାଆ ଯିବାର ଦୁଃଖ ବାଧୁ ନଥିଲା । ସେ ବି ଦିନେ ଆମକୁ ଛାଡି ଚାଲିଗଲା ପୁଣି ମୋତେ ହିଁ ଆଈ ସଜେଇ, ମାଆ ଭୂମିକାରେ ରଖି । ଅବର୍ତ୍ତମାନରେ ଘର ମାଡି ପଡିଲେ ବି ମୁଁ ନଡରିବାର ଭାବ ଦେଖାଉଥିଲି । କଞ୍ଚା ଲୁଣିଆ ପୋଡା ଯାହାପାରୁଥିଲି ରାନ୍ଧୁଥିଲି ।

ଅନଭ୍ୟସ୍ତ ହାତରେ ଲୁଗା ବଦଳାଇ ସଞ୍ଜ ଦେଉଥିଲି । ନିଜର ପଢ଼ା କାମ ସାରୁଥିଲି । କେବେ ଓପାସ ଭୋକରେ ଆମେ ଭାଇଭଉଣୀ ଚାରିହେଁ ଶୋଇ ଯାଉଥିଲୁ । ବାପା ରାତିରେ ବଜାରରୁ ଫେରି ଆମକୁ ଉଠାଉଥିଲେ ।

ଆଜି କନ୍‌ଭେଣ୍ଟ୍ କି ପବ୍ଲିକ୍ ସ୍କୁଲରେ ପଢୁଥିବା, ସ୍କୁଲ ବସ୍‌ରେ ୱେଲ ଡ୍ରେସ୍ ହୋଇ ଯାଉଥିବା ପିଲାମାନଙ୍କୁ ଦେଖିଲେ ମୁଁ ମୋର ପିଲାଦିନକୁ ଅଣ୍ଡାଳି ବସେ । ଏପରିକି ମୋ ପୁଅକୁ ସେଣ୍ଟ୍ରାଲ ସ୍କୁଲକୁ ଟିପ୍‌ଟପ୍ କରି ଛାଡୁଥିଲା ବେଳେ ନିଜକୁ ସେଇଠି ରଖି ନିଜ ଭିତରର ଶୂନ୍ୟତାକୁ ଅଣ୍ଡାଳି ବସେ । ଏ ବୟସରେ କେମିତି ଏକ ହାହାକାର ଉଠେ । ଭାବେ ପୁଣିଥରେ ପିଲାଦିନ ଫେରି ଆସନ୍ତା କି ? ମୋର ଯେ ଅନେକ କିଛି କରିବାର ବାକି ରହିଯାଇଛି ।

କଣ୍ଢେଇ ବାହାଘର,

ବାଲିରେ ଦେଉଳତୋଳା

ପ୍ରଜାପତି ପଛରେ ଧାଇଁବା, ବର୍ଷାରେ ଜୁଡୁବୁଡୁ ହୋଇ ଭିଜିବା, ପାଣି ସୁଅରେ କାଗଜଡଙ୍ଗା ଭସା, କୋଇଲିକୁ ଖତେଇ ହେବା, ଧୂଳିଖେଳ, ସାଙ୍ଗସାଥୀ, ନଡିଆ ସଢ଼େଇରେ ମିଛମିଛିକା ଭାତ ରାନ୍ଧିବା । ଜହ୍ନମାମୁର ଗୀତଗାଇ ମାଆ କାନ୍ଧରେ ଘୁମେଇ ପଡିବା ।

ଏ ଜୀବନରେ ଆଉ ସେଦିନ ଫେରିବନି ମୁଁ ଜାଣେ । ତଥାପି କାହିଁକି କେଜାଣି ଯାହା ନହେବ, ଯାହା ନ ମିଳିବ ତା' ପାଇଁ ହିଁ ମନ ଝୁରେ । ବ୍ୟାକୁଳ ହୋଇ ଉଠେ । ସତରେ କଣ ପୁନର୍ଜନ୍ମ ଅଛି ? କେଜାଣି । ଯଦିଥାଏ ସତରେ କ'ଣ ଆଉଥରେ ଏ ଜନ୍ମର ଅବଶୋଷକୁ ମେଣ୍ଟାଇବା ପାଇଁ ପୁଣିଥରେ କୁନିଝିଅ ହୋଇ ଜନ୍ମହେବାର ଇଚ୍ଛା କରିଥାନ୍ତି ? ପିଲାଦିନକୁ ଫେର ଘୋଡି ଘାଡି ହୋଇ ତା' ଭିତରୁ ଉଷୁମ ଟାଣିଥାନ୍ତି । ମୋର ଗୋଟାଏ ଘଟଣା ମନେପଡେ ।

ପିଉସୀପୁଅଙ୍କ ବାହାଘରକୁ ଭାଇ, ମୁଁ ଆମଘରୁ ଯାଇଥିଲୁ । ଆମର ଭଲ ଡ୍ରେସ୍ ନଥିଲା ପିନ୍ଧିବାକୁ । ବାହାଘରରେ ଆମକୁ କେହି ପଚାରୁନଥାନ୍ତି । ମୁଁ ଏକ ପୁରୁଣା ଫ୍ରକ୍ ପିନ୍ଧିଥାଏ ଯେ ନୂଆ ଚକ୍‌ଚକ୍ ଡ୍ରେସ୍ ପିନ୍ଧୁଥିବା ପିଲାମାନେ ମୋତେ ମିଶାଉନଥାନ୍ତି । ଭାଇର ବି ସେହି ଅବସ୍ଥା । ସେତିକିବେଳେ ମୁଁ ଭାଇକୁ କହିଥିଲି ଆମେ ନ ଆସିଥିଲେ ଭଲ ହୋଇଥାନ୍ତା ନା ? ଭାଇ ଏତେବେଳେ ଯାଏଁ ଠିଆହୋଇ ଥିଲା । ମୋ କଥାଶୁଣି କାନ୍ଦକାନ୍ଦ ହୋଇଗଲା । ଅନ୍ଧାରରେ ଆମେ ଦୁହେଁ ଅନେକ କାନ୍ଦିଲୁ ଆଉ କଥା ହେଲୁ ଆମେ ବଡ ଗରିବ ନା ? କାହିଁକି ଆମେ ଗରିବ ହେଲୁ ? ଆମର କାହିଁକି ଅନ୍ୟମାନଙ୍କ

ଭଳି ସୁନ୍ଦର ସୁନ୍ଦର ଡ୍ରେସ୍ ନାହିଁ ? ଆମର କାହିଁକି ମାଆ ନାହିଁ ?

ଆସି ବାପାଙ୍କୁ ସେହି କଥା ପଚାରିଥିଲି, ବାପା ଆମର କାହିଁକି ଚକ୍‌ଚକ୍ ଡ୍ରେସ୍ ନାହିଁ ? ସୁନ୍ଦର କୋଠାଘର ନାହିଁ ? ଗାଡି ମଟର ନାହିଁ ? ବାପା ସମସ୍ତେ ତାଙ୍କ ଗେଟ୍ ପାଖରେ କୁକୁରକୁ ସାବଧାନ ଲେଖିଛନ୍ତି, ଆମର କୁକୁରଟେ ନାହିଁ କାହିଁକି ?

ସେଦିନ ବାପା ଏତେ କାହିଁକିର ପ୍ରଶ୍ନବାଣରେ ବିରକ୍ତ ହୋଇ ପଡିଥିଲେ । କହିଥିଲେ, ତମେ ସବୁ ଯେତେବେଳେ ବଡ ହୋଇଯିବ ଆପେ ଆପେ ଏହି କାହିଁକିର ଉତ୍ତର ପାଇଯିବ ।

ସତ କହିଥିଲେ ବାପା । ବୟସ ହେଲାପରେ ନିଜପ୍ରଶ୍ନର ଉତ୍ତର ଛାଏଁ ଛାଏଁ ମିଳିଯାଇଥିଲା । ବୁଝିଥିଲି ସେସବୁ ପ୍ରଶ୍ନ କେତେ ଅବାନ୍ତର ଥିଲା । ସେହି ସବୁ ଅବୁଝା ଅଝଟ ପ୍ରଶ୍ନ ବାପାଙ୍କୁ କେତେ କ୍ଷତାକ୍ତ କରିନଥିବ । ଭିତରେ ଭିତରେ କେତେ ଆଘାତ ଦେଇନଥିବ ।

ପିଲାଟିଦିନରୁ ସେଥିପାଇଁ ଧନୀ ଲୋକଙ୍କ ପ୍ରତି ଆମ ମନରେ କେମିତି ଗୋଟାଏ ଅଦ୍ଭୁତ ଧାରଣାମାନ ଜନ୍ମ ନେଇଛି । ସେମାନଙ୍କ ପ୍ରତି ଛାତ ଛାତ ଅସୂୟା ଭାବଟେ ମନ ଭିତରେ ରହିଯାଇଛି । ମୋ ବ୍ୟକ୍ତିଗତ ଅନୁଭୂତିରୁ ମୁଁ ଜାଣିଛି, ଦାରିଦ୍ର୍ୟ ହେଉଛି ମଣିଷପାଇଁ ସବୁଠାରୁ ବଡ ଅଭିଶାପ । ଯେ ଗରିବ ତା'ର ଜୀବନରେ ସଂଘର୍ଷର ଶେଷନାହିଁ । ଅନ୍ନ ଚିନ୍ତା ଚମକ୍ରାର ନ୍ୟାୟରେ ଜୀବନ ସରିଯାଏ । ବିଶିଷ୍ଟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ଠିକ୍ କହିଥିଲେ, କ୍ଷୁଧା ଯେଉଁଠି ଏକ ଆଦର୍ଶ, କ୍ଷୁଧା ସେଠି ଆର୍ଟ, ମାତ୍ର କ୍ଷୁଧା ଯେଉଁଠି ବାସ୍ତବ, କ୍ଷୁଧା ସେଠି ବୀଭତ୍ସ ।'

ଏହି ବୀଭତ୍ସ କ୍ଷୁଧାର ସାମ୍ନା ମୁଁ କରିଛି । ସେହି ଦାରିଦ୍ର୍ୟ ଅଙ୍ଗେ ଅଙ୍ଗେ ନିଭାଇଛି । ପିଲାଦିନ ଅସଜଡା, ଅଭାବରେ କଟିଯାଇଛି । ତଥାପି ଗୋଟାଏ ଶିକ୍ଷା ମିଳିଛି, ଅନ୍ଧାର ପରେ ଆଲୁଅ ଆସେ । ଆଉ ଅନ୍ଧାରର ଅନୁଭୂତି ନ ହୋଇଥିଲେ ବୋଧହୁଏ ଅଳ୍ପବୟସରୁ ମୁଁ ଜଣେ ଅଭିଜ୍ଞ ଲେଖିକା ହୋଇପାରି ନଥାନ୍ତି । ଏହି ତେଲଲୁଣର ସଂଗ୍ରାମ ହିଁ ମୋତେ ଜୀବନର ତିକ୍ତତା, ବାସ୍ତବତା ସମ୍ପର୍କରେ ବୁଝାଇ ପାରିଛି । ପିଲାଦିନର ଅନେକ କିଛି ହରାଇ ଦେବାର ଅଭାବବୋଧ ହିଁ ମୋ ଭିତରେ ରଚନା କରିବାର ପ୍ରେରଣା ଯୋଗାଇଛି । ଯାହା କାହା ଆଗରେ ପ୍ରକାଶ କରି ହୁଏନା ତାକୁ ମୁଁ ମୋ ଲେଖାରେ ପ୍ରକାଶ କରିଛି । ମନର ବ୍ୟଥା, କୋହ ଯେତେବେଳେ ମୋ ଭିତରେ ଢ଼େଉ ସୃଷ୍ଟି କରିଛି, ସେତେବେଳେ ସେସବୁକୁ ମୁଁ ମୋ ଚରିତ୍ରର ମାନସିକତାରେ ରୂପ ଦେଇଛି । ମୋ ଗପରେ ଯେଉଁ ଟିକି ଝିଅର ଚରିତ୍ର ଆସିଛି ଓ ତା' ଭିତରେ ଯେଉଁ ବହୁ କାହିଁକିର ପ୍ରଶ୍ନବାଚୀ ମୁଁ ଦେଇଛି, ଏକ

ଅଝଟ ଝିଅ ସମ୍ପର୍କରେ, ଝିଅର ନାଁ ମୁନ୍‌ମୁନ୍ କୁନିଝିଅ, ପ୍ରଜାପତି ଆଉ କାରଗିଲ୍‌ର ମାଟି ପ୍ରଭୃତି, ତାହା ମୋ ପିଲାଦିନର କୌତୂହଳ ମାତ୍ର । ମୁଁ ନିଜେ ଦିନେ ଅଝଟ ଝିଅ ଥିଲି କିନ୍ତୁ ମୋ ଅଝଟପଣକୁ ବୁଝିବା ଓ ମୋ ପ୍ରଶ୍ନର ଉତ୍ତର ଦେବାକୁ ବାପାଙ୍କ ଛଡା ମୋର କେହି ନଥିଲେ । ଏତେ ବଡ ସଂସାରରେ ମୁଁ ମୋ ବାପାଙ୍କୁ ଯେତେ ଭଲ ପାଇଛି, ଯେତେ ନିବିଡ ଆତ୍ମୀୟତାରେ ବାନ୍ଧି ହେଇ ଯାଇଛି ସେମିତି ଆଉ କାହାକୁ ପାଇନାହିଁ କି ଭେଟି ନାହିଁ । ସଂସାରଟା ବେଳେବେଳେ ମୋ ପାଇଁ ବାପାମୟ ହେଇଯାଏ । ତାଙ୍କର ଉଦାସ ଚେହେରା, ଛଳଛଳ ଆଖି, ଟାଆଁସିଆ ପାଚି ଆସୁଥିବା ବାଳ, ଅକାଳ ବାର୍ଦ୍ଧକ୍ୟ, ଦୁର୍ବଳ ଲମ୍ବା ଦେହ ସହିତ ଚେହେରାର ଅସହାୟତା ଏଭଳି ଛବିଟେ ଆଉ କେଉଁ ମଣିଷ ଭିତରେ ପାଇନାହିଁ ।

କେତେ ଲାଞ୍ଛନା, ଅପମାନର ସେ ସାମ୍ନା କରି ନାହାଁନ୍ତି ! କେତେ ପ୍ରତାରଣାର, ଛଳନାର ସେ ଶିକାର ହେଇନାହାଁନ୍ତି ! ତଥାପି ଦିନଟିଏ ତାଙ୍କ ମୁହଁରେ କାହାରି ପ୍ରଶଂସା ଛଡା ନିନ୍ଦା ଶୁଣି ନାହିଁ । କେବେ କାହାରି ଅମଙ୍ଗଳ କାମନା କରିନାହାଁନ୍ତି । ପରମଶତ୍ରୁ ହେଲେ ବି ତାକୁ ପଚାରିବେ, ବାପାରେ କେମିତି ଅଛୁ ? ଆଉ ସବୁ ଭଲ ତ ? ସାଇପଡିଶା ଯାହାର ବି ଦେହ ଖରାପ ହେଲା, କିଏ ଚମକିଲା, କାହାପିଲା ଶୋଉନାହିଁ, ଦିନରାତି କାନ୍ଦୁଛି, ଖାଇନାହିଁ ଇତ୍ୟାଦି ପାଇଁ ସେ ମାଗଣାରେ ଲୁଣ ମନ୍ତ କରି କ'ଣ ଯେ କରୁଥିଲେ ଆଶ୍ଚର୍ଯ୍ୟ କଥା ତାହା ଭଲ ହେଇଯାଉଥିଲା । ତେଣୁ ଦିନରେ, ରାତିରେ ଆମ ଘରେ ଭିଡ । ଶୀତ କି ବର୍ଷା ରାତିରେ କେହି ଡାକୁ, ସେ ନିଜେ ଅସୁସ୍ଥ ହେଲେ ହେଁ ମନା କରନ୍ତି ନାହିଁ । ପରର ଉପକାରରେ ତାଙ୍କର ତୃପ୍ତି । ଅଥଚ ନିଜେ ଜୀବନରେ କ'ଣ ପାଇଲେ । ଯୌବନାବସ୍ଥାରେ ସ୍ତ୍ରୀ ଚାଲିଗଲା । ସାନପୁଅର ନିର୍ଜୀବ ଦେହକୁ କାନ୍ଧେଇ ସେ ମଶାଣିରେ ପୋତି ଦେଇ ଆସିଲେ । ନିଜର ସବୁଠାରୁ ପରମ ପ୍ରିୟ ଦୁଇଭାଇ ଯାହାଙ୍କୁ କୋଳେଇ କାଖେଇ ମଣିଷ କରିଥିଲେ ଅଣ୍ଟିଛୁରି ସାଜି ତଣ୍ଟିକାଟିଲେ । ଅପମାନ ଦେଲେ । ବାରମ୍ବାର ଲାଞ୍ଛନା ଦେଲେ । ଘୃଣା କଲେ । ତଥାପି ଦିନେ ସେ ସେହି ଭାଇମାନଙ୍କର ଅମଙ୍ଗଳ ହେଉ ବୋଲି ଅଭିଶାପ ଦେଇ ନାହାଁନ୍ତି । ବରଂଚ କହିଛନ୍ତି ସେମାନ ଭଲରେ ରୁହନ୍ତୁ । ଆମକୁ ଦୁଃଖର ସାମ୍ନା କରିବାକୁ ବୁଝାଇଛନ୍ତି । ... ଠିକ୍ କହିଥିଲେ,....ଜୀବନର ଘାତପ୍ରତିଘାତ ତାଙ୍କୁ ବୟସଠାରୁ ଅଧିକ ବୁଢ଼ା କରିଦେଇଛି । ବେଳେ ବେଳେ ଭାବେ ବାପା ଯେଉଁଦିନ ଏକାକରି ଚାଲିଯିବେ, ସେହିଦିନ ମୁଁ ସମ୍ପୂର୍ଣ୍ଣ ସାହାରାହୀନା ହେଇଯିବି । କିଏ ଲେଖିବ 'ମା'ରେ କେମିତି ଅଛୁ ? ଦେହପା, ଜଗି ଚଳିବୁ ? ପ୍ରତି ସପ୍ତାହରେ ମୋ ପାଖକୁ ଖଣ୍ଡିଏ ଚିଠି ଲେଖୁଥିବୁ ।' ମୋ ଦେହପା କିଛି

ହେଲେ ବାରିପଦାରେ କିଏ ଆଉ ଅସ୍ଥିର ହେବ, ଭଗବାନଙ୍କୁ ଡାକିବ, ଅମ୍ବିକା ମନ୍ଦିର ଯାଇ ଭୋଗ ଲାଗାଇବ ? ମୋ ପାଇଁ ଆହା ପଦ ଉଠିଯିବ ।

ଦିନେ ନା' ଦିନେ ଏମିତି ଦାରୁଣ ଖବର ମୋ ପାଖରେ ପହଁଞ୍ଚିବ ମୁଁ ଜାଣେ । କେମିତି ମୁଁ ତା'ର ସାମ୍ନା କରିବି ବୋଲି ବିଚଳିତ ହେଇଯାଏ । ଲୁହ ତ ବରଫ ହେଇ ଯାଇଥିବ । ହୃଦୟକୁ ପଥର କରିଦେବି ? ବିରହର ଏତେବଡ ଧକ୍‌କା କେମିତି ସହିବି ମୁଁ ? କେମିତି ? ତା'ପରେ ଅବଶିଷ୍ଟ ଜୀବନ ବାପାଙ୍କ ବିନା ବଞ୍ଚି ରହିବାକୁ ପଡିବ ମୁଁ ଜାଣେ । ସେମିତି ରାତି ପରେ ସକାଳ, ସକାଳ ପରେ ରାତି ହେଉଥିବ । କିନ୍ତୁ ମୋ ଭାବର ପୃଥିବୀ ଖାଁ ଖାଁ ଟାଙ୍ଗରା ଭୂଇଁ ପାଲଟି ଯାଇଥିବ । ତେଣୁ ଭଗବାନଙ୍କୁ ଡାକେ ମୋତେ ତମେ ଧୈର୍ଯ୍ୟଦିଅ, ଶକ୍ତି ଦିଅ ପ୍ରଭୁ । ସତ୍ୟର ସାମ୍ନା କରିବା ଲାଗି ମନ ବଳ ଦିଅ । ପୁଣି ଭାବେ ବାପା ମୁଁ ବଞ୍ଚିଥିବା ଯାଏଁ ବଞ୍ଚି ରହନ୍ତେ ଯଦି । ଆହା ! ବାପା ଥରେ ଜାଣନ୍ତେ କି ମୁଁ ତାଙ୍କୁ କେତେ ଭଲପାଏ ବୋଲି । ତାଙ୍କ ସ୍ଥାନ ମୋ ପାଖରେ କ'ଣ ବୋଲି । ସେ ଥରେ ବୁଝି ପାରନ୍ତି କି ମୋ ପାଇଁ ସେ ପୃଥିବୀ ପାଲଟି ଯାଇଛନ୍ତି । ମୋ କଲମର ପ୍ରେରଣା ହେଇ ଠିଆ ହେଇଛନ୍ତି ବୋଲି ।।

## ତିନି

## ସ୍ମୃତିର କାଗଜ ଡଙ୍ଗା ମୋ ଜୀବନ :

ସ୍ମୃତି ଏକ କବିତାର ନାଁ
ସ୍ମୃତି ଏକ ଝିଅର ନାଁ
ସ୍ମୃତି ଏକ ଟିକି ଘରଚଟିଆର ନାଁ
ସ୍ମୃତି ଦୁବଘାସ ଉପରେ ପଡିଥିବା ରୂପା ଶିଶିର ନାଁ
ସ୍ମୃତି ଯେବେ ଅଳସ ଭାଙ୍ଗି କର ଲେଉଟାଏ
ଚାହିଁଦେଲେ ମୁଁ ପରିପୂର୍ଣ୍ଣା ନାରୀ ପାଲଟି ଯାଏ
ଆଉ ଯେବେ ସ୍ମୃତି ଉପରେ ଧୂଳିର ପରସ୍ତ ପଡେ
ମୁଁ ଧୀରେ ଧୀରେ ରଙ୍ଗଛଡା କାଗଜଫୁଲ ସାଜି
ନିଜକୁ ହିଁ ଖୋଜି ହେଉଥାଏ...

ହଁ, ସ୍ମୃତି କେବେ କାଗଜଡଙ୍ଗା ପାଲଟିଯାଇ ଅତୀତର ଫର୍ଦ୍ଦ ଖୋଲିଦିଏ । ଜୀବନରେ ସେହି ସଂଘର୍ଷମୟ ଦିନସବୁ ଯେତେବେଳେ ମନେପଡେ ସେତେବେଳେ ବି ମନ କହେ, ଆହା ! ଯେତେ ଯାହା ହେଲେ ବି ସେଦିନ ସବୁ ସତରେ ଭଲଥିଲା । ସୁନ୍ଦର ଥିଲା ।

ସେ ଯାହାହେଉ ମୁଁ ଦିନେ ପାଠପଢ଼ି ଶିକ୍ଷାର ସର୍ବୋଚ୍ଚ ଡିଗ୍ରୀ ହାସଲ କରିବି, ସ୍ୱପ୍ନ ମୋର ସତ ହେବ କେବେ ଭାବିନଥିଲି । ଏହି କ୍ଷେତ୍ରରେ ମୁଁ ଭାଗ୍ୟର ବିଶ୍ୱାସ କରେ । ବିଶ୍ୱାସ କରେ ନିଷ୍ଠା ଓ ସାଧନାକୁ । ଏକାଗ୍ର ସାଧନା ଥିଲେ ଯିଏ ଯେଉଁ ଅବସ୍ଥାରେ ଥାଉନା କାହିଁକି ନିଶ୍ଚିନ୍ତ ଭାବେ ସେ ଲକ୍ଷ୍ୟସ୍ଥଳରେ ପହଞ୍ଚିପାରିବ । ଏହା ମୋ ଅନୁଭୂତିର କଥା । ମୋ ଅଙ୍ଗେଲିଭା ବକ୍ତବ୍ୟ ।

ପଞ୍ଚମ ଶ୍ରେଣୀରୁ ଦିନେ ମୋର ପାଠପଢ଼ା ବନ୍ଦ ହେବାକୁ ବସିଥିଲା । ପୁଣି ସେହି ପଞ୍ଚମରେ ପଢ଼ିଲା ବେଳେ ମୋତେ ବାହାଦେବେ ବୋଲି ବାପା ବର ଠିକଣା କରିଥିଲେ । ଜଣେ କିଏ ଫେର-ଦେଖି ଆସିଥିଲା, ଯାହାର ସ୍ତ୍ରୀ କୁଆଡେ ମରିଯାଇଥିଲା । ମୁଁ କାନ୍ଦିଥିଲି ମୁଣ୍ଡବାଡେଇ । ସେଇଠୁ ସେ ପ୍ରସଙ୍ଗ ବନ୍ଦ କରାଯାଇଥିଲା । ଯେତେବେଳେ ପ୍ରଥମ ଶ୍ରେଣୀରେ ନାଆଁ ଲେଖାଗଲା । ମୋର ନାଁ 'ମ' କିମ୍ବା 'କ' ରେ ରଖିବାକୁ କୁଆଡେ ଜ୍ୟୋତିଷ କହିଥିଲେ । ତେଣୁ ବାପା ପଚାରିଥିଲେ ତୋ ନାଁ ମିନତି ରଖିବା ନା କବିତା ? ମୁଁ କୁଆଡେ ଚଟ୍ କରି କହିଥିଲି, ନା..ନା ମୋ ନାଁ କବିତା ରଖ । ସେତେବେଳେ କବିତାର ଅର୍ଥ ଜାଣି ନଥିଲି । ପ୍ରଧାନଶିକ୍ଷକ ହସି ହସି କହିଥିଲେ, ଖାଲି ନାଁ ରଖିଲେ ହେବନାହିଁ ମା, ନାଁର ସାର୍ଥକତା ବି ଅର୍ଜନ କରିବାକୁ ହେବ । ଏକଥା ବାପା ହସିହସି ଅନେକଥର କହନ୍ତି । ଅଥଚ କବିତାରେ ନାଁ ନକରି ଲେଖିଲି ଗଳ୍ପ । ପାଠ ପଢ଼ିବାର ଝୁଙ୍କ୍ ମୋର ପିଲାଦିନରୁ ହିଁ ଥିଲା । ଭଲ ପଢୁଥିଲି ଓ କ୍ଲାସରେ ଫାଷ୍ଟ୍ କି ସେକେଣ୍ଡ ହେଉଥିଲି । ଭାଗ୍ୟ ଭଲ ପଞ୍ଚମ ଶ୍ରେଣୀରେ ବୃତ୍ତି ଗଲି ଓ ବୃତ୍ତି ପାଇଲି । ସାର୍, ବାପାଙ୍କୁ ବୁଝାଇଲେ ପାଠପଢ଼ା ବନ୍ଦ କରନି । ଷଷ୍ଠ, ସପ୍ତମ ପଢ଼ିବାର ସୁଯୋଗ ମିଳିଲା । କିନ୍ତୁ ଭାଗ୍ୟ ପୁଣି ଅନୁକୂଳ ହେଲା । ସପ୍ତମରେ ବୃତ୍ତି ପାଇଲି । ମ୍ୟାଟ୍ରିକ୍ ପାଇଁ ପାଠ ପଢ଼ିବାର ବାଟ ଫିଟିଗଲା । ତେବେ ବହି ନଥିବାରୁ, ସ୍କୁଲ ଡ୍ରେସ୍ ଠିକ୍ ସମୟରେ କରି ନପାରିବାରୁ କେତେ ଥର ଖରାରେ ଠିଆ ହେଇଛି । କେତେଥର ଗୋଡି ଉପରେ ଆଣ୍ଠେଇଛି । କ୍ଲାସରୁ ବାହାର କରି ଦିଆଯାଇଛି ତ ବେଞ୍ଚ ଉପରେ ଠିଆ ହେଇଛି । ସେତେବେଳେ ମୋରି ଭଳି କେତେଜଣଙ୍କୁ ଅନ୍ୟ ପିଲାମାନେ ସର୍କସରେ ଜୋକର ଦେଖିଲା ଭଳି ଚାହିଁ ରହୁଥିଲେ । ବଡ ଲାଜ ମାଡୁଥିଲା ।

ଏମ୍.ଇ ସ୍କୁଲରେ ପଢୁଥିଲାବେଳେ ଆମ ରାଖାଲ ଗୋପ ସ୍କୁଲରେ (ବାରିପଦା) ଲାଲ୍-ମୋହନ ମହାପାତ୍ର ନାମରେ ଜଣେ ସାର୍ ଥିଲେ । ବୃଦ୍ଧ, ଖୁବ୍ ଗୋରା, ଦୀର୍ଘ ଚେହେରା । କ୍ଲାସକୁ ପଶିଆସିଲା ମାତ୍ରେ ସେ ସମସ୍ତଙ୍କୁ ଜଣ ଜଣ କରି ସମସ୍ତଙ୍କୁ ପଚାରୁଥିଲେ, 'ହାଓ ଆର୍ ୟୁ ?' 'ଆଇ ଆମ୍ ଓକେ ଅର୍ ଆଇ ଆମ୍ ୱେଲ୍' ନ କହିଲା

ଯାଏଁ ସେ ତାଙ୍କ ପ୍ରଶ୍ନ ଦୋହରାଉ ଥିଲେ । ସେ ଲେଖାଲେଖି ବି କରୁଥିଲେ । ଥରେ ସେ ଏକ ଡାଏରୀ ଦେଖାଇ କହିଲେ ତମେମାନେ ଆଜିଠାରୁ ଡାଏରୀ ଲେଖା ଆରମ୍ଭ କର । ଦେଖ ଏ ବୟସରେ ବି ମୁଁ ପ୍ରତିଦିନ ଡାଏରୀ ଲେଖେ । ଏ ଅଭ୍ୟାସ ଜାରି ରଖିଥିଲେ ଭବିଷ୍ୟତ ଜୀବନରେ ତମର ବଡ କାମରେ ଆସିବ । ଦିନଟା କେମିତି କାଟିଲ ଶୋଇବା ଆଗରୁ ଲେଖିଯିବ । ପ୍ରକୃତରେ ତାଙ୍କର ଏହି ଉପଦେଶ ହିଁ ମ୍ୟାଜିକ୍ ଭଳି ମୋ ଉପରେ କାମଦେଇ ଥିଲା । କିଛି ଲେଖିବାର ଅଭ୍ୟାସ ମୁଁ ସେବେଠୁ ଆରମ୍ଭ କଲି । ନିଜକୁ ପ୍ରକାଶ କରିବାର ଅଭ୍ୟାସ ରଖିଲି ଓ ପରବର୍ତ୍ତୀ ସମୟରେ ସେସବୁ ଅନୁଭୂତି ବା ଅଭିବ୍ୟକ୍ତିକୁ ଗଳ୍ପରେ ରୂପାନ୍ତର କରି ପାରିବାର ଶୈଳୀ ପାଇଗଲି । ଆଜି ଏହି ଅବସରରେ ସ୍ୱର୍ଗତ ଲାଲମୋହନ ସାର୍‌ଙ୍କୁ ମୁଁ ମୋର କୋଟି ପ୍ରଣାମ ଜଣାଉଛି । ମୁଁ ଜାଣେ ସ୍ୱର୍ଗରେ ରହି ସେ ମୋତେ ନିଶ୍ଚେ ଆଶୀର୍ବାଦ କରୁଥିବେ ।

ମୁଁ ଅଷ୍ଟମ ଶ୍ରେଣୀରେ କମଳା ନେହେରୁ ବାଳିକା ସ୍କୁଲରେ ପଢୁଥିଲା ବେଳେ ମୋର ସରସ୍ୱତୀ କର୍ମକାର ନାଁରେ ଜଣେ ବାନ୍ଧବୀ ଥିଲା । ସେ ଉଲରେ ଖୁବ୍ ସୁନ୍ଦର ବୁଣାବୁଣି କରୁଥିଲା । ମୋର ତା'ର ଭଲ ପଟୁଥିଲା । ମୋତେ ଉଲରେ କିଛି ବୁଣାବୁଣି ଆସେନାହିଁ । ସିଲେଇ ଶିଖାଇ ଦେବାକୁ କେହି ନଥିଲେ କି ଉଲ କଣ୍ଟା ଆଣିଦେବାକୁ ବାପାଙ୍କର ସାମର୍ଥ୍ୟ ନଥିଲା । ସେ କିନ୍ତୁ ମୋତେ କହିଥିଲା ମୁଁ ତୋତେ ନିଶ୍ଚେ ଉଲରେ ବୁଣାବୁଣି ଶିଖାଇ ଦେବି । ବୁଣାବୁଣି ଶିଖିବା ସେମିତି କିଛି କଷ୍ଟକର କାମ ନୁହେଁ, ତୁ କିନ୍ତୁ ମୋତେ ପଢା ଦେଖେଇବୁ । ତା'ପରେ ସେ କଣ୍ଟା ଆଣି ମୋତେ ଓଲଟା ସିଧା ବୁଣା ଶିଖାଇଦେଲା । ତାପରେ କହିଲା, ପ୍ରତିଜ୍ଞା କର ମୋ ଛଡା ତୁ ଆଉ କାହାଠାରୁ ବୁଣାବୁଣି ଶିଖିବୁନି । ମୁଁ ତୋତେ କେତେ ସୁନ୍ଦର ସୁନ୍ଦର ଡିଜାଇନ୍ ଶିଖାଇ ଦେବି । ତୁ ମୋର ନୋଟ୍ସ କରିଦେବୁ । ସେ ପଢ଼ାପଢ଼ିରେ ଟିକେ ଦୁର୍ବଳ ଥିଲା । ମୁଁ କହିଲି ହେଲା ବାବା, ପ୍ରତିଜ୍ଞା କଲି । ତୁ ମୋର ଗୁରୁ । କାହାଠାରୁ କେବେ ତୋ ଛଡା ଉଲରେ ବୁଣାବୁଣି ଶିଖିବିନି ।

ତା'ର କିଛି ଦିନ ପରେ ଆମେ ସ୍କୁଲରେ ପ୍ରାର୍ଥନା ସାରି କ୍ଲାସକୁ ଯାଉ ଯାଉ କିଏ ଜଣେ କହିଲା ସରସ୍ୱତୀ ମରିଗଲା । ତା'ର କ'ଣ ଆଗରୁ କାଉଁରିଆ ବାତ ଥିଲା । ବର୍ଷାଦିନ । ସ୍କୁଲ ବିଲ ହିଡ ଦେଇ ଆସୁଥିଲା ବେଳେ ପାଦ ଖସିଗଲା ଯେ ପାଣି ଭିତରେ କଚାଡି ପଡିଲା । ବାତଟା ବାହାରି ପଡିଲା । ବେହୋସ ଅବସ୍ଥାରେ ତାକୁ ଘରକୁ ଆଣିଲେ । ହସ୍‌ପିଟାଲ ନେବାର ଉପକ୍ରମ କଲାବେଳକୁ ସେ ନଥିଲା । ସ୍କୁଲରେ ସଙ୍ଗେ ସଙ୍ଗେ ଶୋକସଭା ହେଲା ଓ ଛୁଟି ହେଇଗଲା । ବହିବସ୍ତାନି ଧରି ମୁଁ ମୋ ସାଙ୍ଗମାନଙ୍କ ସହିତ

ତାଙ୍କୁ ଦେଖିବାକୁ ଯାଇଥିଲି । ପାଣିକାଦୁଅରେ ଜୁଡୁବୁଡୁ ହୋଇ ସେ ଶୋଇଥାଏ । ଯେମିତି ହଲାଇ ଦେଲେ ଏଇ ଉଠିପଡିବ । ତା' ବିଧବା ମାଆ ମୁଣ୍ଡ ବାଡେଇ କାନ୍ଦୁଥିଲେ । ବାପା ତା'ର ପିଲାଦିନରୁ ମରିଯାଇଥିଲେ । ବଡ ଭଉଣୀ ଓ ଭାଇ ଥିଲେ । ମାଆ ତା'ର ବାହୁନୁଥିଲେ ତା'ର ଓଦା ଡ୍ରେସଟା ବଦଳାଇ ଦିଅରେ । ସରସ୍ୱତୀକୁ ଥଣ୍ଡା ଧରିଯିବ । ତାଙ୍କ ଘରେ ଅଧାବୁଣା ଉଲ ଓ ଉଲକଣ୍ଟା ଥୁଆ ହୋଇଥିଲା ଯେଉଁଟାକି ସେ ମୋତେ ଆଣି ଶିଖାଉଥିଲା ।

ସରସ୍ୱତୀ କେବେଠାରୁ ମାଟି ସହିତ ମାଟି ହୋଇ ଗଲାଣି । ତା' ମାଆ ଓ ଭାଇଭଉଣୀଙ୍କ ଭିତରୁ କିଏ ଥିବେ କି ନାହିଁ ଆଜି ମୁଁ ଜାଣେନା । କିନ୍ତୁ ମୁଁ ମୋ ପ୍ରତିଜ୍ଞା ଆଜିଯାଏଁ ରଖିଛି, ଉଲରେ ବୁଣାବୁଣି ଶିଖି ନାହିଁ । ଏହି ଅପାରଗତା ପାଇଁ କେତେଥର ଅପଦସ୍ଥ ବି ହୋଇଛି । କଲେଜରେ ପଢ଼ିଲାବେଳେ କି ବାଣୀବିହାରରେ ଏମ୍.ଏ.କଲାବେଳେ କେତେଥର ଉଲ ଓ କଣ୍ଟା ଆଣିଛି । ସାଙ୍ଗମାନେ ବୁଣାବୁଣି ଶିଖାଇଦେବାକୁ ଆଗେଇ ଆସିଛନ୍ତି । କିନ୍ତୁ ସେତିକିବେଳେ ସରସ୍ୱତୀର ମୁହଁ ଜଳଜଳ ଦିଶିଛି । ଆଜି ବି ତା' କଥା ଲେଖିଲା ବେଳେ ମନେ ହେଉଛି ସେ ଧଳା ବ୍ଲାଉଜ ଓ ମେରୁନ୍ ରଙ୍ଗର ସ୍କର୍ଟ (ଆମସ୍କୁଲଡ୍ରେସ) ପିନ୍ଧି ମୋ ପାଖରେ ଠିଆ ହୋଇଛି । କହୁଛି ପ୍ରତିଜ୍ଞା କର, ମୋ ଛଡା କାହାଠାରୁ ବୁଣାବୁଣି ଶିଖିବୁ ନାହିଁ । ମୁଁ କଣ୍ଟା ଉଲ ରଖି ଦେଇଛି ଅଥବା କହିଛି ତମେ ବୁଣିଦିଅ । ଲେଖାଲେଖି କରୁଥିବାରୁ ମୋର ସମୟ ନାହିଁ ଏସବୁ ଶିଖିବାକୁ । ଆଜି ବି କଥା ପଡିଲେ କେହି କେହି ହସନ୍ତି ଯେ ବୁଣାବୁଣି କେଉଁ କଷ୍ଟକର କାମଟା ଯେ ଶିଖିନାହିଁ । ମୁଁ ଛେପ ଢ଼ୋକି କୈଫିୟତ ଦିଏ ମୋର ପଢ଼ାପଢ଼ି ଓ ଲେଖାଲେଖିରେ ଏତେ ଝୁଙ୍କ୍ ଯେ ସେ ଦିଗରେ ଧ୍ୟାନ ଦେଇନାହିଁ । ତା'ଛଡା ଆଜିକାଲି ବଜାରରେ ତ ରେଡିମେଡ କେତେ ସୁନ୍ଦର ସୁନ୍ଦର ଜିନିଷ ମିଳିଲାଣି । ସମୟ ନଷ୍ଟ ନ କରି କିଣି ଆଣିଲେ ଗଲା । କିନ୍ତୁ କେହି କ'ଣ ବୁଝି ପାରିବ ଏକଥା କହିଲା ବେଳେ ପରମତୃପ୍ତିରେ ମୋତେ ଚାହିଁ ସରସ୍ୱତୀ ଠିଆ ହୋଇଛି ବୋଲି ? ମୁଁ ତାକୁ ଚାହିଁ ସେଇଥିପାଇଁ କହେ, ତୁ ଯେ ମୋତେ ବୁଣାବୁଣି ଶିଖାଇ ଦେବୁ ବୋଲି କହିଥିଲୁ ସରସ୍ୱତୀ, ହେଲେ କେବେ ? କେଉଁ ଜନ୍ମରେ ? ମୁଁ ସେ ଜନ୍ମକୁ ଅପେକ୍ଷା କରିଛି ।

ସ୍କୁଲରେ ଦରମା ନଦେବା ଯୋଗୁଁ କି ଡ୍ରେସ୍ ନ ପିନ୍ଧିବା ଯୋଗୁଁ କିମ୍ବା ବହି ନଆଣିବାରୁ ଯେଉଁ ଦଣ୍ଡ ମୋତେ ମିଳୁଥିଲା ବାପାଙ୍କୁ ଆସି ସେ କଥା କହିପାରୁ ନଥିଲି । ଏଇଥିପାଇଁ ଯେ କାଳେ ମୋର ପଢ଼ା ବନ୍ଦ ହୋଇଯିବ ଅଥବା ବାପା ଦୁଃଖରେ ଭାଙ୍ଗିପଡିବେ । ତଥାପି ପଢ଼ାରେ ଝୁଙ୍କ୍ ମୋର କିଛି କମ୍ ନଥିଲା । ଆମର ଇଲେକ୍ଟ୍ରି

ବି ସେତେବେଳେ ଘରକୁ ଆସିନଥିଲା । କିରୋସିନୀର ଡିବି ଆଲୁଅରେ ମୁଁ ପଢୁଥିଲି । ଅଧିକାଂଶ ଦିନ ଫେର୍ କିରୋସିନୀ କିଣିବାକୁ ବି ପଇସା ନଥିଲା । ଯେଉଁଦିନ କିରୋସିନି ନ ଥିଲା ସନ୍ଧ୍ୟାରୁ ଶୋଇ ପଡୁଥିଲୁ । ପଢ଼ାପଢ଼ି କରିବାକୁ ଇଚ୍ଛା ଥିଲେ ବି କହି ହେଉନଥିଲା । ସେଥିଲାଗି ଦିନ ଥିବା ବେଳେ ରୋଷେଇ କରିଦେଉଥିଲା ଆଈ ଓ ମୁଁ ସ୍କୁଲରୁ ଫେରି ସନ୍ଧ୍ୟା ଆଗରୁ ତରତରରେ ମୋର ପଢ଼ାପଢ଼ି କାମ ସାରି ଦେଉଥିଲି । ଯେଉଁଦିନ କିରୋସିନି ଅଭାବରୁ ସନ୍ଧ୍ୟାରେ ନିଦ ନ ମାଡିଲେ ବି ବିଛଣା ଧରିବାକୁ ପଡୁଥିଲା ସେତେବେଳେ ଚୁପ୍‌ଚାପ୍ ଆଖି ପୋଛି ନେଉଥିଲି । ଶୋଇଲା ବେଳେ ସ୍କୁଲରେ ଯାହା ପଢ଼ା ହେଇଥିଲା ତାକୁ ହିଁ ମନେ ପକଉଥିଲି । କେବେକେବେ ଆମେ ସବୁ ଗପ କରୁଥିଲୁ । ପୁଣି କେବେ କେବେ ଗୋଟାଏ ମାତ୍ର ଡିବି ଜଳୁଥିଲା ରୋଷେଇ ପାଇଁ । ଚୁଲ୍ଲୀ ଜଳିଲା ବେଳେ ତାରି ପାଖରେ ଝାଳମାଳ ହେଇ ବସି ମୁଁ ମୋର ସ୍କୁଲ ପଢ଼ା କରୁଥିଲି । ସେତେବେଳେ ବାପା ଘରେ ଗୋଟାଏ ରେସନ ଦୋକାନଟିଏ କରିଥାନ୍ତି । ମୋତେ କହିଥାନ୍ତି ତୁ ଯଦି କିଛି ସମୟ ଦୋକାନରେ ବସିବୁ ଯାହା ବିକିବୁ ଲାଭ ତକ ତୋର । ମୁଁ ସେହି ଲୋଭରେ ବାପାଙ୍କ ଅନୁପସ୍ଥିତିରେ ଦୋକାନ ଚଳାଏ । ଯାହା ଲାଭ ମିଳେ ଗୋଟାଏ ଦି'ଟା ବହି କିଣେ । ମନରେ ଝୁଙ୍କ ଉଠେ ମୁଁ ନିଶ୍ଚେ ଦିନେ ବଡ ମଣିଷ ହେବି । ଖୁବ୍ ପାଠ ପଢ଼ିବି । ବଡ ଚାକିରୀଟେ କରିବି । ଯେଉଁ କକାଖୁଡୀ, ପିଉସାପିଉସୀ ବା ଆତ୍ମୀୟସ୍ୱଜନ ଦେଖିଲେ ନାକ ଟେକୁଛନ୍ତି-କରଛଡା ଦେଉଛନ୍ତି ତାଙ୍କଠାରୁ ଆହୁରି ଧନୀ ହେବି ଆଉ ମୋ ଭଳି ପିଲାମାନଙ୍କୁ ସାହାଯ୍ୟ କରିବି । ଆଉ କ'ଣ । ଆଗଜନ୍ମରେ ଆମେମାନେ ନିଶ୍ଚେ କିଛି ପାପ କରିଥିଲୁ । ପୁଣି ବାପାଙ୍କ କଥା ମନେ ପକାଏ, ସବୁବେଳେ ଉପରକୁ ନଦେଖି ତଳକୁ ଦେଖ । କିନ୍ତୁ ମନ କହେ ତଳକୁ ଦେଖିଲେ ମୁଁ ପଛେଇ ଯିବି । ମୋତେ ଯେ ଖୁବ୍ ବଡ ହେବାକୁ ପଡିବ । ଅନେକ ରାସ୍ତା ଆଗେଇବାକୁ ହେବ । ଏହି ଭାବନା ହିଁ ମୋତେ ଜିଦ୍‌ଖୋର କରିଦେଇଛି । ଆଜି ବି କୌଣସି କାମ କି ଲେଖା ନସରିଲା ଯାଏଁ ଆଖିକୁ ନିଦ ଆସେନାହିଁ ।

ମ୍ୟାଟ୍ରିକ୍ ପରୀକ୍ଷା ଫିସ୍ ଦେବାବେଳେ ମୋର ଗୋଟାଏ ଘଟଣା ମନେପଡେ । ଫର୍ମଫିଲପ୍ ସମୟ ଆସିଗଲା । ଟଙ୍କା ନାହିଁ ଫିସ୍ ଦାଖଲ କରିବାକୁ । କ'ଣ କରାଯିବ । ସେଠି ଶର୍ମା ସାର ବୋଲି ଜଣେ ହିନ୍ଦୀ ମାଷ୍ଟର ଥିଲେ । ତାଙ୍କ ସ୍ତ୍ରୀ ଉଷା ଦିଦିଙ୍କୁ ବାପା ଝିଅ ବୋଲି ଡାକନ୍ତି । ତାଙ୍କୁ କହିବାରୁ ଫର୍ମଫିଲପ୍‌ର ଆଗଦିନ ସେ ମୋତେ ଆମ କ୍ଲାସ୍‌ଟିଚର ସରୋଜିନୀ ସାହୁଙ୍କ ଘରକୁ ନେଇଗଲେ । ତାଙ୍କର ସେ ଜଣାଶୁଣା । ସରୋଜିନୀ ଦିଦି ସବୁ ଶୁଣି କହିଲେ ହେଉ କାଲି କିଛି ଗୋଟେ ବ୍ୟବସ୍ଥା କରିବା । ତା'ପରଦିନ ଫର୍ମ

ଫିଲପ୍ କରିବାକୁ ଆସିଥିବା ମୋ କ୍ଲାସର ଝିଅମାନଙ୍କୁ ଡାକି ମୋ କଥା କହି ପ୍ରତ୍ୟେକଙ୍କ ଠାରୁ ୨ଟଙ୍କା / ୫ଟଙ୍କା ଯିଏ ଯାହା ଦେଲା ସଂଗ୍ରହ କରି ସେ ମୋର ଫିସ୍ ଦାଖଲ କଲେ । ପୁଣି ବାପାଙ୍କର ଜଣେ ସାଙ୍ଗ ଥିଲେ ଚାଟାର୍ଡ ଆକାଉଣ୍ଟାଣ୍ଟ । ତାଙ୍କ ନାଁ ବୈଦ୍ୟନାଥ ମିଶ୍ର । ବାପା ବୋଧହୁଏ ତାଙ୍କୁ ମୋ କଥା କହିଛନ୍ତି । ଦିନେ ସେ ତାଙ୍କ କାର୍ ଧରି ଆମ ଘର ସାମ୍ନାରେ ପହଞ୍ଚିଲେ । ତାଙ୍କ ହାତରେ ଥିଲା ମ୍ୟାଟ୍ରିକ୍ ପରୀକ୍ଷା ପାଇଁ ସଦ୍ୟ ପ୍ରକାଶ ପାଇଥିବା ଓଷ୍ଟା ଟେଷ୍ଟପେପର । କହିଲେ ତୋ ବାପାଠୁ ତୋ ସମ୍ପର୍କରେ ଶୁଣିଥିଲି । ଏ ବହିଟି ଆଣିଛି । ମୋର ଆଶୀର୍ବାଦ ରହିଲା ପରୀକ୍ଷାରେ ଭଲ କରିବୁ । ମୁଁ ତାଙ୍କ ଉପହାର ଦେଖି ଆଉ ସ୍ନେହବୋଳା କଥାଶୁଣି ମୁଗ୍ଧ ବିହ୍ୱଳ ହୋଇ ଯାଇଥିଲି ।

ଦେଖୁ ଦେଖୁ ମ୍ୟାଟ୍ରିକ୍ ସେକେଣ୍ଡ ଡିଭିଜନରେ ପାସ୍ ହୋଇଗଲି । ମ୍ୟାଟ୍ରିକ୍ ପରୀକ୍ଷା ଚାଲିଥିଲା ବେଳେ ମୋତେ ଜ୍ୱର ହୋଇଗଲା । ଭାବିଥିଲି ବୋଧହୁଏ ପରୀକ୍ଷା ସବୁ ଦେଇ ପାରିବିନି । ଯାହାହେଉ ସେହି ଜ୍ୱରରେ ଚଦର ଘୋଡାଇ ଔଷଧ ଖାଇ ପରୀକ୍ଷା ଦେଲି । ତେବେ ଦୁଃଖ ରହିଗଲା ଫାଷ୍ଟ କ୍ଲାସ୍ ହେଲାନାହିଁ । ବାପା କହିଲେ, ମା'ରେ ମୁଁ ତ ତୋତେ କଲେଜରେ ପଢ଼ାଇ ପାରିବିନି । ତୁ ବରଂ ସିଟି ଟ୍ରେନିଂ ନେଇ ଯା । ମନ ଖରାପ ହୋଇଗଲା କଲେଜ ମାଡି ପାରିବିନି ବୋଲି । ମୋ ସାଙ୍ଗମାନେ କଲେଜରେ ପଢ଼ିବେ । ଆଉ ମୁଁ ? ତାହେଲେ ବଡ ମଣିଷ ହେବି କେମିତି ? ବଡ ଚାକିରିଟେ ପାଇବି କେମିତି ? ଏମିତି ଗାଁ ସ୍କୁଲରେ ମାଷ୍ଟରାଣୀ ହୋଇ ରହିଯିବି । ମୋର ମନ ଖରାପ କରିବା ଦେଖି ବାପା କହିଲେ କଲେଜରେ ନାଁ ଲେଖାଇ ଦେବି ଯେ, ତା' ପରବର୍ତ୍ତୀ ଖର୍ଚ୍ଚ ତ ଅନେକ । କେମିତି କ'ଣ କରିବି । ମୁଁ କହିଲି ପ୍ରଥମେ ତମେ ନାଁ ଲେଖାଇ ଦିଅ । ତା' ପରବର୍ତ୍ତୀ ଖର୍ଚ୍ଚ ଦେଖାଯିବ ।

ବାରିପଦାର ଏମ୍.ପି.ସି. କଲେଜରେ ଆଡମିସନ ହୋଇଗଲା । ବାପାଙ୍କ ଦୋକାନ ସେତେବେଳେ ନଥିଲା । ଧାର ଦେଇ ଦେଇ ସବୁ ଦେବାଳିଆ ହୋଇଯାଇଥିଲେ । ସେ କେତୋଟି ଟ୍ୟୁସନ କରୁଥିଲେ । ଏମ୍.ପି.ସି. କଲେଜରେ ଓଡିଆ ଅଧ୍ୟାପକ ଥିବା ଦୀପକ ପରମାଣିକଙ୍କ ପୁଅକୁ ଟ୍ୟୁସନ କରୁଥିବାରୁ ତାଙ୍କ ଚେଷ୍ଟାରୁ ମୋର ଦରମା ଛାଡ ହୋଇଗଲା ଓ ଲାଇବ୍ରେରୀରୁ ବହି କିଛି ପାଇଲି । କଲେଜରେ ଲିଜର ସମୟରେ ଲାଇବ୍ରେରୀରେ ବସି ନୋଟ୍ସ ସବୁ କଲି । ବାକି ଖର୍ଚ୍ଚ ପାଇଁ ମୁଁ ଆମ ଘର ପାଖରେ ନବମଶ୍ରେଣୀରେ ପଢୁଥିବା ଜଣେ ଦି'ଜଣ ଝିଅଙ୍କୁ ଟ୍ୟୁସନ କଲି । ଏ ଭିତରେ ଆଈ ଆମକୁ ଛାଡି ଚାଲି ଯାଇଥିଲା । କଲେଜ ମାଡିବା କି ମେଟ୍ରିକ୍ ପାଶ୍ କରିବା କଥା ସେ ଜାଣି ପାରିଲାନି । ତେଣୁ ରୋଷେଇ ସାରି କଲେଜ ଯିବାକୁ ପଡୁଥିଲା । ମୋ ସାନଭଉଣୀ ରୀତା ବି ଟିକେ

ରନ୍ଧାବଢ଼ା ଶିଖି ଯାଇଥିଲା । ବାସନ ମାଜିବା, ଘରସଫା କରିବା ପ୍ରଭୃତି ସାହାଯ୍ୟ କରୁଥିଲା । ପୁଣି ବାପା ବି ଅନେକ ସମୟରେ ରୋଷେଇ କରି ଦେଉଥିଲେ । ରାତିରେ ସେ ଯେବେ ରନ୍ଧା ଦାୟିତ୍ୱ ନିଅନ୍ତି ଆମେ ପଢ଼ି ବସୁ ।

ଆଇ.ଏ. ପ୍ରଥମ ଶ୍ରେଣୀରେ ପାସ୍ କରିଗଲି । ଏ ଭିତରେ ବାପାଙ୍କ ଚେଷ୍ଟାରୁ ମୋ ବଡଭାଇ ମ୍ୟୁନିସ୍‌ପାଲଟିରେ ଚାକିରିଟେ ପାଇଗଲା । ଘରର ଅବସ୍ଥାରେ କିଛିଟା ପରିବର୍ତ୍ତନ ଆସିଲା । ମୁଁ ବିଏ ରେ ଆଡମିସନ୍ ନେଇଗଲି । ରଖିଲି ଓଡ଼ିଆ ପାଶ୍ ଆଉ ଫିଲୋସଫି ଅନର୍ସ । ପୁଣି କ'ଣ ମନେହେଲା କେଜାଣି କେତୋଟି ଦିନପରେ ବଦଳାଇ ଓଡ଼ିଆ ଅନର୍ସ ଆଉ ଫିଲୋସଫି ପାଶ୍ ରଖିଲି । ବାପା, ଅପା ବାରମ୍ବାର ଚେତେଇ ଦେଲେ ବି.ଏ ପରେ ତୋତେ ବିଇଡି ନେବାକୁ ପଡିବ । ସେ ତ ପରବର୍ତ୍ତୀ କଥା । ଆଗେ ବି.ଏ ପଢ଼ାସରୁ । ଦେଖୁଦେଖୁ ବି.ଏ ସରିଗଲା । ଅନର୍ସରେ ମୁଁ ସେ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଫାଷ୍ଟ କ୍ଳାସ୍ ଫାଷ୍ଟ ହେଇ ଡିଷ୍ଟିଙ୍କ୍‌ସନ୍ ସହ ପାଶ୍ କଲି । ନରସିଂହ ଭାଇ ଓ ଗୀତା ଅପାଙ୍କୁ ତାଙ୍କର ସାଙ୍ଗମାନେ କହିଲେ ତମର ଉଭଣୀ ଏତେ ଭଲ ରେଜଲ୍‌ଟ କଲା । ତମେ ଭଉଣୀ ଭିଣେଇ ଏ ସମୟରେ ତାକୁ ଯଦି ଏମ୍.ଏ. ପଢ଼ାଇବ ନାହିଁ ଆଉ କେତେବେଳେ ସାହାଯ୍ୟ କରିବ ? ତା'ଛଡା ସେ ତ ନେସ୍‌ନାଲ ସ୍କଲରସିପ୍ ପାଇବ । ଯାହାହେଉ ବଡ ଭିଣେଇ ନରସିଂହଭାଇ ରାଜି ହେଇଗଲେ ମୋ ରେଜଲଟ ଶୁଣି ଓ ଅପାକୁ ବି ରାଜି କରାଇଲେ । ପ୍ରତିମାସରେ ଦୁଇଶହ ଟଙ୍କା ଦେବାର କଥା ଛିଣ୍ଡିଲା । ନରସିଂହ ଭାଇ ମୋତେ ସଙ୍ଗରେ ଆଣି ଆଡମିସନ କରିଦେଲେ । ହଷ୍ଟେଲ ବୁଝାବୁଝି କରି ରହିବାର ବ୍ୟବସ୍ଥା କଲେ । ତେବେ ହଷ୍ଟେଲ ନପାଇଲା ଯାଏଁ ଭୁବନେଶ୍ୱରରେ ଥିବା ବଡବାପାଙ୍କ ପୁଅ ନିଶାଭାଇଙ୍କ ଘରେ ମୋର ରହିବାର ଠିକ୍ ହେଲା । ତାଙ୍କ ଘରେ ବଡମା' (ତାଙ୍କୁ ଡାକୁ ବଡବୋଉ)ଙ୍କ ପାଖରେ ରହି ପ୍ରଥମେ ପାଇଲି ମାଆର ପ୍ରକୃତ ସ୍ନେହ । ଜାଣିଲି ଶ୍ରଦ୍ଧା, ମମତାର ଅର୍ଥ କ'ଣ । ଆଦର ପରି ଭାଷା କ'ଣ । ପୁଣି ଗୀତା ଅପା, ନରସିଂହ ଭାଇ ଯଦି ସେ ସମୟରେ ମୋତେ ଏମ୍.ଏ. ପଢ଼ାଇବା ପାଇଁ ଅଣ୍ଟାଭିଡି ଆଗେଇ ଆସିନଥାନ୍ତେ ମୋର ଭବିଷ୍ୟତ କ'ଣ ହେଇଥାନ୍ତା କେଜାଣି । ତେଣୁ ସେମାନଙ୍କ ପ୍ରତି କୃତଜ୍ଞତାରେ ମୁଣ୍ଡ ନଇଁ ଯାଏ ।

ବାଣୀବିହାର ପ୍ରଥମ ହଷ୍ଟେଲ ଜୀବନ ଆରମ୍ଭ ହୁଏ । ମୋର ରୁମ୍‌ମେଟ୍ ହୁଏ ସୁପ୍ରଭା ପଟ୍ଟନାୟକ, ଜେଓ୍ରାଫିରେ ପି.ଜି. କରୁଥିଲା । ଭବାନୀପାଟଣାରେ ଘର । ହଷ୍ଟେଲ ଜୀବନରେ ଜାଣିଲି ଆଡଜଷ୍ଟମେଣ୍ଟ କେମିତି କରାଯାଏ । ବନ୍ଧୁତ୍ୱର ସୀମା ସରହଦ କେତେ ବିରାଟ ସେଇଠି ମୋର ହୃଦ୍‌ବୋଧ ହେଲା । ଜୀବନ ଯେ କେତେ ବ୍ୟାପକ ଓ କେତେ

ଅନୁଭୂତିମୟ ସେଇଠି ହିଁ ମୋର ଜ୍ଞାନ ହେଲା । ଅପା ପ୍ରତିମାସ ଦୁଇଶହ ଟଙ୍କା ପଠାଏ । ନେସ୍‌ନାଲ ସ୍କଲାରସିପ୍ ମିଳିଲେ ମୁଁ ଘରକୁ କିଛି ପଠାଏ । ଦୁଇଶହ ଟଙ୍କା ଭିତରେ ଖାଇବା, ପିନ୍ଧିବା, ପଢ଼ିବା, ଚଳିବା ଯେ କେତେ କଷ୍ଟକର ମୁଁ ଜାଣେ । ତେବେ ସେତେବେଳେ ପାଠ ଛଡା ନା ପିନ୍ଧିବାରେ ଆଡମ୍ବର ଥିଲା ନା ଖାଇବାରେ । କଲେଜ ଓ ବିଶ୍ୱବିଦ୍ୟାଳୟ ଜୀବନରେ ପ୍ରାୟ ମୁଁ ଧଳା ଶାଢୀ ପିନ୍ଧୁଥିଲି । ଅବଶ୍ୟ ଚାକିରୀ କଲାପରେ କିଛିଟା ପରିବର୍ତ୍ତନ ହେଲା ଓ ଧଳା ଶାଢ଼ୀ ପିନ୍ଧିବା ସମ୍ଭବ ହେଲାନାହିଁ । ମୁଁ ବାଣୀବିହାରର ପ୍ରଥମ ଛାତ୍ରୀ ନିବାସରେ ଥିଲି ଯାହା ଏବେ କୁନ୍ତଳାକୁମାରୀ ଛାତ୍ରୀନିବାସ ନାମକରଣ ହେଇଛି । ତା'ର ଏକ ମୁଖପତ୍ର ପ୍ରକାଶପାଏ । ଏହି ମେଗାଜିନ୍‌ର ସମ୍ପାଦିକା ଦାୟିତ୍ୱ ତୁଲାଇବା ସହିତ ଏଡିଟିଙ୍ଗ୍ ଓ ପ୍ରେସ୍ ସମ୍ପର୍କରେ ମୋର କିଛିଟା ଜ୍ଞାନ ହୁଏ ।

ଏମ୍.ଏରେ ପ୍ରଥମଶ୍ରେଣୀ ପାଇବା ସହିତ ଭଲ ମାର୍କ ରଖିଲି ସତ କିନ୍ତୁ ପ୍ରଥମ ଶ୍ରେଣୀରେ ପ୍ରଥମ ହେଇପାରିଲି ନାହିଁ । କାରଣ ଏସବୁ ଜାଗାରେ ଧରାଧରି ଡେଲାଡେଲି କାମ ଅଧିକା ଓ ସ୍ପେଶାଲ ପେପରରେ ମାର୍କ ବଢ଼ାଇ ଗାଇଡ୍ ଚାହିଁଲେ ଜଣକୁ ଷ୍ଟାଣ୍ଡ କରାଇ ଦେଇ ପାରିବେ । ତାହା ମୁଁ କରିପାରି ନଥିବାରୁ ପୋଜିସନ୍ ଭିତରେ ରହିଲେ ବି ପ୍ରଥମ ହେଇ ପାରିଲିନି । ଏମ.ଏ. ପରେ କ'ଣ କରାଯିବ ? ଖାଲି ଏମ୍.ଏ ପାଶ୍ କରି ଦେଲେ ତ ଚାକିରୀ ମିଳିବନି । ଅଥଚ ମୋର ଯେ ନିହାତି ଚାକିରୀଟେ ଦରକାର । ଅପା ପକ୍ଷରେ ବି ଆଉ ପଢ଼ାଇବା ସମ୍ଭବ ନୁହେଁ । ତା'ର ପିଲାପିଲିଙ୍କ କଥା ସେ ଚିନ୍ତା କରିବ । ତେଣୁ ତା'ଠୁ ନାସ୍ତିବଚନ ଶୁଣିଲା ପରେ ଭାବିଲି ସତକଥା କେତେଦିନ କାହାର ବା ବୋଝ ହେବି । କିଏ ବା ବୁଝିବ ଏମ୍.ଫିଲ୍ ନକଲେ ଏ ପାଠ ପଢ଼ାର କୌଣସି ମୂଲ୍ୟ ନାହିଁ । ତେବେ ଧୈର୍ଯ୍ୟ ନ ହରାଇ ଏମ୍.ଫିଲ୍ ପାଇଁ ଆପ୍ଲାୟ କରିଦେଲି । ନ୍ୟାସନାଲ ସ୍କଲରସିପ୍ ବାବଦକୁ ପାଶ୍‌ବୁକ୍‌ରେ କିଛି ଟଙ୍କା ରଖିଥିଲି । ସେତିକିରେ ଆଡମିସନ୍ ନେଲି । ହଷ୍ଟେଲ ଆଡମିସନ ବି ହେଇଗଲା । କିନ୍ତୁ ତାପରେ ? ହଷ୍ଟେଲ ଫିସ୍, ବ୍ୟକ୍ତିଗତ ଖର୍ଚ୍ଚ ଆଉ ପଢ଼ାପଢ଼ି ? ଭାଙ୍ଗିପଡିଲି ନାହିଁ । କେତୋଟି ମାସ ନିଶାଭାଇଙ୍କ ଘରେ ରହି ରୋଜଗାରର ସନ୍ଧାନ କଲି । ଏମ.ଏ. ପଢ଼ିଲାବେଳେ ଓଡ଼ିଶାର ବିଶିଷ୍ଟ ଲେଖକ ଗାଳ୍ପିକ ରାଜକିଶୋର ରାୟଙ୍କ ସହିତ ଚିହ୍ନା ହେଇଥିଲା ଓ ସେ ମୋତେ ମୋ ଗଳ୍ପ ପଢ଼ି ଚିହ୍ନିଥିଲେ । ଘଟଣାକ୍ରମେ ମୋତେ ଝିଅ କରିଥିଲେ । ତାଙ୍କୁ ବାପା ଓ ତାଙ୍କ ସ୍ତ୍ରୀଙ୍କୁ ମାମା ବୋଲି ଡାକୁଥିଲି । ତାଙ୍କୁ ଚିଠି ଲେଖି ଏ କ୍ଷେତ୍ରରେ କ'ଣ କରିବି ବୋଲି ପରାମର୍ଶ ନେଲି । ସେ ସେତେବେଳେ ଧୀରେନ୍ ପଟ୍ଟନାୟକଙ୍କୁ ଫୋନ୍ କଲେ କି ଚିଠି ଲେଖିଲେ । ଧୀରେନ୍ ପଟ୍ଟନାୟକ 'ଖବରକାଗଜ' ନାଁରେ ଏକ ଦୈନିକ ସମ୍ବାଦପତ୍ର ପ୍ରକାଶ କରୁଥିଲେ ।

ସେଠି ସହ-ସମ୍ପାଦିକା ହିସାବରେ ରହି ଫିଚର ଲେଖିବାପାଇଁ ମୋତେ ନିଯୁକ୍ତି ମିଳିଲା । ନିଜେ ଧୀରେନ୍ ପଟ୍ଟନାୟକ ହଷ୍ଟେଲକୁ ଫୋନ୍ କରି ତାଙ୍କ ସହ ଦେଖା କରିବାକୁ କହିଲେ । ମୋର ରୁମ୍‌ମେଟ୍‌ଟି ଫୋନ୍ ଧରି ମୋତେ ଖବରଦେଲା । ମୁଁ ତା' ସହ ଯାଇ ଧୀରେନ୍ ପଟ୍ଟନାୟକଙ୍କୁ ଦେଖାକଲି । ମାସିକ ଚାରିଶହ ଟଙ୍କା ଦେବା କଥା ଛିଡିଲା । ନିଶା ଭାଇଙ୍କ ଘରୁ ଆସି ମୁଁ ହଷ୍ଟେଲରେ ରହିଲି । ଏକଥରକେ ଏମ୍.ଫିଲ୍ ସହ ପିଏଚ୍‌ଡି ରେଜିଷ୍ଟ୍ରେସନ କରି କାମ ଆରମ୍ଭ କଲି । ଏଇଠୁ ହିଁ ମୋର ସାମ୍ବାଦିକା ଜୀବନ ଆରମ୍ଭ ହେଲା ଓ ପ୍ରଥମଥର ମୁଁ ନିଜ ଗୋଡରେ ଠିଆ ହେଇ ଚାରିଶହ ଟଙ୍କା ରୋଜଗାର କଲି । ନିଜ ପଢ଼ାପଢ଼ି ସହ କିଛି ଟଙ୍କା ଘରକୁ ପଠାଇବାକୁ ସକ୍ଷମ ହେଲି । ରିସର୍ଚ୍ଚ ପାଇଁ ମୁଁ ବିଷୟ ନେଲି ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ (୧୯୬୦-୧୯୮୦) ଗାଇଡ୍ ହେଲେ ପ୍ରଫେସର କୃଷ୍ଣଚରଣ ସାହୁ । ସେମିତି ଏମ୍.ଫିଲ୍‌ର ବିଷୟବସ୍ତୁ ଥିଲା ଓଡ଼ିଆ ଗଳ୍ପରେ ମାନବିକ ଚେତନା (ଫକୀରମୋହନଙ୍କ ଠାରୁ ସ୍ୱାଧୀନତା ପର୍ଯ୍ୟନ୍ତ) ଗାଇଡ୍ ଥିଲେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ । ପୁଣି ଭାଗ୍ୟ ଅନୁକୂଳ ହେଲା । ମୋତେ ଦର୍ଶନ ବିଭାଗ ତରଫରୁ ନୀଳକଣ୍ଠ ଫେଲୋସିପ୍ ବର୍ଷକ ପାଇଁ ମିଳିଲା । ପ୍ରତିମାସ ୫୦୦ ଟଙ୍କା । ନୀଳକଣ୍ଠ ଦାସଙ୍କ ଉପରେ ଏକ ମନୋଗ୍ରାଫ୍ ଲେଖିଲି । ପୁଣି ବର୍ଷେ ନ ପୁରୁଣୁ ମୋତେ ରିସର୍ଚ୍ଚ ପାଇଁ ଆମ ଡିପାର୍ଟରୁ ଜୁନିୟର ରିସର୍ଚ୍ଚ ଫେଲୋସିପ୍ ମିଳିଥିଲା । ଶିକ୍ଷାର ସର୍ବୋଚ୍ଚ ଡିଗ୍ରୀ ହାସଲ କରିବାରେ ବାଧା ରହିଲା ନାହିଁ ।

ଖବରକାଗଜ ଅଫିସ ଧରିତ୍ରୀ ଅଫିସକୁ ଲାଗିଥିଲା ଇଣ୍ଡଷ୍ଟ୍ରିଆଲ ଏରିଆରେ । ଏହାର ଜେନେରେଲ ମ୍ୟାନେଜର ଥିଲେ ପ୍ରଖ୍ୟାତ ସାମ୍ବାଦିକ, ଗାଳ୍ପିକ ପ୍ରଶାନ୍ତ ପଟ୍ଟନାୟକ । ସେଇଠି ଚିହ୍ନା ହେଲା ଜୀମୂତ ମଙ୍ଗରାଜ ଓ ଜ୍ୟୋତ୍ସ୍ନା ରାଉତରାୟଙ୍କ ସହିତ । ତା'ର କବିତା ପୃଷ୍ଠା ପାଇଁ ମୁଁ ଫିଚର ଲେଖୁଥିଲି । ଏହି ସମୟରେ ନୂଆ କରି ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ 'ସମ୍ବାଦ' ପ୍ରକାଶ ପାଇବା ଆରମ୍ଭ କରିଥାଏ । ଆମେ 'ଖବରକାଗଜ'ରେ ଥିବା କେତେଜଣ ସାମ୍ବାଦିକ ସେଠି ସାକ୍ଷାତକାର ଦେଲୁ । ଜୀମୂତ ମଙ୍ଗରାଜ, ଜ୍ୟୋତ୍ସ୍ନା ରାଉତରାୟ ଓ ମୁଁ ଖବରକାଗଜରୁ ଯାଇ ସମ୍ବାଦରେ ଯୋଗ ଦେଲୁ । ଦରମା ଥିଲା ୭୫୦ଟଙ୍କା । ଆମ ଅଫିସଟା ଥିଲା ଶହୀଦ ନଗରର ଏକ ଭଡାଘରେ । ସେତେବେଳେ ଇଷ୍ଟର୍ଣ୍ଣ ମିଡିଆର ବିଲଡିଂ ନୂଆପଲ୍ଲୀରେ ନିର୍ମାଣ କରାଯାଉଥିଲା । ସି.ଆର.ପି ଛକ ଥିଲା ଘଞ୍ଚ ଜଙ୍ଗଲ । କାଁ ଭାଁ ଗୋଟେ ଦୁଇଟା ଉଠାଦୋକାନ ଥିଲା । ଘରଦ୍ୱାର ସେମିତି କିଛି ନଥିଲା । ଇଷ୍ଟର୍ଣ୍ଣ ମିଡିଆବି ଜଙ୍ଗଲ ଭିତରେ ରହିଥିଲା । ଗଛ କଟାଯାଇ ରାସ୍ତା ଓ ଘର ନିର୍ମାଣ ହେଉଥିଲା । ଆଜି ସେ ସ୍ଥାନକୁ ଦେଖିଲେ ଭାବିହେବ ନାହିଁ ଯେ ସିଆରପି ଦିନେ

ଜଙ୍ଗଲରେ ଭର୍ତ୍ତି ଥିଲା ବୋଲି ।

ସାମ୍ବାଦିକ ଜୀବନ ବି ଥିଲା ଏକ ରୋମାଞ୍ଚକର ଅନୁଭୂତି । ବାଣୀବିହାରରୁ ଟାଉନ୍‌ବସ୍‌ରେ ଯାଇ ମୁଁ ଶହୀଦ ନଗରରେ ଓହ୍ଲାଉ ଥିଲି । ସେତେବେଳେ ସମ୍ବାଦର ସମ୍ପାଦକ ଥାନ୍ତି ପ୍ରଖ୍ୟାତ ଗାଳ୍ପିକ ତଥା ପୂର୍ବତନ ଏମ୍.ପି. ସୁରେନ୍ଦ୍ର ମହାନ୍ତି । ତାଙ୍କୁ ଦେଖିବା, ତାଙ୍କ ସହ ମିଶିବା ବି ଥିଲା ଏକ ଅପୂର୍ବ ଅଭିଜ୍ଞତା । ସେ ଚୁପ୍‌ଚାପ୍ ବସିଥାନ୍ତି । ତାଙ୍କର ଗମ୍ଭୀର ଚେହେରା ସହିତ ଗୁଳି ଭରା ଶବ୍ଦ ବେଳେବେଳେ ଆଶ୍ଚର୍ଯ୍ୟ କରିଦିଏ । ଥରେ ନେଲପଲିସ୍ ଲଗାଇଥିଲି ନଖରେ । କେମିତି କେଜାଣି ଦୃଷ୍ଟି ପଡିଗଲା । କହିଲେ ଜୀବନଟା ନେଲପଲିସ୍ ନୁହେଁ କବିତା । ମୁଁ ସଙ୍କୋଚରେ ସାଉଁଟି ଯାଇଥିଲି । ବହୁବର୍ଷ ଯାଏଁ ନେଲପଲିସ୍ ଲଗାଇ ନଥିଲି । କେବେ ଯଦି ବାଧ୍ୟବାଧକତାରେ ଲଗାଏ ତାଙ୍କ କଥା ମନେପଡିଯାଏ । ସେତେବେଳେ ଇଷ୍ଟର୍ଣ୍ଣ ଟାଇମ୍ସ ଇଂରାଜୀ ଦୈନିକ ଓ ସିନେମା ପତ୍ରିକା ମଧ୍ୟ ବାହାରୁଥାଏ ସେଠୁ । ଇଷ୍ଟର୍ଣ୍ଣଟାଇମ୍‌ସରେ ଯୋଗ ଦେଇଥାନ୍ତି ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ ଚନ୍ଦ୍ରଶେଖର ରଥ । ସେ ମଧ୍ୟ ଥାନ୍ତି ମୋ ପାଇଁ ଅନ୍ୟତମ ଆକର୍ଷଣ । ପୁଣି ସେହି ସମୟରେ ମୁକ୍ତିଲାଭ କରିଥାଏ  ନୀରଦ ମହାପାତ୍ରଙ୍କ ପ୍ରଖ୍ୟାତ ଚଳଚ୍ଚିତ୍ର 'ମାୟା ମିରିଗ' ଯାହାର ନାୟିକା ମନସ୍ୱିନୀ ରାୟ (ଅଭିନେତ୍ରୀ ମହେଶ୍ୱତା ରାୟଙ୍କ ବଡଭଉଣୀ ଓ ରାଜକିଶୋର ରାୟଙ୍କ ମଝିଆଁ ଝିଅ) ତଥା ନୀରଦ ମହାପାତ୍ରଙ୍କ ସାନଭାଇ ସମ୍ପଦ ମହାପାତ୍ର ଯୋଗ ଦେଇଥାନ୍ତି । ସେମାନେ ସମ୍ବାଦର ଚଳଚ୍ଚିତ୍ର ପୃଷ୍ଠା, ପତ୍ରିକାର ଦାୟିତ୍ୱରେ ଥାନ୍ତି । ସେମାନଙ୍କ ସହିତ ମିଶିବାଟା ବି ମୋର ସୌଭାଗ୍ୟ ଥିଲା । ତା'ଛଡା ଆଜିର ଶତାବ୍ଦୀର ସାମ୍ବାଦିକ ଚନ୍ଦ୍ରଭାନୁ ପଟ୍ଟନାୟକ, 'ସମ୍ବାଦକଳିକା'ର ଉମାପଦ ବୋଷ, କାହାଣୀ ପ୍ରକାଶନ ସଂସ୍ଥାର ମାଲିକ କବି ଗିରିଜା ବଳିୟାରସିଂହ ଗୀତି କବି ପ୍ରଜାତନ୍ତ୍ର ସାପ୍ତାହିକୀର ସଂଯୋଜକ ସୁରେଶ ପରିଡା ପ୍ରଭୃତି ସମ୍ବାଦରେ ଯୋଗଦେଇଥିଲେ । ପରେ ପରେ ଆସିଲେ ଲେଖିକା ଚୌଧୁରୀ ରଞ୍ଜିତା ପ୍ରହରାଜ । ମୁଁ ସମ୍ବାଦ ଛାଡିବାର ପାଖାପାଖି ଯୋଗ ଦେଇଥିଲେ ଆଜିର ଗାଳ୍ପିକ, 'କଥା'ର ସମ୍ପାଦକ ତଥା ବର୍ତ୍ତମାନ ସମ୍ବାଦର ଜି.ଏମ୍. ଗୌରହରି ଦାସ । ସାମ୍ବାଦିକ ଜୀମୂତ ତ୍ରିପାଠୀ, ଗୋପାଳଚନ୍ଦ୍ର ମିଶ୍ର, ଶିଶୁ ସାହିତ୍ୟିକ ଜହ୍ନୁରି ଭାଇ ପ୍ରଭୃତି ମଧ୍ୟ ଥିଲେ । ଆମେ ସମସ୍ତେ ସତେ କି ଏକ ପରିବାରର ସଦସ୍ୟ ଥିଲୁ ।

ମୁଁ ଓ ମୋ ସମେତ ଜ୍ୟୋତ୍ସ୍ନା ରାଉତରାୟ, ଜୀମୂତ ମଙ୍ଗରାଜ, ଶିଳ୍ପୀ ଛନ୍ଦାଚରଣ ଆଚାର୍ଯ୍ୟ, ସୁରେଶ ପରିଡା, ଉମାପଦ ବୋଷ, ହରେକୃଷ୍ଣ ଚୌଧୁରୀ, ହେମନ୍ତ ଦାସ ପ୍ରଭୃତି ଦାୟିତ୍ୱରେ ଥିଲୁ ସମ୍ବାଦର ରବିବାର ସାପ୍ତାହିକୀ ନିମନ୍ତେ । ଆମ ଦଳର ମୁଖ୍ୟ ଥିଲେ ୰ ଶିଳ୍ପୀ ଅସିତ୍ ମୁଖାର୍ଜୀ । ଗୋଟିଏ ପରିବାର ଭଳି ଚଳୁଥିଲୁ । ବିଶେଷକରି ଶିଳ୍ପୀ

ଛନ୍ଦାଚରଣ ଆଚାର୍ଯ୍ୟ (ଯିଏ କି ପରବର୍ତ୍ତୀ ସମୟରେ ପାରିବାରିକ କଳହରୁ ଆତ୍ମହତ୍ୟା କଲେ)ଙ୍କ କବିତା ତଥା ହସ କଥାକୁ ନେଇ ଆମେ ଆମୋଦ ଅନୁଭବ କରୁଥିଲୁ । ମଝିରେ ମଝିରେ ଦୂରଦର୍ଶନର ତାପସ ବୋଷ, ଅନ୍ୟ ଡେସ୍କରୁ କବି ଗିରିଜା ବଳିୟାରସିଂହ ସମେତ ବନ୍ଧୁ ସାହିତ୍ୟିକ, ଅଜିତ ଦାସଙ୍କ ଭଳି ଚଳଚ୍ଚିତ୍ର ଅଭିନେତା ଆସୁଥିଲେ । ସେତେବେଳେ ଅମୀୟ ପଟ୍ଟନାୟକଙ୍କ ଚଳଚ୍ଚିତ୍ର ହାକିମବାବୁର ସୁଟିଂ ଚାଲିଥାଏ । 'ସମ୍ବାଦ'ରେ ଥିଲାବେଳେ ସବୁଠାରୁ ବଡ ଘଟଣାଥିଲା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କୁ ହତ୍ୟା ଘଟଣା । ସେତେବେଳେ ଇଷ୍ଟର୍ଣ୍ଣ ମିଡିଆ ତରଫରୁ ଶହୀଦ ନଗରର ଭଡାଘରର ରାସ୍ତାକଡରେଏକ ନିଉଜ୍ - ବୋର୍ଡ ଲଗାଯାଉଥିଲା ଓ ମୁଖ୍ୟ ସମ୍ବାଦ ସବୁ ଥରକୁ ଥର ଲେଖି ଦିଆଯାଉଥିଲା ଯାହା ଯାଉଥିବା ଲୋକଙ୍କ ଦୃଷ୍ଟି ଆକର୍ଷଣ କରିବା ସହିତ ଖବର ଜାଣିବାର ପିପାସାକୁ ତୃପ୍ତ କରୁଥିଲା ।

ସେଦିନ ଥିଲା ଅକ୍ଟୋବର ୩୧, ୧୯୮୪ ମସିହା । ଖବରଟି ଚମକାଇ ଦେଲାଭଳି ଥିଲା । ଅଫିସରେ ସାଢ଼େ ନଅଟା ଭିତରେ ପହଞ୍ଚିଲାପରେ ଶୁଣିଲି ଏହି ଅଳ୍ପ ସମୟ ହେଲା ଶ୍ରୀମତୀ ଗାନ୍ଧୀଙ୍କୁ ଗୁଳି କରାଯାଇଛି । ଗୁଳି କରିଛନ୍ତି ପୁଣି ତାଙ୍କର ନିଜ ଅଙ୍ଗରକ୍ଷୀ । ଅଫିସର ବାତାବରଣ ଗମ୍ଭୀର ଥିଲା । ସମସ୍ତେ ନିଉଜ୍‌ପ୍ରିଣ୍ଟକୁ ଅନାଇ ରହିଛନ୍ତି । ଗୁଳିବିଦ୍ଧ ଖବରଟି ଯେତେବେଳେ ନିଉଜ୍ ଷ୍ଟାଣ୍ଡରେ ଲେଖା ହୋଇଗଲା କ୍ରମଶଃ ଶହଶହ ଲୋକ ଗଦା ହୋଇଗଲେ । ତାପରେ ଫାଟକ ଖୋଲି ଚାରିଆଡେ ଲୋକେ ଜାଣିବାକୁ ଚାହିଁଲେ ତାଙ୍କ ପ୍ରିୟ ନେତ୍ରୀଙ୍କ ଅବସ୍ଥା । ମାଇକ୍‌ର ବ୍ୟବସ୍ଥା କରାଗଲା । ସେତେବେଳେ ଟେଲିଫୋନ୍ ଅପରେଟର ବୋଷ ମାଡାମ । ସେ ଘୋଷଣା କରୁଥାନ୍ତି । ନିଉଜ୍ ଆସୁଥାଏ 'Her condition very very critical.' ଯିଏ ଯେଉଁଠି ପାଇଲା ଆଣ୍ଠେଇ ପଡି ଶ୍ରୀମତୀ ଗାନ୍ଧୀ ବଞ୍ଚିଯାଆନ୍ତୁ ବୋଲି ପ୍ରାର୍ଥନା କରିବାକୁ ଲାଗିଲା । ହେଲେ ଭଗବାନ ଥିଲେ ବଡ ନିଷ୍ଠୁର । ନିଉଜ୍ ଆସିଲା 'She is no more.' ଆମେ ସ୍ତମ୍ଭୀଭୂତ, ପଥର ପାଲଟି ଯାଇଥିଲୁ । ସମସ୍ତଙ୍କ ଆଖିରେ ଲୁହ । ସତେ କି ଆମ ପରିବାରରୁ କିଏ ସବୁଦିନ ପାଇଁ ଚାଲିଗଲେ । ହଠାତ୍ ନିଉଜ୍ ଷ୍ଟାଣ୍ଡରେ ଏ ଦାରୁଣ ଖବରଟି ଲେଖାଗଲା ନାହିଁ । କେତେଦୂର ସତ୍ୟ ଖବରଟି ସେଥିଲାଗି ତନାଘନା, ବିଭିନ୍ନ ଆଡକୁ ଫୋନ୍ କରାଗଲା । କିଛି ସମୟପରେ ଯେତେବେଳେ ଆସିଲା 'She is dead' ସେତେବେଳେ ଖବରଟି ଲେଖି ଦିଆଗଲା ।

ଶହୀଦ ନଗରର ରାସ୍ତାରେ ସେ ଖବର ପଢ଼ି ଶହ ଶହ ଲୋକ ପିଲାଙ୍କ ଭଳି କାନ୍ଦିବାର ଦେଖାଯାଇଥିଲା । ଅଫିସସାରା ଥମ୍‌ଥମ୍, ଶୋକାକୂଳ ଭାବ । ଗୋଟିଏ ଗୋଟିଏ ଜୀବନ ଏମିତି ମହାନ ଥାଏ ଯେ ଚାଲିଗଲେ ରକ୍ତର ସମ୍ପର୍କ ନଥିଲେ ବି ବନ୍ଧୁବାନ୍ଧବ,

ଆତ୍ମୀୟ ସ୍ୱଜନ ନ ହୋଇଥିଲେ ବି ଲୋକେ ଶୋକ କରନ୍ତି, କାନ୍ଦନ୍ତି, ଦିବଂଗତ ଆତ୍ମା ପାଇଁ ପ୍ରାର୍ଥନା କରନ୍ତି । ଗୋଟାଏ ଧର୍ମନିରପେକ୍ଷ ରାଷ୍ଟ୍ରରେ ଜଣେ ନାରୀକୁ ପୁଣି ନିଜ ଅଙ୍ଗରକ୍ଷୀ ଗୁଳି କରି ମାରିବାଟା ସମଗ୍ର ବିଶ୍ୱକୁ ଚକିତ କରି ଦେଇଥିଲା ସେଦିନ । ଯେଉଁ ଦେଶ ବୁଦ୍ଧ, ରାମଚନ୍ଦ୍ର, କୃଷ୍ଣ, ବିବେକାନନ୍ଦ, ମହାତ୍ମାଗାନ୍ଧୀଙ୍କ ଜନ୍ମଭୂଇଁ ସେ ଦେଶରେ ଜଣେ ନାରୀକୁ ପୁଣି ଦେଶର ସର୍ବୋଚ୍ଚ ଆସନରେ ଆସୀନ । ଗୁଳିକରିବା କେବଳ ନିଷ୍ଠୁର, ନିର୍ମମ ନଥିଲା, ଥିଲା ଅତ୍ୟନ୍ତ ପରିତାପ, ଜଘନ୍ୟ, ନୃଶଂସ ବିଷୟ । ଆଣି ଦେଇଥିଲା ଦେଶପାଇଁ କଳଙ୍କ, ଲଜ୍ଜ୍ୟା ।

× × × × ×

ଏମ୍.ଫିଲ୍ ପରୀକ୍ଷା ପାଖାପାଖି ମୁଁ ସମ୍ବାଦ ଛାଡିଦେଲି । ତା'ର କିଛିଦିନ ପରେ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଝିଅ ଚନ୍ଦ୍ରିକା ମହାପାତ୍ରଙ୍କଠାରୁ ଖବର ପାଇଲି ଯେ ତୁରନ୍ତ ଧରିତ୍ରୀ ଅଫିସରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ କୌଣସି ଓପରବେଳା ଯାଇ ଦେଖାକର । ବୁଝିପାରିଲିନି ନନ୍ଦିନୀ ଶତପଥୀଙ୍କର ମୋ ପାଖରେ କାମ କ'ଣ । ସେ ମୋତେ ଜାଣିଲେ କେମିତି । ଆଶା, ଆଶଙ୍କା ମଧ୍ୟରେ ତାଙ୍କୁ ଦେଖାକଲି । ସେ କହିଲେ ଆମେ ଧରିତ୍ରୀରେ ଏକ ମହିଳା ପୃଷ୍ଠା ଆରମ୍ଭ କରିବାପାଇଁ ଚିନ୍ତା କରୁଛୁ । ତମେ ତାର ଦାୟିତ୍ୱ ନେବ । ମୁଁ କହିଲି ସବୁଦିନ ତ ମୁଁ ଆସି ପାରିବି ନାହିଁ । ମୋର ପରୀକ୍ଷା ଅଛି । ତା' ସହିତ ପିଏଚ.ଡି. ପାଇଁ ବି ରେଜିଷ୍ଟ୍ରେସନ କରିଛି । ନନ୍ଦିନୀ ଶତପଥୀଙ୍କ ସ୍ୱାମୀ ତଥା ତତ୍କାଳୀନ ଧରିତ୍ରୀର ସମ୍ପାଦକ ଶ୍ରୀ ଦେବେନ୍ଦ୍ର ଶତପଥୀ କହିଲେ ତମେ ସପ୍ତାହରେ ତିନି ଚାରିଦିନ ଆସ । ଯେଉଁ ପୃଷ୍ଠାଟି କରିବ ତା'ର ସମସ୍ତ ଲେଖା ହଷ୍ଟେଲକୁ ନେଇଯିବ । ଆମର ପ୍ରତି ସପ୍ତାହରେ ମହିଳାପୃଷ୍ଠାଟି ବାହାରିବା ଦରକାର । ତାପରେ କ'ଣ କ'ଣ ବିଭାଗ ରହିବ, କେମିତି କ'ଣ ହେବ ଆଲୋଚନା ହେଲା । ମୁଁ ସିଧାସଳଖ କହିଲି ମହିଳା ପୃଷ୍ଠାର ନାଁ ବନିତା, ଲତା, ଅନନ୍ୟା ଭଳି ନାଁ ନରଖି କେବଳ ରଖିବା ନାରୀ । ବାସ୍ କଥାଟା ଗ୍ରହଣ କରିନେଲେ ଶ୍ରୀମତୀ ଶତ୍‌ପଥୀ । 'ନାରୀ' ନାଁରେ ପ୍ରଥମ କରି ପୃଷ୍ଠାଟିଏ 'ଧରିତ୍ରୀ'ରେ ଯୋଡାଗଲା । ବିଭିନ୍ନ ବିଭାଗପାଇଁ ବ୍ଲକ୍ ତିଆରି ହେଲା । ମୋ ଦୃଷ୍ଟିରେ ନାରୀ-କବିତା ବାରିକ ନାଁରେ ଏକ ସୁଦୃଶ ବ୍ଲକ୍ ତିଆରି ହେଲା । କଥା ରହିଲା ଏହି ଶୀର୍ଷକରେ ପ୍ରତି ସପ୍ତାହରେ ନାରୀମାନଙ୍କର ବିବିଧ, ସାମ୍ପ୍ରତିକ ସମସ୍ୟା ଓ ସଚେତନତାକୁ ନେଇ ମୋର ଏକ ଧାରାବାହିକ ଫିଚର ରହିବ । କଥାଟା ବି ମୋ ମନକୁ ପାଇଲା । ମୋ ମାନସ କନ୍ୟା ନାରୀ ଯେଉଁଦିନ 'ଧରିତ୍ରୀ' ପୃଷ୍ଠାରେ ଯୋଡାଯାଇ ପ୍ରକାଶ ପାଇଲା ସେଦିନ ଆନନ୍ଦରେ ମୁଁ ବିହ୍ୱଳ ହୋଇଯାଇଥିଲି । ପାଠକଙ୍କ ତରଫରୁ ଏତେ ବିପୁଳ ସମର୍ଥନ ମିଳିଥିଲା ଯେ

କହିବାର ନୁହେଁ । ସବୁଠୁ ଭଲ ଲାଗିଥିଲା ଧରିତ୍ରୀର ଏହି ନାରୀପୃଷ୍ଠାକୁ ସଜାଇବା ଲାଗି ମୋତେ ସମ୍ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥିଲା । 'ସମ୍ବାଦ' ଭଳି ଅଙ୍କୁଶ ନଥିଲା । ପ୍ରାୟ ବର୍ଷେ ପାଖାପାଖି ମୋ ଦୃଷ୍ଟିରେ ନାରୀ ଧରିତ୍ରୀ ଛାଡିଲା ପର୍ଯ୍ୟନ୍ତ ପ୍ରକାଶ ପାଉଥିଲା । ବିଭିନ୍ନ ସମସ୍ୟା ସେଠି ସ୍ଥାନ ପାଇଥିଲା । ମଝିରେ ମଝିରେ ନନ୍ଦିନୀ ମାଡାମ୍ ଡାକି ନାରୀର କୌଣସି ଏକ ଦିଗ, ସମସ୍ୟା ଉପରେ ଲେଖିବାପାଇଁ ପରାମର୍ଶ ଦେଉଥିଲେ । ଯୌତୁକ, ନାରୀ ନିର୍ଯ୍ୟାତନା, ବିଧବା ବିବାହ, କୁମାରୀ ମା, ଘରୋଇ ନିର୍ଯ୍ୟାତନା, ନାରୀଙ୍କ ଅଧିକାର, ଫେସନ, ବିଜ୍ଞାପନରେ ନାରୀକୁ ଆରମ୍ଭ କରି ସାମ୍ପ୍ରତିକ ବିଭିନ୍ନ ପ୍ରସଙ୍ଗ ମୋ ଦୃଷ୍ଟିରେ ନାରୀରେ ପ୍ରକାଶ ପାଇଲା । ଧରିତ୍ରୀରେ ମୋ ଦୃଷ୍ଟିରେ ନାରୀ ପ୍ରକାଶ ପାଉଥିଲା ବେଳେ 'ସମ୍ବାଦ'ରେ ସାହିତ୍ୟ ପୃଷ୍ଠାରେ ସୁରେନ୍ଦ୍ର ମହାନ୍ତିଙ୍କ 'ଅନ୍ୟ ଦୃଷ୍ଟିରେ' ଶୀର୍ଷକରେ ଏକ ଧାରାବାହିକ ଫିଚର ପ୍ରକାଶ ପାଉଥିଲା ।

ଷାଠିଏରୁ ଉର୍ଦ୍ଧ୍ୱ ଫିଚରରୁ ବାଛି ମୁଁ ସେହି 'ମୋ ଦୃଷ୍ଟିରେ ନାରୀ'ର ପାଣ୍ଡୁଲିପିଟି ପ୍ରସ୍ତୁତ କଲି । ଲାର୍କବୁକ୍‌ସର ମହେନ୍ଦ୍ର ମିଶ୍ର ତାକୁ ଛପାଇବାକୁ ରାଜି ହୋଇଗଲେ । ତାହାର ମୁଖବନ୍ଧ ଲେଖିଲେ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ । କଟକର ମିସନ ରୋଡକୁ ଯାଇ ତାଙ୍କ ଘର ଖୋଜି ବାହାର କରି ତାଙ୍କୁ ଦେଖାକଲି । ସେ କହିଲେ ତମର 'ମୋ ଦୃଷ୍ଟିରେ ନାରୀ' ପାଇଁ ମୋତେ କାହିଁକି ବାଛିଲ ମୁଖବନ୍ଧ ଲେଖିବାପାଇଁ ? ମୁଁ କହିଲି, ଏ ବହିଟିରେ ନିର୍ଯ୍ୟାତିତା ନାରୀମାନଙ୍କର ବିଭିନ୍ନ ସମସ୍ୟା ଓ ଅଧିକାର ସମ୍ପର୍କରେ ସ୍ୱରଉତ୍ତୋଳନ କରାଯାଇଛି । ଆପଣ ହିଁ ଓଡ଼ିଶା ଆଧୁନିକ ଓଡ଼ିଆ କବିତାର ପ୍ରଥମ କବି ଯେ ପ୍ରଥମଥର ପାଇଁ 'ପ୍ରତିମା ନାୟକ'ରେ ସମସ୍ୟାକ୍ଳିଷ୍ଟ ନିମ୍ନ ମଧ୍ୟବିତ୍ତ ନାରୀର ଚିତ୍ର ଦେଇଛନ୍ତି ଆଉ ସେଭଳି ନାରୀର ହସକୁ ଖାକିର ହସବୋଲି କହିଛନ୍ତି । ପୁଣି 'ଅଳକାସାନ୍ୟାଲ' କବିତାରେ ନୂଆଖାଲିରେ ଧର୍ଷିତା, ହତ୍ୟାରେ ଶିକାର ହୋଇଥିବା ଅସହାୟା ନାରୀର ବାସ୍ତବ ଛବି ଆଙ୍କିଛନ୍ତି ।

ଯେମିତି - 'ସେଦିନୁ ତୁମକୁ ଖୋଜେ ସମୟର ନିରୋଳା ସୈକତେ
କଳିଙ୍ଗ କଟକ ଦୂରେ ଅଲେଇଚ ଦ୍ୱୀପରେ

× × × ×

ଖୋଜଇ ପ୍ରାନ୍ତରେ, ବନେ ଖୋଲି ଦେଖେ ସବୁ କାରାଗାର
ବନ୍ଦିନୀ ମୋ କାହିଁ ଅଛ ? ଖୋଜେ କଳା ଘୋଡାର ସବାର
ଆଜି କିନ୍ତୁ ଦେଖା ହେଲା ସମୟର ଡେଇଁ ଚୋରାବାଲି
ତୁମକୁ ଲୁଚାଇ ଥିଲା ଶ୍ମଶାନିତ, ଭଙ୍ଗା ନୂଆଖାଲି ।' (ଅଳକା ସାନ୍ୟାଲ)

ପ୍ରକୃତରେ ଆପଣଙ୍କ ପାଇଁ ଯାହା ସତ୍ୟ ତାହା ହିଁ କବିତା । ଯାହା ଭିତରେ ଥାଏ ନିର୍ଯ୍ୟାତିତ ମଣିଷର ଜୀବନ୍ତ ଛବି । ତେଣୁ ପ୍ରତିମାନାୟକ ହେଉକି 'ଅଳକା ସାନ୍ୟାଲ' ତାରି ସ୍ରଷ୍ଟା ହିଁ 'ମୋ ଦୃଷ୍ଟିରେ ନାରୀ'ରେ ମୁଖବନ୍ଧ ଲେଖିବେ ବୋଲି ମୋର ଇଚ୍ଛା ଆଉ ସ୍ୱପ୍ନ ।

ହସିଥିଲେ କବି ଆତ୍ମୀୟ ହସ । ରାଜି ହୋଇଥିଲେ ଲେଖିବାକୁ । ସେତେବେଳେ ତାଙ୍କ ହାତ ଥରୁଥିଲା ଓ ଆଖିକୁ ଭଲ ଦିଶୁନଥିଲା । ମୁଁ କିଛି ପୃଷ୍ଠା ପଢ଼ି ଶୁଣାଇଥିଲି ।

ସେ କିଛି ଲେଖିଲେ ଓ କିଛି ଡାକିଥିଲେ ।

ଧରିତ୍ରୀରେ ଥିଲାବେଳେ ଦୁଇଟି ସ୍ମରଣୀୟ ଘଟଣା ମନେ ପଡୁଛି । ପ୍ରଥମତଃ ନନ୍ଦିନୀ ଶତପଥୀଙ୍କ ସହିତ ଯାଇ କଟକର ବିଡାନାସୀରେ ଶୋଭନ ଆଶ୍ରମରେ ଓଡ଼ିଶାର ପ୍ରଥମ ଲେଖିକା ସମ୍ମିଳନୀରେ ଯୋଗଦେବା । ସେତେବେଳେ ଦିବ୍ୟଜୀବନ କୁମାର ଭାଇ ବଞ୍ଚିଥାନ୍ତି । ତାଙ୍କ ସହ ଥାନ୍ତି ରୁକ୍ମିଣୀ ଦେବୀ, ସତ୍ୟଭାମା ଦେବୀ । ସେଠି ସ୍ମରଣିକାଟେ ବି ପ୍ରକାଶ ପାଇଥିଲା । ଶ୍ରୀମତୀ ଶତ୍‌ପଥୀ ମୁଖ୍ୟଅତିଥି ଥିଲେ । ବକ୍ତାଭାବରେ ମୁଁ, ସୁଚରିତାର ସମ୍ପାଦିକା ଗାଳ୍ପିକା ଶକୁନ୍ତଳା ପଣ୍ଡା, ସମାରୋହର ସମ୍ପାଦିକା ତଥା ଲେଖିକା ସୁଧାଂଶୁବାଳା ପଣ୍ଡା ଯୋଗଦେଇଥିଲୁ । ସେମାନେ ଶଙ୍ଖଫୁଙ୍କି, ଫୁଲ ଚନ୍ଦନ ଲଗାଇ ଯେଉଁଳି ଭାବରେ ସ୍ୱାଗତ କରିଥିଲେ ମନେ ହୋଇଥିଲା ସାରସ୍ୱତ ସ୍ରଷ୍ଟାମାନେ ସତେ କି ଜଣେ ଜଣେ ଦେବୀ । କି ନମ୍ର, ଉଦାର କୁମାର ଭାଇଙ୍କ ଆତିଥ୍ୟ, ବକ୍ତବ୍ୟ । ପରେ ଶୁଣିଥିଲି କୌଣସି ଏକ ସଡକ ଦୁର୍ଘଟଣାରେ କୁମାର ଭାଇ ଚାଲିଗଲେ । ହେଲେ ଶୋଭନ ଆଶ୍ରମ ତାଙ୍କ ସହ ମରିଗଲା ନାହିଁ । ଉତ୍ତରାଧିକାରୀ ଭାବରେ ତାକୁ ବଞ୍ଚାଇ ରଖିଛନ୍ତି ସତ୍ୟଭାମାଦେବୀ ଓ ରୁକ୍ମିଣୀ ଦେବୀ । ପ୍ରତିବର୍ଷ ଶୋଭନ ଆଶ୍ରମର ବାର୍ଷିକ ଉତ୍ସବର ବିବରଣୀ ସମ୍ବାଦପତ୍ର ମାନଙ୍କର ପ୍ରକାଶପାଏ । ପୁଣି ମୋର ସୌଭାଗ୍ୟ ଯେ ମାର୍ଚ୍ଚ ୨୦୦୭ରେ ପୁଣି ମୁଁ ମୁଖ୍ୟବକ୍ତା ଭାବରେ ସେଠି ଯୋଗଦେଲି । ଏ ଭିତରେ ପ୍ରାୟ ବାଇଶବର୍ଷ ଚାଲିଯାଇଥିଲା । ଆଶ୍ରମରେ ବିଭିନ୍ନ ବିଲଡିଂ ସହ ପିଲାଙ୍କ ସଂଖ୍ୟା ମଧ ବୃଦ୍ଧିପାଇଥିଲା । ମୋ ସମେତ ସତ୍ୟଭାମା ଦେବୀ ଓ ରୁକ୍ମିଣୀ ଦେବୀ ସମୟ ସୁଅରେ ବୟସ୍କା ହୋଇଯାଇଥିଲୁ । କୁମାର ଭାଇଙ୍କ ପୋଷ୍ଟର, ସୁଦୃଶ୍ୟ ଫଟୋକୁ ଯେମିତି ପୂଜା କରାଯିବାର ଦେଖିଲି ମନେ ହେଲା ସେ ଏଠି ଦେବତା ଭଳି ପ୍ରତ୍ୟେକ ଆଶ୍ରମବାସୀଙ୍କ ହୃଦୟରେ ପୂଜା ପାଉଛନ୍ତି । ଭାବିଲି, ସତରେ କାହାରି ତ୍ୟାଗ, ସାଧନା କେବେ ବୃଥା ଯାଏ ନାହିଁ । ସେଦିନ କେତେଜଣ ପିଲାଙ୍କୁ ନେଇ ବିଡାନାସୀରେ ଯେଉଁ କ୍ଷୁଦ୍ର ଆଶ୍ରମ ସ୍କୁଲଟି ଆରମ୍ଭ ହୋଇଥିଲା ସମାଜସେବୀ, ଶିକ୍ଷକ କୁମାର ଭାଇଙ୍କ ଉଦ୍ୟମରେ ତାହା ଆଜି ଡାଳପତ୍ର ମେଲାଇ ବିରାଟ ବଟବୃକ୍ଷରେ

ପରିଣତ ହୋଇଛି । ଅନେକଙ୍କୁ ଛାଇ ଦେବାକୁ ସକ୍ଷମ ହୋଇପାରିଛି । ଦଶମ ଶ୍ରେଣୀ ଯାଏଁ ପିଲାଙ୍କ ପଢ଼ିବାର ବ୍ୟବସ୍ଥା ରହିଛି । ବହୁ ନୂଆ ଶିକ୍ଷୟିତ୍ରୀମାନେ ଯୋଗ ଦେଇଛନ୍ତି । ପୁଣି ଶୁଣିଲି ଓଡ଼ିଶାର ବିଭିନ୍ନ ସ୍ଥାନରେ ଶୋଭନ ଆଶ୍ରମର ଶାଖା ସ୍କୁଲ ସବୁ ଖୋଲିଛି । ଶହଶହ ପିଲା ପଢୁଛନ୍ତି । ବସ୍‌ର ବ୍ୟବସ୍ଥା ହୋଇଛି । ଯୋଗ, ତ୍ୟାଗ ଆଉ ଆଚରଣ ବିଦ୍ୟା ଉପରେ ଗୁରୁତ୍ୱ ଦିଆଯାଉଛି । ପିଲାମାନଙ୍କର ସାଂସ୍କୃତିକ କାର୍ଯ୍ୟକ୍ରମ ସହ ସ୍ୱାଗତ ସମ୍ଭାଷଣ ମୋତେ ଅଭିଭୂତ କରିଥିଲା । ବିଶେଷକରି ପିଲାଙ୍କୁ ଗଢୁଗଢୁ ସତ୍ୟଭାମା ଦେବୀ, ରୁକ୍ମିଣୀଦେବୀ ଜୀବନର ସବୁଜତା ହରାଇ ଦେଇଛନ୍ତି । ପରିବାରଟିଏ ଗଢ଼ିବା ବା ଘର ସଂସାର କରିବା କଥା ଚିନ୍ତା ବି କରିନାହାଁନ୍ତି । ପୁଣି ଶୁଣିଥିଲି ଶୋଭନୀୟ ଆଶ୍ରମକୁ ଆହୁରି ଶୋଭନୀୟ କରିବାପାଇଁ କୁମାର ଭାଇଙ୍କ ସହଧର୍ମିଣୀ ଏଠି ଯୋଗ ଦେଇଛନ୍ତି ଓ ସେ ମଧ୍ୟ ସମାଜସେବା, ଛୋଟ ଛୋଟ ପିଲାଙ୍କୁ ମଣିଷ କରିବାରେ ନିଜକୁ ଉତ୍ସର୍ଗ କରିଛନ୍ତି । ଅତି ଅଳ୍ପ ବୟସରେ ସ୍ୱାମୀଙ୍କୁ ହରାଇ, ନିଜର ସାନସାନ ପିଲାମାନଙ୍କର ଦାୟିତ୍ୱ କାନ୍ଧରେ ଉଠାଇ କୁମାର ଭାଇଙ୍କ ସ୍ତ୍ରୀ ଭାଙ୍ଗିପଡିନାହାଁନ୍ତି । ବରଂଚ ଏହା ହିଁ ଭଗବାନଙ୍କର ଇଛା ବୋଲି ତାଙ୍କର ନିଷ୍ଠୁର ଆଦେଶକୁ ମାନିନେଇଛନ୍ତି । ତାଙ୍କୁ ଦେଖି ବୈକୁଣ୍ଠନାଥ ପଟ୍ଟନାୟକଙ୍କ କବିତାର କେତୋଟି ଧାଡି ମୋର ମନେପଡୁଥିଲା -

‘ଜୀବନ ପାତ୍ର ମୋ ଭରିଛ କେତେ ମତେ
ନଦେଲ କିଛି ବୋଲି କହିବି କି ହେ ଆଉ
ଜୀବନ ପ୍ରିୟତମ ଭରିଛି ଭରମ,
ତରଣୀ ମୋର ତବ ସାଗରେ ବହିଯାଉ....’

× × × × ×

‘ଧରିତ୍ରୀ’ର ବାର୍ଷିକ ଉତ୍ସବ ସେ ସମୟରେ ଥିଲା ଓଡ଼ିଶାର ଲେଖକ ଲେଖିକାଙ୍କ ପାଇଁ ଏକ ବଡ ଆକର୍ଷଣ । ପୁଣି ଯେଉଁ ସ୍ମରଣିକା ପ୍ରକାଶ ପାଉଥିଲା ସେଥିରେ ଲେଖାପ୍ରକାଶ ପାଇଲେ ଲେଖକ ଲେଖିକା ନିଜର ସୌଭାଗ୍ୟ ବୋଲି ମନେ କରୁଥିଲେ । ଲେଖକ ଲେଖିକା, ସାମ୍ବାଦିକ ତଥା ଧରିତ୍ରୀର ସମସ୍ତ କର୍ମଚାରୀଙ୍କର ଅପୂର୍ବ ମିଳନର ସ୍ଥଳୀ ପାଲଟି ଯାଉଥିଲା ସେଦିନଟି । ବିଶେଷକରି ପଦ୍ମଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଶ୍ରୀମତୀ ନନ୍ଦିନୀ ଶତପଥୀ, ଦେବେନ୍ଦ୍ର ଶତପଥୀ, ରାମନାଥ ପଣ୍ଡା, ଚନ୍ଦ୍ରିକା ମହାପାତ୍ର, ଶାନ୍ତନୁ ଆଚାର୍ଯ୍ୟ, ମହାପାତ୍ର ନୀଳମଣି ସାହୁ, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ ପ୍ରଭୃତିଙ୍କ ଉପସ୍ଥିତି ସମାରୋହକୁ ବର୍ଣ୍ଣାଢ଼୍ୟ କରିଦେଉଥିଲା । ମୁଁ ଥିବା ଭିତରେ କୁଲଦୀପ୍ ନାୟାର, ଅମୃତା ପ୍ରୀତମ୍‌ଙ୍କୁ ଯୋଗ ଦେବାର ଦେଖିଛି । ଅମୃତା ପ୍ରୀତମ୍‌ଙ୍କ ସାକ୍ଷାତକାର ନେବାଟା ଥିଲା

ମୋପାଇଁ ସବୁଠାରୁ ଏକ ସ୍ମରଣୀୟ ଘଟଣା ।

ନଭେମ୍ବର ୨୩, ୧୯୮୫ ମସିହା, ଭୁବନେଶ୍ୱର ଚନ୍ଦ୍ରିକା ମହାପାତ୍ର (ଭଗବତୀ ଚରଣ ପାଣିଗ୍ରାହୀଙ୍କ କନ୍ୟା) ଫୋନକଲେ ଯେ କବିତା, କଳିଙ୍ଗ ଅଶୋକା ହୋଟେଲରେ ଅଛନ୍ତି ଅମୃତାପ୍ରୀତମ୍ । ତମେ ତାଙ୍କର ସାକ୍ଷାତକାରଟିଏ ନେବ । ମୁଁ ବି ତମ ସହିତ ଯିବି । ନନ୍ଦିନୀ ଶତପଥୀ ସେଠି ଅଛନ୍ତି । ତମେ କ'ଣ କ'ଣ ପଚାରିବ ତା'ର ପ୍ରଶ୍ନ ତିଆରି କରି । ହିନ୍ଦୀରେ ପଚାରିଲେ ଚଳିବ । ମୁଁ ପୁଲକିତ ଖାଲି ହେଲି ନାହିଁ ବିସ୍ମିତ ମଧ ହେଲି ଯେ ଏତେ ବଡ ଲେଖିକାଙ୍କୁ ଭେଟିବି ବୋଲି । ସେତେବେଳେ ତାଙ୍କର ଜୀବନୀ 'ରେଭିନ୍ୟୁ ଟିକଟ (ରସିଦ୍ ଟିକଟ) ପ୍ରକାଶ ପାଇ ଚର୍ଚ୍ଚିତ ହେଉଥାଏ । ଏହି ଓଡ଼ିଶା ଆଗମନ ପରେ ହିଁ ଶ୍ରୀମତୀ ଶତପଥୀ ବହିଟିର ଓଡ଼ିଆ ଅନୁବାଦ କରିବାପାଇଁ ଅମୃତାପ୍ରୀତମ୍‌ଙ୍କ ଠାରୁ ସବୁଜ ସଙ୍କେତ ପାଇଥିଲେ । କହିବା ବାହୁଲ୍ୟ ୧୯୮୫ମସିହାର ଧରିତ୍ରୀ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗଦେବା ପାଇଁ ଆସିଥାନ୍ତି ଭୁବନେଶ୍ୱର ଅମୃତାପ୍ରୀତମ୍ ଶିଳ୍ପୀବନ୍ଧୁ ଇମ୍‌ରଜଙ୍କ ସହିତ । ନନ୍ଦିନୀ ଶତପଥୀଙ୍କ ପୁତ୍ର (ଆଜିର ଧରିତ୍ରୀ ସମ୍ପାଦକ ତଥା ସାଂସଦ ତଥାଗତ ଶତପଥୀ) ଚନ୍ଦ୍ରିକା ମାଡାମ୍ ଓ ମୋତେ ନେଇ କଳିଙ୍ଗା ଅଶୋକାରେ ଛାଡିଲେ । ଶୀତଦିନ । ସୁନ୍ଦର ସାଲଟିଏ ଘୋଡାଇ ହୋଇଥିଲେ ସେ । ହାତରେ ଥିଲା ଅଧାଜଳା ସିଗାରେଟ୍ । ଶୁଣିଲି ସେ ଜଣେ ଚେନ୍ ସ୍ମୋକର । ତାଙ୍କର ବି ସିଗାରେଟ୍‌କୁ ନେଇ ଚମତ୍କାର କବିତାଟିଏ ଅଛି ।

ତାଙ୍କର ଏକ ଦୀର୍ଘ ସାକ୍ଷାତକାର ନେଇଥିଲି । ପଚାରିବା ଭିତରେ ତାଙ୍କ ସହିତ ଥିବା ଶିଳ୍ପୀ ଇମ୍‌ରଜ ଆସି ସହଯୋଗ କରିଥିଲେ । ତାଙ୍କ ପାରିବାରିକ ଜୀବନ ସହ ଲେଖାଲେଖି ବେଳେ କିମ୍ବା ଚିତ୍ର ଆଙ୍କିଲା ବେଳେ କେମିତି ପରସ୍ପରକୁ ସହଯୋଗ କରନ୍ତି ସେ କଥା ବର୍ଣ୍ଣନା କରୁଥିଲେ । ପଚାରିଥିଲି, ଜୀନ୍ଦେଗୀ ଆପ୍‌କେ ଲିୟେ କ୍ୟା ହେ ? ଉତ୍ତର ଥିଲା ଜିନ୍ଦେଗୀ ଏକ ବିଉଟିଫୁଲ ଚାନ୍ଦ ହୈ । ତାପରେ ତାଙ୍କର ରସିଦ୍‌ଟିକଟ୍‌ର କେତୋଟି ଧାଡି ସେ ଶୁଣାଇଥିଲେ । ପିଲାଦିନରୁ ଦେଖିଥିବା ଜୀବନ ପୁଣି ଭାରତ ପାକିସ୍ତାନର ପାର୍ଟିସନ ସମୟରେ ଦେଖିଥିବା ଜୀବନ ଏମିତିକି ତାଙ୍କର ପିଞ୍ଜରା ଉପନ୍ୟାସ ସମ୍ପର୍କରେ ସୂଚନା ଦେଇଥିଲେ । ଚା' ଓ ସିଗାରେଟ୍ ତାଙ୍କର ଖୁବ୍ ପ୍ରିୟ ଓ ବନ୍ଧୁ ଇମ୍‌ରଜଙ୍କ ସହ ସାକ୍ଷାତକାର, ଗତାନୁଗତିକ ବିବାହର ବିରୋଧୀ ବୋଲି ମଧ୍ୟ ସୂଚନା ଦେଇଥିଲେ । ତାଙ୍କର ଦିଲ୍ଲୀସ୍ଥିତ ହାଉସ୍‌ଖାସ୍‌ର ଘରେ ସିଗାରେଟ୍ କବିତାକୁ ସ୍କେଚ୍ ମାଧ୍ୟମରେ ଇମ୍‌ରଜ୍ କିଭଳି ଆଙ୍କିଛନ୍ତି ସେ କଥା ମଧ କହିବାକୁ ଭୁଲି ନଥିଲେ । ଷାଠିଏ ପାରିହୋଇ ଯାଇଥିଲେ ବି ଅମୃତାଙ୍କ ସୁନ୍ଦରତା, ସ୍ମାର୍ଟନେସ୍ ମୋତେ ମୁଗ୍ଧ, ବିହ୍ୱଳ କରିଦେଇଥିଲା । ଆପେଲ୍

ଭଳି ନାଲି ଟୁକୁଟୁକୁ ଓଠ, ଗୋରା ତକ୍‌ତକ୍ ଦେହ । ଥଣ୍ଡା ଯୋଗୁଁ ମୁଣ୍ଡରେ ହେଡ୍‌ସ୍କାର୍ଫଟେ ଗୁଡାଇ ଥିଲେ । ଦେହରେ ସାଲ । ତାଙ୍କର ଲିପଷ୍ଟିକ୍ ବୋଳା ଓଠରେ ଲାଗିଥିଲା ଗୋଲ୍ଡ ଫ୍ଲାକ୍ ସିଗାରେଟ୍ । ପ୍ରାୟ ଘଣ୍ଟାଏ ପାଖାପାଖି ଆମେ ବସିଥିଲୁ । ସେ ତାଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ବିନା ସଂକୋଚରେ କହୁଥିଲେ ଯାହା ଆଶ୍ଚର୍ଯ୍ୟ କରିଥିଲା ମୋତେ । ଶିଳ୍ପୀ ଇମ୍‌ରଜ୍ ତାଙ୍କଠାରୁ ପ୍ରାୟ ଦଶବର୍ଷ ସାନହେବେ । ଅମୃତା ଦୁଇଟି ସନ୍ତାନର ମାଆ ହେଲାପରେ ତାଙ୍କର ଇମ୍‌ରଜଙ୍କ ସହିତ ଦେଖା ହୋଇଥିଲା । ସେତେବେଳେ ସେ ଚାଳିଶ ପାର ହୋଇଗଲେଣି । ସେମାନେ ବୈଦିକ ବିବାହରେ ବିଶ୍ୱାସ କରନ୍ତି ନାହିଁ । ତାଙ୍କର ପ୍ରଥମ ସ୍ୱାମୀ ପିଲାମାନଙ୍କ ସହ ଏକାଠି ରହନ୍ତି । ମୁଁ ତାଙ୍କୁ କେତୋଟି ବ୍ୟକ୍ତିଗତ ପ୍ରଶ୍ନ ପଚାରିପାରେ କି ବୋଲି ଅନୁମତି ମାଗିବାରୁ ସେ ହସି ହସି ସମ୍ମତି ଜଣାଇଥିଲେ । ତାଂକ ହସ ଥିଲା ଶୀତ ସକାଳ ଭଳି ସୁନ୍ଦର ଆଉ ମୁଲାୟମ୍ । ଇମ୍‌ରଜ୍ ବି ଆଗ୍ରହର ସହିତ ଆସି ଯୋଗ ଦେଇଥିଲେ । ପଚାରିଥିଲି ଆପଣଙ୍କର ବିବାହ ସମ୍ପର୍କରେ ମତ କ'ଣ ? ଉତ୍ତର ଥିଲା ସେ ଆନୁଷ୍ଠାନିକ, ବୈଦିକ ବିଧିବଦ୍ଧ ବିବାହରେ ବିଶ୍ୱାସ ରଖନ୍ତି ନାହିଁ । ଦୁଇଟି ହୃଦୟ-ମନର ବିଶ୍ୱାସ ଯଦି ଦୃଢ଼ ହୋଇଯାଏ ସେଠି ବିବାହର ପ୍ରଶ୍ନ ଉଠେ ନାହିଁ । ବିବାହ କେବଳ ଦୈହିକ ମିଳନ ନୁହେଁ । ସବୁଠୁ ପସନ୍ଦ choice marriage.

: ଆପଣ ଆଶାବାଦୀ ?

: ହଁ, ମୁଁ ପ୍ରଚଣ୍ଡ ଭାବରେ ଆଶାବାଦୀ ପୁଣି ଈଶ୍ୱର ବିଶ୍ୱାସୀ । ସେ ଉତ୍ତର ଦେଇଥିଲେ ।

: ଆପଣଙ୍କ ଦୃଷ୍ଟିରେ ଜୀବନ କଣ ?

: ଜୀବନ ମୋ ପାଇଁ ଏକ ସୁନ୍ଦର ଜହ୍ନ (ଜୀବନ ଏକ୍ ବିଉଟିଫୁଲ ଚାନ୍ଦ ହୈ)

: ଆଉ ପ୍ରେମ ?

: Love means admire, admire the whole beings. put your heart and soul in it.

: ଆପଣଙ୍କ ବିଶ୍ୱସ୍ତ ବନ୍ଧୁ ।

: ପୁସ୍ତକ ।

: Journyକୁ ନେଇ ଆପଣ କାହିଁକି ସବୁବେଳେ ଲେଖନ୍ତି ?

: Because my entire life is a long Journey ?

ଗଳ୍ପର ଆସର ଜମିଉଠିଥିଲା । ମୋର ବି କିଛିଟା ଡର ସଂକୋଚ ଭାଙ୍ଗି ଯାଇଥିଲା । ଅମୃତା କହି ଚାଲି ଥିଲେ ଇମ୍‌ରଜ ମୋର ବନ୍ଧୁ, ସହଯୋଗୀ ସ୍ୱାମୀ, ପ୍ରେରଣା । ଆମର ଆଇନତଃ ବିବାହ ହୋଇନାହିଁ । ଆମର ସରଳ ଦାମ୍ପତ୍ୟ ଜୀବନରେ ଆଦୌ ସନ୍ଦେହର

ଅବକାଶ ନାହିଁ । ଇମ୍‌ରଜ କହିଲେ, ସେ ଲେଖାଲେଖି କି ମୁଁ ଚିତ୍ର ଅଙ୍କିଲା ବେଳେ କେହି କାହାକୁ ଡିଷ୍ଟର୍ବ କରୁନା । ଅମୃତା ଲେଖୁଲେଖୁ କେବେ ଉଠି ଚା' କରନ୍ତି । ମୁଁ ଆଙ୍କୁଥିବା କାନ୍‌ଭାସ୍ ପାଖରେ ମୋ ପାଇଁ ଚା' କପ୍‌ଟେ ରଖିଦିଅନ୍ତି ।

ସେଠୁ ଫେରି ଆସିଲା ବେଳେ ଭାବିଲି ସତରେ ଜଣେ ସଫଳ ନାରୀ କି ପୁରୁଷ ପଛରେ ପ୍ରେରଣାଟିଏ ଥାଏ । ଅମୃତା, ଇମ୍‌ରଜ୍ made for each other ହେଲେ ସମସ୍ତେ କଣ ଇପ୍‌ସିତ ସାଥୀ ପାଇ ପାରନ୍ତି ?

ଧରିତ୍ରୀରେ ଥିଲାବେଳେ ଥରେ ଶ୍ରୀମତୀ ଶତପଥୀଙ୍କ ସହିତ ଯାଇଥିଲି ତାଙ୍କ ପିଠାପୁର ବାପଘରକୁ । ବିଖ୍ୟାତ ଉପନ୍ୟାସ 'ମାଟିର ମଣିଷ'ର ଔପନ୍ୟାସିକ ତଥା ଗାଳ୍ପିକ କବି ପଦ୍ମଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସହିତ ମୋର ସେଇଠି ହିଁ ପ୍ରଥମ ସାକ୍ଷାତ ହୋଇଥିଲା । ସେତେବେଳେ ସେ ଭଲ ଭାବରେ ଚଲାବୁଲା କରି ପାରୁନଥିଲେ ହେଁ ଆଖିର ଶକ୍ତି, ସ୍ମରଣ ଶକ୍ତି ତାଙ୍କର ଖୁବ୍ ପ୍ରଖର ଥିଲା । ଉପର ମହଲାରେ ସେ ଗଦାଏ ବହି ଭିତରେ ବସିଥିଲେ । କାନ୍ଥରେ ଟାଂଗା ହୋଇଥିବା ଶ୍ରୀମତୀ ଶତପଥୀଙ୍କର ପିଲାଦିନର ଫଟୋସହ ବିଭିନ୍ନ ଭଙ୍ଗୀର ଫଟୋ । ଇନ୍ଦିରାଗାନ୍ଧୀଙ୍କ ସହ, ଶ୍ରୀମାଙ୍କ ପାଦତଳେ ବସିଥିବା ଫଟୋ, ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେବା, ବାପା କାଳିନ୍ଦୀ ଚରଣଙ୍କ ସହ ତଥା ଭିଣୋଇ ଗୋପାଳଚନ୍ଦ୍ର ମିଶ୍ରଙ୍କ ଫଟୋ ସମେତ କକେଇ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଫଟୋ ଟାଂଗା ହୋଇଥିଲା । ଟେବୁଲ ସାରା ବହି ଫାଇଲ ସବୁ ଥାକ ମରା ହୋଇ ରଖାଯାଇଥିଲା । ତାରି ଭିତରେ ମାଟିର ମଣିଷର ସ୍ରଷ୍ଟା କାଳିନ୍ଦୀଚରଣ ନିଜେ ବହିଗଦାଟିଏ ପାଲଟି ଯାଇଥିଲେ ।

ଶ୍ରୀମତୀ ଶତପଥୀ ମୁଁ ଗଳ୍ପ ଲେଖେ ଓ ଧରିତ୍ରୀର ନାରୀ ପୃଷ୍ଠାର ସହ-ସଂପାଦିକା ଅଛି ବୋଲି ପରିଚୟ କରାଇଦେଲେ । ସେ ଯେଉଁଭଳି ଆଦରରେ ମୋତେ ବସିବାକୁ କିହଲେ ଆଜିବି ତାହା ଅଭୁଲା । ଯେତେବେଳେ 'ମାଟିର ମଣିଷ'ର ବରଜୁ ଚରିତ୍ରଟି କଳ୍ପନା କି ବାସ୍ତବରେ କେବେ ଭେଟିଥିଲେ କି ବୋଲି ପଚାରିଥିଲି । ସେ ଯେମିତି ସୁଦୂର ଅତୀତକୁ ଫେରି ଯାଇଥିଲେ । କେମିତି ସେ କେଉଁ ରେଲୱେ ଷ୍ଟେସନରେ ବାସ୍ତବରେ ବରଜୁକୁ ଭେଟିଥିଲେ ଓ ସେ ତାଙ୍କ ଜିନିଷପତ୍ର ଷ୍ଟେସନରୁ ବୋହି ନେଲାବେଳେ ତା' ଜୀବନର ଅଙ୍ଗେନିଭା କାହାଣୀ ବଖାଣିଥିଲା ଯାହା ପରବର୍ତ୍ତୀ ସମୟରେ ମାଟିର ମଣିଷକୁ ଜନ୍ମ ଦେଇଥିଲା । ତାହା ଉଚ୍ଛ୍ୱସିତ ଭାବରେ ବର୍ଣ୍ଣନା କରି ଚାଲିଥିଲେ । କେବଳ ସେତିକି ନୁହେଁ ତାଙ୍କର ସୋଭିଏତ ରୁଷ୍ ଯାତ୍ରା କଥା ମଧ୍ୟ ସେ କହି ଚାଲିଥିଲେ । ସେଠିକାର ଲୋକ, ସେମାନଙ୍କ ପୋଷାକ, ଖାଦ୍ୟ, ଗାଁ, ଘର, ବ୍ୟବହାର, ସାହିତ୍ୟ ପ୍ରୀତି ଏମିତି କେତେ କ'ଣ । ପୃଥିବୀର ସବୁଠି ସବୁ ଗାଁର କିଛି ନା କିଛି ସାମଞ୍ଜସ୍ୟ ରହିଛି । ତାଙ୍କର କଥା ସରୁ ନଥାଏ । ମୋ ଭଳି ମୁଗ୍ଧ ଶ୍ରୋତାଟିଏକୁ ସତେକି ସେ ବହୁବର୍ଷ ହେଲା

ଅପେକ୍ଷା କରୁଥିଲେ । ନନ୍ଦିନୀ ମାଡାମ୍ ଉପରକୁ ଆସି କହିଲେ ବାପା ପୁଣି ତାଙ୍କ ପୁରୁଣା ରେକର୍ଡ ବଜାଇଦେଲେ ତ । ଯାହାହେଉ ଭଲ ଶ୍ରୋତାଟି ତାଙ୍କୁ ମିଳିଗଲା । ଯେତେବେଳେ ଯିଏ ଆସନ୍ତି ବାପା ତାଙ୍କ ରୁଷ୍ ଭ୍ରମଣ କାହାଣୀ ହିଁ ବର୍ଣ୍ଣନା କରିଥାନ୍ତି । ପୁଣି ଝିଅର ମୁଖ୍ୟମନ୍ତ୍ରୀ ହେବା କଥା କହିଲା ବେଳେ ଖୁସି, ଗୌରବରେ ତାଙ୍କ ମୁହଁ ଝଲମଲ ଦିଶୁଥିଲା । ଜଣେ ମୁଖ୍ୟମନ୍ତ୍ରୀର ବାପା ହେବା (ପୁଣି ଝିଅର) କେତେ ଯେ ସମ୍ମାନ, ଗର୍ବ ଆଣିଦିଏ ସେଦିନ ତାଙ୍କୁ ଦେଖି ମୁଁ ଅଭିଭୂତ ହୋଇ ଯାଇଥିଲି । ନନ୍ଦିନୀ ମାଡ଼ାମ୍ କହୁଥିଲେ, ମୁଁ ବଡ ଚଣ୍ଡୀଟେ ଥିଲି । ରେଭେନ୍‌ସାରେ ପ୍ରେସିଡେଣ୍ଟ ପାଇଁ ଠିଆ ହେଲାବେଳେ ଏଇ ବାପା କେତେ ଆଶଙ୍କାରେ ବୁଡି ଯାଉଥିଲେ, କାଳେ କିଛି ଅଘଟଣ ଘଟିବ ବୋଲି ।

ବାପଝିଅଙ୍କର ପ୍ରୀତି, ପ୍ରଶଂସା, ବାତ୍ସଲ୍ୟ ଆଲେଖ୍ୟର ମୁଁ ଥିଲି ସେଦିନ ସେହି ପିଠାପୁର ଘରର ଉପର ମହଲାର ଏକମାତ୍ର ଦର୍ଶକ । କେତେ ମହାର୍ଘ ସ୍ମରଣୀୟ ସେଦିନଟି ଥିଲା ମୋ ପାଇଁ ! ଆଜି ମାଟିରମଣିଷର ଶିଳ୍ପୀ କାଳିନ୍ଦୀଚରଣ ନାହାଁନ୍ତି କି ତାଙ୍କ ତନୟା ନନ୍ଦିନୀ ମଧ୍ୟ ନାହାଁନ୍ତି । ନାହାଁନ୍ତି ବି ତାଙ୍କ ସ୍ୱାମୀ ଦେବେନ୍ଦ୍ର ଶତପଥୀ । କେବେଠୁ ସେମାନେ ମାଟି ହୋଇ ଗଲେଣି । ହେଲେ ସ୍ମୃତିତକ ଆଜି ବି ତାଜା । ଛୁଇଁ ଦେଲେ ସତେ କି ସେଠୁ ମକରନ୍ଦ ଝରିପଡ଼ିବ । ସତରେ ସ୍ମୃତି ସବୁଦିନ ପାଉଁଶ ତଳର ନିଆଁ ହୋଇ ରହି ଆସିଛି । ସ୍ମୃତିକୁ କ'ଣ କେବେ ସହଜରେ ଫିଙ୍ଗିହୁଏ ?

ତାପରେ ମୋର ଆଇ.ସି.ଡି.ଏସ୍ ରେ ସୁପର ଭାଇଜର ଚାକିରୀ ଓ ଠାକୁରମୁଣ୍ଡା ବ୍ଲକରେ ପୋଷ୍ଟିଂ । ଧରିତ୍ରୀରେ ରିଜାଇନ୍ ଦେଇ ଜୟେନ୍ କରେ ଠାକୁରମୁଣ୍ଡାରେ । ପୁଣି ମାସକ ପରେ ଭୁବନେଶ୍ୱର ଟ୍ରେନିଂ, ଖୋର୍ଦ୍ଧାର ଏକ ଗାଁରେ ଏକୋଇଶଦିନ ରହଣି ଓ ସେଠିକାର ବିକଟ ଦାରିଦ୍ର୍ୟର ଜୀବନ ଦର୍ଶନ କଥା ପରେ ଲେଖିବି । ସୁପରଭାଇଜର ଚାକିରୀ ଛାଡି ଉଦଳା କଲେଜରେ ଯୋଗଦିଏ ପରବର୍ତ୍ତୀ ସମୟରେ ଅଧ୍ୟାପିକା ଭାବରେ ।

ମୋଟ ଉପରେ କହିଲେ ଆଜିର ଅଧ୍ୟାପିକା ଡକ୍ଟର କବିତା ବାରିକ ମୁଁ ରାତାରାତି ହୋଇନାହିଁ । ଏହା ପଛରେ ଅନେକ ସଂଘର୍ଷ, ଶ୍ରମ, ଅନେକଙ୍କ ପ୍ରେରଣା, ସାହାଯ୍ୟ ସହିତ ମୋ ନିଜର ନିଷ୍ଠା, ସାଧନା ରହିଛି । ମୋର ଦୃଢ଼ ମନବଳ ହିଁ ମୋତେ ଏଯାଏଁ ଏଠି ପହଞ୍ଚାଇ ଦେଇଛି । କୌଣସି ସମୟରେ ମୁଁ ଭାଙ୍ଗିଯାଇ ନାହିଁ । ସବୁକ୍ଷେତ୍ରରେ ଆଡଜଷ୍ଟ କରିବା ପିଲାଦିନରୁ ଶିଖିଛି । ନିଜ ପାଖରେ କେବେ ହାରି ନାହିଁ ଯଦିଓ ଅନେକ ସମୟରେ ମନବଳ ଦୁର୍ବଳ ହେଲା ଭଳି ଲାଗିଛି । ତଥାପି କେଉଁ ଏକ ଦୁରନ୍ତ ଆଶାରେ ସେ ଦୁର୍ବଳତା ଉଭେଇ ଯାଇଛି । ସବୁବେଳେ ଅଧିକ ପଢ଼ିବାକୁ, ଜାଣିବାକୁ ଚାହିଁଛି । ଜୀବନର ବିଭିନ୍ନ ପ୍ରକାରର ପରସ୍ଥିତିର ସାମ୍ନା କରିବାକୁ ପଛେଇ ଯାଇନାହିଁ । ଆଉ ସେଇଥିପାଇଁ ବୋଧହୁଏ ଏଭଳି ଏକ ଅବସ୍ଥାରେ ନିଜ ପାଦରେ ଠିଆ ହୋଇପାରିଛି ।

# ପ୍ରିୟ ବାନ୍ଧବୀ

'କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର
ଯାର ପ୍ରାପତି ଲାଗି ଦେବତା ନର ।'

ସତରେ '' ବିପଦର ବନ୍ଧୁ ହିଁ ପ୍ରକୃତ ବନ୍ଧୁ । ମୁଁ ଥରେ ମୋର କୌଣସି ଏକ ଗଳ୍ପରେ ଲେଖିଥିଲି ବାହା ନ ହୋଇ ରହିଯାଇ ହେବ କିନ୍ତୁ ବିନା ବନ୍ଧୁରେ ବଞ୍ଚିବା ଅସମ୍ଭବ । 'ଯାହା ପାଖରେ ପରମ ହିତାଂକାକ୍ଷୀ, ନିଃସ୍ୱାର୍ଥପର ବନ୍ଧୁଟିଏ ଅଛି ସେ ସତରେ ଭାଗ୍ୟବାନ । ପୁଣି ସେହି ନାରୀଟି ତହୁଁ ଭାଗ୍ୟବତୀ ଯଦି ସ୍ୱାମୀଟି ବନ୍ଧୁ ଆସନକୁ ଓହ୍ଲାଇ ଆସନ୍ତି ।

ମୋ ଜୀବନଟା ଝରଣା ଭଳି ଅଙ୍କାବଙ୍କା । କେତେ ପ୍ରକାରର ଚରିତ୍ରର, ଅନୁଭୂତିର ସମାହାର । ଖଜୁରି ଗଛ ଭଳି ମୂଳରୁ ପାହାଚ ପାହାଚ । ମୁଁ କେତେ କେତେ ସହୃଦୟ ବନ୍ଧୁବାନ୍ଧବଙ୍କୁ ମୋ ଜୀବନରେ ଚଲାପଥରେ ପାଇଛି ପୁଣି କେତେ କାହାକୁ ବି ହରାଇ ଦେଇଛି । ତଥାପି ଅଟକି ଯାଇନାହିଁ ଜୀବନର ଗାଡି । ମୋ ଗତି ହିଁ ମୋ ବଞ୍ଚିବାର ଅସ୍ତିତ୍ୱକୁ ଜାହିର କରେ । ଯଦିଓ ଏ ଗତି କେଉଁଠି ଚଞ୍ଚଳ ତ ପୁଣି କେଉଁଠି ମନ୍ଥର ।

ଅତୀତର ପୃଷ୍ଠା ଓଲଟାଇଲା ବେଳେ ଆଜି ଅନେକ ହଜିଲା ମୁହଁ ଭିତରୁ କିଛି ପରିଚିତ ମୁହଁ ମନେପଡେ । କିଛି ସ୍ମୃତି ସହ ଦାଗ କାଟିଲା ଭଳି ଦିନମାନ ଆସି ଠିଆ ହୁଏ । ସତରେ କିଛି ଘଟଣା ଅଛି । ଚେହେରା ଅଛି । ସ୍ମୃତି ଅଛି ଆପେ ଆପେ ଅଯାଚିତ ଭାବରେ ଆସି ମନ ଝରକାରେ ଉଙ୍କିମାରନ୍ତି ଆସି । ଯଦିଓ ସମ୍ପୂର୍ଣ୍ଣ ସେ ସବୁକୁ ସଜେଇ ପ୍ରକାଶ କରିବା ସମ୍ଭବପର ନୁହେଁ, ତଥାପି ସେହିଭଳି କିଛି ସ୍ମୃତିକୁ ତାଜା କରାଯାଇପାରେ । ଜୀବନସାରା ଏହି ସ୍ମୃତି ହିଁ ହୋଇଛି ମୋର ପାଥେୟ । ଛାଇଭଳି ଚାଲିଛି ସାଙ୍ଗରେ । ସ୍ମୃତିର ପେଡିରେ ହାତ ମାରିଲା ବେଳକୁ ମନେ ହେଉଛି ସ୍ମୃତି କେତେ ସବୁଜ, କେତେ ଅନନ୍ୟ ସତରେ । ସେଥିପାଇଁ କ'ଣ ସେ ଏଡେ ମୂଲ୍ୟବାନ ? ସେଥିପାଇଁ କୌଣସି ଏକ ଛୋଟ କବିତାରେ ଲେଖିଥିଲି 'ସ୍ମୃତି ଏକ କବିତାର ନାଁ + + + ସ୍ମୃତି ଦୁବଘାସ ଉପରେ ପଡିଥିବା ରୂପା ଶିଶିରର ନାଁ... ।'

ଅନେକବର୍ଷ ତଳର ଛାଡି ଆସିଥିବା ଏଇ ଅତୀତର ଦିନଗୁଡିକୁ ତାଜା କରିବା ପରିପ୍ରେକ୍ଷୀରେ ମୁଁ ସେହି ସ୍ମୃତିର ପୃଷ୍ଠା ହିଁ ଖୋଲି ବସିଛି । କିଛି ଝାପ୍‌ସା ପୁଣି କିଛି ଏକବାରେ ତାଜା । ଯଦିଓ ଏହା ମଝିରେ ବହଳ ବୟସ ଗୁଡାଏ ପାଣି ସୁଅ ଭଳି ଆଗେଇ ଯାଇଛି । କଲେଜର କି ଅତୀତର ସେହି ଦିନଗୁଡିକ ପାଖରେ ପହଞ୍ଚି ମୋର ମନେ ହେଉଛି ସମୟ ଯେମିତି ଗୋଟିଏ ବିନ୍ଦୁରେ ସ୍ଥିର ହୋଇଯାଇଛି । ଜୀବନରେ

ମୋର କାହା ସହିତ ସମ୍ପର୍କ, ବନ୍ଧୁତ୍ୱ ଚିରସ୍ଥାୟୀ ହୋଇନାହିଁ । ଅନେକ ଭଲବନ୍ଧୁ, ବାନ୍ଧବୀଙ୍କୁ ଭେଟିଛି, ପାଇଛି । ସେମାନଙ୍କର ସାନ୍ନିଧ୍ୟ, ଜୀବନ ଦର୍ଶନ, ବ୍ୟକ୍ତିଗତ ପରାମର୍ଶ ମୋତେ ବେଶ୍ ପ୍ରେରଣା ଦେଇଛି । ଅଭିଜ୍ଞା କରିଛି ବୟସ ଅପେକ୍ଷା । କିନ୍ତୁ କ'ଣ ହେଇଛି କେଜାଣି ସମୟ ସୁଅରେ ସମସ୍ତଙ୍କୁ ହଜାଇ ଦେଇଛି । ସେମାନେ ଦୂରେଇ ଯାଇଛନ୍ତି ଅଥବା ସେମାନଙ୍କ ଠାରୁ ମୁଁ ଦୂରେଇ ଯାଇଛି । ହୁଏତ ମୋର କିଛି ଭୁଲ ରହିଯାଇଛି ଯାହା ଫଳରେ କାହାରି କି ବେଶିଦିନ ବାନ୍ଧି ରଖି ପାରେ ନାହିଁ । ବିଦାୟ ଦେଇ, ବିଦାୟ ନେଇ ମୋର ଏଇ ଛୋଟିଆ ଜୀବନର ଅଧିକାଂଶ ସମୟ କଟିଯାଇଛି ।

କେଉଁଠାରୁ ଆରମ୍ଭ କରିବି ? ବାନ୍ଧବୀ ଝଞ୍ଜାଠାରୁ ଆରମ୍ଭ କରାଯାଇ ପାରେ । ମୁଁ ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ, ବାରିପଦାରେ ଆଇ.ଏ.ରୁ ବି.ଏ ଯାଏଁ ପଢ଼ିଥିଲି ।

କଲେଜ ଜୀବନରେ ବାନ୍ଧବୀ ଝଞ୍ଜା ସହିତ ମୋର ନିବିଡ ବନ୍ଧୁତ୍ୱ ଗଢ଼ି ଉଠିଥିଲା । ସେ ଥିଲା ମୟୂରଭଞ୍ଜର ଗଡିଆ ଗାଁର ଜମିଦାର ପାଳ ବଂଶର ଝିଅ । ପ୍ରାଚୁର୍ଯ୍ୟ ଭିତରେ ତା'ର ଜନ୍ମ । ତା'ର ଦୁଇଜଣ ମା'ଥିଲେ । ବାପାଙ୍କର ଦ୍ୱିତୀୟ ସ୍ତ୍ରୀର ବଡ ଝିଅ ଥିଲା ଝଞ୍ଜା । ସେ ବଡ ସମ୍ବେଦନଶୀଳା, ସହୃଦୟା ଝିଅଟେ ଥିଲା । ଆର୍ଥିକ ଓ ଷ୍ଟାଟସ ଦିଗରୁ ଆକାଶପାତାଳ ପ୍ରଭେଦ ଥିଲେ ହେଁ ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହେଇଥିଲୁ । ତା'ର ବଡ ମାଆ (ବାପାଙ୍କର ପ୍ରଥମ ସ୍ତ୍ରୀ) ସ୍ନେହ ଓ ମମତାର ମୂର୍ତ୍ତି ଥିଲେ । ଥରେ ତାଙ୍କ ଗାଁକୁ ସେ ମୋତେ ନେଇ ଯାଇଥିଲା । ଜମିଦାରୀ ଘର ଆଉ ଜମିଦାରୀ ଆଦର କାଇଦା ଦେଖି ଆଖି ଖୋସି ହେଇ ଯାଇଥିଲା । ଲୋକେ ଏତେ ସୁଖରେ, ଚିନ୍ତାଶୂନ୍ୟ, ସଂଗ୍ରାମହୀନ ହେଇ ଆରାମରେ ଫେର-ଦିନ କଟାଇ ପାରେ ? ପ୍ରଥମଥର ପାଇଁ ଦେଖିଲି ଏ ଦିଗଟିକୁ । ଚାକର ଚାକରାଣୀ ଖଟୁଛନ୍ତି । ଭୋଜିଭାତ ହେଲାଭଳି ରନ୍ଧାବଢ଼ା, ଗହଳ ଚହଳ । ତାରି ଭିତରେ ଝଞ୍ଜା ଓ ତା'ର ସାବତ ବଡ ମାଆ କେମିତି ଅଲଗା, କିଛିଟା ନିଆରା । ବଡ ମାଆଙ୍କର ସହୃଦୟତା, ସରଳତା ମୋତେ ମାଆକୁ ମନେ ପକାଇ ଦେଲା । ଘଟଣାକ୍ରମେ ସେ ମୋର ଧରମ ମାଆ ହେଇଥିଲେ । ଫେରି ଆସିଲା ପରେ ଖୁବ୍ ଆଦରବୋଳା ଚିଠି ଲେଖୁଥିଲେ ।

ଝଞ୍ଜା ସହିତ କେତେ ଦୁଃଖ ସୁଖେ କଟିଛି । ୧୯୭୭ରୁ ୧୯୮୦ ଯାଏଁ ଦୀର୍ଘ ତିନିବର୍ଷ ପାଖାପାଖି ତା' ସହିତ ମୋର ବନ୍ଧୁତ୍ୱ । କଥା ପ୍ରସଙ୍ଗରେ ପଡେ ଭବିଷ୍ୟତରେ ଆମେ କେଉଁଠି ଥିବୁ । କ'ଣ କରୁଥିବୁ । ଦେଖାହେଲେ ଚିହ୍ନି ପାରିବୁକି ନାହିଁ । ପରସ୍ପରର ସ୍ୱାମୀଙ୍କୁ ଚିହ୍ନାଇ ଦେଲାବେଳେ ଆମେ କେମିତି କଲେଜ ଜୀବନକୁ ମନେ ପକାଉଥିବୁ ଏମିତି କେତେ କ'ଣ । ସେତେବେଳେ ନୂଆ ନୂଆ ଲେଖା ଆରମ୍ଭ କରୁଥିଲି । ସେ

କହେ, ତମେ ଖୁବ୍ ବଡ ଲେଖିକାଟିଏ ହୁଅ, ଖୁବ୍ ନାଁ କର । ମୁଁ ତାଙ୍କ ଘରେ ଏକ ପରିଚିତ ନାଁ ପାଲଟି ଯାଇଥିଲି । ଆଇ.ଏ.ରେ ଆମେ ଦୁହେଁ ଭଲ ମାର୍କ ରଖି ଫାଷ୍ଟକ୍ଲାସ୍ ପାଇଥିଲୁ । ବାରିପଦାରେ ତାଙ୍କର ନିଜସ୍ୱ ଏକ କୋଠାଥିଲା । ସକାଳିଆ କ୍ଲାସ୍ ଦିନମାନଙ୍କରେ ଅଧିକାଂଶ ଦିନ କଲେଜର ଲିଜରରେ ଆସି ମୁଁ ସେଠି ଖାଉଥିଲି । ତେବେ କ'ଣ ହେଲା କେଜାଣି ବି.ଏ.ରେ ଟେଷ୍ଟ ପରୀକ୍ଷା ଦେଲାନି ସେ । ପରୀକ୍ଷା ଡ୍ରପ୍ କଲା । ଉଦାସ ରହିଲା, କର ଛଡା ଦେଲା । ପୁଣି ଦିନେ ଶୁଣିଲି କଟକ ଚାଲିଯାଉଛି । ବଡ ମାଆ ଲେଖିଲେ କବିତା, ତାକୁ ଏଇ କଟକ ଠିକଣାରେ ବୁଝାଇ ଗୋଟେ ଚିଠିଦେବ । ତାଙ୍କ ଚିଠିପାଇ ଝଙ୍କାକୁ ଜୀବନ, ନାରୀଜୀବନରେ ସଂସାର ଏମିତି କେତେ କଥା ଲେଖି ପଠାଇଥିଲି । ଉତ୍ତର ମିଳିଲା ନାହିଁ । ତାପରେ ବି.ଏ. ପାଶ୍ କରି ଏମ୍.ଏ. ପଢ଼ିବାକୁ ମୁଁ ବାଣୀବିହାର ଚାଲିଗଲି । ବାପା ଲେଖିଥିଲେ ଝଙ୍କାର ବାହାଘର ଠିକ୍ ହେଇଯାଇଛି । ହେବ ତ ତୋତେ ଯୋଗ ଦେବାକୁ ହେବ । ମୁଁ ଭଲ ଶାଢ଼ୀଟେ ତା'ପାଇଁ କିଣିଛି । ଯାହାହେଉ ଝଙ୍କା ସହ ବେଶ୍ କିଛି ମାସ ବ୍ୟବଧାନରେ ଦେଖାହେବ ଭାବି ଉତ୍ଫୁଲ୍ଲିତ ହେଲାବେଳେ ଶୁଣିଥିଲି ତା'ର ବାହାଘର ହେଇଯାଇଛି । ଅଥଚ ସେ କି ତାଙ୍କ ଘର ଲୋକେ କେହି ମୋତେ ଡାକିନାହାଁନ୍ତି କି ଖବର ଦେଇନାହାଁନ୍ତି । କ'ଣ ମୋର ଅପରାଧ ହେଲା ଯେ ଝଙ୍କା ଓ ତାଙ୍କ ଘରଲୋକେ ବିଶେଷ କରି ବଡ ମାଆ ସମ୍ପର୍କ କାଟିଦେଲେ ! ବାହାଘରକୁ ବି ଡାକିଲେ ନାହିଁ ! ଏମିତି କ'ଣ ହେଲା ଯେ ଝଙ୍କାକୁ ପରୀକ୍ଷା ଡ୍ରପ୍ କରି କଟକ ଯିବାକୁ ପଡିଲା ଓ ସେ ତା'ର ପ୍ରିୟ ବାନ୍ଧବୀଟିକୁ ସାକ୍ଷାତ କଲାନି କି ବାହାଘରରେ ସାମିଲ କରିବାକୁ ଉଚିତ୍ ମନେ କଲା ନାହିଁ ? ଏ ରହସ୍ୟ ଆଜିଯାଏଁ ଫିଟାଇ ପାରିଲି ନାହିଁ । ଥରେ ବି ସେ ଚିଠିଟିଏ ଲେଖି ଜଣାଇଲାନି କି ବାରିପଦା ଆସିଲାବେଳେ ମୋତେ ଖୋଜିଲା ନାହିଁ । କେଜାଣି ବଡ ଘର ବଡ ଗୁମର କଥା । ମୋ ବାନ୍ଧବୀ ତାଲିକାରୁ ସେ ସବୁଦିନ ଲାଗି ହଜିଗଲା ।

ଏ ଭିତରେ କେତେବର୍ଷ ଚାଲି ଗଲାଣି । ଆଜିଯାଏଁ ଦେଖା ହେଇନି । ପାଠ ସାରି ଏମ୍‌ଫିଲ୍, ପିଏଚ୍‌ଡି, ଡିଲିଟ୍ କରି ଚାକିରି କରି ବାହାହେଇ ନିଜେ ମାଆ ପାଲଟି ମୁଁ ବୟସ୍କା ହେଇଗଲିଣି । ଓଡ଼ିଶା ଭିତରେ ଅଛୁ କିନ୍ତୁ ଆଶ୍ଚର୍ଯ୍ୟ କେହି କାହାକୁ ଭେଟିପାରିନାହୁଁ କି ଖବର ଶୁଣିନାହୁଁ । କେବଳ ଥରେ କାହାଠାରୁ ଶୁଣିଥିଲି ତା' ସ୍ୱାମୀ ଲେବର ଅଫିସର ଓ ଦୁଇ ପୁଅର ମାଆ ଏବେ ସେ । ଆଶ୍ଚର୍ଯ୍ୟ ୧୯୮୦ରୁ ଏଯାଏଁ ପାଖାପାଖି ୨୦୧୦ରେ ୩୦ବର୍ଷ ହେଲା, କେଉଁ ଛକରେ, ବଜାରରେ, ମେଳାରେ, ସହରରେ, ବସ୍ କି ଟ୍ରେନ୍‌ରେ ବି ଆମର ଦେଖା ହୋଇନାହିଁ । କୌଣସି ଯୋଗାଯୋଗ ମଧ୍ୟ ନାହିଁ । ପୁଣି ଆମେ

ଦୁହେଁ ରହୁଛୁ ଓଡ଼ିଶାରେ । କେମିତି ଦିଶୁଥିବ ଝଙ୍କା ଆଜିକାଲି ବୋଲି ବେଳେବେଳେ କୌତୂହଳ ମନରେ ଜାଗେ । ଚେହେରା ବଦଳି ଯାଇଥିବ । ଆମେ ଦୁହେଁ ମଧ୍ୟବୟସ୍କା ପରସ୍ପରକୁ ଭେଟିଲେ ବି କ'ଣ ସହଜରେ ଚିହ୍ନିପାରିବୁ ? ଯଦି ସତରେ ଦେଖାହୁଏ କ'ଣ ଆମେ ଗପିବା ? କ'ଣ ପଚାରିବା ? କାହିଁକି ସେ ଭୁଲିଗଲା ବୋଲି କ'ଣ ପଚାରିବି ? ଧ୍ୟାତ୍, ଏ ତ ବହୁ ପୁରୁଣା ପ୍ରଶ୍ନ । ଝିଅମାନେ ବାହା ହେଲେ ସତରେ କ'ଣ ବଦଳି ଯାଆନ୍ତି ନା ତା'ର କିଛି ଅସହାୟତା ଥିଲା ଯାହା କି ସେ ମୋ ପାଖରେ ପ୍ରକାଶ କରିବାକୁ ସଙ୍କୋଚ କଲା ? ତଥାପି ମୁଁ ସବୁବେଳେ କାମନା କରେ, ସେ ଯେଉଁଠି ଥାଉ, ଭଲରେ ଥାଉ । ସୁଖରେ ଥାଉ । ତା' ସହିତ ଯେଉଁ କେତୋଟି ଦିନ ମିଶିଥିଲି ଭଲ ବାନ୍ଧବୀର ଏକ ସ୍ନିଗ୍ଧ, ମଧୁର ସତ୍ତା ପାଇଥିଲି । ସେତକ ଯାହା ପୁଞ୍ଜି ଆଉ ସେଥିପାଇଁ ବୋଧହୁଏ ନିଜର ଜୀବନୀ ଲେଖିଲା ବେଳେ ଝଙ୍କା ପାଇଁ ଦି'ଧାଡି ଲେଖିବାର ଲୋଭ ସମ୍ବରଣ କରିପାରିଲି ନାହିଁ । ସତରେ ସେ ତା' ନାଁ ଭଳି ଅଚାନକ ଝଙ୍କା ହିଁ ଥିଲା । ମୋ ଜୀବନ ପରିଧିକୁ ହଠାତ୍ ଆସି ପୁଣି ହଠାତ୍ ଚାଲିଗଲା ।

ଜାଣେନା ଏ ଜୀବନରେ ତା' ସହ ଦେଖାହେବ ନା ନାହିଁ ।

× × × × ×

ବାଣୀବିହାରରେ ଏମ୍.ଏ. ପଢ଼ିଲାବେଳେ ଆଉ ଏକ ବାନ୍ଧବୀ ସହ ମୋର ବନ୍ଧୁତ୍ୱ ଗଢ଼ିଉଠେ । ତା' ନାଁ ସୁପ୍ରଭା ନାୟକ । ଡାକ ନାଁ ଝୁନୁ । ଘର ଭବାନୀପାଟଣାରେ । ଜୋଗ୍ରାଫିରେ ସେ ପି.ଜି. କରୁଥିଲା । ଆମେ ପି.ଜି. ପ୍ରଥମ ବର୍ଷରେ ବାଣୀବିହାରର କୁନ୍ତଳାକୁମାରୀ ଛାତ୍ରୀ ନିବାସରେ ଗୋଟାଏ ରୁମ୍‌ରେ ଚାରିଜଣ ରହୁଥିଲୁ । ଦ୍ୱିତୀୟ ବର୍ଷ ବେଳକୁ ଦୁଇଜଣିଆ ସିଟ୍ ମିଳିଲା । ଝୁନୁ ଓ ମୁଁ ରୁମ୍‌ମେଟ୍ ହେବାକୁ ଇଚ୍ଛାକଲୁ । ତା'ର ଭୂଗୋଳ ହେଲାବେଳକୁ ମୋର ଓଡିଆ । ତଥାପି ଝୁନୁର ସାହିତ୍ୟ ପ୍ରୀତି ସହ ଭଲ ପାଠିକା ହେବାର ଗୁଣ ଯୋଗୁଁ ବୋଧହୁଏ ସେ ମୋର ଅନ୍ତରଙ୍ଗ ପାଲଟି ପାରିଥିଲା । ପୁଣି ଝୁନୁ ମୋତେ କେବେ କବିତା ବୋଲି ଡାକେନାହିଁ । 'ରାଇଟର', 'ଶଳା ରାଇଟର', 'ବେ ରାଇଟର' ଏମିତି ସମ୍ବୋଧନ କରେ । ମୋ ପ୍ରାରମ୍ଭିକ ଲେଖିକା ଜୀବନର ସେ ଥିଲା ମୁଗ୍ଧ ପାଠିକା । ଦୁହେଁ ଦୁଇଟି ଉପାନ୍ତ ଗଡଜାତ ଜିଲ୍ଲାରୁ ଆସିଥିଲୁ । ବାଣୀବିହାରରେ ପ୍ରାୟ ଅଢ଼େଇବର୍ଷ ପାଖାପାଖି ରହଣି ଭିତରେ ଝୁନୁ ସହିତ ଅନେକ ସୁଖଦୁଃଖର ଦିନ କଟିଛି । ନିମ୍ନ ମଧ୍ୟବିତ୍ତ ପରିବାରରୁ ଦୁହେଁ ଆସିଥିଲୁ । ମୁଁ ଗଳ୍ପ ଲେଖି ବସିଲେ ସେ ଚୁପ୍‌ଚାପ୍ ତା' କପିଟିଏ ଟେବୁଲ ଉପରେ ଥୋଇଦିଏ । ଗଳ୍ପ ଲେଖା ସରିଲେ ପ୍ରଥମ ପାଠିକା ହେବାର ଗୌରବରେ ସେ ମନ୍ତ୍ର-ମୁଗ୍ଧ ହୋଇ ମୋ ଗଳ୍ପ ପଢ଼ା ଶୁଣେ । ମତାମତ

ମଧ୍ୟ ଦିଏ । ମାର୍କେଟିଂ, ସିନେମା ଦେଖା, ବୁଲାବୁଲି, ରନ୍ଧାବଢ଼ା, ଶାଢ଼ୀ କିଣା ଏମିତି କେତେ ହଜିଲାଦିନ ଛାଇହୋଇ ରହିଛି । ଭବିଷ୍ୟତ ଜୀବନକୁ ନେଇ ଆମେ ସ୍ୱପ୍ନ ଦେଖୁ । ପରସ୍ପରର ପରିବାରକୁ ନେଇ ନିଶ୍ଚେ କେବେ କେଉଁଠାରେ ଏକତ୍ର ହେବୁ ବୋଲି ସ୍ୱପ୍ନ ଦେଖୁ । ମୋର ଗଳ୍ପ ଝଙ୍କାର, ଇସ୍ତାହାର, ଗୋକର୍ଣ୍ଣିକା,ଗଳ୍ପଝରରେ ନୂଆ ନୂଆ ପ୍ରକାଶ ପାଉଥାଏ । ସେତେବେଳେ ପାଠକମାନେ ପ୍ରଚୁର ପାଠକୀୟ ମତାମତ ଦେଇ ଚିଠି ଲେଖୁଥିଲେ । ଆଜି ଭଳି ମୋବାଇଲ୍ କି ଟି.ଭିର ପ୍ରଚଳନ ନଥିଲା । ବେଳେବେଳେ ପାଠକମାନଙ୍କର ପ୍ରେମପତ୍ର ମଧ୍ୟ ମିଳୁଥିଲା । ସେଭଳି ପ୍ରେମପତ୍ରକୁ ନେଇ ମୁଁ ଓ ମୋ ରୁମ୍‌ମେଟ୍ ସୁପ୍ରଭା ବେଶ୍ ଏକଟିଙ୍ଗ୍ କରୁ । ହସିହସି ଗଡି ଯାଉ । ଓଡ଼ିଶାରେ ଲେଖକ ଲେଖିକାମାନଙ୍କୁ ନିଶ୍ଚିତ ଭାବରେ ଏଭଳି ପ୍ରେମପତ୍ର କେବେ ନା କେବେ ମିଳିଥିବ । ବିଶେଷ କରି ୧୯୮୧, ମାର୍ଚ୍ଚ ଝଙ୍କାରରେ ପ୍ରଥମ କରି ମୋର 'ସ୍ମୃତିର - ସହର' ଗଳ୍ପ ପ୍ରକାଶ ପାଇଲା ପରେ ଓଡ଼ିଶା ବାହାରେ ବରୋଦା ୟୁନିଭରସିଟିରେ ରିସର୍ଚ୍ଚ କରୁଥିବା ଶିକ୍ଷା ବିଭାଗରେ ମୋର ଜଣେ ଅଦେଖା ପାଠକ ଏମିତି ପତ୍ର ଲେଖିବା ଆରମ୍ଭ କଲେ । ପୃଷ୍ଠା ପରେ ପୃଷ୍ଠା ସେ ଚିଠି ଲେଖୁଥିଲେ । ମୁଁ ପୋଷ୍ଟ କାର୍ଡରେ କାଁ ଭାଁ ଉତ୍ତର ଦେଉଥିଲି । ସେତେବେଳେ ଓଡ଼ିଶା ଓ ଓଡିଶା ବାହାରୁ ଗୋଟାଏ ଗଳ୍ପପାଇଁ ପ୍ରାୟ ସତୁରିରୁ ଊର୍ଦ୍ଧ୍ୱ ଚିଠି ପାଇଥିଲି । 'ସ୍ମୃତିର ସହର' ଭଳି ଅନ୍ୟ କେଉଁ ଗଳ୍ପ ପାଇଁ ଆଜିଯାଏଁ ମୁଁ ଏତେ ସଂଖ୍ୟାରେ ଚିଠି ପାଇନାହିଁ । ତେଣୁ ମନେହୁଏ 'ସ୍ମୃତିର ସହର' ଗଳ୍ପଟି ମୋ ଜୀବନର ଏକ ମାଇଲ ଖୁଣ୍ଟ । ହଁ, ବରୋଦାରୁ ପ୍ରଭାତ ନାମକ ମୋର ସେହି ପାଠକଜଣକ ଥରେ ଲେଖିଥିଲେ, 'ବାସ୍ତବିକ କବିତା ଦେବୀ ! ସ୍ମୃତିର ସହରଟିଏ ଗଢ଼ିବା ଲାଗି ଆପଣଙ୍କ ଭଳି ଯନ୍ତ୍ରୀଟିଏ ମୋର ଦରକାର । ଆପଣଙ୍କୁ ନେଇ ମୁଁ ସେଭଳି ଏକ ସହର ଯଦି ଗଢ଼ିଥାଏ ତାହାଲେ କ'ଣ ଭୁଲ କରିଛି ବୋଲି ଆପଣ ଭାବୁଛନ୍ତି ?' ସେ ପତ୍ରକୁ ନେଇ ଦୁଇ ବାନ୍ଧବୀ ନାଟକ ଆରମ୍ଭ କରି ଦେଇଥିଲୁ, 'ନା ବନ୍ଧୁ ! ଭୁଲ କରିଛନ୍ତି ବୋଲି କାହିଁକି ଏଭଳି ଦୁଃଖ ପାଉଛନ୍ତି । ଏଭଳି ଭୁଲ ହୋଇଯାଏ ଆପେଆପେ । ମୁଁ ତ କଳାର ଛାତ୍ରୀଟିଏ । ଯନ୍ତ୍ରୀ ହେବି କେମିତି ? ତେବେ ଆପଣଙ୍କର ହୃଦୟର ଏଇ ଅଟୋମେଟିକ୍ ଆୱାଜକୁ କିଏ ରୋକିପାରିବ ବନ୍ଧୁ ?'

ପ୍ରଭାତ ନାମକ ସେହି ଅଦେଖା ପାଠକଟି ବେଶ୍ କେତୋଟି ଲମ୍ବା ଚିଠି ଲେଖୁଥିଲେ ଉତ୍ତର ନପାଇଲେ ବି । ଥରେ ସେ ଲେଖିଲେ ମୁଁ ଅମୁକ ଦିନ ବାଣୀବିହାର ଯାଉଛି ଦେଖାକରିବି । ପ୍ଲିଜ୍, ଆପଣ ଥିବେ ଯେମିତି ହେଲେ । ମୁଁ ଅଡୁଆରେ ପଡିଗଲି । ନିର୍ଦ୍ଦିଷ୍ଟ ଦିନ ସୁପ୍ରଭା ଓ ମୁଁ ଏକ ଯୋଜନା କଲୁ । ପାଠକ ମହାଶୟ ପହଞ୍ଚି ଗଲେ ।

ୱାଚ୍‌ମ୍ୟାନ୍ ଡାକିଲା ଆପଣଙ୍କ ଭିଜିଟର । ମୁଁ ଯାଇ ଦେଖା କଲି । ସେ ଆଗ୍ରହର ସହିତ ନିଜର ପରିଚୟ ଦେଲେ । ମୁଁ କହିଲି, ସେତ ତା'ର ରିଲେଟିଭ୍ ଘରକୁ ଚାଲିଯାଇଛି । ମୁଁ କବିତାର ରୁମ୍‌ମେଟ୍ । ସେ କହିଲେ, ମୋ ଆସିବା କଥା ସେ କିଛି କହି ନାହାଁନ୍ତି । ମୁଁ କହିଲି, କାହିଁ ନା ତ । କହନ୍ତୁ ତ ଆପଣ କିଏ ଆସିଥିଲେ ? କବିତାର କ'ଣ ହେବେ ? ମୁଁ ଆସିଲେ ତାକୁ କହିଦେବି । ଭଦ୍ରବ୍ୟକ୍ତି କହିଲେ, ସେମିତି କିଛି ନୁହେଁ । ହେଉ, ମୁଁ କାଲି ଆସିବି । ସେ ଫେରିଗଲେ । ସେତିକି ବେଳେ ମୋ ସମ୍ପାଦନାରେ କୁନ୍ତଳାକୁମାରୀ ଛାତ୍ରୀନିବାସର ମୁଖପତ୍ର ପ୍ରକାଶ ପାଇଥାଏ । ସେଠି ପ୍ରକାଶିତ ହୋଇଥାଏ ମୋର ଏକ ଛୋଟ ପାସପୋର୍ଟ ଫଟୋ । କେମିତି କେଜାଣି ସେ ପତ୍ରିକାଟି ଭଦ୍ରବ୍ୟକ୍ତିଙ୍କର ହାତରେ ପଡିଯାଇଥିଲା । ସେ ତା'ପରଦିନ  ହଷ୍ଟେଲକୁ ଫୋନ୍ କରିଥିଲେ । ମୁଁ କବିତା କହୁଛି କହିବାରୁ କହିଥିଲେ, ଆପଣ କାହିଁକି କବିତା ବାରିକ ବୋଲି ପରିଚୟ ଦେଲେନି ? ଆପଣଙ୍କ ଫଟୋ ଦେଖି ମୁଁ ତ ଚମକି ପଡିଲି । ଆପଣଙ୍କର ସହୃଦୟ ଜଣେ ପାଠକ ହିସାବରେ କାମନା କରୁଛି, ଆପଣ ଖୁବ୍ ବଡ ଲେଖିକାଟେ ହୁଅନ୍ତୁ । ଅନେକ ନାଁ କରନ୍ତୁ । ମୁଁ କିଛି କହିବା ଆଗରୁ ସେ ଫୋନ୍ ରଖି ସାରିଥିଲେ । ଗୋଟାଏ ଛୋଟ ଜୋକ୍ ଯେ ଏମିତି ଭାବରେ ରୂପ ନେବ ଭାବିନଥିଲି ।

ସୁପ୍ରଭା ଓରଫ୍ ଝୁନୁଠାରୁ ବିଦାୟ ନେଲାବେଳେ ଆମେ ପରସ୍ପର ବେଶ୍ କାନ୍ଦିଥିଲୁ । ବାଣୀବିହାର ଛାଡିଲା ପରେ କିଛିଦିନ ପତ୍ରାଳାପ ଚାଲିଥିଲା । ପୁଣି ଧୀରେ ଧୀରେ ବନ୍ଦ ହୋଇଗଲା । ପରସ୍ପରର ଠିକଣା ବି ହଜିଗଲା । କିଏ କେଉଁଠି ରହିଲେ, କ'ଣ ଚାକିରୀ କଲେ, କାହାକୁ ବାହାହେଲେ ନା ନାହିଁ ଏ ଖବର ବି ଜାଣିପାରିଲି  ନାହିଁ । ୧୯୮୩ ମସିହାରୁ ୨୦୦୬ ମସିହା ଭିତରେ କୌଣସି ଏକ ଦିନରେ ଡି.ପି.ଆଇ ଅଫିସରେ ଦେଖାହେଲା । ମୁଁ ତାକୁ ଦେଖିନଥିଲି । ସେ 'ଶଳା ରାଇଟର, ଚିହ୍ନି ପାରୁନାହୁଁ' କହି ଧାଇଁ ଆସିଲା । ଆମେ ସ୍ଥାନକାଳ ପାତ୍ର, ଭୁଲି ପରସ୍ପରକୁ ଜଡାଇ ଧରିଲୁ । ଦୁହେଁ ଦୁହିଁଙ୍କ- ସମ୍ପର୍କରେ ଜାଣିବା ଲାଗି କୌତୂହଳୀ ଥିଲୁ । ସେ ଓ ମୁଁ ଡି.ପି.ଆଇ ଅଫିସ୍ ଆସିଥିଲୁ ପ୍ରମୋସନ ପାଇଁ ସିସିଆରର ନୋଅବ୍‌ଜେକ୍‌ସନ୍ ସାର୍ଟିଫିକେଟ୍ ନେବାକୁ । କଥା ପ୍ରସଙ୍ଗରେ ଜାଣିଲି ସେ ଭୁବନେଶ୍ୱରରେ ବି.ଜେ.ବି କଲେଜରେ ଜେଗ୍ରୋଫି ଲେକ୍‌ଚରର ଭାବେ ଅବସ୍ଥାପିତ । ସ୍ୱାମୀ ତା'ର ଇଞ୍ଜିନିୟର । ଖୁବ୍ ଅସୁସ୍ଥ ଥିବା ଅବସ୍ଥାରେ ୟୁଟ୍ରାସ୍ ବାହାର କରି ଦିଆଯାଇଛି । ସେ କେବେ ମାଆ ହୋଇ ପାରିବନାହିଁ । ମୋର ଗୋଟିଏ ପୁଅ ଓ ମୁଁ ଏବେ ତା' ସହର ଭବାନୀପାଟଣାକୁ ବଦଳି ହୋଇ ଯାଉଛି ବୋଲି କହିବାରୁ ସେ ବିଶେଷ କିଛି ଆଗ୍ରହ ଦେଖାଇଲା ନାହିଁ । ପୁଣି ମୁଁ ଭବାନୀପାଟଣା ସ୍ୱୟଂଶାସିତ

ମହାବିଦ୍ୟାଳୟରେ ଜୟେନ୍ କଲାପରେ ଘଟଣାକ୍ରମେ ହେଲି ଛାତ୍ରୀ ନିବାସର ତତ୍ତ୍ୱାବଧାରିକା । ରାସ୍ତାକୁ ଲାଗି ଛାତ୍ରୀନିବାସ ଓ ଗୋଟିଏ ରୁମ୍‌ରେ ରହୁଥିଲି । ଶୁଣିଥିଲି ଝୁନୁ ଏକ୍ସଟାରନାଲ୍ ହେଇ କଲେଜକୁ ଆସିଥିଲା । ସେହି ବାଟ ଦେଇ ଗଲା ଓ ମୁଁ ଏଠି ରହୁଛି ବୋଲି ମଧ ଶୁଣିଲା । ହେଲେ ସମୟ ନାହିଁ ବୋଲି ଦେଖା ନକରି ଫେରିଗଲା । ଜାଣିଥିଲେ ମୁଁ ବରଂ ତା' ସହ ଦେଖା କରିଥାନ୍ତି ।

ହାୟ ! ବେଳ ନଥିବାର ଜୀବନକୁ ନେଇ ଜୀଉଁଥିବା ଆମର ସେଦିନ ଭିତରେ କେତେ ବଦଳି ଯାଇଛି ବନ୍ଧୁତ୍ୱର ସଂଜ୍ଞା । ପରସ୍ପର ଦାନାପାଣି ସଂଗ୍ରହ କରିବାରେ ପିମ୍ପୁଡ଼ି ଭଳି ଧାଡିବାନ୍ଧି ଚାଲିଛୁ ଯାହା । ପାଞ୍ଚମିନିଟ୍ ସମୟ ବାହାର କରିବାକୁ ବି ଆମେ ନାରାଜ । ଅଥଚ ଦୁଇବର୍ଷରୁ ଉର୍ଦ୍ଧ୍ୱ ପଢ଼ା ଜୀବନରେ ଗୋଟିଏ ରୁମ୍‌ରେ ରହି ସୁଖଦୁଃଖ ବାଣ୍ଟିବାର ଯୋଜନା କରିଥିଲୁ । ଏପରିକି ସୁପ୍ରଭାର ନିଜ ସହର ଭବାନୀପାଟଣାକୁ ଯେ ମୁଁ ଦିନେ ଆସିବି ଏକଥା ବି ସ୍ୱପ୍ନରେ ଭାବିନଥିଲି । ତା' ସହରରେ ସେ ମୋତେ ଦେଖା ନ କରି ଫେରିଯିବା ଘଟଣାଟା ଖୁବ୍ ଆଘାତ ଦେଇଥିଲା । ଜୀବନରେ କାହାରି ସହିତ ବନ୍ଧୁତ୍ୱ ମୋର ଚିରସ୍ଥାୟୀ ହୋଇନାହିଁ । ସେଥିପାଇଁ ତ ମୋର ମନେହୁଏ ମୋ ଜୀବନ ହେଲା ପାଇ ହରାଇବାର । ସମୟର ସ୍ରୋତରେ ଦୀପ୍ତି, ବନଲତା, ରୀନା, ପ୍ରତିମା, ବିଦ୍ୟୁତ୍, ରାଜଶ୍ରୀ ଭଳି ବହୁ ବାନ୍ଧବୀ ମିଳିଛନ୍ତି ଓ ଘଟଣାକ୍ରମେ ମଧ ହଜି ଯାଇଛନ୍ତି । କେବଳ ସମୁଦ୍ରର ବେଳାଭୂମିରେ ଶାମୁକା ଗୋଟାଇବା ଭଳି ଜୀବନର ମଧ୍ୟାହ୍ନରେ ଛିଡା ହୋଇ ମୁଁ ସ୍ମୃତିର ଶାମୁକା ଗୋଟାଇ ଚାଲିଛି ।

## ମୋ ବାପା

ମୋ ଜୀବନରେ ବାପା ୰ ରବୀନ୍ଦ୍ର ନାଥ ବାରିକ (ଡାକ ନାଁ ବାବାଜୀ)ଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ପିଲାଦିନରୁ ମାଆଙ୍କୁ ହରାଇଥିବାରୁ ମାଆଙ୍କ ସମ୍ପର୍କରେ ଏତେଟା ସ୍ପଷ୍ଟ ଧାରଣା ନାହିଁ । ତେବେ ସେ ଜଣେ ସରଳ, କପଟହୀନା, ଦୟାବତୀ, ଧାର୍ମିକା ମହିଳା ଥିଲେ । ନିଜ ଦିଅରମାନଙ୍କୁ ପୁଅ ଭଳି ପାଳିଥିଲେ । ଶାଶୁ ଶ୍ୱଶୁରଙ୍କ ମୃତ୍ୟୁପରେ ବଡ ଭାଉଜରୁ ମାଆ ପାଲଟି ଯାଇଥିଲେ । ଅକାଳ ମୃତ୍ୟୁ ଆସି ତାଙ୍କୁ ଅସମୟରେ ନେଇଗଲା । ମାଆ ଇନ୍ଦୁମତୀ ବାପାଙ୍କୁ ନିଃସଙ୍ଗ କରି, ପରିବାରର ବୋଝ ଓଜାଡି ଦେଇ ସବୁଦିନ ପାଇଁ ଚାଲିଗଲେ ।

ବାପା କେବଳ ମୋର ଜନ୍ମଦାତା ନଥିଲେ ସେ ଥିଲେ ମୋ ସାରସ୍ୱତ ଜୀବନର ପ୍ରେରଣାଦାତା । ଆଜି ଯେଉଁଠି ମୁଁ ଠିଆ ହୋଇଛି ତା'ରି ଭିତ୍ତି ବାପା ହିଁ ପକାଇ ଥିଲେ ।

ଆମ ତିନିଭଉଣୀଙ୍କ ଭିତରେ ମୁଁ ଥିଲି ମଝିଆଁ । ମୋ ଉପରେ ତାଙ୍କର ବହୁ ଆସ୍ଥା, ଭରସା ଥିଲା । ମୁଁ ପାଠ ପଢି ମଣିଷ ହେବି । ତାଙ୍କର ସାହାରା ପାଲଟିବି, ଏଭଳି ଏକ ସ୍ୱପ୍ନ ସେ ଦେଖୁଥିଲେ । ମୋର ପ୍ରଶଂସା, ଉନ୍ନତିରେ ଆଖି ତାଙ୍କର ଛଳଛଳ ହୋଇ ଉଠୁଥିଲା। ଦେହ ଖରାପ ହେଲେ ରାତି ରାତି ଅନିଦ୍ରା ରହି, ବିଛଣାରେ ବସି ରହି ଗୋଡ ହାତ ଆଉଁସି ଦେଉଥିଲେ । ଉଭୟ ମାଆ ବାପାଙ୍କର ସ୍ନେହ ତାଙ୍କ ଠାରୁ ଆମେ ଭାଇଭଉଣୀ ପାଇଥିଲୁ । ଏତେ ବଡ ସଂସାରରେ ମୁଁ ମୋ ବାପାଙ୍କୁ ଯେତେ ଭଲ ପାଇଛି, ଯେତେ ନିବିଡ ଆତ୍ମୀୟତାରେ ବାନ୍ଧି ହୋଇଯାଇଛି ଆଉ ସେମିତି କାହାକୁ ପାଇନାହିଁ କି ଭେଟିନାହିଁ । ସଂସାରଟା ମୋର ବାପାମୟ ପାଲଟି ଯାଏ । ଅକାଳ ବାର୍ଦ୍ଧକ୍ୟ, ଦୁର୍ବଳ ଦେହଧାରୀ ମଣିଷଟି ମୋର ସବୁଠୁଁ ପ୍ରିୟ ଥିଲେ । ବାପାଥିଲେ ତାଙ୍କ ବାପା ମାଆଙ୍କର ପ୍ରଥମ ପୁଅ । ଉପରେ ଥିଲେ ଦୁଇଭଉଣୀ । ତଳେ ଦୁଇ ଭାଇ । ବହୁ ଆଦର, ଯତ୍ନ, ଗେହ୍ଲାରେ ବଢ଼ିଥିଲେ । ଅତି ଆଦର, ଯତ୍ନରେ ବଢ଼ି ଥିବା ବାପାଙ୍କ ଜୀବନ ଯେ ଏତେ ସଂଘର୍ଷପୂର୍ଣ୍ଣ ହେବ ସେ କ'ଣ କେବେ ଭାବିଥିଲେ । ନାଳରେ ଯିଏ ପିଲାଦିନେ କ୍ଷୀରଗ୍ଲାସ୍ ଗଡାଇ ଦେଉଥିଲେ ସେ ପୁଣି ଦୁଇମୁଠା ଖାଇବା ପାଇଁ ସଂଗ୍ରାମ କଲେ । ବାପା ମାଆ ଜଣେ ପରେ ଜଣେ ଡକାଡକି ହୋଇ ଚାଲିଗଲେ । ସବା ବଡଭଉଣୀ ବି ତାଙ୍କର ଅକାଳରେ ମୃତ୍ୟୁ ବରଣ କଲେ । ବଡପୁଅ ହିସାବରେ ଦୁଇ ସାନଭାଇଙ୍କର ଦାୟିତ୍ୱ ତାଙ୍କ ଉପରେ ଓଜାଡି ପଡିଲା । ତେବେ ମାଆ ତାଙ୍କୁ ନିରାଶ କଲେନାହିଁ । ନିଜର ସନ୍ତାନ ଭଳି ଆପଣେଇ ନେଲେ । ବାପା ମାଆଙ୍କର ଗହଣାପତ୍ର ବି ବିକିଦେଲେ ଭାଇମାନଙ୍କର ପାଠ ପଢ଼ାପାଇଁ । ଭାଇମାନଙ୍କର ଚାକିରୀ, ବାହାଘରରେ ଗୁଡାଏ ଧାର କରିଥିଲେ । ହେଲେ ଦୁଇ ଭାଇ ବାହା ହେବାପରେ ଭିନ୍ନେ ହେବାକୁ ଜିଦ୍ କରିଥିଲେ ଓ ଧାର୍ ଟଙ୍କା ସୁଝାଇବାକୁ ରାଜି ହୋଇ ନଥିଲେ । ଗୋଟିଏ ଘର ତିନିଭାଗ ହେଲା । ସିନ୍ଦୂକ ପଲଙ୍କଠାରୁ ଡେକ୍‌ଚି କରେଇ, ଛାଞ୍ଚୁଣୀ ମୁଠାଯାଏଁ ଭାଗ ହେଲା । ଘରେ ତିନିତିନିଟା ଚୁଲ୍ଲୀ ଜଳିଲା । ଅର୍ଥ ଧରି ବାପା ବାରିପଦାର ବେଲ ଗଡିଆକୁ ଉଠିଆସିଲେ । ମୂଳଘର ଯାହା ଥାନା ପଛପଟେ ଥିଲା ସେଠି ଅପା ଓ ଅଶୋକ ଭାଇର ଜନ୍ମ ହୋଇଥିଲା । ନିଜ ଭିଟାମାଟି ଛାଡି ଆସିଲା ବେଳେ, ପୁଅଭଳି ମଣିଷ କରିଥିବା ଭାଇମାନଙ୍କଠାରୁ ଆଘାତ, ଧକ୍‌କା ପାଇଲାବେଳେ ସେଦିନ କେତେ ବ୍ୟଥିତ ହୋଇଥିବେ ବାପା ତାହା ଅନୁମାନ କରି ମୁଁ ନିଜେ ଭାଙ୍ଗି ପଡିଛି । ଛୋଟ ଦୁଇଟା ପିଲା ସହ ମାଆ, ଶାଶୁଙ୍କୁ ଧରି ଦାଣ୍ଡରେ ଠିଆ ହେଲାବେଳେ କେତେ ଅସହାୟ ହୋଇ ପଡିନଥିବେ । ଅଥଚ ଭାଇ ଓ ଭାଇବୋହୂମାନେ ସେଦିନ କୁଆଡେ ଖୁସିରେ ଉତ୍‌ଫୁଲ୍ଲିତ ହୋଇ ଉଠିଥିଲେ ।

ମୋର ଜନ୍ମ ପରେ ଦୁଇ ତିନିବର୍ଷ ପରେ ଆସିଥିଲା ତପନ, ଯାହା କଥା ଆଗରୁ ମୁଁ ଲେଖି ସାରିଛି । ମୃତ ପୁତ୍ରକୁ କାନ୍ଧେଇ ମଶାଣିପଦାରେ ପୋତି ଦେଇ ଆସିବାର ଦୁଃଖ ସେ ହିଁ ଜାଣିଥିବେ । ପୁତ୍ରହରା ବାପାଙ୍କର ଶୋକ ଦେଖିବାକୁ, ଜାଣିବାକୁ କେହି ନଥିଲେ । ସ୍ତ୍ରୀ ମୁଣ୍ଡପିଟି କାନ୍ଦିବା ବେଳେ, ଶାଶୁ ନାତିକୁ ହରାଇ ଗଡିଗଲା ବେଳେ, ବାପା ହିଁ ଧୈର୍ଯ୍ୟ ଧରିବାକୁ କହୁଥିଲେ । ସତରେ ସେ ଥିଲେ ଧୈର୍ଯ୍ୟର ପାହାଡ । ଭାଙ୍ଗିଯାଇଛନ୍ତି ପଛେ ନଇଁ ଯାଇନାହାଁନ୍ତି । କେବେ କାହାର ଅଶୁଭ ମନାସି ନାହାଁନ୍ତି କି ଅନିଷ୍ଟ ପାଞ୍ଚି ନାହାଁନ୍ତି । ଅଥଚ ତାଙ୍କ ଜୀବନରେ ଏତେ ଝଡ ଉଠିବାର ଥିଲା ? ପରର ମଙ୍ଗଳ ମନାସୁଥିବା ମଣିଷଟି କ'ଣ ତା' ଜୀବନରେ ସବୁଠୁ ବେଶୀ କଷ୍ଟ ଉଠାଏ ?

ଅକାଳରେ ଫେର୍ ସ୍ତ୍ରୀକୁ ହରାଇଲେ । ଏଗାରମାସର ପୁଅ ଓ ଆଉ ଚାରିଟି ସନ୍ତାନ ସହିତ ଅସହାୟା ବୃଦ୍ଧା ଶାଶୁଥିଲେ ତାଙ୍କ ପାଖରେ । ପୁଅକୁ ବଞ୍ଚାଇବା ପାଇଁ ରାତି ଅନିଦ୍ରା ରହି କ୍ଷୀର ବୋତଲ ପ୍ରସ୍ତୁତ କରି ଛାତିରେ ଶୁଆଇ ସେ ନିଜେ ରୋଗୀ ପାଲଟି ଗଲେ । ହାର୍ନିଆ ଅପରେସନ କରିବାକୁ ପଡିଲା । ପୁର୍ନବିବାହ ଲାଗି କିଏ କେତେ ପ୍ରକାରରେ ପ୍ରବର୍ତ୍ତାଇଲେ । କଞ୍ଚା ବୟସରେ ସ୍ତ୍ରୀକୁ ହରାଇ ପୁଅଝିଅଙ୍କ ମୁହଁ ଚାହିଁ ବଞ୍ଚୁଥିବା ବାପାଙ୍କ ସଂଖ୍ୟା ଏ ସଂସାରରେ କେତେ ହେବ ମୋତେ ଜଣାନାହିଁ । ତେବେ ସେଦିନ ଯଦି ସତରେ ସେ ବାହା ହୋଇଥାନ୍ତେ ଓ ସାବତମାଆ ଆମକୁ କେମିତି ଗ୍ରହଣ କରିଥାନ୍ତେ ବା ଆମ ଜୀବନ କ'ଣ ହୋଇଥାନ୍ତା ଭାବିଲେ ଆଖି ବୁଜି ହୋଇଯାଏ ।

ବାପାଙ୍କର ଏ ତ୍ୟାଗ କଥା ଇତିହାସର ବିଷୟ ହୋଇ ନପାରେ । କିନ୍ତୁ ମୋ ପାଇଁ ସେ ଏକ ମହାନ୍ ତ୍ୟାଗୀ, ପରିବାର ପାଇଁ ସର୍ବସ୍ୱ ତ୍ୟାଗ କରୁଥିବା ଏକ ଆଦର୍ଶ ପିତୃତ୍ୱର ପରିଚାୟକ । ତାଙ୍କର ଧୈର୍ଯ୍ୟ, ସାହାଯ୍ୟ, ସହାନୁଭୂତି ମନୋବୃତ୍ତି ମୋତେ କେବଳ ପ୍ରଭାବିତ କରି ନାହିଁ, ବହୁଭାବରେ ଅନୁପ୍ରାଣୀତ କରିଛି । ମୋତେ ନେଇ ତାଙ୍କର ଅସୁମାରି ସ୍ୱପ୍ନ ଥିଲା । କାହିଁକିନା ତାଙ୍କ ପିଲାମାନଙ୍କ ଭିତରେ ସବୁଠୁ ଭଲ ପାଠ ପଢୁଥିଲି ମୁଁ । ଲେଖାଲେଖି ପ୍ରତି ଆଗ୍ରହ ରଖିଥିଲି ମୁଁ ।

ମୋ ବାପା ହିଁ ମୋ ସୃଜନୀ ଜୀବନର ପ୍ରଥମ ପ୍ରେରଣା ପାଲଟନ୍ତି । ମାଆଙ୍କ ଫଟୋ ପାଖରେ ଠିଆ ହୋଇ ତାଙ୍କର ଲୁହ ଜରଜର ଆଖି, ଆମମାନଙ୍କୁ ଭଲ ଖାଇବାକୁ, ପିନ୍ଧିବାକୁ ଦେଇ ନପାରିବାର ଅବଶୋଷ, ଦୀର୍ଘଶ୍ୱାସ ଅତି ନିକଟରୁ ମୁଁ ଦେଖିଛି । ବୟସ ତୁଳନାରେ ଖୁବ୍ ଅଭିଜ୍ଞ ବି ହୋଇଯାଇଛି । ପୁଣି ବାପାଙ୍କ ଚେଷ୍ଟାରୁ ମ୍ୟୁନିସପାଲଟିର ତତ୍କାଳୀନ ଚେୟାରମ୍ୟାନ୍‌ଙ୍କୁ କୁହାବୋଲା କରି ବାପାଙ୍କ ଚାକିରୀ ବଢାଇ ପାଏ । ତାପରେ ଘରର ଅବସ୍ଥାରେ କିଛିଟା ପରିବର୍ତ୍ତନ ଆସେ । ପୁଅ ଚାକିରୀ ପାଇବା ଦିନ

ବାପା ଅମ୍ବିକା ମନ୍ଦିର ଯାଇ ମାଆଙ୍କ ପାଖରେ ନଡ଼ିଆ ଭାଙ୍ଗି ଭୋଗ କରି ଆସନ୍ତି । ଭଗବାନ ଏତେ ସୁଖରୁ ବଂଚିତ କଲାପରେ ମଧ୍ୟ ସେ କେବେ ଧୈର୍ଯ୍ୟହରା ହୋଇ ନାହାନ୍ତି କି ଭଗବାନଙ୍କ ଉପରୁ ବିଶ୍ୱାସ ତୁଟାଇ ଦେଇ ନାହାଁନ୍ତି ।

ରାତି ଚାରିଟାରୁ ସେ ମୋତେ ପଢ଼ିବା ପାଇଁ ଉଠାଇଦେଉଥିଲେ । ପରୀକ୍ଷାଦିନ ମୋ ମୁଣ୍ଡ କୁଣ୍ଡାଇ, ଆଶ୍ୱାସନା ଦେଇ ସ୍କୁଲ ପଠାଉ ଥିଲେ । ଚାତକଭଳି ମୋ ଫେରିବା ବାଟକୁ ଅନାଇ ରହୁଥିଲେ । ମୁଁ ଥିଲି ତାଙ୍କର ଦମ୍ଭ, ଗର୍ବର ପ୍ରତୀକ । ଯେଉଁଦିନ ବି.ଏ ପାଶ୍ କଲି ଓ ଅନର୍ସରେ ଫାଷ୍ଟ କ୍ଲାସ୍ ଫାଷ୍ଟ ହେଲି ସେଦିନ ମାଆଙ୍କ ଫଟୋ ପାଖକୁ ଧାଇଁ ଯାଇ କହିଥିଲେ, 'ଶୁଣୁଛ ଇତିଲୀ ଆମର ଫାଷ୍ଟ ହେଇଛି ।' ପୁଣି କହୁଥିଲେ ହୀନକପାଳୀ, ତୋ ଆଇଟା ବି ଚାଲିଗଲା । ଏ ଦିନ ଦେଖିବାକୁ ସେମାନଙ୍କ ଭାଗ୍ୟରେ ନଥିଲା ।

ବାଣୀବିହାର ପଢ଼ିବାକୁ ଗଲାଦିନ ସେ ମୋର ବେଡିଂ ବାନ୍ଧୁବାନ୍ଧୁ କହି ଥିଲେ, "ମା'ରେ ! ଚରିତ୍ର ହେଲା ସବୁଠାରୁ ବଡପୁଞ୍ଜି । କେବେ ମୋ ନାଁ ପକାଇବୁ ନାହିଁ । ଆଉ ସହିବାର ଛାତି ମୋର ନାହିଁ ।" ଆଜି ବି ବାପାଙ୍କର ସେ ଉପଦେଶ ମୋ ପାଇଁ ଈଶ୍ୱରଙ୍କ ବାଣୀତୁଲ୍ୟ ରହିଛି । ନିଜ ଚରିତ୍ରକୁ କେବେ କଳଙ୍କିତ କରି ନାହିଁ । ପ୍ରେମ, ଭଲପାଇବାକୁ ଦେହର ଉର୍ଦ୍ଧ୍ୱରେ ରଖି ପରଖିଛି । ବାପାଙ୍କର ଅବର୍ତ୍ତମାନରେ ବି ତାଙ୍କର ଏଇ କେଇପଦ କଥା ମୋ ପାଇଁ ସତେ କି ବେଦ ପାଲଟି ଯାଇଛି । ଆଜି ତାଙ୍କ କଥା ଲେଖିଲା ବେଳେ ଆଖି ବାରମ୍ବାର ଭିଜିଯାଇଛି । ସବୁ ଜନ୍ମରେ ମୁଁ ତାଙ୍କୁ ବାପା ହିସାବରେ ପାଉଥାଏ । ଝିଅର କର୍ତ୍ତବ୍ୟ ହୁଏତ ଠିକ୍ କରି ତୁଲେଇ ପାରିନାହିଁ । ତେବେ ମୁଁ ତାଙ୍କର ଝିଅ ଭାବରେ ହିଁ ଜନ୍ମ ନେଉଥାଏ । କେତେ ଜନ୍ମର ପୁଣ୍ୟ କରିଥିଲି କେଜାଣି ତାଙ୍କ ଭଳି ମଣିଷକୁ ଏ ଜନ୍ମରେ ବାପା ଭାବରେ ପାଇଥିଲି ।

ବାପା ଚାତକ ଭଳି ମୋ ଚିଠିକୁ ଅପେକ୍ଷା କରୁଥିଲେ । ଆଜି ଭଳି ଟେଲିଫୋନ୍ କି ମୋବାଇଲର ସୁବିଧା ନଥିଲା ସେତେବେଳେ । ପ୍ରତିଦିନ ଡାକପିଅନକୁ ଅନାଇ ରହୁଥିଲେ । ପ୍ରତି ସପ୍ତାହରେ ମୁଁ ତାଙ୍କ ଚିଠି ପାଉଥିଲି । ସବୁ ଚିଠିରେ ସେ 'ମା'ରେ' ବୋଲି ସମ୍ବୋଧନ କରୁଥିଲେ । ଶେଷରେ ଲେଖୁଥିଲେ ତୋ ହତଭାଗ୍ୟ ବାପା । ତାଙ୍କର ଅନେକ ଚିଠି ଏବେ ବି ମୁଁ ସାଇତି ରଖିଛି । ଅଥଚ ବାପା କେବେଠାରୁ ମାଟି ହୋଇ ଗଲେଣି । ସମ୍ବାଦ, ଧରିତ୍ରୀରେ ସହ-ସମ୍ପାଦିକା ଭାବରେ ଚାକିରୀ କଲାପରେ ତାଙ୍କ ପାଖକୁ କିଛି କିଛି ଟଙ୍କା ମନିଅର୍ଡର କରି ପଠାଉଥିଲି । ସେଥିରେ ସେ ପ୍ରଥମେ ମା' ଅମ୍ବିକାଙ୍କ ଠାରେ ଭୋଗ ଲଗାଉଥିଲେ । ଆଇସିଡିଏସ୍‌ରେ ସୁପରଭାଇଜର ଚାକିରୀ ପାଇଲା ପରେ ମୋର ପୋଷ୍ଟିଂ ହୋଇଥିଲା ଠାକୁରମୁଣ୍ଡା ବ୍ଲକ୍‌ରେ । କେମିତି, କେଉଁଠି

ରହିବି, କେମିତି ଚଳିବି ବୋଲି ତାଙ୍କର ନିଦ ହେଉନଥିଲା । ପି.ଏସ୍.ସି.ପାଇ ଯେତେବେଳେ ରାଉରକେଲା ସରକାରୀ କଲେଜରେ ଭିଣୋଇ ନରସିଂହ ଭାଇଙ୍କ ସହ ଜୟେନ୍ କରିବାକୁ ଗଲି ସେମିତି ସେ ଆକୁଳ ହେଉଥିଲେ ମୋ ରହିବା, ଖାଇବା କଥା ଚିନ୍ତାକରି । ସମସ୍ତଙ୍କ ଝିଅ ବାହାଘର ହେଉଥିଲା ବେଳେ ମୋ ଭବିଷ୍ୟତ ପାଇଁ ଓ ନିଜର ଅସାମର୍ଥ୍ୟ ପାଇଁ ସେ ବେଳେ ବେଳେ ନିଜକୁ ଧିକ୍କାର କରୁଥିଲେ । ଅବଶ୍ୟ ଦୀନବନ୍ଧୁ ମୋ ଜୀବନକୁ ଆସିଲେ । ବିନା ଯୌତୁକରେ, କିଛି ବି ଜିନିଷ ନନେଇ ବାହା ହେବାକୁ ଚାହିଁଲେ । ଭଗବାନଙ୍କ କୃପାରୁ ଭଲରେ ଭଲରେ ବାହାଘର ହେଇଗଲା । କନ୍ୟାଦାନ କଲାବେଳେ ତାଙ୍କ ଆଖିରେ ଥିଲା ଖୁସି ଆଉ ଆନନ୍ଦର ଲୁହ । ପୁଣି ବଡଭାଇଙ୍କ ବାହାଘର ହେଲା । କିଛି ବି ନ ଆଣିଥିବା ବୋହୂକୁ ସ୍ନେହ ସରାଗରେ ବାପା ମୁଣ୍ଡରେ ବସାଇଥିଲେ । ମୁଁ ମାସକୁ ମାସ ଟଙ୍କା ପଠାଏ । ସେହି ଟଙ୍କାରେ ଭାଇ ତା' ନିଜ ଖର୍ଚ୍ଚ ପାଇଁ ରଖି ବାପାଙ୍କୁ ଯାହା ଖାଇବାକୁ ଦିଏ । ଭାଉଜ ସାନ ଭାଇ ଭଉଣୀଙ୍କୁ ଚାକର ଚାକରାଣୀ ଭଳି ଦେଖି କେମିତି ଖଟାନ୍ତି ଓ ଖାଇବାରେ ହଇରାଣ କରନ୍ତି ଏକଥା କେବେ ବି ବାପା ମୁହଁ ଖୋଲି ମୋତେ କହୁ ନଥାନ୍ତି । ସମସ୍ତଙ୍କ ପାଇଁ ଲୁଗାପଟା, ଭଲମନ୍ଦ କିଣିକି ମୁଁ ଗଲାବେଳେ ନେଇଯାଏ । ବାପାଙ୍କର ପାନ ଚା' ଖର୍ଚ୍ଚ ସହ ଖବରକାଗଜ ପଢ଼ିବାପାଇଁ ମଧ୍ୟ ଟଙ୍କା ଦେଇ ଆସେ । ତଥାପି ଭାଇ, ଭାଉଜଙ୍କ ମନ ଶାନ୍ତ ହୁଏନା । ମୋ ପୁଅ ଲିପୁନ୍‌କୁ କୋଳରେ ଧରି ବାପା ଆଶୀର୍ବାଦ କରନ୍ତି 'ଏ ପୁଅ ଖୁବ୍ ବଡ ହେବ । ତୋ ଦୁଃଖ ବୁଝିବ ।'

ସାନ ଭଉଣୀ ରୀତାର ବାହାଘର ହେଇ ନପାରିବା, ସାନପୁଅ ବାବୁ ଯାହାକୁ ୧୧ ମାସରୁ ମାଆ ଗଲା ପରେ ମଣିଷ କରିଥିଲେ କିଛି ବି କୂଳରେ ନ ଲାଗିବା ଚିନ୍ତାରେ ବାପା ଭାଙ୍ଗି ପଡୁଥିଲେ ଅନେକ ସମୟରେ । ପୁଅ ବୋହୂଙ୍କ ଢ଼ଙ୍ଗ ଦେଖି ତାଙ୍କ ପରେ ଏ ହତଭାଗା ଦୁଇଜଣ କ'ଣ କରିବେ ଏଇ ଚିନ୍ତାରେ ସେ ଅସୁସ୍ଥ ହୋଇ ପଡୁଥିଲେ । ପୁଣି ଦିନେ ପାରିବାରିକ ଗଣ୍ଡଗୋଳ ଲାଗି ଭାଇ, ବାପା ଓ ସାନଭାଇ ଭଉଣୀଙ୍କୁ ଘରୁ ବାହାର କରିଦେଲା । ସେମାନେ ଅପା ଘରେ ଆଶ୍ରୟ ନେଲେ । ମୁଁ ରାଉରକେଲାରୁ ଆସି ମୀମାଂସା କରିବାକୁ ଚେଷ୍ଟା କଲି । ସେ ଘର ବି ଭାଗ ହେଲା । ଘରର ସିଂହଭାଗ ଭାଇ ମାଡିବସିଲା । ବାପା, ସାନଭାଇ ଭଉଣୀଙ୍କୁ ଆଣି ଥଇଥାନ କରି, ମୁଁ ଅଛି ଚିନ୍ତା ନ କରିବା ପାଇଁ କହି ରାଉରକେଲା ଫେରିଲି । ଫେରିବାର କିଛିଦିନ ପରେ ମୁଣ୍ଡବୁଲାଇ ଦେବାରୁ ବାପା ଗାଧୁଆ ଘରେ ପଡିଗଲେ । ମୁଣ୍ଡଫାଟି ଚେତାଶୂନ୍ୟ ଅବସ୍ଥାରେ କେତେ ସମୟ ଧରି ଥିଲେ କେଜାଣି । ହସ୍‌ପିଟାଲରେ ଆଡମିଟ୍ କରାଗଲା । ସେଲାଇନ୍ ଚାଲିଲା । ପୁଣି

ବର୍ଷା ଦିନରେ ଲିପୁନକୁ ଧରି ଆମେ ଦୁହେଁ ରାଉରକେଲାରୁ ଆସିଲୁ । ଦୀନବଂଧୁଙ୍କ ହାତଧରି ସେ କହୁଥିଲେ ମୁଁ ଆଉ ବଂଚିବିନିରେ । ରୀତା ଓ ବାବୁ ତମକୁ ଲାଗିଲେ। ଅବଶୋଷ ରହିଗଲା ରୀତାର ବାହାଘର ଦେଖି ପାରିଲିନି । ବାବୁ ବି ବେକାର ରହିଗଲା। ଲିପୁନକୁ ଆଉଁଷି ଦେଉଥାନ୍ତି । ସେ ଟିକେଟିକେ ହାମୁଡାଉ ଥାଏ ସେତେବେଳେ । ତାଙ୍କ ଚିକିତ୍ସା ପାଇଁ ସମସ୍ତେ ଲାଗିପଡିଲେ । ଆମେ ରାଉରକେଲା ଫେରି ଆସିଲୁ । କଟକରୁ ଡାକ୍ତର ନିଆଯାଇ ମଧ୍ୟ ଚିକିତ୍ସା ଚାଲିଲା । ସେଲାଇନ୍, ଅକ୍ସିଜେନ୍ ପରେ ଶେଷଆଡକୁ ଦିଆଗଲା ରକ୍ତ । ବାପା ଭଲ ହୋଇ ବି ଘରକୁ ଫେରି ଆସିଲେ । ପୂଜାଛୁଟି ଅଳ୍ପଦିନ ଥାଏ । ପୂଜାଛୁଟିରେ ଯିବୁ ବୋଲି ସଜବାଜ ହେଉଥାଉ । କିନ୍ତୁ ବାପାଙ୍କର ହଠାତ୍ ଘରେ ରକ୍ତବାନ୍ତି ହେଲା । ଘରେ ଅକ୍ସିଜେନ୍ ସିଲିଣ୍ଡର ମଧ୍ୟ ରଖାଯାଇଥିଲା । ନାକ ଓ ପାଟି ବାଟେ ରକ୍ତ ବାହାରିଗଲା । ଭାଇ ରକ୍ତ ନେଇ ଆସୁ ଆସୁ ବାପା ଚାଲିଗଲେଣି ।

ଶେଷ ସମୟରେ ତାଙ୍କୁ ଦେଖି ପାରିଲି ନାହିଁ । ଆମେ ଆସିବୁ ପୂଜାଛୁଟିରେ ବୋଲି ଆଗ୍ରହର ସହିତ ଅପେକ୍ଷା କରିଥିବା ବାପା ମୋହମାୟାର ସମସ୍ତ ଡୋରି କାଟିଦେଇ ଚାଲିଗଲେ ୨୧.୯.୧୯୯୬ ମସିହା, ଶନିବାର ଦିନ । ସେତେବେଳେ ଦୀନବନ୍ଧୁଙ୍କର ବରଗଡ ବଦଳି ହୋଇସାରିଥାଏ । ଲିପୁନ୍ ନୂଆ ନୂଆ ଠିଆ ହେଉଥାଏ । ନାତିକୁ ଦେଖିବେ ବୋଲି ଚାହିଁ ରହିଥିବା ବାପା, ପୁଅଝିଅଙ୍କର ଚିନ୍ତା, କଳି ତକରାଳ, ଘରଦ୍ୱାର ସବୁ କିଛିର ବନ୍ଧନ ଫିଟାଇ ଉର୍ଦ୍ଧ୍ୱକୁ ଯାଇ ମୁଠାଏ ପାଉଁଶ ପାଲଟିଗଲେ । ତାଙ୍କର ଅନେକ ଆଶା, ସ୍ୱପ୍ନ ଅଧା ହୋଇ ରହିଗଲା । ଜୀବନର ଖେଳଘର ସରିଗଲା । ଶାବକ ମୁହଁରେ ମାଆ ପକ୍ଷୀ ଆହାର ଦେଲାଭଳି ବାପା ଆମ ପାଟିରେ ଆହାର ଦେଇ ଅତି ଦୁର୍ଦ୍ଦିନ ସମୟରେ ବଞ୍ଚାଇ ରଖିଥିଲେ । ଦ୍ୱିତୀୟତଃ ବିବାହକୁ ଅଗ୍ରାହ୍ୟ କରି ଆମ ମୁହଁ ଚାହିଁ ପଡି ରହିଥିଲେ । ହେଲେ ଆମେ ସବୁ ତାଙ୍କୁ ପ୍ରତିଦାନରେ ଦେଲୁ କ'ଣ ? ନିଜ ସୁଖ, କ୍ୟାରିୟର ଗୋଟାଇବାରେ ଏତେ ବ୍ୟସ୍ତ ଥିଲୁ ଯେ ତାଙ୍କ ମନର ପୀଡାକୁ ପଢ଼ି ପାରିଲୁ ନାହିଁ ।

ବାପା ସତେକି ଥିଲେ ଧୈର୍ଯ୍ୟର ପାହାଡ । କେବେ ଭାଙ୍ଗି ପଡିବା ଦେଖି ନାହିଁ । ସବୁ ସମୟରେ ସେ ମୋତେ ନୈତିକ ସାହସ ଦେଉଥିଲେ । ସାତ ଜନ୍ମରେ ବି ତାଙ୍କୁ ଆମେ ଆଉ ପାଇବୁ ନାହିଁ କେବେ । ହୀରା ପାଇବି ହୀରାର ମର୍ଯ୍ୟାଦା କେହି ତାଙ୍କୁ ଦେଲୁନାହୁଁ । ପୁଅ ବୋହୂ ଭିନ୍ନେ ହେବାଟା ହିଁ ଶେଷ ବେଳକୁ ତାଙ୍କ ଅଣ୍ଟା ଭାଙ୍ଗି ଦେଇଥିଲା । ବାହାରେ କିଛି ଦେଖାଯାଉ ନଥିଲେ ହେଁ ଭିତରେ ଭିତରେ ସେ ନିଶେ ଭାଙ୍ଗିଯାଇଥିଲେ । ଯାହା ବି କିଛିଦିନ ବଞ୍ଚିଥାନ୍ତେ ସାନ ଝିଅ ପୁଅର ଭବିଷ୍ୟତ ଚିନ୍ତା,

ବଡ ପୁଅବୋହୂଙ୍କର ଉତ୍ପାତ, ହତାଦର, ତାଚ୍ଛଲ୍ୟ ତାଙ୍କୁ କୋରି କୋରି ଖାଇଗଲା । ସବୁଠୁ ବେଶି ବାଧିଥିଲା ଯେଉଁ ପୁଅକୁ ନଖାଇ ନଖାଇ ବଡ କରିଥିଲେ ଓ ତାଙ୍କ ଯୋଗୁଁ ସେ ଚାକିରୀ ପାଇଥିଲା ସେହି ପୁଅ ମଝିଆଁ ଦାଦା, ଖୁଡୀଙ୍କ ପରାମର୍ଶରେ ପରିଚାଳିତ ହୋଇ ଆମ ଘରକୁ ଭାଙ୍ଗିଦେବାରେ ଲାଗି ପଡିଲା ।

ବାପା ଚାଲିଗଲେ ମୋତେ ସବୁଦିନ ଏକଲା କରି । ଆଉ କେହି 'ମା'ରେ' ସମ୍ବୋଧନ କରି ଚିଠି ଲେଖିବାକୁ ନାହାଁନ୍ତି । କେହି ଚାତକ ଭଳି ମୋ ଫେରିବା ବାଟକୁ ଅନାଇ ବସିନାହାଁନ୍ତି । ବାପା ଚାଲିଗଲେନି ଯେ ମୋ ଜୀବନର ସବୁ ସରସତା ହଜିଗଲା । 'ମାଆ' ଡାକ ତ କେବେଠୁ ହଜିଥିଲା । ଏବେ ବାପା ମା' ଦୁହିଁଙ୍କୁ ହରାଇ ମୁଁ ଅନାଥ ହେଇଗଲି । ବାପାଙ୍କ ସାଙ୍ଗ, ସମବୟସ୍କମାନେ ଏବେ ବି ବଞ୍ଚିଛନ୍ତି । କିନ୍ତୁ ବାପା କେବେଠୁ କାନ୍ଥ ଛବି ସାଜି ଝୁଲୁଛନ୍ତି । ପୁଅ ବୋହୂଙ୍କ ଠାରୁ ଯେଉଁ ଆଘାତ ବୁଢ଼ା ବୟସରେ ସେ ପାଇଲେ, ତାକୁ ସହିବାପାଇଁ ଆଉ ତାଙ୍କ ଛାତି ନଥିଲା । ଆଉ କେଉଁ ଆଶାରେ ବଞ୍ଚିଥାନ୍ତେ ? କେତେ ଅପମାନ, ଲାଞ୍ଛନା ପୁଅ ବୋହୂଠାରୁ ଶୁଣି ଛାତିରେ ଘାଆ ସୃଷ୍ଟି କରିଥାନ୍ତେ ?

ବାରିପଦା ଗଲେ ପ୍ରଥମେ ପ୍ରଥମେ ଲାଗୁଥିଲା ବାପା ଭିତରେ ଶୋଇଛନ୍ତି । ଆଉ ଟିକିଏ ପରେ ଚା' ପିଇବା ଲାଗି ବାରଣ୍ଡାରେ ଆସି ବସିବେ । ଦୁଃଖ ସୁଖ ପଚାରିବେ । ଲିପୁନ୍‌କୁ କୋଳରେ ନେବାପାଇଁ ହାତ ବଢ଼ାଇବେ । କହିବେ, ମା'ରେ ଯେତେ ଦୁଃଖ, ଝଡ ଆସିଲେ କେବେ ଭାଙ୍ଗି ପଡିବୁ ନାହିଁ । ତୁ ଯେ ମୋ ଝିଅ !

କାଳ କେବେଠୁ ପାଉଁଶ କରି ଦେଇଥିବା ବାପାଙ୍କୁ ତଥାପି ମୁଁ ଆଜି ବି ଅନୁଭବ କରେ ମୋ ଚାରିପାଖରେ । କସ୍ତୁରୀ ମୃଗଭଳି ସେ ମୋର ଚାରିପଟେ ବାସ୍ନା ସୃଷ୍ଟି କରନ୍ତି ଓ ତାଙ୍କୁ ଛୁଇଁବା ପାଇଁ ମୁଁ ପାଗଳ ଭଳି ଖୋଜିବୁଲେ । ଆଜି ବି ସେ ପ୍ରେରଣା ସାଜି ମୋ ଜୀବନର ପର୍ଦ୍ଦା ଉହାଡରେ ରହିଛନ୍ତି । ମୋ ମୃତ୍ୟୁ ପର୍ଯ୍ୟନ୍ତ ଏମିତି ରହିଥିବେ ମଧ୍ୟ । ଏମିତି ବାପା ମୋତେ ପ୍ରତି ଜନ୍ମରେ ମିଳନ୍ତୁ, ଏହା ହିଁ ଭଗବାନଙ୍କଠାରେ କାମନା ।

# ଚାରି

## ପ୍ରଥମ ଅନୁରାଗ

'କେମିତି କହିବି କେତେ ଭଲ ପାଏ
ଖୋଜି ପାଉ ନାହିଁ ଭାଷା

କଥାରେ ମୁଁ କହି ପାରିଲିନି ବୋଲି
କବିତା ତେଣୁ ମୋ ନିଶା ।'
- କବି ଗୋଲକଚନ୍ଦ୍ର ଦଳାଇ

ସତରେ ଭଲପାଇବାର ଭାଷା ଖୋଜିଲେବି ମିଳେ ନାହିଁ । ଅନ୍ତରର ବହୁ ଅନୁଭବ ରହିଛି ଯାହାକୁ ପ୍ରକାଶ କରିବାପାଇଁ ଶବ୍ଦ ମିଳେ ନାହିଁ ।

ଆଇ.ଏ ପଢ଼ିଲାବେଳେ ମୋର ଜଣକ ସହିତ ବନ୍ଧୁତ୍ୱ ଜମିଲା । ସେ ମୋର ପେନ୍‌ଫ୍ରେଣ୍ଡ ଥିଲେ । ଇଂରାଜୀ ମିରର୍ ପତ୍ରିକା ହିଁ ଏ ବନ୍ଧୁତ୍ୱର ମାଧ୍ୟମ ଥିଲା । ତାଙ୍କ ନାଁ ଶରତ ସାହୁ । ମୁଁ ହିଁ ଠିକଣା ସେଠୁ ପାଇ ମୋ ତରଫରୁ ଜଣେ ଓଡ଼ିଆ ସହିତ ପତ୍ରବନ୍ଧୁ କରିବାର କୌତୂହଳ କରିଥିଲି । ଆମ ସମୟରେ ଇଂରାଜୀ ପତ୍ରିକା ପେନ୍ ପ୍ଲେସ୍‌ରୁ ଠିକଣା ବାଛିବାଛି ମୋର କେତେଜଣ ସାଙ୍ଗ ପତ୍ରବନ୍ଧୁ କରିଥିଲେ । ଜଣେ ଓଡ଼ିଆ ନାଁ ଦେଖି ମୁଁ ବି ପୋଷ୍ଟ କାର୍ଡଟେ ଡ୍ରପ୍ କରିଥିଲି । ତେବେ ସେ ମୋ ଠାରୁ ବେଶ୍ ବଡଥିଲେ । ଇଂରାଜୀରେ ଏମ୍ .ଏ. ପାଶ୍ କରି ସାରି ଚାକିରି ସନ୍ଧାନରେ ଥିଲେ । ତାଙ୍କ ଚିଠି ପାଇଲା ପରେ ଏଇ ପରିଚୟ ପାଇଲି । ପାଞ୍ଚ ବର୍ଷ ପାଖାପାଖି ବଡ ଜଣେ ଉଚ୍ଚଶିକ୍ଷିତ ଯୁବକ ସହିତ ମୋର ବନ୍ଧୁତ୍ୱ ଗଢ଼ି ଉଠିଲା ଚିଠିପତ୍ର ମାଧ୍ୟମରେ । ଆମେ କେହି କାହାକୁ ଦେଖି ନଥିଲୁ । ତେବେ ପତ୍ର ଜରିଆରେ ପରସ୍ପର ଘର, ରୁଚି, ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଅନେକ କଥା ଜାଣି ପାରିଥିଲୁ । ବେଶ୍ ଆନ୍ତରିକ, ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ଭିତରେ ଆମର ବନ୍ଧୁତ୍ୱ ପ୍ରାୟ ପାଞ୍ଚବର୍ଷ ସ୍ଥାୟୀ ହୋଇଥିଲା ।

ଆଜନ୍ମରୁ ମୁଁ ଥିଲି ବିଷାଦବାଦୀ । ଜୀବନର ଘଟଣା, ଦୁର୍ଘଟଣା ମୋତେ ଆହୁରି ପେସିମିଷ୍ଟ କରି ଦେଇଥିଲା । ମୋର ବିଷାଦ, ମୋର ଜୀବନ ପ୍ରତି ବିତୃଷ୍ଣା ଆଉ ମାଆ ନଥିବାର ନିଃସଂଗତାକୁ ନେଇ ମୁଁ ଚିଠି ଲେଖିଲା ବେଳେ ବନ୍ଧୁ ଶରତ ଲେଖୁଥିଲେ ତାଙ୍କର ବାପା ନଥିବା ଦୁଃଖ, ଶିକ୍ଷିତ ବେକାରୀ ଜୀବନର ବ୍ୟଥା ଆଉ ଚାକିରୀର ବୟସ ଅତିକ୍ରମ କରିଗଲେ ଅନ୍ଧାରି ଭବିଷ୍ୟତର କଥା । ଯଦିଓ ପାଠ ପଢ଼ି ଚାକିରୀ ନପାଇବାର ବେଦନାର ଅର୍ଥ ବୁଝିବାର ବୟସ ମୋର ହୋଇନଥିଲା । ମୁଁ ନୂଆ କରି କଲେଜ ଜୀବନ ଆରମ୍ଭ କଲାବେଳେ ସେ ସରକାରୀ ଚାକିରୀ କରିବାର ବୟସର ପ୍ରାୟ ଶେଷ ପାହାଚ ପାଖାପାଖି ପହଞ୍ଚି ସାରିଥିଲେ । କେମିତି ଇଣ୍ଟରଭ୍ୟୁ ପରେ ଇଣ୍ଟରଭ୍ୟୁ ଦେଇ ଚାଲିଛନ୍ତି । ସାଙ୍ଗସାଥୀ ବନ୍ଧୁବାନ୍ଧବ କିଏ କୁଆଡେ ଗଲେଣି, ସମୟ କାଟିବାପାଇଁ ମିରର ପେନ୍-ପଲ୍‌ସରେ ଠିକଣା ଦେବା ଓ କେବେ ବି ଆଶା କରି ନଥିଲେ ସେ ଠିକଣା ପଢ଼ି ମୋ ଭଳି ଜଣେ ଝିଅ ବନ୍ଧୁତ୍ୱର ହାତ ବଢ଼ାଇବା ଇତ୍ୟାଦି ଇତ୍ୟାଦି ।

ସେତେବେଳେ ନୂଆ ନୂଆ ମୁଁ ଲେଖାଲେଖି ଆରମ୍ଭ କରିଥାଏ । ଏମ୍‌ପିସି କଲେଜର ମେଗାଜିନ୍ 'ଭଞ୍ଜପ୍ରଭା'ରେ ମୋର 'ମୋନଲିସାର ହସ' ଗପଟି ବାହାରିଥାଏ । ଲେଖିକାଟିଏ ହେବାର ସ୍ୱପ୍ନ ଦେଖୁଥିଲା ବେଳେ ଏ ଗପଟି ମୋତେ ସେତେବେଳେ ଯଥେଷ୍ଟ ଲୋକପ୍ରିୟତା ଆଣିଦେଇଥିଲା । ବୋଧହୁଏ ୧୯୭୭ ମସିହାର କଥା । ସେହି କଞ୍ଚା ବୟସରେ କଞ୍ଚା ହାତରେ ମୋର ଗଳ୍ପ ଲେଖା ସହିତ କାଁ ଭାଁ ଏହି ପତ୍ରବନ୍ଧୁଙ୍କ ସହିତ ପତ୍ର ବିନିମୟ ଚାଲିଥାଏ । ଆମ ଚିଠି ମାଧ୍ୟମରେ ଧରାହୋଇ ଆସନ୍ତି ବିଶ୍ୱର ବଡବଡ ଲେଖକ, କବି, ଚିତ୍ରଶିଳ୍ପୀମାନେ । ସେମାନଙ୍କ ଦର୍ଶନ, ଜୀବନଧାରାକୁ ନେଇ କେତେବେଳେ ମୋ ଚିଠି ଭର୍ତିହୋଇ ଯାଇଥାଏ ତ କେବେ ଶରତଙ୍କ ଚିଠି । ସଂଘର୍ଷ କରି ବଡ ହୋଇଥିବା ମଣିଷମାନଙ୍କ କଥା ଲେଖି ବନ୍ଧୁଟି ମୋର ସୀମିତ ଜ୍ଞାନକୁ ବଢ଼ାଇ ଦିଅନ୍ତି । ମୁଁ ଲେଖାଲେଖି କରୁଛି ଜାଣି ଶୁଭେଚ୍ଛା ଜଣାଇବା ସହିତ ଦିନେ ପ୍ରତିଷ୍ଠିତା ଲେଖିକା ହୁଏ ବୋଲି କାମନା କରନ୍ତି । ପୁଣି କଲେଜରେ ବିଭିନ୍ନ ପ୍ରତିଯୋଗିତାରେ ଭାଗନେଇ ପୁରସ୍କୃତା ହେବା ସହିତ ଆକାଶବାଣୀ କଟକ କେନ୍ଦ୍ରର ଯୁବବାଣୀ କାର୍ଯ୍ୟକ୍ରମରେ ମୋର ଗଳ୍ପ ଓ ସାକ୍ଷାତ୍‌କାର ରେକଡିଂ ହେବାଦ୍ୱାରା ମୋତେ ସେ ସମୟର ଅନେକ ଅଧ୍ୟାପକ ଚିହ୍ନି ଯାଇଥାନ୍ତି । ସେହି ସାର୍‌ଙ୍କ ଭିତରୁ ଶରତଙ୍କର ଯେ ନିଜ ରକ୍ତର ଆତ୍ମୀୟ କେହି ଅଛନ୍ତି ମୁଁ ବା କେମିତି ଜାଣିଥାନ୍ତି ? ସେ ଯାହା ହେଉ ପରସ୍ପରକୁ ବୁଝାଇବା, ପରସ୍ପରର ବେଦନା, ଦୁଃଖ ବାଣ୍ଟି ନେବାରେ ଆମର ଦ୍ୱିଧା ନଥିଲା । ତିନିବର୍ଷ ଧରି ପତ୍ରବନ୍ଧୁ ଚାଲିଲା । ସେ କଟକରେ ମୁଁ ବାରିପଦାରେ । ଶରତଙ୍କ ଚିଠିରେ ଉପଦେଶ, ବିଭିନ୍ନ ବହିର ଉଦ୍ଧୃତି ସହ ସହୃଦୟତା ମୋତେ ଆକୃଷ୍ଟ କରିଥିଲା । ଚିଠିପଢ଼ି ମୁଁ କଳ୍ପନାରେ ଅନେକଥର ଆଙ୍କିଥିଲି ଏକ ଅଦେଖା ଚେହେରାକୁ । କଅଁଳ ବୟସରେ ପ୍ରଥମ ଶିହରଣ ବି କିଛିଟା ଅନୁଭବ କରିଥିଲି । କେଉଁ ଏକ ଅଜଣା ଆକର୍ଷଣ ବେଳେବେଳେ ମୋତେ ମୋହନ ବଂଶୀ ଭଳି ଟାଣି ନେଉଥିଲା ।

ବନ୍ଧୁତ୍ୱର ତିନିବର୍ଷ ପରେ ଅତି ଆକସ୍ମିକ ଭାବରେ ବାରିପଦାରେ ହିଁ ଦେଖାହେଲା ଶରତଙ୍କ ସହିତ । ତା' ଆଗରୁ ପରସ୍ପର ପାସ୍‌ପୋର୍ଟ ଫଟୋରେ ଦେଖିଥିଲୁ ଦୁହିଁଙ୍କୁ । ସେ ପୁଣି ଆଶ୍ଚର୍ଯ୍ୟର କଥା ମୁଁ ପଢୁଥିବା ଏମ୍ ପି.ସି. କଲେଜର ଜଣେ ରାଜନୀତି ବିଜ୍ଞାନର ଅଧ୍ୟାପକ ଶ୍ରୀଧର ସାର୍‌ଙ୍କ ନିଜ ସାନଭାଇ ଥିଲେ ଯାହା କି ତିନିବର୍ଷ ଭିତରେ ଆଦୌ ଜଣାଇ ନଥିଲେ । ସାର୍ ଭଡା ନେଇ ରହୁଥିଲେ ଭଞ୍ଜପୁରର ବାଘଘର ପାଖରେ । ଆମର ଘର ଭଞ୍ଜପୁରର ଭିତରେ ଥିଲା । ସେତେବେଳେ ବି.ଏ. ଶେଷ ବର୍ଷର ଛାତ୍ରୀ ମୁଁ ଥିଲି । ଚିଠି ପାଇଲି ବାରିପଦାରେ ସେ ତାଙ୍କ ଭାଇଙ୍କ ଘରକୁ ଆସିଛନ୍ତି ଚାକିରୀ

ସନ୍ଧାନରେ । ଇଚ୍ଛା କରେ ତ ଦେଖା କରିପାରେ ।

ସେତେବେଳେ ମୋର ଏହି ଅଜଣା ବନ୍ଧୁଟିକୁ ଦେଖା କରିବାର ଉତ୍ତେଜନା ମନରେ ପ୍ରବଳ ଭାବରେ ମାଡି ଯାଇଥିଲା । ତାଙ୍କ ଭାଇ ଭାଉଜଙ୍କ ଗହଣରେ ଦିନେ ଦେଖାହେଲା । ସେ ମୋତେ ଗୋବିନ୍ଦ ଦାସଙ୍କ 'ଅମାବାସ୍ୟାର ଚନ୍ଦ୍ର' ବହିଟା ଉପହାର ଦେଲେ । ତା' ପିଛଲା ବେଳେ କହିଲେ, କବିତା ! ତୁମେ ଏତେ ଉଦାସ କାହିଁକି ? ଜୀବନରେ କୌଣସି ସୌନ୍ଦର୍ଯ୍ୟ ତମ ଆଖିରେ ପଡେନା ? ମୋର ମନେହୁଏ ତମ ବିଷାଦଭରା ଦୃଷ୍ଟିଭଙ୍ଗୀ ସାରା ସଂସାରକୁ ବିଷାଦ କରି ଦେଇଛି । ତମେ ଯେମିତି ନିଜକୁ ବି ଭଲ ପାଇନ କେବେ । ଯେ ନିଜକୁ ଭଲ ନପାଏ ସେ ପୁଣି ଅନ୍ୟକୁ ଭଲ ପାଇବ କେମିତି ?

ପ୍ରଥମ ଦେଖାରେ ମନେ ହେଲା ସେ ମୋର ପରିଚିତ, ଖୁବ୍ ପରିଚିତ । ତାଙ୍କର ବ୍ୟକ୍ତିତ୍ୱ ପ୍ରତି ମୁଁ ଆକୃଷ୍ଟ ହେଇପଡିଲି । ଜାଣେନା ସେହି ସମୟରେ ସେ ମୋତେ କେତେ ପରିମାଣରେ ଭଲ ଲାଗିଥିଲେ । ସେତେବେଳ ପର୍ଯ୍ୟନ୍ତ ଭଲପାଇବା କ'ଣ ମୋତେ ଜଣା ନଥିଲା । ତା'ର ଅନୁଭବ, ତା'ର ସ୍ଥିତି ମୋତେ ଏତେଟା ସ୍ପର୍ଶ କରି ନଥିଲା ଯଦିଓ ଦେଖା ହେବା ଆଗରୁ ତାଙ୍କ ଚିଠିର ଭାବ, ଭାଷା, ଉପଦେଶରେ ବେଳେ ବେଳେ ମୁଁ ବିହ୍ୱଳ ହେଇ ଯାଉଥିଲି, ଅନୁରାଗରେ ବତୁରି ଯାଉଥିଲି । ଆକର୍ଷିତ ହୋଇପଡୁଥିଲି ସେହି ଅଦେଖା ବ୍ୟକ୍ତିତ୍ୱ ପ୍ରତି । ଦ୍ୱିତୀୟ ଥର ବି ଦେଖା ସେହି ତାଙ୍କ ଭାଇଙ୍କ ଘରେ । ସେତେବେଳେ ମୋର ବି.ଏ. ଟେଷ୍ଟ ପରୀକ୍ଷା ସରି ଯାଇଥାଏ ଓ ଫାଇନାଲ ପାଇଁ କିଛି ଇଂରାଜୀ ନୋଟ୍‌ସ ଲେଖି ଦେଇଥାନ୍ତି ଶରତ । ଏଥର ବି ସେ ପ୍ରଗଳ୍ଭ ହେଇ ଗପୁଥିଲେ । ମୁଁ ଥିଲି ନିରବ ଶ୍ରୋତା । ଆମ ଗପ ଭିତରେ ସେକ୍‌ସପିୟରଙ୍କ ଠୁଁ ଆରମ୍ଭ କରି ବାର୍ଣ୍ଣାଡ ଶ, ଶ୍ରୀମଦ୍ ଭଗବଦ୍ ଗୀତା ଏମିତି କେତେ କ'ଣ ଥିଲା । ତା' ସହିତ ତାଙ୍କର ସ୍ଥାୟୀ ଚାକିରୀଟେ ନ ମିଳିବାର ଗ୍ଲାନି ମଧ୍ୟ ରହିଥିଲା । ଚାକିରୀ ବୟସ ଅତିକ୍ରାନ୍ତ ହେଇ ଯିବାର ଭୟ ବି ଥିଲା । (ଶେଷରେ ବେତନଟୀ କଲେଜରେ ଇଂରାଜୀ ଅଧ୍ୟାପକ ଭାବରେ ନିଯୁକ୍ତି ପାଇ ଥିଲେ ।)

ତା'ପରେ ବି.ଏ. ପରୀକ୍ଷା ଓ ବ୍ୟସ୍ତତା ଭିତରେ ମୁଁ ଯାଇ ପାରିନଥିଲି । ଆମର ଦାରିଦ୍ର୍ୟ, ଛୋଟ ଘରକୁ ଅତିଥି କରି ଡାକିବାର ଦୁଃସାହସ ମୋର ବି ନଥିଲା । ତା'ଛଡା କେମିତି ଗୋଟାଏ ସଙ୍କୋଚରେ ମୁଁ ସାଙ୍କୁଡି ହେଇ ଯାଇଥିଲି । ବନ୍ଧୁତ୍ୱର ମୂଲ୍ୟ କେତେଜଣ ବା ବୁଝନ୍ତି ? ସେ ସ୍ତରକୁ ଯିବାପାଇଁ ସେମିତି ସୁସ୍ଥ ମାନସିକତା ବି ଦରକାର ।

ଦେଖୁ ଦେଖୁ ବି.ଏ ରେଜଲଟ୍ ବାହାରି ଗଲା ଓ ଓଡିଆ ଅନର୍ସରେ ସେ ବର୍ଷ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ଡିଷ୍ଟିଂକ୍‌ସନ୍ ସହ ପ୍ରଥମ ଶ୍ରେଣୀରେ ପ୍ରଥମ ହେଇଥିଲି ଓ

ବାଣୀବିହାର ଯିବା ପାଇଁ ମୋର ରାସ୍ତା ଖୋଲିଯାଇଥିଲା । ବାଣୀବିହାର ଯିବା ଆଗରୁ ଭାବିଲି ଶରତଙ୍କୁ ଦେଖାକରି ନଯିବାଟା ନିହାତି ଅଭଦ୍ରାମି ହେବ । ସେତେବେଳେ ବର୍ଷା ଦିନ । କବାଟ ଠକ୍‌ଠକ୍ କଲା ପରେ ଯିଏ କବାଟ ଖୋଲିଲେ ସେ ସ୍ୱୟଂ ଥିଲେ ମୋର ବନ୍ଧୁ ଶରତ, ଆରେ ତମେ ! କି ଆଶ୍ଚର୍ଯ୍ୟ । ଏବେ ତମକୁ ବସି ବସି ହିଁ ମନେ ପକାଉଥିଲି । ଗଲା କେତେଦିନ ହେଲା ଭାଇଠାରୁ ତମର ରେଜଲଟ ଶୁଣି ବଧେଇ ଜଣେଇବି ଜଣେଇବି ବୋଲି ଭାବୁଥିଲି ।' ସେତେବେଳେ ଆଜି ଭଳି ମୋବାଇଲ ସେବା ଉପଲବ୍ଧ ନଥିଲା । 'ବାଃ ଭଲ ତ କଲ । ମିଠା କାହିଁ ? ଦେଖ, ତମକୁ ଘର ଭିତରକୁ ଡାକିବାକୁ ଭୁଲି ଗଲିଣି ।' ଏଇୟା କହି ସେ ଡ୍ରଇଂରୁମ୍ ଭିତରକୁ ଡାକି ନେଲେ ।

ମୁଁ ବସିଲି ଓ କହିଲି କ'ଣ ଶୂନ୍‌ଶାନ୍ ଲାଗୁଛି । ଘରେ କେହି ନାହାଁନ୍ତି କି ? ସେ କହିଲେ ଭାଉଜ ଯାଇଛନ୍ତି ବାପ ଘରକୁ । ଭାଇ କଲେଜକୁ ଆଉ ସାନଭଉଣୀଟା ଏଇ ପଡିଶା ଘରେ ଗପୁଛି । କ'ଣ ଡର ଲାଗୁଛି କି ?

ଆରେ ନା, ଡରିବି କାହିଁକି ? ତମେ ବାଘ ନା' ଭାଲୁ କି ଖାଇ ପକାଇବ । ଆମେ ଉଭୟେ ଖୋଲା ହସ ହସି ପକାଇଲୁ । ସେ କହିଲେ, ବସ, ମୁଁ ଦୁଇ କପ୍ ଚା' କରି ଆଣେ । ଭାଉଜଙ୍କ ହାତରୁ ଆସିବା ଦିନଠୁଁ ଚା' ପିଇଛ । ମୋ ହାତ ତିଆରି ଚା' ପିଅ । ଚମତ୍କାର ବନାଇ ଜାଣେ । ହଷ୍ଟେଲ ଅଭ୍ୟାସଟା ରହିଛି ନା ।

ମୁଁ କହିଲି, ସାହାଯ୍ୟ କରିବି ? ସେ ହସିଲେ । ଏତେ ଅପାରଗ ଭାବନି ମୋତେ କବିତା, ଚା' ବନାଇବା ପାଇଁ ତମର ସାହାଯ୍ୟ ଲୋଡ଼ିବି ? ତମେ ମୋର ଗେଷ୍ଟ, ପୁଣି ଭାବିଲ ଦେଖି ମୋ ଭଳି ପରମ ହିତୈଷୀ ବନ୍ଧୁର ହାତ ତିଆରି ଚା ଭାଗ୍ୟରେ ଥିଲେ ତମର ମିଳେ ।

ସତ କଥା, ଆଜି ନିଶ୍ଚେ ପରମ ସୌଭାଗ୍ୟ । ଶରତ ଉତ୍ସାହିତ ହୋଇ କହିଲେ- ହଷ୍ଟେଲରେ ରହିଲା ବେଳେ ରନ୍ଧାବଢ଼ା ସବୁ ଶିଖି ଯାଇଛି । କହିବ ତ ଦିନେ ରାନ୍ଧି ଖୁଆଇ ଦେବି ।

ମୋ ବନ୍ଧୁ ଚା ଦି କପ୍ ସହ ପାମ୍ପଡ ସେକି ଆଣିଲେ । ଗରମ ଚା, ପାମ୍ପଡ ଖିଆ ଭିତରେ ବାହାରେ ବର୍ଷା ଆରମ୍ଭ ହେଇ ଯାଇଥିଲା । ମୁଁ ବର୍ଷାକୁ ଅନାଇ ରହିଥିଲା ବେଳେ ସେ କହିଲେ, ତମେ ଏମିତି ଚୁପ୍‌ଚାପ୍ ହେଇ ଗଲ ଯେ ! ବାଣୀବିହାରରେ ତମର ବହୁତ ନୂଆ ବନ୍ଧୁ ଜୁଟିବେ । କେତେ ପ୍ରଶଂସକ ବି । ମୋତେ ଭୁଲି ତ ଯିବନି ?

ମୋ ଗଳାରେ ଚା କେମିତି ଅଟକି ଗଲା ।

ସେ କହିଲେ, ଏ ଭିତରେ ତମ ସହ ମୋର ଫ୍ରେଣ୍ଡସିପ୍ ତିନିବର୍ଷରୁ ଅଧିକ

ହୋଇଗଲାଣି । ତମେ କିନ୍ତୁ ନିଜକୁ କେବେ ପ୍ରକାଶ କଲନି କବିତା । ତମଠାରୁ ମୁଁ ବୟସରେ ଯଦିଓ ବେଶ୍ ବଡ । ବେଳେବେଳେ ତମକୁ ଅନେକ କିଛି ଲେଖିବାକୁ ଇଚ୍ଛାହୁଏ । କିନ୍ତୁ ତମେ କାଳେ ଡିସ୍‌ଟର୍ବ ହେବ ତେଣୁ ଲେଖେ ନାହିଁ । ତମେ କେତେ ବା ମୋତେ ଜାଣିଛ ? ତମ ସ୍ଥାନ ମୋ ପାଇଁ ସ୍ୱତନ୍ତ୍ର । ତେବେ ତମେ ଏତେ ଦୁଃଖୀ, ନିଃସହାୟ ନିଜକୁ କିଆଁ ମନେ କର ? ତମକୁ କେତେ କେତେ ମହାପୁରୁଷଙ୍କ ଜୀବନୀ, ଜୀବନ, ବ୍ୟକ୍ତିଗତ ଜୀବନ କଥା ଲେଖି ବୁଝାଇଛି । ପୃଥିବୀ ସତରେ ଭାରି ସୁନ୍ଦର କବିତା । ତାକୁ ନିଜ ଦୃଷ୍ଟିକୋଣରେ ଉଦାସ କରି ଦିଅନା । ଅନେକ କିଛି ଦେଖିବାର, ଜାଣିବାର ଅଛି ଏ ଜୀବନରେ । ହେଲେ ଜୀବନ କେତେ ଛୋଟିଆ ।

ସେତିକିବେଳେ ସେ ମୋତେ ଏତେ ଭଲ ଲାଗିଲେ ଓ ତାଙ୍କର ଦର୍ଶନ, ଭଦ୍ରାମି, ଉପଦେଶ ଭିତରେ ମୁଁ ଏଭଳି ଭାବରେ ବୁଡିଗଲି ଯେ ମନେ ହେଲା ଏହି ମଣିଷଟିକୁ ହିଁ ମୁଁ ଯେମିତି ଏତେ ଦିନ ହେଲା ଖୋଜୁଥିଲି । ମୁଁ ଯା'ଙ୍କୁ କେଉଁ ଜନ୍ମରୁ ଜାଣିଛି ।

ମୁଁ ତାଙ୍କୁ ଶ୍ରୀମଦ୍‌ଭଗବତ୍ ଗୀତା ବହିଟେ ଉପହାର ଦେଲି । ସେ କହିଲେ, ତମେ ଗୀତା ପଢ଼ ଏ ବୟସରେ ? ମୁଁ ବି ଆଜିକାଲି ଧର୍ମପୁସ୍ତକ ପଢ଼ି ଦିନ କାଟୁଛି । ଜୀବନରେ ଏତେ ହରାଇଛି ଯେ ସେ ସବୁକୁ ଭୁଲିବାପାଇଁ ଏସବୁ ପୁସ୍ତକ ଭିତରେ ଆଶ୍ରୟ ନେଇଛି । 'ଗୀତା' ଭାରତବର୍ଷର ଅନେକଙ୍କ ପାଇଁ କେଉଁ ଯୁଗରୁ ବଞ୍ଚିବାର ମାଧ୍ୟମ ପାଲଟିଯାଇଛି ।

ଆମେ ଉଠିଲୁ । ବର୍ଷାଛାଡି ଯାଇଥିଲା । ସେ କହିଲେ, ରୁହ । ତମକୁ ମୁଁ ଅଧାବାଟରେ ଛାଡିଦେଇ ଆସିବି । ବାଣୀବିହାର ଗଲା ପରେ କିଏ ଜାଣେ ଆଉ ତମ ସହ ଗପିବାର ସୁଯୋଗ ଆସିବ କି ନା' ବା ମୁଁ ଏଠି ଥିବି କି ନାହିଁ । ମୁଁ ବି କ'ଣ ଜାଣିଥିଲି ଶରତଙ୍କ ସହ ଏଇଟା ହେବ ମୋର ଶେଷ ସାକ୍ଷାତ ? ଜୀବନରେ ଆଉ କେବେ ଦେଖା ହେବନି ବା ଆମ ଜୀବନରେ ରାସ୍ତା ସମ୍ପୂର୍ଣ୍ଣ ବଦଳି ଯିବ ବୋଲି ?

ବାଣୀବିହାରରୁ ପତ୍ରପତ୍ରିକା, ବହି ବେଳେବେଳେ ପଠାଉଥିଲି । ଥରେ ସେ ଲେଖିଥିଲେ, ତମେ ମୋତେ ଆଉ ପତ୍ରପତ୍ରିକା ଦେବ ନାହିଁ କବିତା । ସେ ସବୁ ପଢ଼ିବାର ଧୈର୍ଯ୍ୟ ନାହିଁ । ଜାଣ ଏ ବର୍ଷ ଯଦି ଚାକିରୀ ନ ମିଳେ ତା'ହେଲେ ଚାକିରୀ ପାଇବାର ବୟସ ମୋର ଚାଲିଯିବ ଓ ମୁଁ ସବୁଦିନ ଲାଗି ଭାଇ ଭାଉଜଙ୍କ ବୋଝ ହେଇ ରହିଯିବି । ଏହା ହିଁ ମୋର ଦୁଃଖ । ଚିଠିଟି ପାଇ ସମବେଦନାରେ ହୃଦୟ ଭରି ଉଠିଥିଲା । ଭଗବାନଙ୍କୁ ଡାକିଥିଲି, ଆହା ତାଙ୍କର ଗୋଟାଏ ଚାକିରୀ କରାଇ ଦିଅ ପ୍ରଭୁ ।

ସେତିକିବେଳେ ମୋର ଏଇ ପତ୍ରବନ୍ଧୁ ଶରତଙ୍କୁ ନେଇ ଲେଖିଲି ସ୍ମୃତିର ସହର.. ଗଳ୍ପଟି ଯାହା ସାରା ଓଡ଼ିଶାରେ ଚହଳ ପକାଇ ଦେଲା । ୧୯୮୧ ମସିହା ମାର୍ଚ୍ଚ ଝଙ୍କାରରେ

ତାହା ପ୍ରକାଶ ପାଇଥିଲା । ଏହି ଗପଟି ହିଁ ମୋ ଜୀବନର ମାଇଲଖୁଣ୍ଟ ପାଲଟି ଗଲା । ରାତାରାତି ମୁଁ ଯେମିତି ଓଡ଼ିଶାରେ ପରିଚିତା ହେଇଗଲି । ଏ ଗପଟି ପାଇଁ ଓଡ଼ିଶା ସମେତ କଲିକତା, ଦିଲ୍ଲୀ, ହାଇଦ୍ରାବାଦରୁ ମୁଁ ସତୁରୀରୁ ଉର୍ଦ୍ଧ୍ୱ ଚିଠି ପାଇଥିଲି । ଏଇ ଗଳ୍ପ ମାଧ୍ୟମରେ ମୋର ଯାହା କିହବା କଥା ପ୍ରକାଶ କରି ଦେଇଥିଲି । ପାଠକଙ୍କ ଅନୁରୋଧ ଯୋଗୁଁ 'ଭିନ୍ନ ସହର' ଗଳ୍ପ ସଂକଳନରେ ସ୍ମୃତିର ସହରକୁ ବଢ଼ାଇ ସ୍ମୃତିର ସହର ୧-୨ ଲେଖିଥିଲି ଯାହା କେବଳ କଳ୍ପନା ମାତ୍ର ଥିଲା ।

ଏ ଗଳ୍ପର ନାୟକ କିନ୍ତୁ ଝଙ୍କାର ପଢ଼ି ଲେଖିଥିଲେ, କବିତା ! ବାସ୍ତବିକ ସ୍ମୃତିର ସହର ନାୟକ ସହିତ ତମର ଯଦି ଏମିତି ବାସ୍ତବରେ କୌଣସି ବସ୍‌ଷ୍ଟାଣ୍ଡରେ ଦେଖା ହୋଇଥାନ୍ତା ତେବେ ନିଶ୍ଚିନ୍ତ ଭାବରେ ତମକୁ ଖୁସି ଲାଗି ନଥାନ୍ତା । କଳ୍ପନା ଆଉ ସ୍ୱପ୍ନରେ ହିଁ ମଣିଷ ବଞ୍ଚେ । କାରଣ ବାସ୍ତବତା ଠାରୁ ତାହା ବେଶି ମଣିଷକୁ ଆନନ୍ଦ ଦିଏ । ସତରେ 'ସ୍ମୃତିର ସହର' କେବଳ ସ୍ମୃତି ହୋଇ ରହିଗଲା । ତା'ର ନାୟକ ସହିତ ମୋର କେବେ ବି କେଉଁ ବସ୍‌ଷ୍ଟାଣ୍ଡରେ ଦେଖା ହୋଇନାହିଁ ଯାହା ଗପରେ ଲେଖିଥିଲି ।

କିଛି ଦିନ ପରେ ଖବରଟି ପାଇ ଖୁସି ହେଇ ଯାଇଥିଲି ଯେ ଶରତଙ୍କର ସୁଦୂର ଅରୁଣାଞ୍ଚଳ ପ୍ରଦେଶରେ ସେଣ୍ଟ୍ରାଲ ସ୍କୁଲରେ ଚାକିରୀଟେ ମିଳିଯାଇଛି ଓ ସେ ମାସେ ହେଲା ଜୟେନ୍ କରି ସାରିଛନ୍ତି । ଶୁଭେଚ୍ଛା ଜଣାଇଥିଲି ଯାହା ହେଉ ଜୀବନର ଏକ ସ୍ଥାୟୀ ଚୁକ୍ତି ହେଇ ଯାଇଛି । ଅନ୍ତତଃ ନିଜକୁ ତ ନିଜର ବୋଝ କହିପାରିବେନି କି ପରିବାରର ବୋଝ ପାଲଟିବେନି । ପୁଣିଥିଲା ଅରୁଣାଞ୍ଚଳର ଇଟାନଗରର ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା । ପ୍ରକୃତିର ପ୍ରେମରେ ସେଠି ସହଜରେ ପଡିଯାଏ ଭାବୁକ ମଣିଷଟିଏ ।

ତାପରେ ପରୀକ୍ଷା, ପଢ଼ାପଢ଼ି ଭିତରେ ମୁଁ ତାଙ୍କର ଖବର ରଖି ପାରିନାହିଁ । ଦୁଃଖର ବିଷୟ ହେଲା ଅରୁଣାଞ୍ଚଳର ଠିକଣା ନେଇ ଆସିଥିବା ଚିଠିଟା କେଉଁଠି ହଜିଯାଇଥିଲା । ଇଚ୍ଛା କରିବି ଯୋଗାଯୋଗ ରଖିପାରି ନଥିଲି । ତେବେ ଏଥର ଚିନ୍ତା କରିଥିଲି ନିଶ୍ଚେ ଦେଖା ହେଲେ ମୁଁ କହିପାରିବି ତମେ ମୋତେ ଏତେ ଭଲ ଲାଗ କାହିଁକି ? ଏହା ହିଁ କ'ଣ ଭଲପାଇବା ? ସେଥିପାଇଁ କ'ଣ ବାଣୀବିହାରର କୌଣସି ବନ୍ଧୁ, ଶୁଭେଚ୍ଛୁ ମୋତେ ଆକୃଷ୍ଟ କରି ପାରି ନାହାଁନ୍ତି ବା କେହି ବନ୍ଧୁତ୍ୱ କରିବାକୁ ଆଗେଇ ଆସିଲା ବେଳେ ମୁଁ ଆଦୌ ଆଗ୍ରହ ପ୍ରକାଶ କରିପାରି ନାହିଁ । ଏମ୍‌ଏ ପରେ ବାରିପଦା ଯାଇ ସାର୍‌ଙ୍କ ଘରକୁ ଗଲି । ମୁଁ କ'ଣ ଜାଣିଥିଲି ମୋ ପାଇଁ ଏତେ ବଡ ଏକ ଖବର ଅପେକ୍ଷା କରିଛି ବୋଲି ? ଶୁଣିଲି ସାର୍‌ଙ୍କର ବଦଳି ହୋଇଯାଇଛି ଓ ମୋ ବନ୍ଧୁ ମଝିରେ ଓଡିଶା ଆସି ଫେରି ଯାଇଛନ୍ତି ବୋଲି । ତାଙ୍କର ବାହାଘର ଛ'ମାସ ହେଇଗଲାଣି । ସାର୍‌ଙ୍କ ଭଉଣୀ ଆଲବମ୍ ବଢ଼ାଇ

ଦେଲେ, ଦେଖ କବିତା ଅପା, ତମ ବନ୍ଧୁପତ୍ନୀଙ୍କୁ । ବାହାଘର ବେଳର ଫଟୋ । ସାର୍ କହୁଥିଲେ ତମେତ ନିମନ୍ତ୍ରଣ ପତ୍ର ପାଇଥିବ । ମୁଁ ମିଛ କହିଲି, ହଁ ପାଇଥିଲି । ଆଖିରେ ମେଘ ଉଠାଇ ଆସୁଥିଲା । ମୁଁ ଆଲବମ୍ ପୃଷ୍ଠା ଭିତରେ ନିଜକୁ ଛପାଇ ଦେବାକୁ ଚେଷ୍ଟା କରୁଥିଲି । ସାର୍‌ଙ୍କୁ ଅରୁଣାଞ୍ଚଳର ଠିକଣା ମାଗିଥିଲି । ସାର୍ ଆଶ୍ଚର୍ଯ୍ୟ ହେଉଥିଲେ, ତମ ପାଖରେ ଠିକଣା ନାହିଁ । ନା, ହଜାଇ ଦେଇଛି ବୋଲି କହିଥିଲି ।

ତାପରେ କେମିତି ଯେ ଘରେ ପହଞ୍ଚିଲି ଜାଣେନା । ଶରତ ଏତେବଡ ଖବରଟା ନ ଜଣାଇଲେ କେମିତି ? ଏତେ ବର୍ଷର ବନ୍ଧୁତ୍ୱ ଭିତରେ ଆମର ତ କୌଣସି ସଂକୀର୍ଣ୍ଣ ମନୋଭାବ ନଥିଲା ? କେବେ ତ ବାହାଘରର ପ୍ରଶ୍ନ କି ସ୍ୱପ୍ନ ଉଠିନଥିଲା ବା ସେ ପର୍ଯ୍ୟନ୍ତ ଆମ ସମ୍ପର୍କ ଯାଇ ନଥିଲା । ମୁଁ କ'ଣ ସୁଖୀ ହୁଅ ବୋଲି ଧାଡିଟିଏ ଲେଖିପାରିବିନି ବୋଲି ଶରତଙ୍କ ଧାରଣା ହୋଇଥିଲା ? ତାହାଲେ ଆମ ବନ୍ଧୁତ୍ୱ କ'ଣ ସନ୍ଦେହର କୁହୁଡି ଭିତରେ ଥିଲା ? କେହି କାହାରିକୁ ଭଲ କରି ଚିହ୍ନି ପାରି ନଥିଲୁ ବୋଧହୁଏ । ନହେଲେ ନିଗୁଢ଼ ବନ୍ଧୁତ୍ୱ ଭିତରେ ଏତେ ଫାଙ୍କ ନଥାନ୍ତା ?

ଠିକଣାଟା ଆଣି କେତେକଣ ଲେଖିଥିଲି ଯଦିଓ ସ୍ପଷ୍ଟ ଭାବରେ ଆଜି ମନେନାହିଁ । ତେବେ ସୁଖ ମନାସି ହିଁ ଲେଖିଥିଲି । ଅତୀତରେ ସେ ଲେଖିଥିବା ସବୁ ଚିଠି ଫଟୋ ରେଜେଷ୍ଟ୍ରି କରି ଫେରାଇ ଦେଇଥିଲି । ଉତ୍ତର ଆସିଥିଲା, March forward, to stop and look back is death... ମୁଁ ତାପରେ ମୋର ଶେଷ ଚିଠିଟେ ଲେଖିଥିଲି, ଭଗବାନ କରନ୍ତୁ ଆମର ଏ ଜୀବନରେ ଆଉ ଦେଖା ନହେଉ... ଆଉ ତାପରେ ଠିକଣାଟି ଚିରି ଉଡାଇ ଦେଇଥିଲି । ଏଇଠି ଛିଡିଗଲା ଗୋଟାଏ ନାଁ ନଥିବା ସମ୍ପର୍କ ।

ସତରେ ଆଗକୁ ଚାଲିବା ହିଁ ମୋର ଧର୍ମ । ଅତୀତକୁ ଚାହିଁ ଲାଭ କ'ଣ ? ସେଥିପାଇଁ ବୋଧହୁଏ ବନ୍ଧୁ ମୋର ଲେଖିଥିଲେ ମାର୍ଚ୍ଚ ଫରଓ୍ୱାର୍ଡ । କିନ୍ତୁ ସତରେ କ'ଣ ପଛକୁ ନଚାହିଁ ବଞ୍ଚି ହୁଏ ? କେତେଦିନ ଉଦାସ ରହିଲା ପରେ ପୁଣି ଆସ୍ତେ ଆସ୍ତେ ସ୍ୱାଭାବିକ ହେଇଗଲି । Time the best healer. ମୁଁ ପରବର୍ତ୍ତୀ ସମୟରେ 'ସମ୍ପର୍କ' ନାଁରେ ଯେଉଁ ଉପନ୍ୟାସଟି ଲେଖିଥିଲି (ଓଡିଶା ବୁକ୍‌ଷ୍ଟୋର ଦ୍ୱାରା ୧୯୯୨ରେ ପ୍ରକାଶିତ) ସେଇଠି ଯେଉଁ ଆଲୋକ ଚରିତ୍ରଟି ଦେଇଛି ତାହା ସହିତ ମୋର ପତ୍ରବନ୍ଧୁ ଶରତଙ୍କର ଅନେକ ସାମଞ୍ଜସ୍ୟ ରହିଛି । ଜାଣେନା ଏ ବହିଟି ଶରତ ଦେଖିଛନ୍ତି ବା ପଢ଼ିଛନ୍ତି କି ନାହିଁ । ଜୀବନର ଅନ୍ତରଙ୍ଗ ଘଟଣା ହିଁ ବେଳେବେଳେ ଉପନ୍ୟାସ, ଗଳ୍ପ ପୃଷ୍ଠାକୁ ଓହ୍ଲାଇ ଆସେ । ଶରତଙ୍କ ଉପଦେଶ ଅନୁସାରେ ମୁଁ ଯେ ପଛକୁ ଚାହିଁ ନାହିଁ ଏପରି କହିଲେ ନିଜ ସହିତ ଧୋକ୍କା କଲା ଭଳି ଲାଗିବ । ବେଳେବେଳେ ଭାବିଛି ସତରେ କ'ଣ ଏଇଟା

ଭଲ ପାଇବା ଥିଲା ନା ଏକତରଫା ଏକ ଆକର୍ଷଣ ? ଯଦି ପ୍ରେମ କରିଥାନ୍ତି ତାହାଲେ କେବେ ତ ପ୍ରେମପାଗଳିନୀ ସାଜିନି କି ବିରହରେ ବାୟାଣୀ ହେଇନାହିଁ । କ'ଣ ନାଁ ଦିଆଯାଇପାରେ ଏ ସମ୍ପର୍କର ? ଅନୁରାଗ ? ନା ନିହାତି ପିଲାଳିଆମି ଥିଲା ? ହୋଇପାରେ ଏହା ଏକ ଭାବପ୍ରବଣ ଅନୁରାଗ ଥିଲା ଯାହା ମୋର ଆଦ୍ୟ ଯୌବନକୁ କିଛିଟା ଶିହରିତ କରିଥିଲା ।

ଏ ଭିତରେ ଅନେକ ବର୍ଷ ଚାଲିଗଲାଣି । ଆଉ ଦେଖା ହେଇନାହିଁ । ଏ ପୃଷ୍ଠାଟି ଲେଖୁଛି ଆଜି ଦୁଇହଜାର ଦଶ ମସିହାରେ । ତେଣୁ ହିସାବ କଲେ ଆଜିକୁ ଅଠେଇଶ ବର୍ଷତଳେ ଦେଖା ହେଇଥିଲା । ଏତେ ବର୍ଷ ପାଣି ସୁଅ ଭଳି ଚାଲିଗଲା ? ଦେଖାହେଲେ ଚିହ୍ନି ପାରିବି କି ନା ସନ୍ଦେହ । ମୁଁ ନିଜେ ବି କେତେ ବଦଳି ଗଲିଣି । କେବେକେବେ ମନେହୁଏ ଏହା ଏକ କ୍ଷଣିକ ଭାବପ୍ରବଣତା ଛଡା ଆଉ କ'ଣ ବା ଥିଲା ? ଏକ କଞ୍ଚା ବୟସର ତୁଚ୍ଛା କୌତୂହଳ ଥିଲା । ତେବେ ଶରତଙ୍କ ସ୍ଥାନ ମୋ ଜୀବନରେ ସ୍ୱତନ୍ତ୍ର । ନହେଲେ କ'ଣ ଜୀବନୀ ଲେଖା ଭିତରେ ଏତେ ବର୍ଷ ତଳର ବନ୍ଧୁତ୍ୱକୁ ମୁଁ ଏତେ ଜୀବନ୍ତ ଭାବେ ବଖାଣି ପାରିଥାନ୍ତି ବା ଏତେ ବର୍ଷ ତଳର ଜୀବନକୁ ଛୁଇଁ ପାରିଥାନ୍ତି ! ଯେତେ ଯାହା ହେଲେ ବି ତାଙ୍କୁ ନେଇ ତ 'ସ୍ମୃତିର ସହର' ଭଳି ଏକ 'ଭିନ୍ନ ସହର'କୁ କଳ୍ପନାରେ ସୃଷ୍ଟି କରିପାରିଲି । ସେଥିପାଇଁ ତାଙ୍କ ପାଖରେ କୃତଜ୍ଞ । ଆଉ ସେଦିନ ଯଦି ଝଙ୍କାରରେ ମୋର ପ୍ରଥମ ଗଳ୍ପ 'ସ୍ମୃତିର ସହର' ପ୍ରକାଶ ପାଇଁ ନାଁ କରି ନଥାନ୍ତା, ତାହାଲେ ଏତେ ଶୀଘ୍ର ଓଡ଼ିଶାରେ ପ୍ରତିଷ୍ଠିତ ପତ୍ରପତ୍ରିକାର ସମ୍ପାଦକମାନେ ବୋଧହୁଏ ତାଙ୍କ ପତ୍ରିକାରେ ମୋ ଗଳ୍ପ ପତ୍ରସ୍ଥ କରି ନଥାନ୍ତେ । ତେଣୁ ଏ ଗଳ୍ପର ପ୍ରଚ୍ଛଦ ନାୟକଙ୍କ ପ୍ରେରଣା ହିଁ ମୋତେ ସୃଷ୍ଟି କରିବାକୁ ପ୍ରେରିତ କରିଥିଲା ପରୋକ୍ଷରେ ।

ତଥାପି କେବେ କୌଣସି ପତ୍ରପତ୍ରିକାରେ ପେନ୍ ପେଲସ୍ କଲମ ଦେଖିଲେ ବା କାହାର ମୁହଁରୁ ପେନ୍ - ଫ୍ରେଣ୍ଡ କଥା ଶୁଣିଲେ ଆପେ ଆପେ କିଛି ସମୟ ପାଇଁ ଅତୀତର ପୃଷ୍ଠା ଓଲଟି ଯାଏ ଓ ମୁଁ ଆନମନା ହେଇଉଠେ । ତାଙ୍କର ବି କ'ଣ ମୋ ଭଳି ଏକ ପତ୍ରବାନ୍ଧବୀର କଥା କେବେ ମନେ ପଡୁନଥିବ ବା ମୋ ଗପ / ବହିଗୁଡିକ ସହିତ ସାକ୍ଷାତ ହେଉନଥିବ ? ସତରେ କ'ଣ ଏ ଜୀବନରେ ଆମର କେବେ ଦେଖା ହେବନାହିଁ ? କେଜାଣି ! ଏମିତି କ'ଣ କେହି ମଣିଷ ଅଛି ଯିଏ କେବେ ଅତୀତର ପୃଷ୍ଠା ଖୋଲେ ନାହିଁ ? ଅତୀତର ସ୍ମୃତି ତାକୁ କେବେ ଆଲୋଡିତ କରେ ନାହିଁ ? କେବଳ ସେ ଆଗକୁ ମାଡି ଚାଲିଯାଏ । ପଛକୁ ଥରଟିଏ ବି ବୁଲି ଦେଖେ ନାହିଁ ? ସବୁଠୁ ବଡକଥା ହେଲା ଶରତ ଏ ପୃଥିବୀରେ ଅଛନ୍ତି ନା' ନାହିଁ ତା' ବି ମୋତେ ଜଣାନାହିଁ ।

ମଣିଷ ଜୀବନ ତ ଆଜି ଅଛି କାଲି ନାହିଁ । ତିରିଶ ବର୍ଷ ତଳର ଘଟଣା କିଏ କହି ପାରିବ ?

ଏ ବନ୍ଧୁତ୍ୱରେ କେତେ ହଜାଇଛି ଜାଣେନା । କିନ୍ତୁ ପାଇଛି ଅନେକ । ବନ୍ଧୁତ୍ୱ ସମ୍ପର୍କରେ, ବିଶ୍ୱସାହିତ୍ୟ ସମ୍ପର୍କରେ ଅନେକ ଜ୍ଞାନ ଏହି ସୂତ୍ରରୁ ବଢ଼ିଯାଇ ଥିଲା । ଅଥଚ ଆମର କେବେ କୌଣସି ଛକରେ, କ୍ୟାଣ୍ଟିନରେ, ମେଳା, ସଭା ସମିତିରେ ଦେଖା ହେଇ ନାହିଁ କି ଘଣ୍ଟା ଘଣ୍ଟା ଗପିବାର ସୁଯୋଗ ପାଇ ନାହୁଁ । ହାୟ, ପାଞ୍ଚବର୍ଷର ବନ୍ଧୁତ୍ୱ ଭିତରେ ମାତ୍ର ତିନି ଚାରିଥର ଦେଖା ପୁଣି ଘଣ୍ଟେ କି ଅଧଘଣ୍ଟା ଭିତରେ । ତଥାପି ପ୍ରଥମ ବର୍ଷା ଭଳି ମୋ ପାଇଁ ଆଜି ବି ତାହା ରୋମାଞ୍ଚକର ମହମହ ବାସ୍ନା ସୃଷ୍ଟି କରେ ।

ବେଳେବେଳେ କୌତୂହଳ ଜାଗେ, ସତରେ ଯଦି ଦେଖା ହୁଅନ୍ତା ଏମିତି କେଉଁ ଛକରେ, ମେଳା, ମନ୍ଦିର, ବଜାର କି ସହରରେ । କେତେବଡ ହେଇ ଯାଇଥିବେ ତାଙ୍କ ପିଲାମାନେ ? ମୁଣ୍ଡର ବାଳ ପାଚି ଯାଇଥିବ ନା ଚନ୍ଦା ଦିଶୁଥିବେ ଶରତ ? ଆଖିର ଚଷ୍ମାର କାଚ ମୋଟା ହୋଇଯାଇଥିବ ? ଆମେ କ'ଣ ଗପିବା ? ସେହି ପାମ୍ପଡ, ଚା' ପିଆ ଗପ ନା ବିଶ୍ୱର ସାହିତ୍ୟିକମାନଙ୍କ ସମ୍ପର୍କରେ ରୋମାଞ୍ଚକର ଗପ । ଧ୍ୟାତ୍ । ଆଉ କ'ଣ ସେ ପିଲାଳିଆମି ଅଛି । ସ୍ୱାମୀ ପୁଅକୁ ନେଇ ସଂସାର ମୋର ପୁରୁଣା ହେଇଗଲାଣି । ଦରବୁଢ଼ୀ ହେଇ ଗଲିଣି । ଶରତଙ୍କ ପିଲାମାନେ ବି ବାହାହେଇ ସାରିବେଣି ।

ତଥାପି ସତରେ ଯଦି ଏ ଜୀବନରେ ଦେଖାହୁଏ କହିବି, ଦେଖ ଲେଖିକା ହେଲେ କ'ଣ ହେଲା, ମୁଁ ସେହି କବିତା, ଆଇ.ଏ ପଢୁଥିବା ଝିଅଟି ଯାହାକୁ ଦିନେ ଜୀବନକୁ ସୁନ୍ଦର କରି ଗଢ଼ିବା ପାଇଁ ତମେ ଉପଦେଶ ଦେଉଥିଲ । କିନ୍ତୁ ଜାଣ, ଜୀବନଠାରୁ ବନ୍ଧୁତ୍ୱ ହିଁ ସୁନ୍ଦର । ବନ୍ଧୁହୀନ ହେଇ ଜୀବନରେ ବଞ୍ଚିବା ଭାରି କଷ୍ଟ । ଆତ୍ମୀୟସ୍ୱଜନ ଭରା ସଂସାରରେ ଯଦି ବନ୍ଧୁଟିଏ ନଥିବ ତେବେ ମନର ଦୁଃଖ ବାଣ୍ଟିବ କାହାକୁ ? ମୁଁ ସ୍ୱାମୀ ପାଇଛି ହେଲେ ସେ କେବେ ବନ୍ଧୁତ୍ୱ ଆସନକୁ ଓହ୍ଲାଇ ପାରିନାହାଁନ୍ତି । ସେଥିପାଇଁ ତ ଆମ ବନ୍ଧୁତ୍ୱ ବେଳେ ବେଳେ କୃଷ୍ଣଚୂଡ଼ାର ରଙ୍ଗ ମାଖି ମୋ ପାଖରେ ଠିଆହୁଏ । ସେଠି ସ୍ମୃତିର ନେଥିନେଥି ଫୁଲଫୁଟେ ଆଉ ମୋ ମୁଣ୍ଡ ଉପରେ ଝଡିପଡେ । ମୁଣ୍ଡ ସାରା ଭର୍ତ୍ତି ହେଇଯାଏ ଲାଲ କୃଷ୍ଣଚୂଡ଼ା । ନାଲି ରଙ୍ଗ କୁଆଡେ ଅନୁରାଗର ରଙ୍ଗ । ସେ ସବୁ ଅତୀତର କିଛି ସମୟକୁ ଛୁଇଁ ଛୁଇଁ ଯାଆନ୍ତି । ପୁଣି ବର୍ଷାଦିନ ମୋ ଭିତରେ କେବେ ଧୂଳି ଜମି ଯାଇଥିବା ସ୍ମୃତିକୁ ତାଜା କରିଦିଏ । ବିଭିନ୍ନ ବ୍ୟସ୍ତତା, ଜଞ୍ଜାଳ ଭିତରେ ବୁଡି ରହିବି କ୍ଷଣକ ପାଇଁ ମୁଁ ଆନମନା ହେଇଯାଏ । ସମୟର ବହୁ ପଛକୁ ଟାଣି ହେଇଯାଏ ଯଦିଓ ଏ ବନ୍ଧୁତ୍ୱର ନାଁ ନାହିଁ । ଏ ସମ୍ପର୍କର ସ୍ଥିତି ନାହିଁ । ଅଛି କିଛି ଭିଜା ସ୍ମୃତି ଆଉ

ଭାବପ୍ରବଣତାରେ ବତୁରା ଦିନ । ହରାଇବାର ଗ୍ଲାନି ।

ଶରତ ! ତମେ ଥରେ ଲେଖିଥିଲ memories are always sweet, ever green... ଆଉ ସେଇଥିପାଇଁ ତ 'ସ୍ମୃତି' ଆଜି ବି କିଛିଟା ସବୁଜ, ମୋ ପାଖରେ । ଯଦିଓ ଜୀବନ ଅପରାହ୍ନକୁ ମୁହାଁଇଲାଣି, ତଥାପି ଆଶା ରଖିଛି ଯେହେତୁ ପୃଥିବୀ ଗୋଲ ତେଣୁ କେବେ ନା କେବେ କେଉଁଠି ନା କେଉଁଠି ନିଶ୍ଚେ ଦେଖା ହେଇଯିବ ଯଦି ଆମେ ବଞ୍ଚି ଥାଉ । ସେତେବେଳେ ଆମ ପତ୍ର ବନ୍ଧୁତ୍ୱକୁ ଟିକେ ରିନ୍ୟୁ କଲେ କ'ଣ କିଛି କ୍ଷତି ହେବ ? ନା' ଆମେ ସେହି ଦିନଗୁଡିକୁ ମାଗିବା ଯେ ଦିନରେ ପରସ୍ପରର ଅସହାୟତାକୁ ବୁଝିବା ଲାଗି ସାନ୍ତ୍ୱନାର ଚିଠି ଲେଖୁଥିଲୁ ? ପୁଣି ଏମିତି ବି ହୋଇପାରେ ଏ ଜୀବନରେ କେବେ ଦେଖାହେବ ନାହିଁ କି ଦେଖା ହେଲେ ଚିହ୍ନି ହେବ ନାହିଁ । ସେଦିନର ପୋଇତଙ୍କ ଭଳି ଦୋହଲୁଥିବା ନହନହକା କବିତା ଆଜି ପୃଥୁଳକାୟ ବୟସ୍କା ମହିଳା ପାଲଟି ସାରିଛି । ବୟସ ତାଡନାରେ ତମର ବି ଅନେକ କିଛି ପରିବର୍ତ୍ତନ ହେବା ସ୍ୱାଭାବିକ । ଆମେ ଦୁହେଁ କାଳର ସ୍ରୋତରେ ତୀବ୍ର ଭାବରେ ଧାଇଁଛୁ ଜୀବନର ନିଷ୍ଠୁର ସତ୍ୟକୁ ଭେଟିବାକୁ । ସମୟ ରଙ୍ଗ ଉଡାଇ ନେଇ ବିବର୍ଣ୍ଣ କରି ଦେଇଛି । ତଥାପି ସତରବର୍ଷରେ ଆରମ୍ଭ ହୋଇଥିବା ମୋର ପତ୍ରବନ୍ଧୁତ୍ୱ ଓ ବାଇଶି ବର୍ଷ ବୟସରେ ଶେଷ ହୋଇଯାଇଥିବା ଅନାବିଳ ସମ୍ପର୍କ ଆଜି ବି କେଉଁ କୋଣରେ ଆସନ ଜମାଇ ରଖି ମୋତେ ଏ ବୟସରେ ବି ଉଚ୍ଚାଟିତ କରୁଛି ।

ଆଜି 'ସ୍ମୃତିର ପୃଷ୍ଠା' ଓଲଟାଇଲା ବେଳେ ମୋର ପତ୍ର ବନ୍ଧୁ ଶରତଙ୍କ ପ୍ରତି ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁରଙ୍କ କବିତାର କେତୋଟି ଧାଡି ଉତ୍ସର୍ଗ କରି ଲେଖୁଛି-

'ଯତ୍‌ବାର-ଆଲୋ ଜାଲାତେ ଚାଇ
ନିଭେ ଯାଇ ବାରେ ବାରେ
ଆମାର୍ ଜୀବନେ ତୋମାର୍ ଆସନ
ଗଭୀର ଅନ୍ଧକାରେ... ।' (ଗୀତାଞ୍ଜଳି)

## ପାଞ୍ଚ

ଆଗରୁ କହିଛି ମୋର ସମଗ୍ର ଜୀବନ ସତେ କି ଏକ ଅନ୍ତଃହୀନ ଯାତ୍ରା । ଏହି ଯାତ୍ରାପଥରେ କେତେ କାହାକୁ ପାଇଛି ଆଉ ହରାଇଛି ତା'ର କିଛି ଠିକଣା ନାହିଁ । ନଈ ବାଙ୍କ ବୁଲିଲା ଭଳି ମୋ ଜୀବନ ବି ବାଙ୍କ ବୁଲିଛି, ଗତି ବଦଳାଇଛି । ତାରି ଭିତରେ ମୋ ଜୀବନ ପରିସରକୁ ଯେତେବେଳେ ଯେଉଁ ଚରିତ୍ର ଆସିଛନ୍ତି ଓ କିଛିଟା ପ୍ରଭାବିତ

କରିଛନ୍ତି, ସେମାନଙ୍କୁ ମୁଁ ଭୁଲିନାହିଁ । ପୁଣି ଯେଉଁମାନଙ୍କ ସାହାଯ୍ୟ, ସହାନୁଭୂତି, ଆଦର୍ଶ ମୋତେ ପ୍ରେରଣା ଯୋଗାଇଛନ୍ତି ସେମାନେ ବି ମୋ ପାଇଁ ଅଭୁଲା ସ୍ମୃତି ହୋଇ ରହିଯାଇଛନ୍ତି ।

ମୋର ଦୁଇ ଭିଣୋଇଙ୍କ କଥା ଏ ପ୍ରସଙ୍ଗରେ ମନେ ପକାଯାଇପାରେ । ମୋର ନିଜ ଭିଣୋଇଙ୍କ ନାଁ ନରସିଂହ ବାରିକ । ବୃତ୍ତିରେ ଜଣେ ଶିକ୍ଷକ । ଏ ଭିତରେ ରିଟାୟାର୍ଡ କରିସାରିଛନ୍ତି । ମୋ ବଡଭଉଣୀ ଗୀତା ଅପା (ପ୍ରଣତୀ ବାରିକ)ର ବାହାଘର ମାତ୍ର ଅଷ୍ଟମ ଶ୍ରେଣୀରେ ହୋଇଥିଲା ଯେତେବେଳେ ନରସିଂହ ଭାଇ ଆଇ.ଏ. (ଆଜିର ପ୍ଲସ୍-ଟୁ) ପଢୁଥିଲେ । ମାଆ ବୋଧହୁଏ ଜାଣିଥିଲା ସେ ବେଶିଦିନ ବଂଚିବ ନାହିଁ ବୋଲି । ବାହାଘର ପାଇଁ ଉଛନ୍ନ ହେଲା । ସେତେବେଳେ ନାବାଳିକା ବିବାହ ଆଇନ ହୋଇଥିଲା କି ନାହିଁ କେଜାଣି । ନରସିଂହ ଭାଇ କିନ୍ତୁ ବାହାଘର ପରେ ନିଜେ ଯେମିତି ପଢ଼ିଲେ ସେମିତି ଅପାକୁ ମଧ୍ୟ ପଢ଼ାଇଲେ । ସେ ବି.ଏ. ବିଇଡି କରି ବାରିପଦା ମ୍ୟୁନିସିପାଲିଟିର ହାଇସ୍କୁଲ ଶରତଚନ୍ଦ୍ର ବିଦ୍ୟାପୀଠରେ ଶିକ୍ଷକତା କଲେ । ଅପା ବି.ଏ ପାଶ୍ କରି ପୁଣି ବିଇ.ଡି ନେଇ ଭଞ୍ଜପୁର ବାଳିକା ହାଇସ୍କୁଲରେ ଶିକ୍ଷୟିତ୍ରୀ ହେଲା । ମାଆର ମୃତ୍ୟୁ ଶଯ୍ୟାରେ ନରସିଂହ ଭାଇ ଉପସ୍ଥିତି ଥିଲାବେଳେ ଅପା ତା' ଗାଁରେ ଥିଲା ଆସନ୍ନ ପ୍ରସବ । ଆମେ ଭାଇ ଭଉଣୀମାନେ ଖୁବ୍ ଛୋଟ ଥିବା କଥା ତ ଲେଖିଛି ।

ଅପାର ଶାଶୁଘର ଥିଲା ବୁଢ଼ାବଳଙ୍ଗ ନଈ ସେପାଖ ପୋଡା ଅସ୍ତିଆରେ । ତା'ର ଶାଶୁ ଶ୍ୱଶୁର ସେତେବେଳେ ବଞ୍ଚିଥିଲେ । ଆମେ ତା' ଆଗରୁ ଗାଁ ଓ ଧାଡିଧାଡି ଧାନବିଲ ଦେଖି ନଥିଲୁ । ଛୁଟି ହେଲେ ଅସ୍ତିଆ ଯାଉଥିଲୁ । ସନ୍ଧ୍ୟାବେଳେ ଗୋଲହୋଇ ତାଙ୍କ କୁଟୁମ୍ବ ଲୋକେ ବସୁଥିଲେ । ବିଶେଷ କରି ମକରପର୍ବ ତାଙ୍କର ସେଠି ଧୁମ୍‌ଧାମରେ ପାଳନ ହେଉଥିଲା । ମାଂସ ଓ ଆରିସା ପିଠା ସହିତ ଟୁସୁ ଗୀତ ଥିଲା ସବୁଠୁ ବଡ ଆକର୍ଷଣ । କେବେକେବେ ସନ୍ଧ୍ୟାବେଳେ ବାହାରେ ନିଆଁ ଜାଳି ଭୂତ ଗପ ସବୁ କୁହାଯାଉଥିଲା । କିଏ କେମିତି କେଉଁଠି ଭୁତକୁ ଭେଟିଛି, ଡାହାଣୀମାନେ କେମିତି ମୁଣ୍ଡତଳକୁ କରି ଗୋଡ ଉପରକୁ କରି ଗୁହ ଖାଉଥାନ୍ତି, ପିଲା ସେକୁଥାନ୍ତି, ଗୁଣିଆ କେମିତି ସୋରିଷ ମନ୍ତ୍ର କରି ଫିଙ୍ଗି ନଙ୍ଗୁଳି ମାଇକିନାମାନଙ୍କୁ ଡାହାଣୀ ବୋଲି ଚିହ୍ନାଇ ଦିଏ ଇତ୍ୟାଦି ଇତ୍ୟାଦି । ସେତେବେଳେ ଖୁବ୍ ଭୟ ଲାଗେ । ଏପରିକି ତାଙ୍କ ଘର ପଛପଟେ ଥିବା ଆମ୍ବଗଛଟା ଭୂତ ଠିଆ ହେଲାଭଳି ଲାଗେ । ଆମ୍ଭେମାନେ ବାହାରକୁ ପରିସ୍ରା ଯିବାକୁ ବି ଭୟ କରୁ । କୁଣ୍ଢାକୁଣ୍ଢି ହୋଇଶୋଉ ।

ସେତେବେଳେ ଗାଁରେ ପାଇଖାନା ନଥାଏ । ଅପା ଲାଗି ଯାହା ଗୋଟେ

ବରପାଲି ପାଇଖାନା କରାଯାଇଥାଏ । କୂଅରୁ ପାଣି ଟାଣିବାଟା ବି କଷ୍ଟକର । ଧାନବିଲ ପାରିହୋଇ ସବାଶେଷ ଆଡେ ନୁଟା ଧରି ଆମେ ଝାଡା ଯାଉ । ରାତିରେ ଯେଉଁ ଯାଗାଟା ଭୂତ, ଡାହାଣୀଙ୍କର ଚରାଭୂଇଁ ବୋଲି ଡରୁଥାଉ ଦିନରେ କିନ୍ତୁ ସାହସକରି ସେହି ଯାଗାରେ ଝାଡାବସୁ । ଗପସପ ହୋଇ ଫେରୁ । ଗାଁରେ ଇଲେକ୍ଟ୍ରି ନଥାଏ । ସନ୍ଧ୍ୟା ହେଲେ ଗଛର ଛାଇ ଦେଖିଲେ ବି ଡରଲାଗେ । ଭୂତଟା ଠିଆ ହୋଇଛି ବୋଲି କିଳିକିଳା ରଡିଦେଉ । ସେମିତି ସେଠି ବୁଢ଼ାବଲଙ୍ଗ ନଈକୁ ଗାଧୋଇ ଯାଉ । ନଈ ପହଁରା ମୋତେ ଜଣାନାହିଁ । ଆମେ ବୁଢ଼ାବଲଙ୍ଗକୁ ଗାଧୋଇ ଗଲାବେଳେ ନଈ ଧାରରେ ପଡେ ପରିବା ପାଳ । ଏକର ଏକର ବ୍ୟାପି ଫୁଲକୋବି, ବନ୍ଧାକୋବି, ବାଇଗଣ, ଶାଗ, ଟମାଟୋ, ମୂଳା, ଧଣିଆପତ୍ର, କଞ୍ଚାଲଙ୍କା ପ୍ରଭୃତି ଲଗାଯାଇଥାଏ । ଅଳ୍ପ ପଇସା ଦେଲେ ବିରାଟ ବିରାଟ ଫୁଲକୋବି, ବନ୍ଧାକୋବି କିମ୍ବା ବୋଇତିକଖାରୁ ମିଳେ । ଗାଧୋଇ ସାରି ଫେରିଲା ବେଳେ ଆମେ ତଟକା ପରିବା କିଣିଆଣୁ । ନଈର ସରୁବାଲିରେ ବେକଯାଏଁ ପାଣିରେ ବସି ଗାଧୋଇବା, ପଡିଥିବା ବିରାଟ ବିରାଟ ପଥରରେ ଗୋଡ ଘଷି ଗାଧୋଇବାର ସେହି ଅପୂର୍ବ ଅନୁଭୂତି ଏବେ ବି ମନେ ରହିଛି । ସବୁଜ ଧାନ କିଆରୀ, ଥିରିଥିରି ବାଆ, ଗାଁର ସିଲ୍‌ହଟ୍ ଛବି ମୋ ଭିତରେ ସତେକି କବିତା ଗୁନ୍ଥି ଦେଉଥିଲା ।

ବାହାଘର ପରେ ନରସିଂହ ଭାଇ ସାବୁନ ଲଗାଇ ଗାଧୋଉ ଗାଧୋଉ ବାହାଘର ସୁନାମୁଦିଟା ହଜାଇ ଦିଅନ୍ତି । ଅନେକ ଖୋଜାଖୋଜି ପରେ ମିଳେନାହିଁ । ସୁନା ହଜାଇବା କି ପାଇବାଟା ଶୁଭ ନୁହେଁ । ଅପାର ପ୍ରଥମ ଗର୍ଭ ନଷ୍ଟ ହେବା ପରେ ସୁନା ମୁଦି ହଜିବା କଥା ଏହାର ଅଶୁଭ ସଙ୍କେତ ଥିଲା ବୋଲି କେହି କେହି କହିଲେ ।

ନରସିଂହ ଭାଇ ଓ ଅପା ଆମର ଅତି ଦୁର୍ଦ୍ଦିନ ବେଳେ ଥିଲେ ଅଭିଆ ଗାଁରେ । ନରସିଂହ ଭାଇ ସ୍କୁଲ ଡ୍ରେସ୍ ବନାଇ ଦେବା, ଚପଲ, ଖାତା ବହି କିଣି କେବେ କେବେ ପଢ଼ା ବୁଝାଇ ଦିଅନ୍ତି । ବି.ଏ ପରେ ଏମ୍.ଏ ପଢ଼ିବାର ମୁଖ୍ୟ ମାଧ୍ୟମ ସେ ହିଁ ଥିଲେ । ସେଦିନ ସେ ଯଦି ଅଣ୍ଟା ଭିଡି ବାହାରି ନଥାନ୍ତେ ଓ ଅପାକୁ ମାସକୁ ମାସ ଦୁଇଶହ ଟଙ୍କା ଦେବାକୁ ବାଧ କରି ନଥାନ୍ତେ ଆଜି ମୁଁ କେଉଁ ସ୍କୁଲରେ ଶିକ୍ଷୟିତ୍ରୀ ହୋଇଥାନ୍ତି କି ଘରେ ଗୃହିଣୀଟିଏ କେବଳ ଭାତ ରାନ୍ଧୁଥାନ୍ତି । ବାଣୀବିହାରର ଓଡ଼ିଆ ଡିପାର୍ଟମେଣ୍ଟରେ ଆଡମିସନ କରାଇବା ସହିତ ହଷ୍ଟେଲ ଆଡମିସନ କରି ଆବଶ୍ୟକ ଜିନିଷପତ୍ର କିଣିଦେଇ ସେ ଫେରିଥିଲେ । ଯେଉଁଦିନ ବାରିପଦାରୁ ବାହାରି ଥିଲୁ, ପ୍ରବଳ ବର୍ଷା ହେଉଥିଲା । ମୋର ଟ୍ରଙ୍କ୍ ସମେତ ବେଡିଂ ସବୁ ଭିଜିଯାଇଥିଲା । ଭୁବନେଶ୍ୱରରେ ବଡବାପାଙ୍କ ଘରେ ଓହ୍ଲାଇ ବିଛଣାପତ୍ର ଚିପୁଡି ସେ ପ୍ରଥମେ ଶୁଖାଇଥିଲେ । ତା' ପରଦିନ ଯାଇଥିଲୁ ବାଣୀବିହାର

ଆଡ଼ମିସନ ଲାଗି ।

ବିଭିନ୍ନ ସମୟରେ ପତ୍ରପତ୍ରିକାରେ ଲେଖା ବାହାରିଲେ ପଢ଼ିବା ସହିତ ସେ ନିଜର ସାଙ୍ଗସାଥୀଙ୍କୁ ମୋର ଶାଳୀ ଜଣେ ଲେଖିକା ବୋଲି କହି ଗର୍ବ ଅନୁଭବ କରନ୍ତି । ବାପାଙ୍କ ପରେ ସେ ହିଁ ମୋ ଲେଖାର ଜଣେ ଉଚ୍ଛଧରଣର ପ୍ରଶଂସକ ଓ ପ୍ରଚାରକ । ପୁଣି ବାରିପଦାର କୌଣସି ସଭା ସମିତିରେ ବକ୍ତୃତା ଦେବାର ଥିଲେ ନରସିଂହ ଭାଇ ଅତି ଆଗ୍ରହରେ ଶ୍ରୋତାର ଆସନଟି ଜମାଇ ବସିଥାନ୍ତି । କିଏ ଗଲେ କ'ଣ ଖାଇବେ, କେମିତି ଆରାମରେ ରହିବେ ସେଥିପାଇଁ ବ୍ୟସ୍ତ ହୋଇ ପଡନ୍ତି । ବାପାଙ୍କ ଭଳି ତାଙ୍କ ବଡ ଜ୍ୱାଇଁଟି ମଧ୍ୟ ଜଣେ ଅତିଥି ଶଙ୍ଖୋଳା ପାଗଳା ମଣିଷ । ଇଂରାଜୀ ଗ୍ରାମାରରେ ତାଙ୍କର ଅସାଧାରଣ ପ୍ରବେଶ ରହିଛି । ବାରିପଦାର ପ୍ରଖ୍ୟାତ ଶିକ୍ଷକ ଦୈତାରି ବାରିକଙ୍କ ପାଖରେ ବସି ରହି ସେ ଏହି ଯୋଗ୍ୟତାକୁ ଆୟତ୍ତ କରୁଛନ୍ତି । ନରସିଂହଭାଇ ମୋର ସବୁଠୁ ଜଣେ ବଡ ପ୍ରଶଂସକ ଓ ପ୍ରଚାରକ । ମୋ ଲେଖା ସେ ଅତି ଆଗ୍ରହରେ ପଢ଼ନ୍ତି ଓ ମୋ ଶାଳୀ ଜଣେ ଲେଖିକା ବୋଲି ଆତ୍ମପ୍ରସାଦ ଅନୁଭବ କରନ୍ତି ।

ନରସିଂହ ଭାଇଙ୍କ ଭଳି ମୋର ଜଣେ ବଡବାପାଙ୍କ ଝିଅକୁ ବାହା ହୋଇଥିବା ଭିଣୋଇ ହେଲେ କବି ସୌରୀନ୍ଦ୍ର ବାରିକ । ମୋର ସାହିତ୍ୟିକ ଜୀବନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେ ମୋର ପ୍ରଶଂସକ ବଦଳରେ ଅଧିକ ସମାଲୋଚକ । ମୋର ଦୋଷ, ଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି । ସେ କହନ୍ତି, 'ତୋର ଗପର ବହୁତ ପ୍ରଶଂସକ, ପାଠକ, ଅନ୍ଧସ୍ତାବକ ମିଳିବେ କିନ୍ତୁ ମୋ ଭଳି ସମାଲୋଚକଟେ ମିଳିବେନି ଯିଏ ତୋର ଦୋଷ ଦୁର୍ବଳତା ଉପରେ ହିଁ ସମାଲୋଚନା କରିବ । ମୋର ସମାଲୋଚନାର ଅର୍ଥ ନୁହେଁ ତୋତେ ଆଘାତ ଦେବା । ତୁ ବଡ ହେ, ଖୁବ୍ ନାଁ କର । ସେଥିପାଇଁ ତୋତେ ସଜାଡିବା ମୋର ଲକ୍ଷ୍ୟ ।

ସୌରୀଭାଇଙ୍କ ଭଳି ସରଳ, ଖୋଲାମେଲା ମଣିଷଟେ ମିଳିବା ଆଜିକାଲି ସମ୍ଭବ କି ସହଜ ନୁହେଁ । ସେ ଆତ୍ମପ୍ରଚାରର ଡିଣ୍ଡିମ ପିଟନ୍ତି ନାହିଁ । କେବଳ ଜଣେ ନିରୁତା କବିଟିଏ । ଗୋଷ୍ଠୀ ନାହିଁ, ପ୍ରଚାର ନାହିଁ, ନିନ୍ଦିବା ନାହିଁ । ସେଥିପାଇଁ ସେ ଅଜାତଶତ୍ରୁ । ତାଙ୍କୁ ସମସ୍ତେ ଭଲପାନ୍ତି । ତାଙ୍କ ତୀକ୍ଷ୍ଣ ସମାଲୋଚନା ଓ ଉପଦେଶ ହିଁ ମୋର ପ୍ରାରମ୍ଭିକ ଲେଖା ଲେଖିକୁ ଘଷି ମାର୍ଜିତ କରି ଦେଇଛି । ଥରେ ସ୍କୁଲ ଜୀବନରେ ମୋର କୌଣସି ଏକ ଗପର ଅଂଶକୁ ଅପା ଏମିତି ବଡପାଟିରେ ପଢ଼ିଲା ଯେ ମୋତେ ଲାଜ ଲାଗିଲା । କାଳେ ଅନ୍ୟମାନେ ମୋ ଖାତା ବା ଲେଖା ଅଣ୍ଡାଳି ପାଇଯିବେ, ଏଣୁତେଣୁ ଲେଖିଥିବା କିଛି ଲେଖାକୁ ତରବରରେ ଜଳୁଥିବା ଚୂଲ୍ଲୀରେ ପୂରାଇ ଦେଇଥିଲି । କିନ୍ତୁ ସୌରୀ ଭାଇ

ଯେତେବେଳେ ଶୁଣିଥିଲେ ମୁଁ କିଛି ଲେଖାଲେଖି କରୁଛି ବୋଲି ଅତି ଆଗ୍ରହରେ ତାକୁ ଦେଖିବାକୁ ଚାହିଁଥିଲେ । ବୋଧହୁଏ ମେଟ୍ରିକ୍ ପରୀକ୍ଷା ପରେ ସଦ୍ୟ କଲେଜରେ ସେତେବେଳେ ପାଦ ଦେଇଥାଏ । ତାଙ୍କୁ ନେଇ ମୁଁ ଯେମିତି ଗର୍ବକରେ ସେମିତି ସେ ବି କହନ୍ତି, ତୋ ଭଳି ଶାଳୀଟେ ପାଇ ଧନ୍ୟ ହେଇଗଲି । ତୁ ଖୁବ୍ ନାଁ କରିବୁ ମୁଁ ଜାଣେ । ହେଲେ ମୋତେ ତୋ ଗପର ଗୋଟେ ହୀରୋ କରିଦେ । ସେ ମୋତେ ଗାପ୍‌ଲିକା ବୋଲି ହିଁ ଡାକନ୍ତି । ତାଙ୍କ ମତରେ ଖୁବ୍ ବଡ ଗାଳ୍ପିକା ହେଇ ଗଲେ ସେ ଗାପ୍‌ଲିକା ପାଲଟି ଯାଏ ।

ଭୁବନେଶ୍ୱର ଦ୍ୱିତୀୟ ପୁସ୍ତକମେଳାରେ ସୌରୀଭାଇଙ୍କ ସହିତ ବୁଲୁଥିଲା ବେଳେ ମହାପାତ୍ର ନୀଳମଣି ସାହୁ ଦେଖି ଥଟ୍ଟା କରି କହିଥିଲେ, ଆର୍ କେ ଲକ୍ଷ୍ମନ୍, ଆର୍ କେ. ନାରାୟନ୍ ଦୁଇଭାଇ ନାଁ କରିଛନ୍ତି । ପ୍ରତିଭା ଶତପଥୀ, ନିତ୍ୟାନନ୍ଦ ଶତପଥୀ ସ୍ୱାମୀ ସ୍ତ୍ରୀଙ୍କର ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଅଛି । ଏମିତି ଦୁଇ ଭାଇ, ଦୁଇଭଉଣୀ, ବାପପୁଅ, ସ୍ୱାମୀ ସ୍ତ୍ରୀ, ବାପ ଝିଅ, ଭାଇ ଭଉଣୀ ଯୋଡି ସାହିତ୍ୟରେ ଖୋଜିଲେ ଅନେକ ମିଳିବେ । କିନ୍ତୁ ଶାଳୀ ଭିଣୋଇ ଯୋଡିଟେ ଆମ ସାହିତ୍ୟରେ ନଥିଲେ । ସେଥିପାଇଁ ବୋଧହୁଏ ଦୁହେଁ ପୁସ୍ତକମେଳାରେ ବୁଲୁଛ ।

ଏମ୍.ଏ ପଢ଼ିଲା ବେଳେ ଓ ତାପରେ ଭୁବନେଶ୍ୱର ରହଣି ସମୟରେ ସାରଳା ପୁରସ୍କାର ଉତ୍ସବ ହେଉ କି ପୁସ୍ତକମେଳା ହେଉ ତାଙ୍କ ସହ ଗଲାବେଳେ ସେ ବିଭିନ୍ନ ଲେଖକଙ୍କୁ ଚିହ୍ନାଇ ଦିଅନ୍ତି । ଥରେ କଥା ପ୍ରସଙ୍ଗରେ କହିଥିଲି, ଯାହାର ଟଙ୍କା ନାହିଁ ତା'ର ସମ୍ମାନ  ନାହିଁ କି ସମାଜରେ କିଛି ଗୁରୁତ୍ୱ ନାହିଁ । ଷ୍ଟ୍ରଗଲ କରି କରି କ୍ଲାନ୍ତି ଆସିଗଲାଣି । ଆଉ କେଉଁଠି ଜନ୍ମ ହୋଇଥିଲେ, ଆଉ କେଉଁ ପରିବେଶରେ ବଢ଼ିଥିଲେ ଅନେକ କିଛି କରିପାରି ଥାଆନ୍ତି । ସୌରୀଭାଇ ବୁଝାଇ କହିଥିଲେ, ଏଇଟା ତୋର ଭୁଲ ଧାରଣା । ଅନ୍ୟ କେଉଁ ପରିବେଶରେ ଜନ୍ମିଥିଲେ ହୁଏତ ତୁ ବଡ ହେଇଥାନ୍ତୁ, ସୁଖରେ ବଢ଼ିଥାଆନ୍ତୁ କିନ୍ତୁ ହୁଏତ ଲେଖିକାଟିଏ ହେଇ ନଥାନ୍ତୁ । ଏହି ସୃଜନଭରା ଜୀବନ ତୋତେ ମିଳି ନଥାନ୍ତା । ଜୀବନରେ ଟଙ୍କାକୁ କାହିଁକି ସର୍ବସ୍ୱ ମନେ କରିଛୁ ? ଟଙ୍କାଠାରୁ ଆହୁରି ଅନେକ ସୁନ୍ଦର ଜିନିଷ ଅଛି ସଂସାରରେ । ହଳଦୀବସନ୍ତ, ଫୁଲଫଳର ଦୁନିଆ, ନୀଳ ଆକାଶ, ଏଇ କ୍ରୋଟନ ଗଛ କ'ଣ ସୁନ୍ଦର ନୁହେଁ ?

ସତରେ ଗଛ, ବିଲେଇ, ହଳଦୀବସନ୍ତ ପ୍ରତି ସୌରୀଭାଇଙ୍କର ଭୀଷଣ ଦୁର୍ବଳତା । ସକାଳୁ ଉଠି ସେ ଗଛରେ ପାଣି ଦିଅନ୍ତି । ଘରେ ତ ତିନିଚାରିଟା ବିଲେଇ ସବୁବେଳେ । ସେମାନେ ପୁଣି ରାଜକୀୟ ଠାଣିରେ ବିଛଣାରେ ଶୁଅନ୍ତି କମ୍ବଳ ଘୋଡିହେଇ । ବଂଶାନୁକ୍ରମେ

ସେମାନେ କାହାର ନାତି, ନାତୁଣୀ, ଅଣନାତି, ପଣନାତି ପୁଣି ସଭିଁଙ୍କର ଅଲଗା ଅଲଗା ନାଁ । ଯେଉଁ ବିଲେଇ ନାନୀଟି ବେଶୀ ଜନ୍ମ କରିଛି ତା' ନାଁ ଭାରତମାତା, ଯିଏ ବେଶି ଗେହ୍ଲା ହୁଏ ତା' ନାଁ ଗୋଲ୍ଡୁନ୍ ଇତ୍ୟାଦି । ତାଙ୍କ ଝିଅ ରୁନୁର ସେମାନେ ଝିଅ ପୁଅ, ନାତି ଏମିତି କେତେଜଣ । କେଉଁଠି ଗଛକଟା ଦେଖିଲେ ସୌରୀଭାଇ ରାତିସାରା ଶୋଇ ପାରନ୍ତି ନାହିଁ । ହଳଦୀବସନ୍ତର ଡାକ ଶୁଣିଲେ ଶୋଇଥିଲେ ବି ଗାଢ଼ ନିଦ ତାଙ୍କର ଭାଙ୍ଗିଯାଏ । ଖାଉଥିଲେ ଖାଇବା ସ୍ଥାନରୁ ଉଠି ଗଛ ଡାଳରେ ତାକୁ ଖୋଜିବୁଲନ୍ତି । ତାକୁ ନେଇ ତାଙ୍କର କବିତା ଲେଖାଯାଇଛି । ମୃତ୍ୟୁକୁ ନେଇ ତାଙ୍କର ଗୋଟାଏ କବିତା ମୋତେ ଖୁବ୍ ପ୍ରଭାବିତ କରିଥିଲା । ବୋଧହୁଏ କବିତାଟି ତାଙ୍କର ଗୁଣୁଗୁଣୁ ଚିତ୍ରପଟ ସଙ୍କଳନରେ ରହିଛି । ତା'ର କେତୋଟି ଧାଡି ହେଲା-

'ମୃତ୍ୟୁ ବୋଧହୁଏ ଶୂନ୍ୟତାରେ ଭରପୂର
କାଳହୀନ ଗୋଟାଏ ପୂର୍ଣ୍ଣତା
ଆଉ ସେ ପୂର୍ଣ୍ଣତା ପାଇଁ କାଳର କୋଳରେ
ଶୂନ୍ୟ ହୋଇଯିବା ବୋଧହୁଏ ଜୀବନ ।' (- ସୌରୀନ୍ଦ୍ର ବାରିକ)

ମୋତେ ସବୁବେଳେ ସେ ସାବଧାନ କରନ୍ତି କେବେ କୌଣସି ଗୋଷ୍ଠୀ ଭିତରେ ମିଶିବୁ ନାହିଁ କି ପ୍ରଚାର ସର୍ବସ୍ୱ ହେବୁ ନାହିଁ । ପୁରସ୍କାର ପାଇଁ ବି ଲାଳାୟିତ ହେବୁନାହିଁ । ଏସବୁ ହେଲେ ସାହିତ୍ୟ ଆଉ ସାଧନା ହୋଇ ରହିବ ନାହିଁ । ଗୋଷ୍ଠୀ ଆଉ ପୁରସ୍କାର ଲାଳସା ପ୍ରତିଭାକୁ ନଷ୍ଟ କରିଦିଏ । ପ୍ରଚାର ଲେଖକକୁ ବ୍ୟବସାୟୀ କରି ପକାଏ । ସମ୍ମାନ ଆପେ ଆପେ ଆସେ । କିଛି ପୁରସ୍କାର ଅଛି ଯାହା କଳାକାରଙ୍କୁ ଦେଇ ନିଜେ ପୁରସ୍କାର ହିଁ ଗୌରବାନ୍ୱିତ ମନେକରେ । ଆଜିର ଧରାଧରି, ଯୋଗାଡିଆ ପୁରସ୍କାର ହୁଏତ ପ୍ରଚାର କରିବ ପ୍ରତିଭାକୁ କିନ୍ତୁ ତାହା କ'ଣ କେବେ କାଳଜୟୀ ହେଇପାରେ ? ସମୟ ହିଁ ସୃଜନୀର ସବୁଠାରୁ ବଡ ମାପକାଠି । ତାଙ୍କ ଉପଦେଶ ମାନିଛି । ମୋର ପ୍ରଚାର ନାହିଁ ବୋଲି ଓଡ଼ିଶା ସାହିତ୍ୟ ଏକାଡେମୀ ୩୦ବର୍ଷ ଧରି ଲେଖିଲେ ବି ପୁରସ୍କୃତ କରିନାହିଁ । କିନ୍ତୁ ବିପୁଳ ପାଠକୀୟ ସମ୍ମାନ ହଜାରେ ସାହିତ୍ୟ ଏକାଡେମୀ ଠାରୁ ଆଗରେ ଆସି ମୋତେ ସମ୍ବର୍ଦ୍ଧିତ କରିଛି ।

ମୋ ଗପ ପଢ଼ିଲା ପରେ ସୌରୀଭାଇ ବୁଝାନ୍ତି କେଉଁଠି ମୁଁ ଅଧିକା ସେଣ୍ଟିମେଣ୍ଟାଲ ହେଇପଡିଛି ବା କେଉଁଠି ଗାଳ୍ପିକା ନିଜେ ଧସେଇ ପଶି ଆସିଛନ୍ତି ଯାହା ଗଳ୍ପର ସୌଷ୍ଠବକୁ ନଷ୍ଟ କରି ଦେଇଛି । ସେ ପୁଣି କହନ୍ତି, ଗାଳ୍ପିକର ଧର୍ମ ଟର୍ଚ୍ଚଲାଇଟ୍ ଭଳି ଏକ ନିର୍ଦ୍ଦିଷ୍ଟ ଦିଗକୁ ଆଲୋକିତ କରିବ । ସମଗ୍ର ଗଳ୍ପଟି ଭିତରେ ଏଭଳି ଏକ ଚରିତ୍ର ରହିବ ଯେ କି

ହେବ କେନ୍ଦ୍ରବିନ୍ଦୁ । ପାଣି ଉପରେ ତେଲ ଭାସି ଉଠିଲା ଭଳି ସେ ଅଲଗା ହୋଇଯିବ ଓ ତାକୁ ହିଁ ନେଇ ଗପଟିର କ୍ଲାଇମାକ୍ସ ଟଣାଯିବ ।

କେବେକେବେ ନିଜର ପିଲାଦିନର ସଂଘର୍ଷ ମୂଳକ ଜୀବନ କଥା ଗପିଲା ବେଳେ କିମ୍ବା ଅତୀତକୁ ନେଇ ଆଲୋଚନା କଲା ବେଳେ ଆଖି ଛଳଛଳ ହୋଇଯାଏ କହେ ଆଉ ଲେଖାଲେଖି କରିବିନି । କେବଳ କଷ୍ଟ ପାଇବା ଛଡା ଆଉ କ'ଣ ମିଳେ ? ସୌରୀଭାଇ ବୁଝାନ୍ତି, ତୋ ଠାରେ ମୋର ଅନେକ ଆଶା ଅଛି । I am proud of you. ତୋତେ ଅନେକ ବାଟ ଆଗେଇବାକୁ ପଡିବ । ଏବେ ଅତୀତକୁ ଭୁଲିଯା' । ଅତୀତର ଇତିଲୀ (ମୋ ଡାକ ନାଁ)କୁ ଛାଡି ତୋତେ ବର୍ତ୍ତମାନର ଅଧ୍ୟାପିକା କବିତାକୁ ନେଇ ବଞ୍ଚିବାକୁ ପଡିବ । ଆମଭଳି ମଣିଷମାନେ ସତରେ କ'ଣ ଲେଖାକୁ ଛାଡି ବଞ୍ଚି ପାରିବେ ? ଯାହା ତିକ୍ତ, ଯାହା ଆତ୍ମାକୁ କଷ୍ଟଦିଏ ସେ ଭଳି ଦିନକୁ, ସେଭଳି ଅତୀତକୁ ବରଂ ମନେ ନପକାଇବା ଭଲ ।

ସୌରୀଭାଇଙ୍କ ରକ୍ତରେ କବିତା, ଭାବନାରେ କବିତା, ଜୀବନ ଶୈଳୀରେ କବିତା । ପ୍ରଚାରରୁ ଦୂରେଇ ରହି ସେ ପାଇଛନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେମୀ, ପ୍ରଜାତନ୍ତ୍ରର ସର୍ବୋଚ୍ଚ ବିଷୁବ ପୁରସ୍କାର । ତାଙ୍କ କବିତାରେ ଥାଏ ଏକ ସରଳ, ନିରୁତା ଭାବ । ପ୍ରକୃତ କବି ପ୍ରାଣ ନହେଲେ ଏତେ ସରଳ ଶବ୍ଦରେ ନିଛକ କବିତା କେବେ ସେ ଲେଖି ପାରନ୍ତେ ନାହିଁ । ସେ ସବୁବେଳେ ମୋର ସୁଦୂର, ଉଜ୍ଜ୍ୱଳ ଭବିଷ୍ୟତକୁ ଦେଖିଛନ୍ତି । କିନ୍ତୁ କେଉଁଠି ମୋ ନାଁ ବି ଉଚ୍ଚାରଣ କରି ନାହାଁନ୍ତି । କ'ଣ ପଢ଼ିବା ଉଚିତ୍, କ'ଣ ଲେଖିବା ଉଚିତ୍ ଏ ସମ୍ପର୍କରେ ଆମର ଦିନଦିନ ଆଲୋଚନା ହୁଏ । ଏମିତି କି ଭୋକ ଶୋଷ ବି ପାଶୋରି ହେଇଯାଏ । କହିବା ବାହୁଲ୍ୟ ମୋର ଲେଖିକା ଜୀବନରେ ତାଙ୍କଠାରୁ ମୁଁ ଯେଉଁ ପରାମର୍ଶ ପାଇଛି, ପ୍ରେରଣା ଲଭିଛି ତାହା ଭୁଲିବାର ନୁହେଁ ।

## ଛଅ

## ଅଭୁଲା ଚରିତ୍ରଙ୍କ ଭିଡ

ମୋ ଜୀବନ ସତେକି ଗୋଟାଏ ଚରିତ୍ରର ଚିତ୍ରଶାଳା । ଜୀବନର ଶାମୁକା ଗୋଟାଉ ଥିବା ରାସ୍ତାରେ ଏହି ଚରିତ୍ରମାନେ ଆସିଛନ୍ତି ଯେମିତି ହଠାତ୍ ସେମିତି ଚାଲିଯାଇଛନ୍ତି ଅଚାନକ । ଜୀବନର ପୃଷ୍ଠା ଓଲଟାଇବା ଅବସରରେ ସେମାନଙ୍କ ସମ୍ପର୍କରେ କିଛି ନଲେଖିଲେ ବୋଧହୁଏ ଅନ୍ୟାୟ ହେବ । ଥରେ କେଉଁଠି ପଢିଥିଲି-

'Without the way there is no going
Without the truth there is no knowing
Without the the light there is no living.'

ସେ ଦୃଷ୍ଟିରୁ ମୋ ସ୍ମୃତିରେ ଥିବା କିଛି ଚରିତ୍ରମାନଙ୍କୁ ବାଦ୍‌ଦେଲେ ଏ ଆତ୍ମଜୀବନୀ ସମ୍ପୂର୍ଣ୍ଣ ହୋଇ ପାରିବ ନାହିଁ ।

ବାରିପଦାରେ ଏମ୍.ପି.ସି. କଲେଜରେ ପଢୁଥିଲା ବେଳେ ଭୀମ ପୃଷ୍ଟି ସହିତ ମୋର ବେଶ୍ ସାହିତ୍ୟ ସମ୍ପର୍କରେ ଆଲୋଚନା ହୁଏ । ବୟସରେ ବର୍ଷେ ବଡ ହେଲେ ହେଁ ସେ ମୋ ତଳକ୍ଲାସରେ ପଢୁଥିବାରୁ ମୁଁ ତାକୁ ତୁ କହେ ଓ ସେ ମୋତେ ଅପା ବୋଲି ଡାକେ । ସେତେବେଳେ ଆମମାନଙ୍କର ସାହିତ୍ୟ ଜଗତରେ ପ୍ରବେଶ ଆରମ୍ଭ କରିବାର ବେଳ । ଖୁବ୍ ସୁନ୍ଦର କବିତା ଲେଖୁଥିଲା ଓ ପରବର୍ତ୍ତୀ ସମୟରେ ଗଳ୍ପ ଲେଖିଲା ଓ ଆଜି ସେ ଗାଳ୍ପିକ ଭୀମ ପୃଷ୍ଟି ଭାବରେ ବେଶ୍ ନାଁ କରିଛି ।

ଆମେ ଦୁହେଁ ଥିଲୁ ନିମ୍ନମଧ୍ୟବିତ୍ତ ପରିବାରର ପିଲା । ତେଣୁ ଅଭାବ,ଜୀବନ ସଂଗ୍ରାମ ସମ୍ପର୍କରେ ଆମର ଅନୁଭୂତି ପ୍ରାୟ ସମାନ ଥିଲା । ଦୁହେଁ ତୀବ୍ର ଦାରିଦ୍ର୍ୟ ଭିତରେ ନିଜ ଗୋଡରେ ଠିଆହୋଇ ପ୍ରତିଷ୍ଠିତ ଲେଖକ ଲେଖିକା ହେବାର ସ୍ୱପ୍ନ ସେତେବେଳେ ଦେଖୁଥିଲୁ । ଦେଖା ହେଲେ ଅଧିକାଂଶ ସମୟ ଓଡ଼ିଶାର ସାହିତ୍ୟିକମାନଙ୍କୁ ନେଇ ଗପ୍ପ, ଆଲୋଚନା କରୁ । କେବେ କେବେ ଆମ ଗପ ଭିତରେ କମଳା ଦାସ, ଅମୃତା ପ୍ରୀତମ, ଖୁସ୍‌ୱନ୍ତ ସିଂ ଅଥବା ହେମିଂଓ୍ୱେ ପଶି ଆସନ୍ତି । ସେମାନଙ୍କ ଜୀବନଧାରା, ପ୍ରକାଶିତ ପୁସ୍ତକ ସମ୍ପର୍କରେ ଆଲୋଚନା ହୁଏ । ପୁଣି କେତେବେଳେ ଆମ ବ୍ୟକ୍ତିଗତ ଜୀବନର ସଂଘର୍ଷ, ଅଭାବ, ଅନାଟନର ସମସ୍ୟା ବି ମୁଣ୍ଡଟେକେ । ତାରି ଭିତରେ ପଢ଼ାପଢ଼ିରୁ ସମୟ ବାହାର କରି ସାହିତ୍ୟ ଦୁନିଆରେ ଆମେ ଘୁରି ବୁଲୁ । ସାହିତ୍ୟ ଆମର ପେଷା ନଥିଲା, ଥିଲା ନିଶା । ଅଧାପେଟରେ ବି ସାହିତ୍ୟରେ କ'ଣ ଥିଲା କେଜାଣି ଆମେ ଦୁହେଁ ଓଡିଆ ଅନର୍ସରେ ପଢୁଥିଲୁ । ମୁଁ ଆଇ.ଏରେ ଫାଷ୍ଟ କ୍ଲାସ୍ ପାଇ ଦର୍ଶନ ସମ୍ମାନ ଓ ଓଡ଼ିଆ ଅପ୍‌ସନାଲ ରଖିଥିଲି ପୁଣି ଦର୍ଶନ ଅନର୍ସ ବଦଳାଇ ଓଡ଼ିଆ ଅନର୍ସ ରଖିଲି । ଏହିଭଳି ଭାବରେ ଆମେ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଆକୃଷ୍ଟ ହେଉଥିଲୁ ।

ଭୀମ ତା' ପ୍ରାରମ୍ଭିକ ଜୀବନରେ ଚମତ୍କାର କବିତା ଲେଖୁଥିଲା । ଯଦି କବିତାରେ ନିଷ୍ଠା ରଖିଥାନ୍ତା ହୁଏତ ଆମ ସମୟର କବିମାନଙ୍କୁ ନିଶ୍ଚେ ଅତିକ୍ରମ କରି ଯାଇଥାନ୍ତା । ସେ ଯାହା ହେଉ ସଦ୍ୟ ଲେଖା ଯାଇଥିବା ସେ ତା'ର କବିତା ଶୁଣାଏ । ମୁଁ ମୋ ନୂଆ ଗପ ସମ୍ପର୍କରେ ଗପେ । ସେ କହେ, ଆମେମାନେ ସବୁ ଅଧିକ ଭାବପ୍ରବଣ ହେଉଥିବାରୁ ଟିକିଏ କଥାରେ ଦୁଃଖପାଉ । ଏମିତି କାହିଁକି ମନେହୁଏ କୁହତ ? ଆମ ପିଠିରେ କାହାରି

ଆଶ୍ୱାସନାର ହାତନାହିଁ, ମୁଣ୍ଡ ଉପରେ ଆକାଶ ନାହିଁ ?

ମୁଁ କହେ, ଆମ ପାଖରେ ଯାହା ଅଛି ତାକୁ ଦେଖି ପାରୁନା ବୋଲି ହିଁ କଷ୍ଟପାଉ । ସତରେ ଆମେ ସବୁ ନିଜକୁ ଏତେ ଦୁଃଖୀ, ସାହାରା ହୀନ ବୋଲି ଭାବିବାଟା ହିଁ ଆମର ଦୁର୍ବଳତା । ନିଜର ଯାହା ଅଛି ତାକୁ ନେଇ ହିଁ ଗର୍ବ କରିବାର କଥା ।

ସେ କହେ, ଅପା ! ଆମ ଖୋଜିବାର କ'ଣ ଶେଷ ନାହିଁ ?

- କେଜାଣି ! ଉପରକୁ ଶୂନ୍ୟ ଦୃଷ୍ଟି ପକାଇ ମୁଁ ଉତ୍ତର ଦିଏ ।

ସେତେବେଳେ ଦୁହେଁ ସାହିତ୍ୟିକରୁ ଦାର୍ଶନିକ ପାଲଟି ସାରିଥାଉ । ବାରିପଦା ମାଟିରେ ଲେଖକ ହେବାର ଚାରା ଦାନା ବାନ୍ଧୁଥାଏ ।

ମୁଁ ବାଣୀବିହାର ଆସିବାର ଗୋଟାଏ ବର୍ଷ ପରେ ଭୀମ ବି ବାଣୀବିହାର ଆସିଲା । ପୁଣି ଜମି ଉଠିଲା ଆମର ଗପ । ହଷ୍ଟେଲ ସାମ୍ନାରେ କିମ୍ବା କେବେ କେବେ କ୍ୟାଣ୍ଟିନରେ ବସି ଅଥବା ପାଣି ଟାଙ୍କି ପାଖରେ ବସି ଆମେ ବାଣୀବିହାରର ଚିତ୍ରକୁ ନେଇ ଗପ ଯୋଡୁ । ଟାଉନ୍ ବସରୁ କେତେ ସବୁ ହରଗଙ୍ଗୀ ଚରିତ୍ରମାନେ ଓହ୍ଲାନ୍ତି, ଉଠନ୍ତି । ପୋଷ୍ଟ ଅଫିସରେ ଭିଡ ଲାଗେ । କେତେ ଲୟଲା-ମଜନୁଙ୍କ ଯୋଡି, କେତେ ବୃଦ୍ଧବୃଦ୍ଧା, ଫ୍ରକ୍ ପିନ୍ଧା ଝିଅପୁଅ । ବାଣୀବିହାରରୁ ସମଗ୍ର ପରିବେଶ ଆମ ଗଳ୍ପର ପୃଷ୍ଠଭୂମି ପାଲଟି ଯାଏ । ସେମାନଙ୍କ କାର୍ଟୁନ ବନାଉ । ଜୀବନକୁ ନେଇ ବିଭିନ୍ନ ମୋଡରେ ତର୍ଜମା ଚାଲେ ।

ମୋ 'ଛକ' ଗଳ୍ପ ସଙ୍କଳନରେ ଯେଉଁ ଛକ ଗଳ୍ପଟି ରହିଛି ତାହାର ଏକ ଚରିତ୍ର ଭୀମ । ସମ୍ପର୍କ ଉପନ୍ୟାସରେ ମଧ୍ୟ ସେ ମୂଳରୁ ଶେଷ ପର୍ଯ୍ୟନ୍ତ ରହିଛି । ଜୀବନରେ ସେ ବି ଅନେକ ଝଡ ଝଞ୍ଜାର ସାମ୍ନା କରିଛି । ଆମେ ଦୁହେଁ ଏକାଠି 'ଧରିତ୍ରୀ'ର ସହସମ୍ପାଦକ ଭାବେ କାମ କରିଛୁ । ପରବର୍ତ୍ତୀ ସମୟରେ ସେ ଏକ ବେସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗ ଦେଇଥିଲା । ସେ ମଝିରେ ମଝିରେ ଖୁବ୍ ସୁନ୍ଦର ସୁନ୍ଦର ଚିଠି ଲେଖୁଥିଲା । ଥରେ ସେ ଲେଖିଥିଲା, ଅପା ! ତମେ କ'ଣ ବାହାହେବ ନାହିଁ ? ତମ ବାହାଘରେ ଜାଣ ସବୁଠାରୁ ବେଶି ମୁଁ କାମ କରିବି । ଅନେକ ଲେଖକ ସମ୍ପାଦକ ଆସିବେନା ? ତମେ ତ ନାଲି ଗୁଲୁଗୁଲୁ ସାଧବୋହୂ ହେଇ ବସିଥିବ । ନୁହେଁ ?

ମୁଁ ସେତେବେଳେ ଲେଖିଥିଲି, ଆମ ପାଇଁ ସ୍ୱପ୍ନଦେଖିବା ମନା ଭୀମ । ଆମ ସ୍ୱପ୍ନ କେବେ ସତ ହୁଏନା । ଅଥଚ ଆମେ ସବୁ ସ୍ୱପ୍ନରେ ହିଁ ରାଜକୁମାର ରାଜକୁମାରୀ ପାଲଟି ଥାଉ । ସେ ବାରମ୍ବାର ଲେଖେ, ତମେ ଏଭଳି ଭାବରେ ଜୀବନ ନଷ୍ଟ କରିଦିଅନା । ଦେଖ ଜୀବନ ବଡ ଛୋଟ, ଆକସ୍ମିକ । ତମର ସାହାରା ଦରକାର । କିନ୍ତୁ ଏହାର କ'ଣ ଉତ୍ତର ଥାଏ ? ଏସବୁ କ'ଣ ମୋ ହାତରେ ଅଛି ? କେହି ଜଣେ ଭାବେ ତା ଜୀବନ

ଏଭଳି ଭାବରେ ନଷ୍ଟ ହୋଇ ଯାଉ ବୋଲି ? କେଉଁ ଝିଅର ସ୍ୱପ୍ନ ନାହିଁ ? ଧୀରେ ଧୀରେ ଭୀମର ଏଭଳି ପ୍ରଶ୍ନର ସାମ୍ନା କରିବା କଷ୍ଟକର ହୋଇପଡିଲା । ମୁଁ ଚିଠିପତ୍ର ଆସ୍ତେ ଆସ୍ତେ କମାଇ ଦେଲି । କାଁ ଭାଁ ଚିଠିଟିଏ ସେବି ଲେଖେ କିନ୍ତୁ ପ୍ରତି ନୂଆବର୍ଷରେ ଶୁଭେଚ୍ଛା ପତ୍ରଟେ ପଠାଏ । ତାହା ଯେମିତି ଅସ୍ତିତ୍ୱ ଜାହିର କରେ ଆମେ ଦୁହେଁ ବଞ୍ଚିଛୁ ବୋଲି । ବାସ୍ । ସେ ସବୁ ବି କମିଗଲା ।

ଭୀମ ଥରେ ପୁରୀ ସମୁଦ୍ର କୂଳରେ ଶାମୁକା ବିକ୍ରୀ କରୁଥିବା ଏକ ଚରିତ୍ରକୁ ନେଇ ଚମତ୍କାର ଗପଟେ ଲେଖିଥିଲା । ଅଥଚ ସେ କ'ଣ ଜାଣିଥିଲା ଆମେ ସମସ୍ତେ ଜଣେ ଜଣେ ସ୍ମୃତିର ଶାମୁକା ବିକାଳି ବୋଲି ? ଅନେକ ଅନ୍ତରଙ୍ଗ ଦିନ ସବୁରେ ଆମେ ପରସ୍ପରର କାହାଣୀ ଶୁଣିଛୁ, ସାନ୍ତ୍ୱନା ଦେଇଛୁ । ଆମ ଗଳ୍ପ ଭିତରେ ଧରାହୋଇ ଆସନ୍ତି ଜଗଦୀଶ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଅଖିଳ ମୋହନ, ରାମଚନ୍ଦ୍ର ବେହେରା ତ ପୁଣି କେବେ କେବେ ଆମେ ୪ କନ୍‌ହେଇଲାଲ୍ ଦାସକୁ ଜୀବନ୍ନ୍ୟାସ ଦେଇ ତାଙ୍କ ଚରିତ୍ର ସହ ସିଧାସଳଖ କଥାବାର୍ତ୍ତା କରୁ । ସତରେ କନ୍‌ହେଇ ବଞ୍ଚିଥିଲେ ଆମର ଗୁଲିଖଟି ବେଶ୍ ଜମିଥାନ୍ତା । ହାୟ ! ସ୍ୱପ୍ନରେ ଓ ଜୀବନରେ ଏତେ ରୋମାଣ୍ଟିକ୍ ଭାବରେ ଜୀଉଁଥିବା ଏତେ ଅଳ୍ପ ବୟସର ଲେଖକଟିକୁ ଭଗବାନ ଏମିତି ଭାବରେ କାହିଁକି ଛଡାଇ ନିଅନ୍ତି ଯେ? ତା'ର ଉତର ମିଳେନାହିଁ । ଭୀମ ବି ପାଏନାହିଁ । ଆମେ କନ୍‌ହେଇଙ୍କ ଗଳ୍ପର ନାୟିକା ଦେବୀ ସମ୍ପର୍କରେ ଚିନ୍ତା କରୁ । ଆଲୋଚନା କରୁ ।

ଧରିତ୍ରୀ ଛାଡିଲା ପରେ ଆମମାନଙ୍କର ଜୀବିକାର ରାସ୍ତା ଅଲଗା ହୋଇଗଲା । ଜୀବନ ବି ବଦଳି ଗଲା । ପୁଣି ସବୁଠୁ ଆଶ୍ଚର୍ଯ୍ୟ ଦୁହେଁ ବାହାହେଲୁ ଅଥଚ କେହି କାହାକୁ ଯୋଗାଯୋଗ କରିପାରିଲୁ ନାହିଁ । ଯେଉଁ ଜୀବନକୁ ନେଇ ଏତେ ସ୍ୱପ୍ନ ଥିଲା ସେ ଜୀବନର ସ୍ୱାଗତ ଗୀତିକା କେହି କାହା ପାଖରେ ପହଞ୍ଚାଇ ପାରିଲୁ ନାହିଁ । ନିଜ ନିଜ ଜୀବନ ଜଞ୍ଜାଳ, ଜୀବିକାର ବ୍ୟସ୍ତତା ଭିତରେ ଭେଟ ବି ହୋଇ ନାହିଁ । ପତ୍ରପତ୍ରିକାରେ କିନ୍ତୁ ଗପ ପଢ଼ିବାକୁ ମିଳେ ।

ଅନେକ ବର୍ଷ ପରେ ଥରେ ଭୁବନେଶ୍ୱରର ଏକ ଗଳ୍ପ ଆସରରେ ଭୀମ ସହ ଦେଖା ହୋଇଥିଲା । ହେଲେ ସେ କେମିତି ଅଚିହ୍ନା ଲାଗିଲା । ସେ ପ୍ରଗଲ୍‌ଭତା ତା'ର ନଥିଲା କି କଅଁଳ ଅପା ଡାକ ଭିତରେ ଆପଣାଇ ନେବାର ଭାବ ବି ନଥିଲା । ସେ ଦୂରେଇ କର ଛଡା ଦେଇ ଠିଆ ହୋଇଥିଲା । ବରଂ ମୁଁ ଉପରେ ପଡି ଦୁଃଖସୁଖ ହୋଇଥିଲି ଓ 'ମନର ଘର' ବହିଟି ଉପହାର ଦେଇଥିଲି । ଗଳ୍ପ ଆସରରୁ ଫେରି ମନେ ହେଉଥିଲା ସେ ଦିନର ଭୀମ ପୁଷ୍ପିକୁ ମୁଁ ଏ ଭିତରେ ହଜେଇ ସାରିଛି । ୧୯୮୪ ମସିହାରେ ଓଡ଼ିଆ

ଯୁବଲେଖକ ସମ୍ମିଳନୀ ଆନୁକୂଲ୍ୟରେ ବିଂଶତମ ବାର୍ଷିକ ଅଧିବେଶନରେ 'ଆଜିର ଗଳ୍ପ' ନାମରେ ଏକ ସଙ୍କଳନ ପ୍ରକାଶ ପାଇଥିଲା । ସେଠି ଭୀମର ଗପଟିଏ ପ୍ରକାଶ ପାଇଥିଲା 'ସାହିତ୍ୟିକ ଠାରୁ ହୃଦୟଛଡା କିଛି ଖୋଜନା ।' ସେଠି ସେ ମୋତେ ଏକ ଚରିତ୍ର କରି ଲେଖିଥିଲା, 'ରାସ୍ତାରେ ଚାଲୁଚାଲୁ କବିତା ବାରିକ ତାଙ୍କ ଗପ / ଫ୍ୟାମିଲି / ଫିଉଚର / ନିଜର ରିଲେଟିଭ୍ / ଭୁବନେଶ୍ୱରରେ ଥିବା ତେଲିଆ ମୁଣ୍ଡରେ ତେଲ ମାରୁଥିବା ସାହିତ୍ୟିକମାନଙ୍କ କଥା ଗପିବେ । ବାଣୀବିହାର ବସଷ୍ଟାଣ୍ଡ ଛକରେ କବିତା ବାରିକ ଲେଡିଜ୍ ହଷ୍ଟେଲ ଆଡେ ବାଙ୍କିଲା ବେଳେ ଉଦାସ ସ୍ୱରରେ କହିବେ, 'ଏହି ଛକରୁ ତୋ ରାସ୍ତା ଗୋଟାଏ, ମୋ ରାସ୍ତା ଗୋଟାଏ । କାଲିକି ବଞ୍ଚିଥିଲେ ଏହି ଛକରେ ଦେଖାହେବ, 'ଏଇୟା କହି କବିତା ବାରିକ ଚାଲିଯିବେ । (କବିତା ବାରିକ ! ତମ ପ୍ରତିଟି ଗପରୁ ଝରୁଥାଏ ଜୀବନ । ଅଥଚ ଜୀବନର ଛକ କେଉଁଠି ମୋତେ ଚିହ୍ନାଇ ଦିଅ । ଯେଉଁଠି ଆସିବାର ପଦଚିହ୍ନ ପଡିଥାଏ, ଫେରିବା ପାଦଚିହ୍ନ ସେଠି ସ୍ୱପ୍ନ । ଚିହ୍ନାଇ ଦିଅ ସେ ଛକ ।)

ଜୀବନର ପଦଚିହ୍ନକୁ ଚିହ୍ନାଇ ଦେବାପାଇଁ ଅଳି କରୁଥିବା ସେ ଦିନର ଭୀମ ଆଜି ପ୍ରତିଷ୍ଠିତ ସ୍ୱାଭିମାନୀ ଗାଳ୍ପିକ । କେଜାଣି ପଛଦିନ କଥା ତା'ର ମନେ ଅଛି କି ନାହିଁ ! ବାରିପଦାର ସ୍ମୃତି, ବାଣୀ ବିହାରକୁ ନେଇ ଆମର ଗଳ୍ପ ପୁଣି ଧରିତ୍ରୀ, ଖବରକାଗଜରେ ଥିଲାବେଳେ ଆମମାନଙ୍କର ସଂଘର୍ଷମୟ ଜୀବନ ଏମିତି ଅନେକ ସ୍ମୃତି । ପାଦତଳେ ସେତେବେଳେ ଆମେ ମାଟି ଖୋଜୁଥିଲୁ କିନ୍ତୁ ମାଟିଭଳି ଯାଉଥିଲା ଚୋରା ବାଲି ଭଳି ସତେକି ତାହା ଧସ୍‌କି ଧସ୍‌କି ଖସି ଖସି ଯାଉଥିଲା । ଏ ଭିତରେ ସମୟ କାହିଁ କେତେ ବଦଳି ଯାଇଛି । ଆମ ଜୀବନଧାରା ବି ପରିବର୍ତ୍ତିତ ହୋଇଯାଇଛି । ଓଡିଶାରେ ଥାଇ ବି ବର୍ଷ ବର୍ଷଧରି ଦେଖା ହୋଇପାରେ ନାହିଁ । କେବଳ ପତ୍ର ପତ୍ରିକାରେ ଭେଟିବା ଛଡା ବୟସ, ଜୀବନର ଅନୁଭବ ଭିତରେ ଯେ ଏତେ ଫାଙ୍କ ହୋଇଯାଇଛି ଓ ସମୟ ସୁଅ ହୋଇ ବୋହି ଯାଇଛି ଆଗରୁ ସତେକି ଜାଣିବି ଜାଣି ପାରିନଥିଲି । ସେ ଦିନର ଭୀମ ବେଶ୍ ବଦଳିଯାଇଛି । ପୁଣି ଦେଖା ହୋଇଥିଲା ୨୦୦୮ ମସିହାରେ ପାରାଦ୍ୱୀପରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ସୁବର୍ଣ୍ଣଜୟନ୍ତୀ ପାଳନରେ ଗଳ୍ପ କର୍ମଶାଳା ଆସରେ । କେମିତି ଗମ୍ଭୀର, ଅଜଣା ଅଜଣା ଲାଗିଲା । ତା'ର ପରିବାର ସମ୍ପର୍କରେ ପଚାରି ଥିଲି । ଦୁଇଝିଅ । ବଡ ଏବର୍ଷ ମେଟ୍ରିକ୍ ସାରି କଲେଜରେ ପାଦ ଦେଇଛି । ସେ ବି ପଚାରିଥିଲା ପୁଅ ଝିଅ ସମ୍ପର୍କରେ । ମୋର ଗୋଟିଏ ପୁଅ ବୋଲି କହିଲା ପରେ ଚୁପ୍ ହୋଇ ଯାଇଥିଲା । ସେହି କେମିତି କେମିତି ଦୂରେଇ ଯିବାର ଭାବ । ବାରିପଦାର ସେ ସଂଗ୍ରାମର ଦିନ ତାକୁ

ମନେ ପକାଇ ଦେଲି । ଦେଖିଲି ସେଦିନ ସବୁ ବି ଆବେଗ ହଜାଇ ଦେଇଛି । ମନକୁ ସାନ୍ତ୍ୱନା ଦେଇଥିଲି, ବହୁତ କିଛି ତ ଜୀବନରେ ହରେଇଛି । ଆଜି ହଜାଇବା ଭିତରେ ଆଉ ଗୋଟାଏ ନାଁ ସାମିଲ ହୋଇଗଲା । ତେଣୁ ଦୁଃଖ କାହିଁକି ? ବରଂଚ ସେ ଯେଉଁଠି ଥାଉ ସୁଖରେ ଥାଉ, ଶାନ୍ତିରେ, ଭଲରେ ଥାଉ ।

ଥରେ ଟେଲିଫୋନ୍ ଲଗାଇଲି । କହିଲି ଏବେ ଜୀବନୀ ଲେଖା ଆରମ୍ଭ କରିଛି । ତୋ କଥା ଲେଖୁଛି ତ ମନେପଡିଗଲା । ସେ ଉଚ୍ଛ୍ୱସିତ ହୋଇଉଠିଲା । କହିଲା ଆଜି ମୁଁ ପନ୍ଦର ବର୍ଷ ପରେ ବାରିପଦା ଆସିଛି । ତମେ ବି ଫୋନ୍ କରିଛ । ଦେଖ ତ କାକତାଳୀୟ ନ୍ୟାୟ । କବିତା ଅପା ! ମୁଁ ବୁଲିବୁଲି ବାରିପଦାକୁ ଦେଖୁଛି । ମୁଁ ଆଦୌ ବଦଳିନି, ଭାରି ଜଞ୍ଜାଳିଆ ହୋଇଯାଇଛି । (୧୫.୦୨.୦୯)

× × × × ×

ବାଣୀ ବିହାରରେ ପଢୁଥିଲା ବେଳେ ଅନେକ ଛୋଟବଡ ସ୍ମୃତି ମୋତେ ପ୍ରଭାବିତ, ପ୍ରେରିତ କରିଥିଲା । ଅନୁଭବର ପୃଷ୍ଠା ଖୋଲି ବସିଲା ବେଳେ ସେମିତି କିଛି ସ୍ମୃତି ମନେପଡି ଯାଉଛି ।

ବାଣୀବିହାରର ପୋଷ୍ଟ ଅଫିସ୍ ସାମ୍ନାରେ ଆମେ ପଢୁଥିଲା ବେଳେ ଏକ କାଠଚମ୍ପା ଗଛଥିଲା । ୧୯୮୨ ମସିହାର କଥା । ସେ ଗଛଟା ସବୁବେଳେ ଥୁଣ୍ଟା । ପତ୍ର କି ଫୁଲ ନଥାଏ । ଆମର ରହଣୀକାଳ ଭିତରେ ଦିନେ ବି ଫୁଲ ଫୁଟିବାର ମୁଁ ଦେଖି ନାହିଁ । ଗଛଟାର ତଳେ ଏକ ଝାମ୍ପୁଡିଟାଏ ଥିଲା । ସେଇଠି ରସୁଲ୍ ମୋଚି ଓ ତା' ସ୍ତ୍ରୀ ମୋଚିଆଣୀ ସୀମା ଚନ୍ଦ୍ରମା କ୍ୟାମ୍ପସର ଅସୁସ୍ଥ ଜୋତା, ଚପଲଗୁଡିକର ମରାମତି କରୁଥିଲେ । ଫଟା, ଅଦରକାରୀ ଚପଲଗଦା ପାଖରେ ବସି ରାମୁଲ ମୋଚି କଣ୍ଟା ବାଡାଉଥିଲା ବେଳେ ତା' ସ୍ତ୍ରୀ ସିଲାଇ କରୁଥିଲା । କଳା ମଚ୍ ମଚ୍ ଚିକ୍କଣ ଦେହର ମୋଚି ଆଉ ଟିକେ ବାଙ୍ଗିରି ହେଇ କୋହରା କେଶ ଥିବା ସୀମା ଚନ୍ଦ୍ରମାକୁ ଯେତେବେଳେ ଦେଖିଛି ଝଗଡା କରିବା ଅବସ୍ଥାରେ । ଛୋଟ ପୁଅଟି ମା' ବାପାଙ୍କ ଝଗଡା ଭିତରେ ନ ପଶି ନଟୁ ଘୁରାଉ ଥାଏ । ଝଗଡା ଭିତରେ ବି ମୋଚୀର କଣ୍ଟାବାଡା ଓ ମୋଚିଆଣୀର ଜୋତା ସିଲାଇ ଚାଲିଥାଏ । ତେଲଗୁ ଭାଷାରେ କଳି ଲଗାନ୍ତି ବୋଲି ଆମେ ସେ ଭାଷା ବୁଝି ପାରୁ ନଥିଲୁ ।

ସେ ଦୁହିଁଙ୍କୁ ଅନେକ ସମୟରେ ଡିପାର୍ଟମେଣ୍ଟ ଗଲା ଆସିଲା ବେଳେ ମୁଁ ଅନୁଧ୍ୟାନ କରେ । କେବେ କେବେ ସେମାନ ଚାଉଳ, ପରିବା ଧରି ସୁପର ମାର୍କେଟରୁ ଫେରିଲା ବେଳେ ହସିହସି ଗଡିଯାଆନ୍ତି । ପୁଅଟି ଚକ୍‌ଲେଟ୍ କି ବିସ୍କୁଟ୍‌ଟେ ଧରି ଡେଇଁ ଡେଇଁ ଚାଲୁଥାଏ । ମୋ ରୁମ୍‌ମେଟ୍ ସୁପ୍ରଭା କହେ କବି ! ଦେଖ୍ ତୋ ଗପର ହିରୋଇନ୍‌କୁ ।

କେତେ ସୁନ୍ଦର ଦିଶୁଛି ନା । ମୁଁ ଜାଣେ ତୁ ସେମାନଙ୍କ ଉପରେ ନିଶ୍ଚେ ଗୋଟେ ଗପ ଲେଖିବୁ । ଟାଉନ୍‌ବସରେ ବେଳେବେଳେ ଦୁହିଁଙ୍କ ସହ ଦେଖାହୁଏ । ମୋଚିଆଣୀ କୋଳରେ ପୁଅଟି ବସିଥାଏ । ମୋଚି ପାଖରେ ଥାଏ ପରିବା ଭର୍ତ୍ତି ବ୍ୟାଗ୍ । ବୋଧହୁଏ ଟାଉନରୁ ଫେରୁଥାନ୍ତି । କେବେ ଦୁହେଁସାରା ମଦପିଇ ପାଣିଟାଙ୍କି ପାଖରେ ପାଟିତୁଣ୍ଡ ହେଇ ନିର୍ଦ୍ଧୁମ ପିଟାମରା ହୁଅନ୍ତି । ମୋଚିଆଣୀ ଭେଁ ଭେଁ କାନ୍ଦେ । ପୁଣି ତା' ପରଦିନକୁ ସବୁ ଠିକ୍‌ଠାକ୍ । ମୋଚି ଜୋତାରେ କଣ୍ଟା ବାଡଉଥାଏ । ମୋଚିଆଣୀ ଜୋତା ସିଲେଇ କରି ଚାଲିଥାଏ । ପୁଅଟି ନଟୁ ଘୁରାଉଥାଏ ତ କେବେ ଡବାରୁ ଖୁଚୁରା ପଇସା କାଢ଼ି ଗଣୁଥାଏ ।

ଦିନେ ଦେଖିଲି କୌଣସି କାରଣରୁ ସ୍ୱାମୀ ସ୍ତ୍ରୀଙ୍କ ଭିତରେ ଖୁବ୍ ପାଟିତୁଣ୍ଡ ହେଉଛି । ମୋଚି ମଦ ପିଇ ଟଳୁଛି । ଠିକ୍ କି ପାଦ ପକାଇ ପାରୁନାହିଁ । ହେଲେ ତା' ପାଟିରୁ କ'ଣସବୁ ଗାଳି ବାହାରୁଛି । ସହି ପାରିଲାନି ସୀମା ଚନ୍ଦ୍ରମା । ଛିଣ୍ଡା ଚପଲ ଗଦାରୁ ଚପଲଟାଏ କାଢ଼ି ଧୁମ୍ ରାମ୍‌ଲୁର ଧୁଲେଇ କରି ଚାଲିଲା । ଲୋକଟାର ନିଶା ଛାଡିଗଲା ସ୍ତ୍ରୀର ଫଁ ଫଁ ଉଗ୍ର ରୂପ ଦେଖି । ମୋର ମନେ ପଡିଗଲା ଫକୀରମୋହନଙ୍କ ପେଟେଣ୍ଟ ମେଡିସିନ୍‌ର ସୁଲୋଚନାଙ୍କ କଥା । ସୀମା ଚନ୍ଦ୍ରମା ସତେ କି ଚପଲ ନୁହେଁ ଛାଞ୍ଚୁଣୀ ଧରି ସୁଲୋଚନା ପାଲଟି ଯାଇଛି । ସ୍ୱାମୀର ମଦ ନିଶା ଛାଡିଯାଇଛି ଏକାବେଳକେ । ସେଦିନ ଫକୀରମୋହନଙ୍କ ଏହି ଆମୋଘ ଔଷଧର ମନେ ମନେ ଭୂୟସୀ ପ୍ରଶଂସା କରିଥିଲି ।

ତା'ପରଦିନର ସକାଳ ଥିଲା ସେମାନଙ୍କ ପାଇଁ ସ୍ୱାଭାବିକ । ସୀମା ଚନ୍ଦ୍ରମା ଗୁଣୁଗୁଣୁ ଗୀତଗାଇ ବ୍ୟାଗ୍ କି ଚପଲ ସିଲିରେ ଲାଗିଥିଲା ବେଳେ ରାମୁଲ ମୋଚି ନଇଁପଡି ଚପଲରେ କଣ୍ଟା ବାଡଉ ଥିଲା । ପୁଅ ନଥିଲା । ପଚାରି ବୁଝିଥିଲି ତାକୁ ସେମାନେ ପାଖସ୍କୁଲରେ ଆଜି ଛାଡିଛନ୍ତି । ଯାହାହେଉ ପୁଅର ପାଠପଢ଼ା ପ୍ରତି ବି ଯେ ସେମାନେ ସଚେତନ ଏକଥା ଭାବି ସାନ୍ତ୍ୱନା ମିଳିଥିଲା । କେବେକେବେ ଚପଲ ସଜାଡିବା ଆଳରେ ତାଙ୍କ ଘର କଥା ରାମଲୁକୁ ପଚାରିଲେ ସେ ତା' ଆନ୍ଧ୍ର ଗାଁ ସମ୍ପର୍କରେ ଗପି ବସେ । ପେଟପୋଟଣା ପାଇଁ ବହୁବର୍ଷ ତଳେ ଏଠି ଥିବା ମାମୁ ପାଖକୁ ଆସିଥିଲା । ତାଙ୍କ ପାଖରେ କାମ ଶିଖିଥିଲା । ରହୁ ରହୁ ରହିଗଲା । ମଦ ପିଉଛୁ କାହିଁକି କହିଲେ ଟିକେ ଲାଜେଇ ଗଲା କହିଲା କ'ଣ କରିବି ଆଜ୍ଞା ଅଭ୍ୟାସଟା ଛାଡି ପାରୁନାହିଁ ଏକ୍‌କା । ତାକୁ ନେଇ ଘରେ ଆମର ନିତି କଳି, ଅଶାନ୍ତି । ଗ୍ରୀଷ୍ମଛୁଟି ସାରି ଘରୁ ଆସିଲା ପରେ ଦେଖିଲି ସେ ଯାଗାରେ ସେମିତି ଛିଣ୍ଡା ଚପଲସବୁ ଗଦା ହେଇଛି । ମୋଚି କି ମୋଚିଆଣୀ କେହି ଦିଶୁ ନାହାଁନ୍ତି । ପରେ ଶୁଣିଲି ଏ ଭିତରେ ମୋଚିଟି ମରିଯାଇଛି । କିଛି ଦିନପରେ ଦେଖିଲି ପରେ ଦେଖିଲି ମୋଚି

ଯାଗାରେ ମୋଚିଆଣୀ ବସି କଣ୍ଟା ବାଡାଉଛି ଆଉ ନଟୁ ଘୁରାଉଥିବା ତା' ପୁଅଟି ତା'ର ଅନଭ୍ୟସ୍ତ ହାତରେ ଚପଲ ସିଲାଇ କରୁଛି । ଏ ପରିବର୍ତ୍ତନକୁ ଆପାତତଃ ମୁଁ କାହିଁକି କେଜାଣି ଗ୍ରହଣ କରିପାରୁ ନଥିଲି । ମୋଚିଆଣୀ ଆଜିକାଲି ଥିଲା ବେଶ୍ ଚୁପ୍‌ଚାପ୍ । କାହା ସହ କଳି କରିବ ? ଏକାଏକା ସେ ଚାଉଳ ପରିବା ଧରି ସୁପର ମାର୍କେଟରୁ ଫେରୁଥିଲା ତ କେବେ ପୁଅକୁ ଧରି ଟାଉନବସର ଅପେକ୍ଷା କରୁଥିଲା । ଖୁବ୍ ଚୁପ୍‌ଚାପ୍ ଥିଲା ସେ । କଳି କି ଝଗଡା କରିବାର ଲୋକଟା ଯେ ନଥିଲା । ସୀମା ଚନ୍ଦ୍ରମାକୁ ନେଇ ଗପଟିଏ ଲେଖିଥିଲି । ନାଁ ଥିଲା 'ସୀମା ଚନ୍ଦ୍ରମା' । 'ଧରିତ୍ରୀ'ର ରବିବାର ସଂଖ୍ୟାର ସାହିତ୍ୟ ବିଭାଗରେ ପ୍ରକାଶ ପାଇଲା ପରେ ଅନେକ ଶୁଭେଚ୍ଛା ଜଣାଇଥିଲେ । ମୁଁ କିନ୍ତୁ ଭାବୁଥିଲି ଆହା ! ଯାହାପାଇଁ ଗପଟି ଲେଖିଲି ସେ ଥରେ ହେଲେ ବୁଝିଥାନ୍ତା କି ସେ ମୋ ଗପର ନାୟିକା ପାଲଟି ଯାଇଛି ବୋଲି । କେବେ ବି ସେ ମୋ ସହ କଥା ହେଇନାହିଁ । ଯଦି କିଛି ପଚାରିଛି ଓଡ଼ିଆ ବୁଝେ କି ନାହିଁ କେଜାଣି କେବଳ ହସି ଦେଇଛି ଅଥବା ବଲ୍‌ବଲ୍ ଚାହିଁ ରହିଛି ।

ସେହି ବାଟ ଦେଇ ଗଲେ ମୋ ବାନ୍ଧବୀମାନେ ଚିଡାଉ ଥିଲେ, କବିତା ଦେଖ । ତୋ ନାୟିକା କେମିତି କାଠଚମ୍ପା ତଳେ ବସି ତୋତେ ଅନାଇଛି । ଟାଉନ୍‌ବସ୍‌ରେ ଗଲାବେଳେ ସୀମା ଚନ୍ଦ୍ରମା ଯଦି ସେ ବସ୍‌ରେ ଉଠୁଥିଲା ଓ ଜାଗା ନପାଇ ଠିଆ ହେଉଥିଲା ମୁଁ ସାଂଗେ ସାଂଗେ ଉଠି ତାକୁ ମୋ ଯାଗା ଛାଡି ଦେଉଥିଲି । ସେଥିରେ ବି ମୋ ସାଙ୍ଗମାନେ ଥଟ୍ଟା କରୁଥିଲେ, ନାୟିକା ପ୍ରତି ଏତେ ଦରଦ । ଆହା, ଆମେ ହେଲେ ସୀମାଚନ୍ଦ୍ରମା ହେଇଥାନ୍ତୁ । ତୋ ଗପର ଆପାତତଃ ନାୟିକା ଆସନ ପାଇଥାନ୍ତୁ ଓ ଭିଡ ଟାଉନବସ୍‌ରେ ବସିବାପାଇଁ ସିଟ୍‌ଟେ ତ ପାଇଥାନ୍ତୁ ।

ଆଜିକାଲି ବାଣୀବିହାର ଗଲେ ସୀମାଚନ୍ଦ୍ରମା ଆଖିରେ କାହିଁ ପଡେନା । ଏଠି ଅଛି କି କେଉଁଠିକିଗଲାଣି, ବଞ୍ଚିଛି କି ମଲାଣି କିଏ କହି ପାରିବ ? ବହଳ ବର୍ଷ ଭିତରେ ବାଣୀବିହାରକୁ ବି ଚିହ୍ନି ହୁଏନା । ସେ କାଠଚମ୍ପା ଗଛ ନାହିଁ କି ଛିଣ୍ଡା ଜୋତାର ଗଦା, ଝୁମ୍ପୁଡି ନାହିଁ । ସବୁ ମାଟିରେ ମିଶି ଯାଇଛି । କିଏ ବୁଝିବ ସତରେ ମୋର ତା' ସହ କି ସମ୍ପର୍କ ଥିଲା । ତଥାପି ଆଜି ବି ଗଲେ ମୋ ଆଖି ଖୋଜେ ସାରା କ୍ୟାମ୍ପରେ ଏକ ତେଲୁଗୁ ବିଧବା ମଧ୍ୟବୟସ୍କା ନାରୀକୁ । ସେ ଚିତ୍ର ପ୍ରତିମା ଭଳି ନିର୍ଦ୍ଦିଷ୍ଟ ବୟସ ଓ ଚେହେରା ନେଇ ମୋ ଆଖିରେ ଅଟକି ରହିଛି । ତା'ର ବୃଦ୍ଧିକି କ୍ଷୟ ନାହିଁ । କେବଳ ଅବସୋସ, ଆହା ସୀମାଚନ୍ଦ୍ରମା ଥରଟିଏ ବୁଝିଥାନ୍ତା ନିଜେ ସେ ଗପ ପାଲଟି ଯାଇଛି ବୋଲି । ସାହିତ୍ୟ, ଗପ ବା କାହାଣୀର ଅର୍ଥ କ'ଣ ବା ସେ ବୁଝେ । ଜୋତା ସିଲାଇ, ଡାଲି ଚାଉଳର

ସଂସାର ଆଉ ସ୍ମୃତି ସ୍ୱାମୀର ସ୍ମୃତି ବ୍ୟତୀତ କ'ଣ ବା ...ଥିବ ତା'ର ? ତେଲଲୁଣର ଦୁନିଆ ଠାରୁ ସାହିତ୍ୟର ସଂସାର କିମ୍ବା ଗପର ଚରିତ୍ର କ'ଣ ସତରେ ଆକର୍ଷଣୀୟ ? ଏକଥା ଯଦି କେବେ ପଚାରିଥାନ୍ତା ସୀମାଚନ୍ଦ୍ରମା ତେବେ କ'ଣ ଉତ୍ତର ଦେଇଥାନ୍ତି ତାକୁ ??? ମୋ ଗପ କ'ଣ ତା'ପାଇଁ ଖଣ୍ଡିଏ ରୁଟିର ମୂଲ୍ୟ ରଖିଥାନ୍ତା ? ତିରିଶ ବର୍ଷ ତଳର ସୀମାଚନ୍ଦ୍ରମାର ଚେହେରା ଆଜି ବି ଜଳଜଳ ଦିଶୁଛି ମୋତେ । କେଉଁଠି ସେ ଆଜି ? ସ୍ୱର୍ଗରେ ନା ମାଟିରେ ?

× × × × ×

ବାଣୀବିହାରରେ ମୋର ଆଉ ଏକ ଚରିତ୍ର ସହିତ ପରିଚୟ ହେଇଥିଲା । ସେ ଥିଲେ ଜୟଶ୍ରୀ ଅପା । ମୁଁ ଏମ୍.ଏ ପଢୁଥିଲା ବେଳେ ସେ ସାଇକୋଲଜିରେ ଏମ୍ ଫିଲ୍ କରୁଥିଲେ । ବ୍ଲାକ୍ ବିଉଟି ଯାହାକୁ କହନ୍ତି ସେମିତି ଥିଲେ । ନିଖୁଣ କଳାମୁଗୁନି ପଥରରେ ଯେମିତି କେଉଁ ଶିଳ୍ପୀ ତାଙ୍କୁ ଖୋଦେଇ କରିଛି । ଦିନେ ସେ ମୋ ରୁମ୍‌ରେ ପହଁଞ୍ଚି କହିଲେ ମୁଁ ତମର ଜଣେ ଅତି ପ୍ରିୟ ପାଠିକା । ଜାଣି ନ ଥିଲି ଯେ ତମେ ସେଇ କବିତା ବାରିକ ବୋଲି । ନହେଲେ କେବେଠୁ ଆମର ଚିହ୍ନା ହେଇ ସାରନ୍ତାଣି । ତାଙ୍କ ଚେହେରାରେ କ'ଣ ଯାଦୁ ଥିଲା କେଜାଣି ଚମତ୍କୃତ କରିଥିଲା ମୋତେ । ମମତାର ମଧୁ ଝରାଇ ସେ କଥା କହୁଥିଲେ । ତାଙ୍କର ବାଣୀବିହାର ରହଣି କାଳ ଭିତରେ ମୋ ସହିତ ବନ୍ଧୁତ୍ୱ ବେଶ୍ ଜମି ଯାଇଥିଲା ।

ସେ ଥିଲେ ଏକ ଅଦ୍ଭୁତ ଝିଅ । ଗଛକୁ ଭଲପାଉଥିବା ଝିଅ ଦେଖି ନଥିଲି । ବାଣୀବିହାରର ପାଣିଟାଙ୍କି ପାଖରେ ଗୋଟିଏ ସୁନାରିଗଛ ଥିଲା, ସିଜିନ୍ ଦିନରେ ସେ ଗଛରେ ହଳଦୀ ରଙ୍ଗର ଗୋଡିବାଣ ଫୁଲ ଫୁଟି ଭର୍ତ୍ତି ହେଇ ଯାଉଥିଲା । ଆଞ୍ଜୁଳା ଆଞ୍ଜୁଳା ଫୁଲ ତଳେ ବିଛେଇ ପଡୁଥିଲା । ସନ୍ଧ୍ୟା ବେଳେ ବୁଲି ବାହାରିଲେ ସିଏ ମୁଁ ପାଣି ଟାଙ୍କି ପାଖରେ ବସୁଥିଲୁ କିଛି ସମୟ । ସେ ସେହି ନିର୍ଦ୍ଦିଷ୍ଟ ଗଛକୁ ଚାହିଁ କହୁଥିଲେ, ଦେଖତ କବିତା । ସୁନ୍ଦର ଫୁଲରେ ଭର୍ତ୍ତି ହେଇଛି ବୋଲି କେତେ ଫୁଲେଇ ହେଉଛି ଗଛଟା । ଯଦି ଏତେ ଫୁଲ ତୋ ଡାଳରେ ଧରି ପାରିବୁନି ଏତେ ଫୁଟାଉଛୁ କାହିଁକି ? ଦେଖନା କେମିତି ତଳେ ବିଛେଇ ଯାଇଛି ।

ଥରେ ସେ କେଉଁ କଥାରୁ ଗଛଟାକୁ ଚାହିଁ କହିଲେ, ଏ ସୁନାରି ଗଛ ! ଯାଃ ତୋତେ ମୁଁ ଭଲ ପାଇବି ନାହିଁ । ତୋ ସହ କଟି । ଜାଣୁ ତୁ ଆଜି କାଲି ବଡ ରୁକ୍ଷ ଦିଶୁଛୁ । ମୁଁ ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲି । ସମ୍ପୂର୍ଣ୍ଣ ସୁସ୍ଥ ମସ୍ତିଷ୍କ ଥିବା ଝିଅଟିଏ ପୁଣି ଗଛ ସହ ଏମିତି କଥାବାର୍ତ୍ତା କରିବ ? ଯେତେବେଳେ ସେ ଗପୁଥିଲେ, ତାଙ୍କ କଥା ପ୍ରସଙ୍ଗରେ

ସୁନାରିଗଛ ଆସୁଥିଲା । ଏମିତିକି ତାଙ୍କ ସହ ଦେଖା ହେଲେ ମୁଁ ପଚାରୁଥିଲି, କୁହ ଅପା । କେମିତି ଅଛି ତମ ଗଛ ? ତା' ସହ କଟି ନା ମିଟି କରିଛ ? ଗଛ ସମ୍ପର୍କରେ ପଚାରିଥିଲେ କେବେ ସେ ଖୁସି ହେଉ ଥିଲେ ତ କେବେ ଉଦାସ ଦିଶୁଥିଲେ । ବେଳେ ବେଳେ ମୋ ମନରେ ପ୍ରଶ୍ନ ଉଠୁଥିଲା ଏଇ ଗଛ ସହିତ ତାଙ୍କର ଅତୀତର କୌଣସି ଆବେଗ ଜଡିତ ଘଟଣା ସମ୍ପୃକ୍ତ । ସେହି ଘଟଣା ହୁଏତ ତାଙ୍କ ଜୀବନରେ ଗଭୀର ରେଖାପାତ କରିଛି । ଜୟଶ୍ରୀ ଅପାଙ୍କୁ ନେଇ ଗପଟିଏ ଲେଖିଥିଲି । ତା' ନାଁ ଦେଇଥିଲି ଗଛ । ସୁଚରିତାରେ ତାହା ପ୍ରକାଶ ପାଇଥିଲା । ତା'ର ଇଂରାଜୀ ଅନୁବାଦ କରିଥିଲେ ବାଣୀବିହାରର ତତ୍କାଳୀନ ଦର୍ଶନ ବିଭାଗର ପ୍ରାଧାପିକା ଡକ୍ଟର ତନ୍ଦ୍ରା ପଟ୍ଟନାୟକ । ଗପଟି 'The tree' ନାଁରେ ପ୍ରକାଶିତ ହୋଇଥିଲା ସୁଇଡେନ୍‌ରେ ଏକ ପତ୍ରିକା 'ଉତ୍ତରାପଥ'ରେ ୧୯୮୬ ରେ, ସୁଇଡେନ୍‌ସ୍ଥିତ ଶିଳ୍ପୀ ପି.କେ. ମହାନନ୍ଦିଆଙ୍କ ଚେଷ୍ଟାରେ । ଏଇ ଗଳ୍ପଟି ପାଇଁ ସେ ସମୟରେ ମୁଁ ତାଙ୍କ ତରଫରୁ ଏକ ହଜାର ଟଙ୍କା ପି.କେ. ମହାନନ୍ଦିଆ ବୃତ୍ତି ପାଇଥିଲି ।

ମୁଁ ବାଣୀବିହାରରେ ଏମ୍.ଫିଲ୍ କଲାବେଳେ ଜୟଶ୍ରୀ ଅପା ବାହା ହୋଇ ଯାଇଥିଲେ । ବାହାହେଲା ପରେ ଆଜିକାଲି କେଉଁଠି କେଜାଣି । ତିନିଦଶନ୍ଧିର ବ୍ୟବଧାନ । ସମୟ ବୁଢ଼ାକରି ଦେବଣି । ତେବେ ବାଣୀବିହାର ଗଲେ ସେ ସୁନାରିଗଛଟା ଆଖିରେ ପଡେ । କେବେ ଥୁଣ୍ଟା ହୋଇ ଠିଆ ହୋଇଥାଏ ତ କେବେ ହଳଦୀରଙ୍ଗର ଟିକିଟିକି ଫୁଲରେ ହଳଦୀ ଗୁରୁଗୁରୁ ନୂଆ ବୋହୂଟେ ଭଳି ଦିଶୁଥାଏ । କେଜାଣି ସୁନାରିଗଛ ଜୟଶ୍ରୀ ଅପାଙ୍କୁ ମନେ ପକାଏ କି ନାହିଁ । ଦ୍ରୁତ ସୌନ୍ଦର୍ଯ୍ୟକରଣ ଭିତରେ ଗଛଟା କେବେ ଯେ କ୍ୟାମ୍ପସରୁ କଟା ହେଇଗଲା ମୋତେ ବି ଜଣା ନାହିଁ ।

× × × × ×

ବାଣୀବିହାରରେ ଏମ୍.ଫିଲ୍. କଲାବେଳେ ଆଉ ଏକ ଛୋଟ ଘଟଣା ମନେପଡେ । ସେତେବେଳେ ମୁଁ 'ସମ୍ବାଦ' ଅଫିସରେ ସହ-ସମ୍ପାଦିକା ଭାବେ ନିଯୁକ୍ତି ପାଇଥାଏ । ସେତେବେଳେ ଅଫିସଟା ଭଡାଘରେ ଚାଲିଥାଏ ରୂପାଲୀ ଛକରେ ଇଷ୍ଟର୍ଣ୍ଣ ମିଡିଆର ଶାଖା ଅଫିସ ଭାବେ । ତେଣୁ ମୁଁ ସବୁଦିନ ନିର୍ଦ୍ଦିଷ୍ଟ ସମୟ ପ୍ରାୟ ସାଢ଼େ ନଅଟା ପାଖାପାଖି ପାଣି ଟାଙ୍କିରୁ ଟାଉନ୍ ବସରେ ଉଠେ ଓ ଓହ୍ଲାଏ ରୂପାଲୀ ଛକରେ ଓ ସେମିତି ସାଢ଼େ ଚାରିରୁ ପାଞ୍ଚ ଭିତରେ ରୂପାଲୀରୁ ଉଠି ଓହ୍ଲାଏ ବାଣୀବିହାରର ପାଣି ଟାଙ୍କିରେ ।

ଘଟଣାଟା ପ୍ରଥମେ ପ୍ରଥମେ ଆଖିରେ ପଡି ନଥିଲା । କିଛିଦିନ ପରେ ଆପେ ଆପେ ଆଖି ଟାଣି ହୋଇଗଲା ଯୁବକଟି ଉପରେ । ସେ ନିର୍ଦ୍ଦିଷ୍ଟ ସମୟରେ ଆସି ପାଣିଟାଙ୍କି ପାଖରେ ଠିଆ ହେଉଥିଲେ । ମୋ ଆସିବା ଆଗରୁ ଟାଉନ୍‌ବସ୍ ସବୁ ଆସି ଚାଲି ଯାଉଥିଲେ

ବି ସେ ଉଠୁନଥିଲେ ଓ ମୁଁ ଯେଉଁ ବସ୍‌ରେ ଉଠୁଥିଲି ସେ ସେଇ ବସ୍‌ରେ ଉଠୁଥିଲେ । ଉଭୟେ ଆମେ ରୂପାଲୀରେ ଓହ୍ଲାଉଥିଲୁ । ବୋଧହୁଏ ସେ ରୂପାଲୀ ପାଖାପାଖି କେଉଁ ଅଫିସରେ ଚାକିରୀ କରୁଥିଲେ । ବାଣୀବିହାରରେ କେଉଁଠି ତାଙ୍କର ବାପା କି କାହାର କ୍ୱାର୍ଟର ଥିଲା । ଫେରିଲାବେଳେ ମୋର ମନେ ହେଉଥିଲା ଯେମିତି ସେ ମୋତେ ଅପେକ୍ଷା କରୁଥିଲେ । ଏକାଠି ପାଣି ଟାଙ୍କିରେ ଓହ୍ଲାଉଥିଲୁ । ଘଟଣାଟା ନିଶ୍ଚିନ୍ତ ଭାବରେ କୌତୂହଳପ୍ରଦ ଥିଲା । କଥାଟା ନୀରିକ୍ଷଣ କଲା ପରେ ମୁଁ ରୋମାଞ୍ଚିତ ହେଉଥିଲି । ଯଦି ଅନୁମାନ ସତେ ହେଉଥାଏ ସେ ମୋତେ ଅପେକ୍ଷା କରୁଛନ୍ତି କାହିଁକି ? ମୋର ତାଙ୍କର କୌଣସି ପରିଚୟ ନାହିଁ । ନାଁ ସୁଦ୍ଧା କେହି କାହାରି ଜାଣି ନାହୁଁ । ମୋର ଚେହେରାରେ ସେମିତି କିଛି ଆକର୍ଷଣ ନାହିଁ ଯେ ଜଣେ ଆକର୍ଷିତ ହେବ । ତାହାଲେ ? କିନ୍ତୁ ସେ କେବେ କିଛି ମୋତେ ପଚାରି ନଥିଲେ । ଏମିତି ମାସ ମାସ ଧରି ଅତିକ୍ରମ ହେବାକୁ ଲାଗିଲା । କେବେ ଇଚ୍ଛା ହେଉଥିଲା, ପଚାରନ୍ତି କ'ଣ ଆପଣଙ୍କ ନାଁ ? କ'ଣ କରନ୍ତି ? ମୋତେ କାହିଁକି ଅପେକ୍ଷା କରନ୍ତି ? ପୁଣି ସଙ୍କୋଚରେ ସାଙ୍କୁଡି ଯାଏ । ମୋର ଅନୁମାନ ଭୁଲ ହେଇଥାଇପାରେ । ହୁଏତ ନିର୍ଦ୍ଦିଷ୍ଟ ସମୟରେ ଉଠିବା ଓହ୍ଲାଇବା ତାଙ୍କର ଅଫିସ ଟାଇମ୍ ହେଇଥିବେ ।

କିଛିଦିନ ପରେ ଲକ୍ଷ୍ୟ କଲି ମୋ ପାଇଁ କେବେ କେବେ ସିଟ୍‌ଟିଏ ବି ରଖା ଯାଇଛି । ଅଥଚ ସେ ମୋତେ ଟିକେ ଚାହିଁବା ବ୍ୟତୀତ କୌଣସି ଦିନ ଗୋଟାଏ ଶବ୍ଦ ବି କହି ନାହାଁନ୍ତି । ମୋ ଆଖି ଯଦି ପଡିଯାଏ ସେ ଲାଜେଇ ଆଖି ଫେରାଇ ନେଉଥିଲେ । ମୋତେ ବଡ ମଜା ଲାଗୁଥିଲା । ପୁଣି କେବେ ଯଦି ସେ ଆସୁନଥିଲେ ମୋ ଆଖି ଆପେ ଆପେ ଟାଣି ହେଇ ଯାଉଥିଲା । ଦେଖୁଥିଲି ବସ୍ ଛାଡିଲା ବେଳକୁ ସେ ଓହଳି ଓହଳି ବି ଉଠୁଥିଲେ । ପୁଣି ଯଦି ମୁଁ ଭିଡ ଭିତରେ ସେହ ନିର୍ଦ୍ଦିଷ୍ଟ ଟାଉନ ବସରେ ଉଠିପାରୁ ନଥିଲି ସେ ଉଠିଯାଇଥିଲେ ବି ଓହ୍ଲାଇ ପଡୁଥିଲେ ।

ଏମିତି କଟିଗଲା ମାସ କେତେଟା । ତା'ପରେ ମୁଁ ବାଣୀବିହାର ଛାଡିଦେଲି । କିଛି କାମରେ ତାପରେ ବାଣୀବିହାର ଆସିଛି ହେଲେ ତାଙ୍କୁ କେବେ ଦେଖିନାହିଁ । କିଏ ସେ, କେଉଁଠୁ ଆସିଥିଲେ କିଛି ଜଣାନାହିଁ । କେବେକେବେ ପାଣିଟାଙ୍କି ଓ ରୂପାଲୀ ଛକରେ ଆଖି ପହଁରି ଆସେ । ରୋମାଞ୍ଚିତ ହୋଇଉଠେ ସ୍ମୃତିକୁ ମନେପକାଉ । ଭାବେ, ଆହା ଥରଟିଏ କଥା ହେଇଥିଲେ କ'ଣ ହେଇ ନଥାନ୍ତା ? ଅନେକ ଥର ସେ ପଚାରିବେ ପଚାରିବେ ହେଇ ମଧ୍ୟ ପଚାରି ପାରି ନଥିଲେ ମୋର ନାଁ, ଗାଁ । ହୁଏତ ମୋ ଗମ୍ଭୀର ଚେହେରା ଦେଖି । ମୁଁ ବି ଅନ୍ତତଃ ବସ୍‌ମେଟ୍ ହିସାବରେ ସାମାନ୍ୟ ନାଁ ଟେ ତ ପଚାରି

ପାରିଥାନ୍ତି । ଟିକେ ମୁରୁକି ହସି ମୋ ପାଇଁ ସିଟ୍ ରଖିଥିବା ଅପେକ୍ଷାମାଣ ଯୁବକଟିକୁ କୃତଜ୍ଞତାରେ ଛୋଟ ଧନ୍ୟବାଦଟେ ଦେଇ ପାରିଥାନ୍ତି ।

ସତରେ ଏମିତି ଦେଖିଲେ ଏଟା ଛୋଟ ଘଟଣାଟେ । ହେଲେ ନାଁ, ଠିକଣା କିଛି ଜଣାନଥିବା ଏଇ ଛୋଟ ଘଟଣାଟି ବି ଚିହ୍ନ ରଖି ଦେଇଛି । ନଚେତ୍ ଆଜି ଜୀବନୀ ଲେଖିଲା ବେଳେ କାହିଁକି ଏହା ଉଲ୍ଲେଖ କରିଥାନ୍ତି ? ବେଳେବେଳେ ଭାବେ କେତେ ପ୍ରକାର ମଣିଷ ଅଛନ୍ତି ସଂସାରରେ ।

ସତ କହିବାକୁ ଗଲେ ବାଣୀବିହାରର ପାଣିଟାଙ୍କି ପାଖକୁ କେବେ ଗଲେ ଆଖି କାହାକୁ ଖୋଜେ । ଠିକଣା, ନାଁ ଜଣା ନଥିବା ଏକ ଚରିତ୍ରକୁ ଦେଖିବାକୁ କୌତୁହଳ ଜାଗେ । ଭାବେ ସେ ଯଦି ମୂକ ହୋଇଥାନ୍ତି ? ମୁଁ ତ କାହା ସାଙ୍ଗରେ ବସ୍ ଭିତରେ କଥା ହେବାର ଶୁଣିନାହିଁ କି ଦେଖି ନାହିଁ । ସେତେବେଳେ ସହାନୁଭୂତିରେ ଓଦା ହୋଇଥାଏ ମନ । ସେଦିନ ଓ ଆଜିର ଦିନ ଭିତରେ କେତେ ପାର୍ଥକ୍ୟ ସତରେ ।

ହାୟ । ମୋର ସେ ବସ୍-ମେଟ୍‌ଟି ଆଜିକାଲି କେଉଁଠି କେଜାଣି ।

## ମୋ ଗଳ୍ପରେ ମୃତ୍ୟୁର ସ୍ପନ୍ଦନ

ମୋର ଗଳ୍ପ, ଉପନ୍ୟାସରେ ଅଧିକାଂଶ ସ୍ଥାନରେ ମୃତ୍ୟୁର ଚିତ୍ରଣ ରହିଛି । ମୃତ୍ୟୁକୁ ମୁଁ କ'ଣ ଭୟ କରେ ନା' ମୃତ୍ୟୁ ମୋତେ ଆସି ବାରମ୍ବାର ଆତଙ୍କିତ କରେ ?

କହିରଖେ, ଜୀବନପ୍ରତି ମୋର ଅନ୍ୱେଷା ଓ କୌତୁହଳର ଶେଷନାହିଁ । ଜୀବନରେ ଅନେକ କିଛି ହରାଇ ଦେଇଛି ମୁଁ । ତା' ତୁଳନାରେ ପାଇଛି ଖୁବ୍ କମ୍ । ତଥାପି ହରାଇବା ଭିତରେ ପାଇବାର ଆଶା ହିଁ ମୋତେ ଆଗେଇ ନେଇଛି । ଛୋଟ ଛୋଟ ଘଟଣା, ଦୃଶ୍ୟ, ଅନୁଭୂତି ମୋ ଭିତରେ ଦାନା ବାନ୍ଧିଛି । ସେଥିପାଇଁ ରବୀନ୍ଦ୍ରଙ୍କ ଭଳି ମୃତ୍ୟୁକୁ 'ଶ୍ୟାମସମ' ଗ୍ରହଣ କରିଛି ।

ଅତି ପାଖରୁ ମୃତ୍ୟୁକୁ ମୁଁ ଦେଖିଛି ଛୋଟବେଳୁ । ମୃତ୍ୟୁ ବିଷାଦର ରଙ୍ଗ ସାଜି ମୋ ଦେହ, ମନରେ ଛାଇ ଯାଇଛି । ଜୀବନ ଅନିଶ୍ଚିତ, ସବୁକିଛି ସରିଯିବ ଦିନେ, ଏଭଳି ଏକ ଭାବନା ମୋ ଭିତରେ କେଜାଣି କାହିଁକି ଖୁବ୍ ସାନ ଥିଲା ବେଳୁ ମନେ ହେଉଛି ।

କେତେବା ବୟସ ହେଉଥିଲା ମୋର ? ସାନଭାଇ ତପନର ମୃତ୍ୟୁ ଦେଖିଥିଲି । ବାପା କାନ୍ଧେଇ ତପନକୁ ଡାକ୍ତରଖାନାରୁ ନେଇ ଯାଇଥିଲେ କେଉଁଆଡେ । କୁଆଡେ ନେଇଗଲେ ଓ ତା'ପରେ ତପୁ କାହିଁକି ଫେରିଲାନି ବୋଲି ବହୁଦିନ ଧରି ପ୍ରଶ୍ନଟେ ମନ ଭିତରେ ଉଙ୍କି ମାରିଥିଲା । ମୃତ୍ୟୁର ଅନୁଭବ ଜଣାନଥିଲା ସେତେବେଳେ । ଭାବୁଥିଲି

ସେ ନିଶ୍ଚେ ଫେରିବ ଓ କେବେ ଫେରିବ ବୋଲି ପଚାରି ପଚାରି ସମସ୍ତଙ୍କୁ ଅଥୟ କରି ଦେଉଥିଲି ।

ଆଉ ଟିକିଏ ବଡ ହେଲାପରେ ମା'ଙ୍କ ମୃତ୍ୟୁ ଦେଖିଲି । ବାସି ଶବ । ଚାଦର ଉପରେ ଧାର ଧାର ପିମ୍ପୁଡି ଆଉ ଆଖିପତା ଉପର ଦେଇ ପିମ୍ପୁଡିଙ୍କ ଶୋଭାଯାତ୍ରା । ଆଈ କାନ୍ଦି କାନ୍ଦି ଗଡି ଯାଉଛି । ବାପା ପଥର ମୂର୍ତ୍ତି ପାଲଟି ଯାଇଛନ୍ତି । ମାଆଙ୍କୁ ଖଇ, କଉଡି ଓ ରାମନାମ ସତ୍ୟ ହେ ଭିତରେ ଡାକ୍ତରଖାନାରୁ ଶ୍ମଶାନକୁ ନିଆଯାଇଥିଲା । ମାଆ ମୋର ମରିଗଲା ଅନେକଙ୍କ ଠାରୁ ଶୁଣିଥିଲି । ତେବେ ତପୁ ଭଳି ସେ ନିଶ୍ଚେ ଫେରି ଆସିବ ବୋଲି ଆଶା ବାନ୍ଧିଥିଲି । ଭଗବାନଙ୍କୁ ଚୁପିଚୁପି ଡାକିଥିଲି ମୋ ମାଆଙ୍କୁ ଫେରାଇ ଦିଅ ବୋଲି । ନଡିଆ କଦଳୀ ଯାହା ମାଗିବ ପଛେ ଦେବି ।

ପୁଣି ଦେଖିଲି ଆଈର ମୃତ୍ୟୁ । ବାପା ମୁଣ୍ଡ ପାଖରେ ବସି ଶ୍ରୀମଦ୍ ଭଗବତ୍ ଗୀତାର ପଦ ଗାଉଥିଲେ । ମୁଁ ଗଙ୍ଗା ଜଳରେ ନିର୍ମାଲ୍ୟ ପକାଇ ଆଈ ପାଟିରେ ଚାମୁଚେ ଚାମୁଚେ ଦେଉଥିଲି । ଢୋକିବାକୁ ତାକୁ କଷ୍ଟ ହେଉଥିଲା । ପୁଣି କେତେଥର ପରେ ଆଁ କରି ସେ ରହିଗଲା । ପାଟିରୁ ଗଳଗଳ ହେଇ ଗଙ୍ଗାଜଳ ନିଗିଡି ପଡିଲା । ଗୋଟିଏ କଡକୁ ମୁଣ୍ଡ ଝୁଙ୍କିଗଲା । ବାପା ଆଖିପତା ବୁଜିଦେଲେ । ପାଟିମେଲାକୁ ମଧ୍ୟ ବନ୍ଦ କରି ଦେଇ କହିଲେ ତୋ ମାଆ ଯାଇଥିଲା, ଆଈ ବି ଗଲାରେ । ଗୋଟାଏ ଅଭିଶପ୍ତ, ଦୁଃଖୀ ଜୀବନର ଇତି ହୋଇଗଲା । କେଉଁ ପାପ କରିଥିଲେ ଯେ ତମକୁ ମଣିଷ କରି ପ୍ରାୟଶ୍ଚିତ କରିଗଲେ । ବାପାଙ୍କ ଆଖିପତା ଜକେଇ ଆସିଲା ।

ଭୁବନେଶ୍ୱରରେ ଏମ୍.ଫିଲ୍ କଲାବେଳେ ମୋରି ସାମ୍ନାରେ ବଡବାପାଙ୍କର ମୃତ୍ୟୁ ହୋଇଥିଲା । ଦେଢ଼ବର୍ଷ ପାଖାପାଖି ସେ ବିଛଣାରେ ପଡିଥିଲେ । ଗୁହମୁତ ସବୁ ସେଇଠି । ହେଲେ ମରିବା ସମୟରେ ପୁଅ ଝିଅ କେହି ପାଖରେ ନଥିଲେ । ମୁଁ ହିଁ ଥିଲି । ହାକୁଟି ଉଠୁଥିଲା । ଧାଇଁ ଯାଇ ଦୁଇ ତିନିଚାମଚ ଗ୍ଲୁକୋଜ୍ ପାଣି ଦେଇଛି ସେ ରହିଗଲେ । ବେଶ୍ ବୟସ ହେଇ ଯାଇଥିଲା ତାଙ୍କର । ହିକ୍‌କା ଦୁଇ ତନିଥର ଉଠିଲା । ତାପରେ ସେ ଠକ୍‌କି ରହିଗଲେ ।

ଏତେଗୁଡାଏ ମୃତ୍ୟୁକୁ ଅତି ପାଖରେ ଦେଖି ମୁଁ ଜୀବନର କ୍ଷଣ ଭଙ୍ଗୁରତା ସହ ପରିଚିତ ହେଇଛି । ଜୀବନ ଅନିଶ୍ଚିତ, ଜୀବନ ଆକସ୍ମିକ । କେତେବେଳେ କାହାର ଦୀପ ଲିଭିଯିବ କିଏ ଜାଣେ । ଜୀବନର ଏହି କରାଳ ଅଥଚ ସତ୍ୟରୂପ ମୋତେ ଅତି ବିଷାଦଗ୍ରସ୍ତ କରିଛି । ତେଣୁ ମୋ ଗଳ୍ପରେ ମୃତ୍ୟୁ ଆସେ । ମୃତ୍ୟୁର ବିଭିନ୍ନ ଜୀବନ୍ତ ବର୍ଣ୍ଣନା ମୋ ଗଳ୍ପରେ ରହିଛି । 'ପରିଚିତ ସହରର ଖୁବ୍ ଦୂରରେ ମୃତ୍ୟୁ ପାଇଁ ନିଜର ଅପେକ୍ଷା',

'ପୁଣି ଏକ ଭଲଦିନ ଅପେକ୍ଷାରେ', ଦର୍ଶକ, ନିର୍ଦ୍ଦେଶକ, ବନ୍ଧୁ, ଗଙ୍ଗାସ୍ନାନ, ଯାତ୍ରାର ଶେଷପାଦ, ସଂସାରୀ, ମେଳା, ଜୀବନରେଖା, ଅଧା ସ୍ୱପ୍ନର ମଣିଷ, ଭଂଗା ଖେଳନା ପ୍ରଭୃତି ଗଳ୍ପରେ ମୃତ୍ୟୁ ଚେତନା ରହିଛି । 'ପରିଚିତ ସହରର ଖୁବ୍ ଦୂରରେ ମୃତ୍ୟୁ ପାଇଁ ନିଜର ଅପେକ୍ଷା' ଗଳ୍ପଟି ମୁଁ ବାଣୀବିହାରରେ ପଢୁଥିଲା ବେଳେ ଲେଖିଥିଲି । ୧୯୮୨ ମସିହା ହେବ । ସେଠି ମୃତ୍ୟୁ ସମ୍ପର୍କରେ କେତୋଟି ଧାଡି ଲେଖିଥିଲି । ସମଗ୍ର ଗଳ୍ପଟିରେ ମୃତ୍ୟୁ ହିଁ ଛାଇ ଯାଇଛି । ଯେମିତିକି 'ମୃତ୍ୟୁକ'ଣ ବେଳାଭୂମିଟାଏ ? ଥୁଣ୍ଟା ଗଛଟାଏ ? ମୃତ୍ୟୁ କ'ଣ ନିଃସଙ୍ଗ ଶାଗୁଣାଟାଏ ? ମୃତ୍ୟୁ କ'ଣ ନିଛାଟିଆ ଖରାବେଳଟାଏ ? ମୃତ୍ୟୁ କ'ଣ ମମତାରେ ଭିଜା ମୋ ବୋଉର ଆଖି ଯୋଡାଏ ? ମୃତ୍ୟୁ କ'ଣ କୁଷ୍ଠରୋଗୀର ପାଦରେ ଗୁଡା ହୋଇଥିବା ଛିଣ୍ଡା ଅଖାଟାଏ ? ମୃତ୍ୟୁ କ'ଣ ପାଗଳର ଅସଂଲଗ୍ନ ସଂଳାପଟିଏ ?

କେଜାଣି ସେ ମୃତ୍ୟୁ କ'ଣ ? ମୃତ୍ୟୁ କିନ୍ତୁ ସୋରିଷ କିଆରିର ହଳଦିଆ ଫୁଲ ମେଞ୍ଚାଏ । ଛାତି ଭିତରେ ଆକ୍ତା ମାକ୍ତା ଛନକାଟିଏ । ନିଆଁ ଘେରାରେ କଲବଲ ହୋଇ ମରୁଥିବା ଶାବକଟାଏ । ଜହ୍ନ ରାତିର ତୋଫା କିରଣଟାଏ ଅଥବା ବ୍ୟାଘ୍ର ପାଟି ଭିତରେ ଛଟପଟ ହେଉଥିବା ହରିଣଟିଏ । ବେଳେବେଳେ ଭାବେ କେମିତି ହେବ ମରଣ ମୋର ? ରୋଗରେ, ବ୍ୟାଧିରେ ନା' ଦୁର୍ଘଟଣାରେ ମୃତ୍ୟୁହେବ ? ସ୍ୱାଭାବିକ ନା' ଅସ୍ୱାଭାବିକ ?

ମୃତ୍ୟୁକୁ ମୁଁ କ'ଣ ଭୟକରେ ନା' ପ୍ରବଳ ଭଲପାଏ ? କେଜାଣି, ମୁଁ ନିଜେ ବି ଜାଣିପାରେନା । ତେବେ ମୃତ୍ୟୁ ମୋ ଚେତନାର ଏକ ବଡ ବିଭବ । ମୋର କାହିଁକି ମନେ ହୁଏ ମୋର ଆକସ୍ମିକ ମୃତ୍ୟୁ ହିଁ ହେବ । ପ୍ରତି ମୁହୂର୍ତ୍ତରେ ରାସ୍ତା ଉପରକୁ ବାହାରିଲା ମାତ୍ରେ ମୋର ମନେ ହୁଏ ଏଇ ଯେମିତି ଅଳ୍ପ ସମୟ ପରେ ମୋର ଦୁର୍ଘଟଣା ହେବ ଓ ଛଟପଟ ହେଉହେଉ ମୁଁ ସ୍ଥିର ହେଇଯିବି । ତା'ପରେ ମୋର ଏ ଘରସଂସାର, ଡିଗ୍ରୀ, ଶିକ୍ଷା,ଚାକିରୀ, ସ୍ୱପ୍ନ, ଲିପୁନକୁ ନେଇ ବ୍ୟସ୍ତତା ସବୁକିଛି ମିଛ, ଧୂଆଁ ପାଲଟିଯିବ । ମୋର ଏମିତି ମରିଯିବାର ଇଚ୍ଛାହୁଏ କାହିଁକି ମୁଁ ଜାଣେନା । ସବୁ ପୂର୍ଣ୍ଣତା ଭିତରେ ମୃତ୍ୟୁର ଅଦ୍‌ଭୁତ ଭାବାନ୍ତର ମୋତେ ଶୀତଳ କରିଦିଏ । ବେଳେବେଳେ ମନେହୁଏ ମୃତ୍ୟୁ ସତରେ କି ସୁନ୍ଦର, କି କମନୀୟ । ସବୁଜ ବସ୍ତ୍ରରେ ଘୋଡେଇ ହୋଇ ସେ ଆସିବ ମୋତେ ସ୍ୱାଗତ କରିବାକୁ । ସେତେବେଳେ ସେହି ମୁହୂର୍ତ୍ତଟା ବୋଧହୁଏ ମୋ ଜୀବନର ସବୁଠୁ ଅବିସ୍ମରଣୀୟ ମୁହୂର୍ତ୍ତ ହେବ । ଆଃ, ସେ ଅନନ୍ୟ ମୁହୂର୍ତ୍ତଟାକୁ ମୁଁ କେମିତି ଭେଟିବି, କେବେ ଭେଟିବି ? ମୃତ୍ୟୁ ମୋତେ ଜୟ କରିବନା ମୁଁ ମୃତ୍ୟୁକୁ ଜୟ କରିବି ? ତାକୁ

ଭଲ ଭାବରେ ଆତିଥ୍ୟ ଦେଇପାରିବି ତ ? କିଏ ଥିବ ପାଖରେ ? କିଏ ପାଣିଟୋପାଏ ଦେବ ? ନା' ଏକୁଟିଆ, ଅଚିହ୍ନା ଯାଗାରେ ଆଖିବୁଜି ଦେବି ? ୧୯୮୩ରେ ସେହି ଗଳ୍ପରେ ମୁଁ ଲେଖିଥିଲି, 'ମୋର ଯଦି କାଲି ମୃତ୍ୟୁ ହୋଇଯାଏ କ'ଣ ହେବ ? କିଛି ନାହିଁ । ଏ ସହରର ସ୍ୱାଭାବିକ ଜୀବନଯାତ୍ରା ସେମିତି ଚାଲିବ । ମୁଁ ନେତା ନୁହେଁ କି ମନ୍ତ୍ରୀ ନୁହେଁ । ସାମାନ୍ୟ ଲେଖିକାଟାଏ । ତେବେ ଆକସିଡେଣ୍ଟରେ ଯଦି ମରିଯାଏ କିଛି ସମୟ ଭିଡ ହେବ । ଦେଖଣାହାରୀ ଚୁଚୁ କରିବେ । ଖବରକାଗଜର ଏକ କୋଣରେ ଛୋଟ ଶୋକ ସମ୍ବାଦଟିଏ ବାହାରିବ ଯେ କାହାରି ଦୃଷ୍ଟିରେ ପଡିବନାହିଁ । ମୋ ଚିହ୍ନା ପରିଚୟ ଟିକେ ଲୁହ ଗଡାଇବେ । ମୋ ଗପ ପଢ଼ିଥିବା କାଁ ଭାଁ ପାଠକପାଠିକମାନେ 'ଆହା' ପଦେ କହିବେ । ମୋତେ ଚିହ୍ନିଥିବା ସମ୍ପାଦକମାନେ ସମ୍ପାଦକୀୟ ସ୍ତମ୍ଭରେ ଶେଷଧାଡିରେ ପଦିଏ ହୁଏତ ମୋ ପାଇଁ ଲେଖିବେ । ହୁଏତ କେଉଁ ସଭାସମିତିରେ ମିନିଟିଏ ନିରବ ପ୍ରାର୍ଥନା ହେବ । ଅତି ବେଶୀରେ ମୋର ଅନୁଗତମାନେ ଚାନ୍ଦା ଉଠାଇ ସ୍ମରଣିକାଟେ ବାହାର କରିବେ । ତା'ପରେ ? ମୁଁ ଧୀରେ ଧୀରେ ସ୍ମୃତିପାଲଟି ଯିବି । ମୋ ସ୍ମୃତି ଉପରେ ବହଳ ଧୂଳି ନେସି ହୋଇଯିବ । ଆସ୍ତେ ଆସ୍ତେ ମୋ ପାଠକ, ଆତ୍ମୀୟମାନେ ମୋତେ ଭୁଲିଯିବେ । ମୋର ସ୍ମିତି, ମୋର ସ୍ୱପ୍ନ, ମୋର ସାହିତ୍ୟ ସବୁ କେଉଁଠି ଲୁଚିଯିବ । ମୁଁ ଯେ ଏକ ସ୍ୱପ୍ନ ଦେଖୁଥିବା ମଣିଷଥିଲି, ଆବେଗକୁ ନେଇ ଜୀଇଁଥିଲି, ବେଳେବେଳେ ବେଶି ଇମୋସନାଲ ହୋଇ କଷ୍ଟ ପାଉଥିଲି, ଖାମ୍‌ଖିଆଲି ଭାବରେ ଦିନଗୁଡିକୁ ବିତାଇ ଚାଲିଥିଲି, ଅଜସ୍ର ଦୁଃଖ ଭିତରେ ବି ରହି ହସୁଥିଲି, ଖୁବ୍ ଭଲ ଅଛି ବୋଲି ଛଳନା କରୁଥିଲି ଏବଂ ବଞ୍ଚିବା ପାଇଁ ବେଳେବେଳେ ଷ୍ଟ୍ରଗଲ କରି ଥକି ପଡୁଥିଲି ତାହା ସବୁ ମୋ ମୃତ୍ୟୁରେ ଖୁବ୍ ଶୀଘ୍ର ମିଛ ପାଲଟିଯିବ ।' + + + କୌତୂହଳ ଜାଗେ, ଆଖିବୁଜିବା ଆଗରୁ କେମିତି ଦିଶୁଥିବ ଏ ପୃଥିବୀ ଆଉ ତା'ର ଫୁଲ, ଫଳର ଦୁନିଆ ? ଆତ୍ମୀୟ ସ୍ୱଜନ, ସ୍ୱାମୀ ନା ପୁଅ ? କିଏ ଥିବ ପାଖରେ ?

ମୋର ଏତେ ମରିବାକୁ ଇଚ୍ଛାହୁଏ କାହିଁକି ମୁଁ ଜାଣେନା । କେବେ ଯଦି ସେ ସମ୍ପର୍କରେ ମୋତେ କେହି ପ୍ରଶ୍ନ କରେ ତା'ର ଉତ୍ତର ଦେଇପାରିବିନି । ଏହା ସତ ଯେ ସବୁବେଳେ ସବୁ ଛକରେ ମୁଁ ମୃତ୍ୟୁକୁ ଦେଖେ । ସମ୍ବାଦପତ୍ରରେ ଶୋକ ଖବର ପଢ଼ିଲେ ନିଜ ଶବ ଆଖିରେ ନାଚି ଉଠେ । ଅତ୍ୟଧିକ ଜୀବନକୁ ଭଲ ପାଉଥିବା ମଣିଷ ହିଁ ମରଣକୁ ଭୟ କରେ । ମୁଁ କ'ଣ ଜୀବନକୁ ଭଲ ପାଇ ମୃତ୍ୟୁକୁ ଭୟ କରୁଛି ?

ତେବେ ସେଦିନଟି କେବେ ଆସିବ ଜାଣେନା । ସେଦିନ ପରେ ଆଉ ମୁଁ ମୋର ପରିଚିତ ପୃଥିବୀର ନିତିଦିନିଆ ସକାଳ ଓ ସନ୍ଧ୍ୟାରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଦେଖି ବୋର୍

ହେବାକୁ ନଥିବି । ମୋତେ ଆଉ ଏକାଏକା ନିଜକୁ ବନ୍ଧୁ କରି ବଞ୍ଚିବାକୁ ପଡୁ ନଥିବ କି ନିତିଦିନିଆ ଜୀବନଯାତ୍ରା ଭିତରେ ଅଣନିଃଶ୍ୱାସୀ ହୋଇ କୁଆଡେ ନା' କୁଆଡେ ପଳାଇ ଯିବାକୁ ଅପଚେଷ୍ଟା କରିବାକୁ ହେଉ ନଥିବ । ମୁଁ ତ ସବୁଦିନ ଲାଗି ସେତେବେଳେ ଆଖି ବୁଜି ସ୍ୱପ୍ନ ଦେଖୁଥିବି ଏବଂ ଲମ୍ବା ସ୍ୱପ୍ନଟାଏ ଅସରନ୍ତି ଯୁଗପାଇଁ ଦେଖୁଥିବି ଯେ ଦେଖୁଥିବି । ସତରେ, Life you may evade, but death you shall not,' ତେଣୁ ମୋର କୌଣସି ଏକ ଗପରେ ଲେଖିଥିଲି, ମୃତ୍ୟୁ ଯେମିତିକି ମମତାର ଶୀତଳ ପରଶଟାଏ । ଏହା ମା' କୋଳରେ ଶୋଇ ନାନାବାୟା ଗୀତ ଶୁଣୁଥିବା ପିଲାଟିକୁ ହଠାତ୍ ଗଭୀର ନିଦରେ ସବୁଦିନ ପାଇଁ ଶୋଇ ପକାଏ । ମୃତ୍ୟୁ ସତରେ ମଣିଷ ଲାଗି ଆତ୍ମିକ ସନନ୍ଦଟାଏ ।

## ସମୁଦ୍ର ଓ ମୁଁ

ସମୁଦ୍ର ! ଯଦି ତୋତେ ଛୁଇଁ ବି ମୁଁ ଥରେ,  
ମିଶାଇବୁ ମୋତେ ନେଇ ତୁ ତୋ ଦିହରେ  
ତୋ ଅଶାନ୍ତିର ବିକ୍ଷୁବ୍ଧ ଲହଡି ସବୁ  
ଲିଭାଇ ଦେବ ମୋ ମନର କେଉଁ ପ୍ରାକ୍ତନ ଦୁଃଖକୁ  
ହଜିବା ଆଗରୁ ତୋ ବକ୍ଷରେ, ପ୍ରଥମ ଓ ଶେଷଥର ଲାଗି  
ସମୁଦ୍ର ! ମୁଁ ବିଞ୍ଚି ହୋଇଯିବି, ମେଲି ହୋଇଯିବି  
ସେହି ପୂର୍ଣ୍ଣତାର ଅନ୍ତିମ ଆଶାରେ...

ଜାଣେନା ସମୁଦ୍ର ସହ ମୋର ସମ୍ପର୍କ କ'ଣ । କିନ୍ତୁ ସେ ମୋତେ ବାରମ୍ବାର ଆକୃଷ୍ଟ କରେ । ତା'କୁ ଦେଖିଲେ ମୋ ଭିତରେ ସମୁଦ୍ର ମିଶି ଏକାକାର ହେଇଯାଏ । ସବୁ ସାଂସାରିକ ମୋହ ଭୁଲିଯାଏ । ଦୁଃଖ ସୁଖ, ଆସକ୍ତି, ଲୋଭ, ମୋହମାୟା କେଉଁଆଡେ ମିଳାଇଯାଏ । ମୁଁ ଯେମିତି ଆଉ 'ମୁଁ' ହେଇ ରହି ନଥାଏ। ଏକି ଉଚ୍ଚାଟନ । ଏ କି ବିସ୍ମରଣ !

ମନେପଡେ ମହାଦେବୀ ବର୍ମାଙ୍କ କବିତାର ଦୁଇଧାଡି-  
'ତୀର ପର କୈସେ ରୁକୁଁ ମେଁ  
ଆଜ୍ ଲହରୋଁ ମେଁ ନିମନ୍ତ୍ରଣ ।'

ହଁ, ସମୁଦ୍ରକୁ ମୁଁ ଭଲପାଏ । ସେ ମୁଗ୍ଧ, ବିଭୋର କରେ ମୋତେ । ତା'ର ବ୍ୟାପ୍ତି, ଲହଡି, ସୁନ୍ଦର ବେଳାଭୂମି, ଅନନ୍ତରୂପ, ନୀଳ ଜଳରାଶି, ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତ ମୋତେ ସ୍ୱପ୍ନ ବିଭୋର କରିଦିଏ । ମୋର ପ୍ରାରମ୍ଭିକ ଗଳ୍ପଗୁଡିକର ଅଧିକାଂଶ ସ୍ଥାନରେ

ସମୁଦ୍ରର ବର୍ଣ୍ଣନା ରହିଛି । 'ରୁନୁ ଅପା, ବାପା, ମୁଁ ଓ ସମୁଦ୍ର', 'ଅନ୍ୟ କେଉଁ ଦ୍ରୌପଦୀ, 'ଜଗାକାଳିଆର ମାୟା' ପ୍ରଭୃତି ଗଳ୍ପରେ ସମୁଦ୍ର ହିଁ ସତେ କି ଏକ ବାତାବରଣ, ପ୍ରତୀକ ପାଲଟି ଯାଇଛି ।

ମେଟ୍ରିକ୍ ପରୀକ୍ଷା ପରେ ଯାଇଥିଲି ପୁରୀ । ପ୍ରଥମ ଥର ପାଇଁ ସମୁଦ୍ର ଦେଖିଥିଲି । ସେହି ପ୍ରଥମ ଦେଖାରେ ହିଁ ତା' ପ୍ରେମରେ ପଡି ଯାଇଥିଲି । ଆଜି ଯାଏଁ ସେ ପ୍ରେମ ଅତୁଟ ରହିଛି । ସମୁଦ୍ର ହିଁ ପୁରୀ ପାଇଁ ପ୍ରବଳ ଆକର୍ଷଣ । ସେଥିପାଇଁ ବୋଧହୁଏ ପୁରୀ ଏତେ ଭଲଲାଗେ । ଜଗନ୍ନାଥ ବି ସମୁଦ୍ରର ଆକର୍ଷଣକୁ ଏଡେଇ ପାରି ନାହାଁନ୍ତି । ଘଣ୍ଟା ଘଣ୍ଟା ତା' ବେଳାଭୂମିରେ ବସିଛି । ଲହଡି ଭାଙ୍ଗିଛି । କେବେ କେବେ ନୋଳିଆମାନଙ୍କର ହୁଲିଡଙ୍ଗା ଢେ଼ର ଉପରେ ନାଚି ନାଚି ଅଦୃଶ୍ୟ ହେଇଯାଏ । କେବେ କେବେ ଧାଡି ଧାଡି ପାଲଟଣା ଡଙ୍ଗା ଦୃଶ୍ୟ ହୁଅନ୍ତି । କୂଳରେ ଲାଗନ୍ତି ମାଛ ବୋଝେଇ ଜାଲଧରି । ପୁଣି ଦେଖିଛି ରକ୍ତିମ ସୂର୍ଯ୍ୟାସ୍ତ । ସମୁଦ୍ର ପାଣି ରଙ୍ଗର ଢେ଼ଉ ପାଲଟି ଯାଏ । ଦିଗ୍‌ବଳୟରେ ଆକାଶ ଛୁଇଁଥାଏ ତା' ପାଣିକୁ । ଅନେକ ଥର ଶାମୁକା ଗୋଟାଇଛି । ଝାଲମୁଢ଼ି ଖାଇଛି । ଅସଂଖ୍ୟ ନାରୀ ପୁରୁଷର ମେଳା ଦେଖିଛି । କିଏ ଫଟୋ ଉଠାଉଛି ତ କିଏ ଲହଡି ଭାଙ୍ଗୁଛି । କେଉଁ ବିଦେଶୀ ବିଦେଶିନୀ ଓଦା ବାଲିରେ ଅଧା ନଙ୍ଗଳା ହେଇ ଗଡୁଛି ତ କେଉଁଠି ଯୋଡିଯାଡି ସ୍ୱାମୀ ସ୍ତ୍ରୀ, ପ୍ରେମିକ ପ୍ରେମିକା, ପିଲାଛୁଆ ତାକୁ ମୁଗ୍ଧ ହେଇ ଦେଖୁଛନ୍ତି । ଲହଡି ସହିତ ଖେଳୁଛନ୍ତି । ସତେକି ସମସ୍ତଙ୍କ ଆଖିରେ ଆଖିଏ ସମୁଦ୍ର, ମୁଗ୍ଧ ବିଭୋର ସମୁଦ୍ର । ସମୁଦ୍ର ଜୀବନ ପାଲଟିଯାଏ ତ ପୁଣି ଜୀବନ ସମୁଦ୍ରରେ ରୂପାନ୍ତରିତ ହେଇଯାଏ । ମଣିଷ ଜୀବନ ସହ ସମୁଦ୍ରର ସମ୍ପର୍କ ବଡ ପୁରାତନ, ବଡ ଗଭୀର । ସମୁଦ୍ରଠାରୁ ବଡ ଯାଦୁଗର ଆଉ କିଏ ଅଛି ? ସେ ନିଆଁ ଲଗାଏ, ନିଆଁ ଲିଭାଏ । ସ୍ୱପ୍ନ ଦେଖାଏ, ସ୍ୱପ୍ନ ବୁଜାଏ ।

ଆଃ, ସମୁଦ୍ର ମୁଁ ତୋତେ ଭଲପାଏ । ତୋ ଆଶ୍ଳେଷରେ ବାରମ୍ବାର ଧରାଦେବାକୁ ମନ ଡାକେ । ମୋର ଗଳ୍ପ ଓ ଉପନ୍ୟାସରେ ମଧ ସମୁଦ୍ରର ବର୍ଣ୍ଣନା ରହିଛି । ସତେ କି ସମୁଦ୍ର କେଉଁ କୁହୁକ ରାଜ୍ୟର ଅପରୂପା ରାଜକନ୍ୟା । ବହୁ ଆଗନ୍ତୁକର ପଦଧ୍ୱନିରେ ସେ ଶଙ୍କାୟିତ, ଶିହରିତ ।

ତେଣୁ ମୋ ଚେତନାରେ ସମୁଦ୍ର, ମୋ ଭିତରେ ସମୁଦ୍ର ମୋ ବାହାରେ ସମୁଦ୍ର । ଗୋପାଳପୁର, ଚାନ୍ଦିପୁରର ସମୁଦ୍ର ଦେଖିଛି । ହେଲେ ପୁରୀ ସମୁଦ୍ର ସବୁଠାରୁ ଆକର୍ଷଣୀୟ । ତା'ର ଏକ ଚୁମ୍ବକୀୟ ଶକ୍ତି ରହିଛି ଯାହା ଟାଣିନିଏ ଦର୍ଶକକୁ ପାଖକୁ ପାଖକୁ । ତା'ର ଲହଡି, ବାଲୁକା ଶଯ୍ୟା, ତା' ଉପର ନୀଳ ଆକାଶ, ହୁଲିଡଙ୍ଗା ସବୁଥିରେ ସେହି ଟାଣି

ଧରିବାର ଶକ୍ତି ।

ପୁଣି ମୋର ଏକ ଇଚ୍ଛା ଅଛି, ପୁରୀ ସ୍ୱର୍ଗଦ୍ୱାରରେ ପୋଡା ହେବା । ମୋ ଦେହ ଯେତେବେଳେ ପାଉଁଶ ହୋଇ ଯାଉଥିବ, ଆକାଶରେ ଯେଉଁ ଧୂଆଁ ଉଠିବ, ସେ ଧୂଆଁ ପାଣି ସମୁଦ୍ର ଛୁଇଁବ । ମୁଁ ସମୁଦ୍ର ଭିତରେ ଫେଣ୍ଟି ହେଇଯିବି, ମିଳାଇ ଯିବି । ମଣିଷ ଜନ୍ମ କେଉଁଠି ପୁଣି ମରିବ କେଉଁଠି ଏକଥା ସେ ନିଜେ ଜାଣିନଥାଏ ।

ସ୍ୱର୍ଗଦ୍ୱାରରେ ଥରେ ଏକ ମହିଳାଙ୍କର ପୋଡା ହେବାର ଦୃଶ୍ୟ ଦେଖିଥିଲି । ସଧବା ସ୍ତ୍ରୀଲୋକ । ଆତ୍ମୀୟମାନେ କାଠ ଥୋଇ ନିଆଁ ଧରାଇଲା ଯାଏଁ ରହିଥିଲି । ସେହିଦିନ ଲକ୍ଷ୍ୟ କରିଥିଲି ସେଠୁ ଉଠୁଥିବା ଧୂଆଁ କେମିତି ସମୁଦ୍ର ଆଡେ ଗତି କରୁଛି । ସେଇଠୁ ମୋର ଏହି ଅନ୍ତିମ ଇଚ୍ଛାଟିଏ ଜାଗିଥିଲି,ମଲାପରେ ସ୍ୱର୍ଗଦ୍ୱାରରେ ପୋଡା ହେବା । ମଣିଷ ଦେହ ଧରିଛି ଯେତେବେଳେ ଦିନେ ନା ଦିନେ ତ ମରିବାକୁ ପଡିବ । ଏହା ନିହାତି ମାମୁଲି ଆଉ ସ୍ୱଭାବିକ ଘଟଣା । ତେବେ କେତେଜଣଙ୍କର ଭାଗ୍ୟ ହୁଏ ସ୍ୱର୍ଗଦ୍ୱାରରେ ପୋଡାହେବା ।

କେଜାଣି ମୋର ଏ ଆକାଂକ୍ଷା ଦିନେ ପୂରଣ ହେବକି ନା ।

## ଲାସ୍ୟମୟୀ ରୂପର କୋଣାର୍କ

ସେତେବେଳେ ଆଜି ଭଳି ଟି.ଭି. ନଥିଲା ଯେ ଘରେ ବସି ଦର୍ଶନୀୟ ସ୍ଥାନ ଦେଖିହେବ । ବୋଧହୁଏ ୧୯୭୯ ମସିହା ହେବ କଲେଜ ତରଫରୁ ଏସ୍‌କରସନ ଯାଇ ପୁରୀ, କୋଣାର୍କ ଓ ଚିଲିକା ଦେଖିଲି । ପ୍ରଥମେ ଗଲୁ ମରାଳମାଳିନୀ ନୀଳାମ୍ବୁ ଚିଲିକା । ତା'ର ସୂର୍ଯ୍ୟୋଦୟ ଦେଖାପରେ ଗଲୁ ଚନ୍ଦ୍ରଭାଗା ଆଉ ତା'ପରେ କୋଣାର୍କ । ମାନସିଂହ, ସଚ୍ଚି ରାଉତରାୟଙ୍କ 'କୋଣାର୍କ' ମୁଁ ତା' ଆଗରୁ ଲାଇବ୍ରେରୀରୁ ଆଣି ପଢ଼ିସାରିଥିଲି । ସେହିଦିନଠାରୁ କୋଣାର୍କ ପ୍ରତି ମୋର ଏକ ଦୂରନ୍ତ ଆକର୍ଷଣ ସୃଷ୍ଟି ହେଇଥିଲା । କୋଣାର୍କ ଆଡକୁ ଆମର ରିଜର୍ଭ ବସ୍‌ଟି ଆଗେଇ ଚାଲିଲା ବେଳେ ମାୟାଧର ମାନସିଂହଙ୍କ କୋଣାର୍କର କେତୋଟି ଧାଡି ମନେ ପଡୁଥିଲା ।

'ହେ କୋଣାର୍କ ! ବିଗତ ଯୌବନା,
ମୌନ ଦୁଃଖେ-ସୈକତ-ଶୟନା !
ତୋର ଏହି ଜୀର୍ଣ୍ଣ ଦେହେ ଅଦ୍ୟାପି ମୋ
ବିମୁଗ୍‌ଧ ନୟନେ
ଚାହେଁ ବିଶ୍ୱ, କରୁଣାରେ ତେଜି ଅଶ୍ରୁ ତୋ ଦୁଃଖ - ଶୟନେ,

ଜଗତର ଶିଳ୍ପୀ-କବି ରୂପ-ରାଗ ଦେଖି ତୋହଠାରେ
ଆଶ୍ଲେଷ ଇଚ୍ଛଇ ତୋର ବୃଦ୍ଧ ଦେହେ, ଶୋଭା ପିପାସାରେ....

× × ×

କୋଣାର୍କର ପଥର ଦେହରେ ନାରୀ ପୁରୁଷର ଖୋଦେଇ ମୈଥୁନ ରୂପ ଦେଖି ସେହି ପ୍ରଥମଥର ଜାଣିଲି ପୁରୁଷ ଓ ନାରୀ ଭିତରେ ଥିବା ଆଦିମ ସମ୍ପର୍କକୁ । ଆଜି ଭଳି ସେମିତି ଜାଣିବାର ମିଡିଆ ନଥିଲା । ସେଥିପାଇଁ କ'ଣ କୋଣାର୍କ ବିଶ୍ୱ ପ୍ରସିଦ୍ଧି ପାଇଛି ? ତେବେ ମନର ପ୍ରଶ୍ନ ଉଠୁଥିଲା ଏକ ପବିତ୍ର ସୂର୍ଯ୍ୟମନ୍ଦିରରେ ଏସବୁ ମୂର୍ତ୍ତି କାହିଁକି ? ମନ୍ଦିର ତ ଧ୍ୟାନ ଓ ଉପାସନାର ପବିତ୍ର କ୍ଷେତ୍ର ! ତ'ହେଲେ ?

ମୁଁ ପିଲାଦିନରୁ ସ୍ପଷ୍ଟବାଦୀ । ଯାହା କୌତୂହଳ, ସନ୍ଦେହ ଜାଗେ ପଚାରିପକାଏ । ମୋ ଭିତରେ ଜାଣିବା, ପଚାରିବାର ଇଚ୍ଛାରେ ଦ୍ୱିଧା କେବେ ଆସିନାହିଁ । ଆମ ସହିତ ଓଡ଼ିଆ ଅଧ୍ୟାପକ ଉମେଶ ମିଶ୍ର ଯାଇଥିଲେ । ସେ ମୋ ପ୍ରଶ୍ନର ଉତ୍ତର ଦୁଇ ଭାଗରେ ସୁନ୍ଦର ଭାବରେ ବୁଝାଇ ଦେଲେ । ପ୍ରଥମତଃ ଏହାର ତରୁଣ ଶିଳ୍ପୀମାନେ ବର୍ଷ ବର୍ଷଧରି ଯୁବତୀ ସ୍ତ୍ରୀମାନଙ୍କୁ ଛାଡି କୋଣାର୍କ ବେଳାଭୂମିରେ ନିଃସଙ୍ଗ ଜୀବନ କଟାଇ ଚାଲିଥିଲେ । ସେମାନଙ୍କ ମନର କାମନା, ସ୍ୱପ୍ନ ସବୁକୁ ପଥର ଦେହରେ ହିଁ ପ୍ରକାଶ କରୁଥିଲେ । କବିତା ଯେଭଳି ସ୍ୱତଃସ୍ଫୂର୍ତ୍ତ ସେମିତି ଏହି ପଥର ଖୋଦେଇ ଥିଲା ଅବାରିତ, ଝରଣାଭଳି ପ୍ରଖର, ଦୁର୍ବାର ।

ଦ୍ୱିତୀୟତଃ ପ୍ରତ୍ୟେକ ମଣିଷ ଭିତରେ ଏକ ସୁପ୍ତ ଜୈବିକ କାମନା ରହିଛି । ଏହି ଜୈବିକ ପ୍ରବୃତ୍ତିଟି ସେ ମନ୍ଦିର ପ୍ରବେଶ କରିବା ଆଗରୁ ମନ୍ଦିର ଦେହରେ ଖୋଦେଇ ଦେଖି ବାହାର କରିଦିଏ । ବାସ୍ ମନ ସଫା । ଭିତରେ ପବିତ୍ର ବାତାବରଣ । ଚେତନା ଭିତରେ ତା'ପରେ ଭକ୍ତି ଆଉ ଉପାସନା । ସେଦିନ କୌତୂହଳୀ ହେଇ ଦେଖି ଚାଲିଥିଲେ ନୃତରତା ରମଣୀ ଆଉ କେତେକେତେ ଛବିଳ ଚିତ୍ରପଟ । ବାରଶହ ବଢ଼େଇର ସେହି କବି କଳ୍ପନାର କୋଣାର୍କ । ପଥର ଦେହରେ ବୟସ, ପ୍ରେମ, ସ୍ୱପ୍ନ ପଥର ହେଇ ମଳାଇ ଯାଇଛି । କେବଳ ପ୍ରତିଧ୍ୱନି । କାନଡେରିରେ ଶୁଭିବ ହାହାକାର ଦୀର୍ଘଶ୍ୱାସ ଅଥବା ଛଳଛଳ ପ୍ରେମର ଉଜାଣି ଯମୁନା । ସଚ୍ଚି ରାଉତରାୟ 'କୋଣାର୍କ'ରେ ଯଥାର୍ଥରେ ଲେଖିଛନ୍ତି-

'ତୁମେ କି ଦେଖିଅଛ ଶିଳାରେ ତାର ତ
ରମ୍ୟ କଳାର ରୂପ
ମୁଁ ଦେଖିଚି ତହିଁ କୋଟି କଙ୍କାଳ
ଭଗ୍ନ ବୁକୁର ସ୍ତୂପ

× × ×

କୋଟିକୋଟି ବିଶୁ ମହାରଣା ପୁଣି
ଶିବେଇ ସାମନ୍ତ କେତେ,
ଏଇ ମନ୍ଦିର ତଳେ ଶୋଇଛନ୍ତି
କଳାର ଫସଲ ଖେତେ ।

× × × '

ରୂପସୀ କୋଣାର୍କର ପଥରେ ଥିବା ଶିଳ୍ପୀର ବ୍ୟଥା, ବେଦନାକୁ ନିବିଡ଼ ଭାବରେ ଅନ୍ତରେ ଅନୁଭବ କରିଛନ୍ତି ଅମର କବି ସଚ୍ଚି ରାଉତରାୟ । କୋଣାର୍କ ଥିବା ଯାଏଁ ଏମିତି ଦର୍ଶକ, ଭାବୁକଙ୍କୁ ସମ୍ମୋହିତ କରୁଥିବ, ରୋମାଞ୍ଚ ଖେଳାଉଥିବ । ମୁଁ ଆବୃତ୍ତି କରି ଚାଲିଥିଲି -

ଜୀବନର ଯେତେ ଲୀଳା ଖେଳା, ଅଙ୍ଗେ ତୁହି ଧରିଲୁ ଛବିଳା

× × × ×

ମାନବର ମନେମନେ ସୁଷମାର ଯେତେକ ସଙ୍ଘଟ

× × × ×

ଅନନ୍ତ କବିତା ଧାରା ନିହିଲେ ସେ ତୋ ଦେହ ପରଶି

× × × × ।'

୨୦୦୯ରେ ପୁଣି ଦେଖିଲି କୋଣାର୍କ । ବାସ୍ତବିକ ବିଗତ ଯୌବନା । ସେ ଯୁଗଳ ମୂର୍ତ୍ତି ସବୁ ଆଉ ନାହିଁ । ଭାଙ୍ଗି ପଡିଛି ଓ ତା' ସ୍ଥାନରେ ମାର୍ବଲ ଖଣ୍ଡ ସବୁ ଯୋଡା ଯାଇଛି । ଚକ କେତୋଟି ଚୂନ ଆଉ ସିମେଣ୍ଟରେ ବୋଳା । ମଣିଷ ଭଳି କୋଣାର୍କର ବି ଦିନେ ମୃତ୍ୟୁ ହୋଇଯିବ । ଏହା ହିଁ ପରମ ସତ୍ୟ ।

## ମୋର କିଛି ଦୁର୍ବଳତା

ଜୀବନର ଅଙ୍ଗେଲିଭା କାହାଣୀର ପୃଷ୍ଠା ଓଲଟାଇଲା ବେଳେ ମୋର କେତୋଟି ଦୁର୍ବଳତାକୁ ଉପେକ୍ଷା କରିପାରୁ ନାହିଁ । ସମୁଦ୍ର ଓ କୋଣାର୍କ ପ୍ରତି ମୋର ଆକର୍ଷଣ ତ ଲେଖିଲି । ସେମିତି ଭ୍ରମଣ ମାଧ୍ୟମରେ ନୂଆ ନୂଆ ଯାଗା ଦେଖିବାର ଇଚ୍ଛା ମୋ ଭିତରେ ଖୁବ୍ ପ୍ରବଳ । ଅର୍ଥ, ସମୟ, ସୁବିଧା, ସୁଯୋଗ ଥିଲେ ମୁଁ ବୁଲିବାର ସୁଯୋଗ ଛାଡେ ନାହିଁ । ପର୍ଯ୍ୟାୟକ୍ରମେ ସେସବୁ ପ୍ରସଙ୍ଗ ଆସିବ । ଏହାଛଡା ମୋର ଦୁର୍ବଳତା ରହିଛି

ଅନନ୍ତ ଆକାଶ ପ୍ରତି । ଦିଗହୀନ, ସୀମାହୀନ, ନୀଳିମାମୟ ଅସୀମ ଆକାଶ । ନିର୍ଜନ ରାତିରେ ତାରାଭରା ଆକାଶ ଖୁବ୍ ଭଲ ଲାଗେ ପୁଣି ମେଘମୟ, ବିଜୁଳିର ଚମକ ଭିତରେ କଳାହାଣ୍ଡିଆ ମେଘ ଦେହରେ ଧାଡି ଧାଡି ବଗମାନେ ଡେଣାଝାଡି ଯେତେବେଳେ ଉଡିଯାଉଥାନ୍ତି ତାହା ମୋତେ ବିଭୋର, ବିହ୍ୱଳ କରିଦିଏ । ଜୀବନରେ ଝଡ ଉଠିଲା ଭଳି ଶାନ୍ତ ଆକାଶରେ ବି ମେଘ ଉଠାଏ । ଆଖିରୁ ଲୁହ ଝରିଲା ଭଳି ଆକାଶରୁ ବର୍ଷା ପାଣି ଝରେ । ଆକାଶର ଅନନ୍ତ ବିସ୍ତୃତି ପାଖରେ ମୁଁ ଖୁବ୍ ଛୋଟ ହୋଇଯାଏ । ଜୀବନରେ ଯେତେବେଳେ ଖୁବ୍ ଏକୁଟିଆ ଅନୁଭବ କରିଛି ଅଥବା କୌଣସି ଗଳ୍ପର ପରିସମାପ୍ତି କରିପାରୁ ନାହିଁ କି ଚରିତ୍ରକୁ ନେଇ ସମ୍ପର୍କଟେ ଯୋଡି ପାରୁନାହିଁ ସେତେବେଳେ ଚୁପ୍‌ଚାପ୍ ବାହାରେ ଚୌକି ପକାଇ ଖୋଲା ଆକାଶ ତଳେ ବସିଛି । ଆକାଶର ବିଶାଳ, ଉଦାସ, ଗମ୍ଭୀର ଚେହେରା ମୋତେ ସାନ୍ତ୍ୱନା ଦେଇଛି । ମୋ ମନର ଅନେକ ଦ୍ୱନ୍ଦ୍ୱର ସମାଧାନ ଘଟାଇଛି । ଜାଣେନା ନିଃଶବ୍ଦ ରାତିରେ ଆକାଶ କାହିଁକି ମୋତେ ଟାଣିନିଏ । ଆବହମାନ କାଳରୁ ମୋରି ଭଳି କେତେ କେତେ ଜୀବନ ଆକାଶର ପ୍ରେମରେ ପଡିଥିବେ । ବାଲ୍ୟରୁ ବାର୍ଦ୍ଧକ୍ୟ ପୁଣି ମୃତ୍ୟୁ ପର୍ଯ୍ୟନ୍ତ ଆକାଶ ହାତଠାରି ଡାକୁଥିବ । ପକ୍ଷୀ ପିଠିରେ ବସି ଉଡିଲା ଭଳି ଯେଉଁମାନେ ଉଡାଜାହାଜରେ ବସି ଉଡୁଥିବେ ସେମାନେ ନିଜକୁ କେତେ ଭାଗ୍ୟବାନ ମନେ କରୁନଥିବେ । ଯା'କୁ ନେଇ କେତେ କବିତା, ଗଳ୍ପ, କାବ୍ୟ, ସାହିତ୍ୟର ନବନବ ସର୍ଜନା, କଳାର ନବ ନବ ଉଦ୍ଭାବନ । ସମସ୍ତେ ଶୋଇଥିଲା ବେଳେ ଯଦି ମୋର ଗପଲେଖା ଚାଲିଥାଏ ଅଥବା ଗପ ଅଧାରେ ଆଗଉ ନଥାଏ ତେବେ ଅଗଣାକୁ ଚାଲି ଆସି ଖୋଲା ପବନରେ କିଛି ସମୟ ଚାଲ୍‌ବୁଲ୍ କରେ । ଆକାଶକୁ ଅନାଏ । ଭାବବିହ୍ୱଳ ହୋଇଉଠେ । ପିଲାଦିନର ଅନେକ ସ୍ମୃତି ଛାଏଁଛାଏଁ ଓଜାଡି ପଡେ । ମନେହୁଏ ସମସ୍ତେ ପାଖରେ ଅଛନ୍ତି । ବାପା, ମାଆ, ଆଈ, ଭାଇଭଉଣୀ ସମସ୍ତେ । ସେତେବେଳେ ଭୁଲିଯାଏ ମୁଁ ମାଆଟିଏ । ବୟସ୍କା ମହିଳାଟିଏ । ଫ୍ରକ୍ ପିନ୍ଧା ଇତି ଆସି ସାମ୍ନାରେ ଠିଆ ହୋଇଥାଏ । ସେହିଭଳି ଆକାଶ ରହିଛି । ଚନ୍ଦ୍ର ତାରା ଭରା ନୀଳ ଆକାଶ, ତା'ର କ୍ଷୟବୃଦ୍ଧି ନାହିଁ । ସେ କେବେ ସଂସାରର ମଣିଷ, ଜୀବଜଗତ, ବୃକ୍ଷଜଗତ ଭଳି ବୁଢ଼ାହୁଏ ନାହିଁ କି ମରେ ନାହିଁ । କେବେଠୁ ତା'ର ସୃଷ୍ଟି କେଜାଣି । କାଲି ସକାଳେ ମୁଁ ରହିବି ନାହିଁ । ମୋ ଭଳି ସମସ୍ତେ ଯିବେ ପୁଣି ପିଢ଼ୀପରେ ପିଢ଼ୀ ଆସିବେ । ଆକାଶ ସେମିତି ଥିବ । ଚିରନ୍ତନ, ଅନନ୍ୟ, ସୀମାହୀନ ସାଜି ।

ଯେଉଁ ଯେଉଁ ଯାଗାକୁ ମୋର ବଦଳି ହୋଇଛି ଅଥବା ଯେଉଁ ଯେଉଁ ଯାଗାକୁ ବୁଲି ଯାଇଛି ସେଠି ମୁଁ ଆକାଶକୁ ନିରେଖିଛି । ପିଲାଦିନର ଆକାଶ ଓ ବର୍ତ୍ତମାନ ଆକାଶରେ

ପାର୍ଥକ୍ୟ ଖୋଜିଛି । ଅନୁଭବ କରିଛି ସେହି ଏକା ଆକାଶ । କେବଳ ମୋର ହିଁ ପରିବର୍ତ୍ତନ । ବୟସର, ଚିନ୍ତା ଚେତନାର, ମଣିଷର, ଜୀବଜନ୍ତୁର ଯାହା ରୂପାନ୍ତର ଘଟେ । ଆକାଶ ସହ କେବେ ବାପାଙ୍କ ଧୈର୍ଯ୍ୟକୁ ତୁଳନା କରିଛି ତ କେବେ ଆକାଶ ମୋତେ ଆଶ୍ୱାସନା ଦେଇଛି । ଭୂଇଁରେ ଗଡୁଥିବା ପିଲାକୁ ଝାଡି କୋଳକୁ ଉଠାଇ ନେଲା ଭଳି ଆକାଶ ସତେକି ହାତ ବଢ଼ାଇ ମୋତେ କୋଳେଇ ନେଇଛି ମାଆ ଭଳି ।

ରାଉରକେଲାରେ ହଷ୍ଟେଲରେ ଥିଲାବେଳେ, ବରଗଡରେ ଭଡାଘରେ ରହିଲା ସମୟରେ ଛାତ ଉପରେ ସନ୍ଧ୍ୟା ଓ ଅତି ଭୋରରୁ ଉଠି ଚୁପ୍‌ଚାପ୍ ଆକାଶକୁ ଦେଖେ । କେବେକେବେ ପାଞ୍ଚଟା ଆଗରୁ ଉଠି ସୂର୍ଯ୍ୟୋଦୟ ଦେଖେ, ଚା'କପ୍ ନେଇ ଚୁପ୍‌ଚାପ୍ ବସେ । ବେଳେବେଳେ ଲାଗେ ମୋ ଜୀବନର ଉଦାସ ବିଷର୍ଣ୍ଣତା ସହିତ ସତେକି ଆକାଶର ନିବିଡ ସମ୍ପର୍କ ରହିଛି । ଦାର୍ଜିଲିଙ୍ଗ୍, ସିକିମ୍, ଗ୍ୟାଙ୍ଗ୍‌ଟକ୍ ଯିବା ଅବସରରେ ମେଘସବୁ ଓହ୍ଲେଇ ଆସି ତଳେ ଚାଲିବା, କାଞ୍ଚନଜଙ୍ଘା, ଏଭରେଷ୍ଟ ଉପରେ ଥିବା ଧୂଆଁଳିଆ ଆକାଶ ଓ ସୂର୍ଯ୍ୟୋଦୟ ମୋତେ ମୁଗ୍ଧ ବିଭୋର ସ୍ତବ୍ଧ କରିଦେଇଛି । ଏତେ ସୁନ୍ଦର, ଲୋଭନୀୟ ହୋଇପାରେ ଆକାଶ ! ବେଳେବେଳେ ନିରାଶାରେ ଭାଙ୍ଗି ପଡିଲା ବେଳେ ମନକୁ ବୁଝାଇ ନିଏ, ଯେତେ ତାହା ହେଲେବି ମୋ ମୁଣ୍ଡ ଉପରେ ତ ଆଶ୍ୱାସନାର ଆକାଶ ଆଉ ପାଦତଳେ ପ୍ରତିଶ୍ରୁତିର ମାଟି ରହିଛି । ମୋର ଆଉ ଚିନ୍ତା କ'ଣ ?

ଆଉ ଅଛି ଫୁଲ ପ୍ରତି ଦୁର୍ବଳତା । ଫୁଲ ଫୁଟିବା, ଝଡିବା ଭିତରେ ଜୀବନର ଅସମ୍ଭବ ସାମଞ୍ଜସ୍ୟ ମୋତେ ତା' ପାଖକୁ ଟାଣିନିଏ । କିଏ ସତରେ ଫୁଲକୁ ଭଲ ନପାଏ । ରଙ୍ଗବେରଙ୍ଗୀ ଫୁଲର ସମ୍ଭାର ଦେଖି ସେହି ସୃଷ୍ଟିକର୍ତ୍ତା ଈଶ୍ୱରଙ୍କ ପ୍ରତି ମୋର କୃତଜ୍ଞତାରେ ମୁଣ୍ଡ ନଇଁଯାଏ । ଗାଇବାକୁ ଇଛାହୁଏ,

'କି ସୁନ୍ଦର ଆହା କି ଆନନ୍ଦମୟ
ଏଇ ବିଶାଳ ସଂସାର
ଧନ୍ୟ ମହାପ୍ରଭୁ ମହିମା ତୁମ୍ଭର
ଅଟେ ଅନନ୍ତ ଅପାର... ।'

ସଂଗୀତ ପ୍ରତି ମଧ୍ୟ ମୋର ଅସମ୍ଭବ ଦୁର୍ବଳତା । ସଙ୍ଗୀତର ମଧୁର ତଥା କରୁଣ ମୂର୍ଚ୍ଛନା ମୋତେ ପ୍ରେରଣା ଯୋଗାଏ । ତା'ର ଲାଳିତ୍ୟ ସୁର ଧ୍ୱନିରେ ମୁଁ ସମ୍ମୋହିତ ହୋଇଯାଏ । ତାର ସ୍ୱର, ତା'ର ଗଭୀର ଭାବ ମୋତେ କେଉଁ ଅତୀନ୍ଦ୍ରିୟ ଜଗତକୁ ଟାଣିନିଏ । ମୁଁ ମନ୍ତ୍ରମୁଗ୍ଧ ହେଇଯାଏ । ପୁରୁଣା ହିନ୍ଦୀ, ଓଡ଼ିଆ, ବଙ୍ଗଳା ଗୀତ ଆଉ ଗଜଲ

ମୋତେ ବେଶ୍ ଭଲଲାଗେ । ବାଛି ବାଛି ନିଜ ରୁଚିରେ ଆର୍ଟ ଫିଲ୍ମ ଦେଖିଲା ଭଳି ବାଛି ବାଛି ମୁଁ କ୍ୟାସେଟ୍ କିଣେ ଓ ବିଭିନ୍ନ ପରିବେଶ ନେଇ ହିଁ ବଜାଏ । ଭୂପେନ୍ ହଜାରିକା, ମାନ୍ନାଦେଙ୍କ ମଧୁଶାଳାରୁ ଆରମ୍ଭ କରି ରଫି, ତଲତ ମେହେମୁଦ, ନୂରଜାହାଁ, ଲତାମଙ୍ଗେସକର, ହେମନ୍ତ କୁମାର, ଓ.ପି.ନାୟାର ମଦନମୋହନ, ଏସ.ଡି ବର୍ମନ ପ୍ରଭୃତିଙ୍କ ସଂଗୀତ ନିର୍ଦ୍ଦେଶନାରେ ପ୍ରସ୍ତୁତ କ୍ୟାସେଟ୍ ସବୁ ସାଇତିଛି । ଯଦିଓ ନୂତନ ପିଢ଼ି ଏସବୁକୁ ମରହଟ୍ଟୀ କହିପାରନ୍ତି । ଓଲ୍ଡ ଇଜ୍ ଗୋଲ୍ଡ ନ୍ୟାୟରେ ସେସବୁ ମୋର ସାଇତା ପେଡି । କେବଳ ହିନ୍ଦୀ ନୁହେଁ ଓଡ଼ିଆରେ ରଘୁନାଥ ପାଣିଗ୍ରାହୀ, ଅକ୍ଷୟ ମହାନ୍ତି, ନିର୍ମଳା ମିଶ୍ର, ପ୍ରଣବ ପଟ୍ଟନାୟକ, ପ୍ରଫୁଲ୍ଲ କର, ସିକନ୍ଦର ଆଲାମ ପ୍ରଭୃତିଙ୍କ ବିଭିନ୍ନ କ୍ୟାସେଟ୍ ସଂଗ୍ରହ କରିଛି । ପୁଣି ମନର ବୋଝ ହାଲ୍କା କରିବାପାଇଁ ଗଜଲ ଶୁଣେ । ପଙ୍କଜ ଉଦାସ, ଜଗଜିତସିଂହ ଚିତ୍ରାସିଂହ, ରାଜେନ୍ଦ୍ର – ନୀନା ମେହେଟ୍ଟା, ପିନାକ୍ ମସ୍ତାନୀଙ୍କ ପୁରୁଣା ଗଜଲ କ୍ୟାସେଟ୍ ଶୁଣିବାକୁ ଭଲଲାଗେ । ଗୀତର ଲହରୀ ଭିତରେ ମୋର ନିଃସଙ୍ଗତା, ଅସହାୟତା, ଦୁଃଖ, ସ୍ମୃତି, ଭବିଷ୍ୟତର ଅନିଶ୍ଚିତତା ସବୁକିଛି ଏକାତ୍ମ ହୋଇ କୁଆଡେ ମିଳାଇ ଯାଏ । ମୁଁ ଆତ୍ମ ବିଶ୍ୱାସ ଖୋଜିପାଏ । ସଙ୍ଗୀତ ମୋତେ ପ୍ରେରଣା ଦିଏ, ରାସ୍ତା ଦେଖାଏ । କହେ, ଜୀବନ ସତରେ ବଡ ସୁନ୍ଦର, ଆକର୍ଷଣୀୟ । ତାକୁ ସବୁ ସତ୍ତ୍ୱେ ଭଲ ପାଇବାକୁ ପଡିବ । ଜୀବନ ତ ଏକ ଲାଳିତ୍ୟ ଭରା ଗଜଲଟାଏ, ତାକୁ ଗାଇ ନ ପାରିଲେ ବେସୁରା ହେଇଯିବ । କେଉଁଠି ନିଜର ମନପସନ୍ଦ ଗୀତଟିଏ ବାଜୁଥିଲେ କାନ ଆପେ ଆପେ ଟାଣି ହୋଇଯାଏ । ଗୀତ ଭିତରେ ମୁଁ ବଞ୍ଚିବାର କଣିକା ଗୋଟାଏ, ଲେଖିବାର ପ୍ରେରଣା ପାଏ । ବେଳେ ବେଳେ ଭାବେ ସତରେ ଯଦି ଫୁଲ, ଗୀତ, ପକ୍ଷୀ ନଥାନ୍ତେ ତା'ହାଲେ କେମିତି ଲାଗନ୍ତା ଏ ପୃଥବୀ ? କେମିତି ବଞ୍ଚନ୍ତା ମଣିଷ ? ପରମାଣୁର ଭୟାବହତା, ସନ୍ତ୍ରାସବାଦ ସତ୍ତ୍ୱେ ମଣିଷ ଭିତରୁ ସଙ୍ଗୀତ ହଜିନାହିଁ । ପକ୍ଷୀଗୀତ ଗାଇବା ଛାଡି ଦେଇ ନାହିଁକି ଗଛରେ ଫୁଲ ଫୁଟିବା ବନ୍ଦ ହେଇଯାଇ ନାହିଁ । ମଣିଷ ବି ସ୍ୱପ୍ନ ଦେଖା ଛାଡି ଦେଇନାହିଁ । ଏହା ହିଁ ତ ଆଜି ସବୁଠାରୁ ବଡ ଆଶ୍ୱାସନା ।

ପୁଣି ଏକ ବଡ ଦୁର୍ବଳତା 'ବହି' ପ୍ରତି । ଶାଢ଼ୀ, ଗହଣାପ୍ରତି ସେମିତି ଆସକ୍ତି ନାହିଁ ଯେତେଟା ଅଛି ବହି ପ୍ରତି । ପୁସ୍ତକଠାରୁ ବଡ ବନ୍ଧୁ କିଏ ଅଛି ? ଜୀବନର ଯେଉଁ ଝଡ ଝଞ୍ଜା, ସଂଗ୍ରାମର ମୁଁ ସାମ୍ନା କରିଛି, ଧକ୍କା, ଆଘାତ ସହିଛି ତାକୁ ସମ୍ଭାଳି ନେଇଛି ମୋର ପୁସ୍ତକ ପୃଷ୍ଠାରେ ହଜି ଯିବାର ଅଭ୍ୟାସ । ବହି କେବେ ଧୋକ୍କା ଦିଏ ନାହିଁ । ମଣିଷ ଭଳି ସେ ଅବିଶ୍ୱାସୀ ନୁହେଁ କି ଅଣ୍ଟିହୁରୀ ସାଜି ତଣ୍ଟି କାଟେ ନାହିଁ । ଦୁର୍ଦ୍ଦିନରେ ବି

ଛାଡି ପଳାଏ ନାହିଁ । ଯଦିଓ ମୋ ଜ୍ଞାନ ଅତି ସୀମିତ । ଅନେକ କିଛି ପଢ଼ିନାହିଁ କି ଜାଣିନାହିଁ । ମୁଁ ଘୋର ଅଜ୍ଞାନୀ । ପଣ୍ଡିତ ମୂର୍ଖଟାଏ । ତଥାପି ଯେତିକି ପଢ଼ିଛି ସେତିକିରେ ଜୀବନର ନୂଆ ନୂଆ ସନ୍ଧାନ ପାଇଛି । ବହି ମୋ ପାଇଁ ନିର୍ଜୀବ କଳା ଅକ୍ଷରର କାଗଜପୃଷ୍ଠା ନୁହେଁ । ଏହା ଜୀବନ୍ତ, ସମ୍ବେଦନଶୀଳ ଲାବଣ୍ୟ ପ୍ରତିମା । ପ୍ରଥମ ବର୍ଷା-ଭିଜା ମାଟିର ମହକ ଯେମିତି ବାଉଳା କରେ, ଆପଣାର ଆପଣାର ଲାଗେ, ସେମିତି ବହି ମୋର ଅନ୍ତରଙ୍ଗ ବନ୍ଧୁ ପାଲଟି ଯାଇଛି । ଜୀବନର ଅନୁଭବ ସହ ହଜାଇବା ପାଇବାର ଭିନ୍ନ ଭିନ୍ନ ଭାବକୁ ମୁଁ ବିଭିନ୍ନ ବହି ଭିତରେ ଠନଖିଛି ଓ ଜୀବନର ଏତେ ବ୍ୟାପ୍ତି, ବିଶାଳତା, ବିଚିତ୍ରତା ଦେଖି ଆଶ୍ଚର୍ଯ୍ୟ ହୋଇଛି । କେତେ ଜାଣିବାର କଥା ଅଛି ଏ ପୃଥିବୀରେ ! ତା' ତୁଳନାରେ ଜୀବନରେ କେତେ କ୍ଷୁଦ୍ର ! ସାରା ଜୀବନ ପ୍ରତିଟି ମୁହୂର୍ତ୍ତ ଖର୍ଚ୍ଚ କଲେବି ଜ୍ଞାନର ଭଣ୍ଡାରକୁ ପଢ଼ିସାରି ହେବ ନାହିଁ । ନିଜକୁ ବଡ ହେୟ ଲାଗେ ଯେ ମୋ ଜ୍ଞାନ, ଦୃଷ୍ଟିକୋଣ କେତେ ସୀମିତ ବୋଲି । ଜୀବନର ବିବିଧତା, ବିଚିତ୍ରତାକୁ ବର୍ଷବର୍ଷ ଧରି ମୁଁ ବହି ଭିତରେ ହିଁ ଖୋଜି ଚାଲିଛି । ଅନେକାଂଶରେ ପାଇଛି ମଧ୍ୟ । ମୋର ଧାରଣା ପ୍ରତ୍ୟେକ ଲେଖକର, ସହୃଦୟ ପାଠକର ମୋ ଭଳି ନିଶ୍ଚିତ ଭାବରେ ଏ ଦୁର୍ବଳତା ଥିବ । ସେଥିପାଇଁ ତ ଶାଢ଼ୀ, ଗହଣା, କୋଠାବାଡି, ବିଉଟି ପାର୍ଲର, ଟି.ଭି. ଦେଖାସବୁ ଉପରେ ମୁଁ ବହିକୁ ରଖିଛି । ଏହାର ଆକର୍ଷଣ, ଭୂମିକା ମୋ ପାଇଁ ସ୍ୱତନ୍ତ୍ର । ପୃଥିବୀର କୌଣସି ମୂଲ୍ୟବାନ ଚିଜ ମୋ ଦୃଷ୍ଟିରେ ଗୋଟାଏ ଭଲ ବହିର ସମକକ୍ଷ ହୋଇ ନପାରେ ।

ମୋର 'କାକ୍‌ଟସ୍' ନାଁରେ ଗପଟିଏ ଅଛି । ୧୯୯୨ ମସିହାରେ ଗପଟି ଲେଖିଥିଲି । ସେ ଗପରେ ଅତୀତର ପ୍ରେମିକ ପ୍ରେମିକା ସ୍ୱାମୀ ସ୍ତ୍ରୀ ହେଲାପରେ ଏମିତି କିଛି ଝଡ ସୃଷ୍ଟିହୋଇଛି ଯେ ସ୍ୱାମୀ ସ୍ତ୍ରୀଙ୍କର ଛାଡପତ୍ର ହେଇଯାଇଛି । ସ୍ୱାମୀଙ୍କ ଠାରୁ ଦୂରେଇ ଆସିଲା ପରେ ସ୍ତ୍ରୀଟି ବଞ୍ଚିବାର ରାସ୍ତା ଖୋଜିଲା ବେଳେ ବହିକୁ ବନ୍ଧୁ କରି ନେଇଛି । ପନ୍ଦରବର୍ଷ ପରେ ତା' ସ୍ୱାମୀଙ୍କ ସହ ଦେଖା ହୋଇଛି ଓ ସ୍ତ୍ରୀ ଶିଖା ଅତୀତର ସ୍ୱାମୀ ଶେଖରଙ୍କୁ ଆଣି ଡ୍ରଇଂ ରୁମ୍‌ରେ ବସାଇଛି ଯେଉଁଠି ରହିଛି ଗଦା ଗଦା ବହି । ଶେଖର ଆଶ୍ଚର୍ଯ୍ୟ ହୋଇ ପଚାରିଛନ୍ତି, ଏତେ ବହି ! ତମେ ତ ଘରକୁ ଏକ ଲାଇବ୍ରେରୀ କରି ଦେଇଛ ଶିଖା ! ଏସବୁ ତମେ ପଢୁଛ ? ସିଲେଇ, ଘର ସଜାଇବା, ଘର କରଣାରେ ଯେ ତମକୁ ଦିନେ ଆଦୌ ସମୟ ମିଳୁ ନଥିଲା ପଢ଼ାପଢ଼ି କରିବାକୁ ।

ଶେଖରଙ୍କୁ ଚାହିଁ ଶିଖାର କହିବାକୁ ଇଚ୍ଛା ହେଉଥିଲା, 'ବର୍ଷା ଭିଜା ମାଟିର ଗଳି ଯେମିତି ଆପଣାର ଲାଗେ ବହିକୁ ଜୀବନର ବନ୍ଧୁ ଭାବରେ ଗଲା କେତେ ବର୍ଷ ହେଲା

ନିଜର କରି ନେଇଛି । ଦିନେ ବହିକୁ କେବଳ ପ୍ରାଣହୀନ ଅକ୍ଷରର ସମାହାର ବୋଲି ଭାବୁଥିଲି । କିନ୍ତୁ ତମକୁ ହରାଇଲା ପରେ ଯେତେବେଳେ ବଞ୍ଚିବାର ମାଧ୍ୟମ ଖୋଜିଲି ସବୁଠାରୁ ପରମବନ୍ଧୁ ଭାବରେ ଏହି ବହିଗୁଡ଼ିକୁ ହିଁ ବାଛିଲି । କାରଣ ବହି ମଣିଷ ଭଳି କେବେ ଧକ୍‌କା ଦେବ ନାହିଁ କି ଅଧାବାଟରେ ଛାଡ଼ି ଚାଲି ଯିବନାହିଁ ।

ଶିଖା କହିଛି, ଶେଖର ! ଗଲା କେତେବର୍ଷ ଭିତରେ ବିଭିନ୍ନ ପ୍ରକାରର ପୁସ୍ତକ ଅଧ୍ୟୟନ କରିଛି, ତର୍ଜମା କରିଛି । ନିଜର ଅନୁଭବ ସହ ହଜାଇବାର, ପାଇବାର ଭିନ୍ନ ଭିନ୍ନ ଭାବକୁ ତନଖି ଜୀବନକୁ ଅତି ନିକଟରେ କରି ଦେଖିଛି । ନୂଆ ଭାବରେ ଚିହ୍ନିଛି, ଆବିଷ୍କାର କରିଛି । ଜୀବନର ବିବିଧତା, ବିଚିତ୍ରାକୁ ବର୍ଷ ବର୍ଷ ଧରି ବହିର ପୃଷ୍ଠାରେ ଖୋଜି ହୋଇଛି । ଯେତେ ଖୋଜିଛି, ସେତେ ଜୀବନ ନୂଆ ଭାବରେ ଆସି ସାମ୍ନାରେ ଠିଆ ହୋଇଛି । ଶେଖର ! ମୋ ଜୀବନରେ ଯଦି ଏମିତି କିଛି ଘଟି ନଥାନ୍ତା ତେବେ ଜୀବନକୁ ଚିହ୍ନିବାର ଅବସର ମିଳି ନଥାନ୍ତା । ଖାଇବା, ପିନ୍ଧିବା, ସାଜିବାର ସୀମିତ ପୃଥିବୀ ଭିତରେ ମୁଁ ନିଜକୁ ଖର୍ଚ୍ଚ କରି ଦେଇଥାନ୍ତି ।

କହିବା ବାହୁଲ୍ୟ କାକ୍‌ଟସ୍ ଗପରେ ଶିଖାର ଏ ଅଭିବ୍ୟକ୍ତି ମୋ ନିଜସ୍ୱ ଅଭିବ୍ୟକ୍ତି । ବହି ନଥିଲେ, ବହି ପଢୁ ନ ଥିଲେ ପୁଣି ବହି ଲେଖୁ ନଥିଲେ ମୁଁ ବୋଧହୁଏ ବଞ୍ଚିଥାନ୍ତି କି ନା ସନ୍ଦେହ । ମୋ ଜୀବନରେ ଯେତେ ଝଡ ଉଠିଛି ବହି ହିଁ ମୋତେ ସମ୍ଭାଳିଛି । ଯେତେ ଘଟଣା ଘଟିଛି ବହି ହିଁ ମୋତେ ଆଶ୍ୱାସନା ଦେଇଛି । ବିନା ବହିରେ ମୋର ପୃଥିବୀ କାହିଁ ? ବହି ବିନା ଯେ ମୁଁ ସମ୍ପୂର୍ଣ୍ଣ ଅନ୍ଧ । ଯେତେବେଳେ ଭାଙ୍ଗିପଡ଼ିଛି, ବଞ୍ଚିବାର ରାସ୍ତା ପାଇନାହିଁ, ଯେତେବେଳେ ଏକ୍‌ବାର ନିଃସଙ୍ଗ, ଅସହାୟ ମନେ ହୋଇଛି ସେତେବେଳେ ଏହି ବହି ହିଁ ପରମବନ୍ଧୁ ସାଜି ମୋତେ ଆଶ୍ୱାସନା ଦେଇଛି । ପିଠି ସାଉଁଳାଇ ସଳଖି ଠିଆ ହେବାଲାଗି ପ୍ରେରଣା ଦେଇଛି । ମନେ ପଡ଼ିଛି ସଚ୍ଚିରାଉତ ରାୟଙ୍କ ପାଣ୍ଡୁଲିପିରେ ସନ୍ନିବେଶିତ 'ରାଜଜେମା' କବିତାର କେତୋଟି ଧାଡ଼ି

'ତମେ ମୋର ଛାପାବହି ଯେତେବେଳେ ଛୁଅଁ
ଛୁଅଁ ନୂଆ ମଣିଷର ଛାତି ।'

ସତରେ ନୂଆ ମଣିଷର ଛାତିକୁ କେବଳ ବହି ହିଁ ଛୁଇଁ ପାରେ । ନୂଆ ମଣିଷର ଛାତିର କଥା ସେହି ବହି ହିଁ କହିପାରେ । ମୋର ପାଠକମାନଙ୍କୁ ସବିନୟ ଅନୁରୋଧ ବହିକୁ ଜୀବନସାଥୀ ଭଳି ଆପଣାଇ ନିଅନ୍ତୁ । ଜୀବନସାଥୀ ହୁଏତ ବାଟ ଭାଙ୍ଗିଦିନେ ଚାଲିଯିବ ହେଲେ ଏ ଦେହ ପାଉଁଶ ପାଲଟିବା ଯାଏଁ ବହି ସବୁ ମୁହୂର୍ତ୍ତରେ ପାଖେ ପାଖେ ଥିବ । ଜୀବନରେ ସଙ୍ଗୀତ ଗାଉଥିବ । ଜୀବନକୁ ସଙ୍ଗୀତ ମୁଖର କରୁଥିବ ।

# ଚା' କପ୍, ମୁଁ - ସକାଳ

ଚା' ପ୍ରତି ମୋର ବିଶେଷ ଦୁର୍ବଳତା ରହିଛି । ବିନା ଚା'ରେ ସକାଳ କାହିଁ ? ଯେଉଁଦିନ ଚା'ପିଇ ନଥିବି ଫାଳିକିଆ ମୁଣ୍ଡ ଧରିବ । ଆଦୌ ଭଲ ଲାଗିବ ନାହିଁ । ପିଲାଦିନୁ ଚା' ଅଭ୍ୟାସ ଥିବାରୁ ଏହାକୁ ଛାଡିପାରି ନାହିଁ । ପୁଣି ଏମ୍.ଏ.ରେ ହଷ୍ଟେଲରେ ରହି ବେଶି ରାତିଯାଏଁ ପଢ଼ାପଢ଼ି କଲାବେଳେ ନିଦ ନମାଡିବା ପାଇଁ ରାତିରେ ଚା' ପିଆ ହେଉଥିଲା । ତା'ପରେ ଗପଲେଖା ବେଳକୁ ଏ ନିଶାଟା ଆହୁରି ବଢ଼ିଗଲା । ଟେବୁଲ ଉପରେ ଚା' କପ୍‌ଟେ ରଖା ଗଲାପରେ ଗପ ଲେଖାଯାଏ । ମୋର ଅନେକ ଗଳ୍ପରେ ଚା' କିମ୍ବା ଚା'କପ୍ ରହିଛି । ଏପରିକି ଚା' ନାଁରେ ମୋର ଗପଟିଏ ରହିଛି । ଏହି ଚା' କପ୍ ହିଁ କେବେକେବେ ମୋ ଗପର ପରିବେଶ ପାଲଟି ଯାଏ । ମୋର କେତେକ ପାଠକ ଲେଖିଛନ୍ତି, 'ଆପଣଙ୍କ ପ୍ରାୟ ଗପରେ ଚା'କପ୍ ରହିଥାଏ । ଆପଣ କ'ଣ ବେଶି ଚା' ପିଅନ୍ତି ?' ଏପରିକି ଅତୀତରେ କାଦମ୍ବିନୀରେ ମୋର ଚା' ଗପଟି ପ୍ରକାଶ ପାଇଲା ପରେ ଗାଳ୍ପିକ ବିଷ୍ଣୁ ସାହୁ ଲେଖି ଥିଲେ, ମାଡାମ୍ ! ଚମତ୍କାର ହୋଇଛି ଚା' ଗପଟି । ମୋ ଭଳି ଚା' ପିଉ ନଥିବା ଲୋକ ଏବେ ଚା' ପିଇବାର ଅଭ୍ୟାସ କରିବ ।'

ପ୍ରକୃତରେ କୌଣସି ଗପର କଙ୍କାଳ ତିଆରି କରୁଥିଲା ବେଳେ ମୋ ସାମ୍ନାରେ ରହିଥାଏ ବାଷ୍ପଉଠା ଚା' କପ୍ । ଗପଟିଏ ଲେଖିବା ଆଗରୁ ଚା' ତିଆରି କରି ପ୍ରଥମେ ଟେବୁଲରେ ରଖେ । ଢ଼ୋକେ ଢ଼ୋକେ ପିଇବା ଆରମ୍ଭ କରି କେମିତି ଆରମ୍ଭ କରିବି ଚିନ୍ତା କରେ । ଗପ ଲେଖା ଭିତରେ କେବେକେବେ ଦୁଇ ତିନିକପ୍ ଚା' ବି ପିଇଦିଏ । ମୋ ଜୀବନରେ ଚା' କପ୍‌ର ଭୂମିକା କିଛି କମ୍ ନୁହେଁ । ସତରେ ଚା'ଭଳି ପାନୀୟଟା ନଥିଲେ ବୋଧହୁଏ ମୁଁ ଏତେ ମାତ୍ରାରେ ଗପ ଲେଖି ପାରି ନଥାନ୍ତି । ଶୁଣିଛି ଲେଖିବା ଆଗରୁ କି ଗାଇବା ଆଗରୁ କେହି ସ୍ମୋକ୍ କରିଥାନ୍ତି, ଡ୍ରିଙ୍କ୍ ନେଇଥାନ୍ତି । ହୁଏତ ଚା' ହୋଇପାରେ ସେମିତି ମୋ ଲାଗି ଏକ ନିଶା ।

ଯେଉଁଠି କି ଗଲେ ସକାଳୁ ଯଦି ଚା' ନମିଳିଲା ମୁଡ୍ ବିଗିଡିଯାଏ । ଚିଡିଚିଡା ଲାଗେ । କେମିତି ଅଶାନ୍ତିଆ ଅଶାନ୍ତିଆ ଲାଗେ । ଅନ୍ଧାରରୁ ଉଠିବା ମୋର ବହୁବର୍ଷର ଅଭ୍ୟାସ । ନିତ୍ୟକର୍ମ ସାରି ବ୍ରସ୍ କଲା ପରେ ପ୍ରଥମେ ଚା' କପ୍‌ଟି ଦରକାର ହୁଏ । ବାପା ବଞ୍ଚିଥିଲା ବେଳେ କେହି ନ ଉଠିଥିଲେ ବି ବାପା ଉଠିଥାନ୍ତି । ବାପଝିଅ ଆଗେ କପେ କପେ ପିଉ । ପୁଣି ସମସ୍ତେ ପିଇଲା ବେଳେ ଇଚ୍ଛା ହେଲେ ହେଲା ନହେଲେ ନାହିଁ । ଯେହେତୁ ଏହା ମୋର ଗତାନୁଗତିକ ଅଭ୍ୟାସ କିଛି ଜଣାପଡେ ନାହିଁ । ବରଂଚ ପିଇଲେ ସ୍ମାର୍ଟ ଲାଗେ, ହାଲୁକା ଲାଗେ । କେବଳ ଲେଖିବା ବେଳେ ନୁହେଁ ଏକାକୀ

ଚୁପ୍‌ଚାପ୍ ବସିଲା ବେଳେ, ଗୀତ ଶୁଣିଲା ବେଳେ ଚା'କପ୍ ହିଁ ମୋର ସଙ୍ଗ ଦିଏ । ବିଭିନ୍ନ ଡିଜାଇନ୍ ଓ ରଙ୍ଗର ଚା'କପ୍ ମୁଁ ମାର୍କେଟ୍, ମେଳାରୁ କିଣିଥାଏ । ଏହା ସତେ କି ମୋର ଏକୁଟିଆ ପଣକୁ ବାଣ୍ଟି ନିଏ । ମୋର କ୍ଳାନ୍ତି ମେଣ୍ଟାଇ ମନକୁ ହାଲ୍‌କା କରିଦିଏ ।

ସତ କହିବାକୁ ଗଲେ ଚା' କପ୍‌ରେ ହିଁ ମୋର ସକାଳ ହୁଏ ଆଉ ଚା' ନାହିଁ ତ ସକାଳ ନାହିଁ । ଖରା, ବର୍ଷା, ଶୀତ ସବୁ ସମୟରେ (ପେଟ ଖରାପ ବ୍ୟତୀତ) ସକାଳ ପାହିଲେ ଚା' ଦରକାର । ଦରକାର ମାନେ କେହି ତ ଦେବେନି, ନିଜକୁ ହିଁ ବନାଇବାକୁ ପଡେ । ଭାଗ୍ୟବାନ ସେହି ନାରୀ, ସେହି ଲେଖିକା ଯାହାଙ୍କୁ ସକାଳୁ ସକାଳୁ ଅନ୍ୟ ହାତରୁ ନିଜର ଇପ୍‌ସିତ ଚା' କପେ ମିଳିଯାଏ । ସେ ଯାହାହେଉ ଗାଡିରେ ପେଟ୍ରୋଲ ପଡିଲେ ଗାଡି ଯେମିତି ଚାଲେ, ସେମିତି କପେ ଚା' ପେଟରେ ପଡିଗଲେ ଗଧ ଖଟଣି ସକାଳୁ ଆରମ୍ଭ ହେଇଯାଏ । କୁଆଡେ ଗଲେ ଚା' କପେ ଠିକ୍ ସମୟରେ ନ ମିଳିଲେ କି ପିଇ ନଥିଲେ ଭଲ ଲାଗେନି । ମାନ୍ଧାମାନ୍ଧା ଲାଗେ । ମୋ ଗଳ୍ପରେ ସେଥିପାଇଁ ହିଁ ଚା' ପ୍ରସଙ୍ଗ ଆସେ । ନାୟକ ନାୟିକା ବା ଚରିତ୍ରମାନେ ଚା' ପିଉଥାନ୍ତି ବା ଚା'ଧରି ନିଜ ଭାବନାରେ ହଜି ଯାଆନ୍ତି ବା ଚା' କପ୍ ଧରି ଜୀବନର ତର୍ଜମା କରନ୍ତି । ବିଶେଷ କରି ମୋର ପ୍ରାରମ୍ଭିକ ଗଳ୍ପ ୮୦ ରୁ ୯୦ ଭିତରେ ଅନେକ ଗଳ୍ପରେ ଚା' କପ୍ କି ଚା' ପ୍ରସଙ୍ଗ ରହିଛି ।

ମୋତେ ଏକବାରେ ଭୋର ସାଢ଼େ ଚାରିଟା କି ପାଞ୍ଚଟାରେ ନିରୋଳା ସମୟରେ ଲେଖିବାକୁ ଭଲଲାଗେ । ତେବେ ପୁଅର ସ୍କୁଲ ଯିବାଠାରୁ ଅଭ୍ୟାସ ଛାଡିଗଲା । ତଥାପି ଗ୍ରୀଷ୍ମଛୁଟି କିମ୍ବା ଅନ୍ୟାନ୍ୟ ରବିବାର, ଛୁଟିଦିନ ଗୁଡାକରେ ମୁଁ ଭୋରରୁ ଉଠି ଲେଖିବାକୁ ବସିପଡେ । ପୁଅ,ସ୍ୱାମୀ ଶୋଇଥାନ୍ତି ଗାଢ଼ ନିଦ୍ରାରେ ଆଉ ମୁଁ ନିଜକୁ ନିଜ ଇଚ୍ଛାରେ ସାମ୍ରାଜ୍ୟର ସାମ୍ରାଜ୍ଞୀ ବନାଇ ବ୍ରସ୍ ସାରି ଚା' କପ୍‌ଟେ ଧରି ଝରକା ପାଖରେ ବସିପଡେ । ରାତି ଭଲକି ପାହିନଥାଏ । ଫିଟି ପଡୁଥିବା ସକାଳକୁ ଦେଖିବାକୁ ଭାରି ଭଲ ଲାଗେ । କିଚିରି ମିଚିରି ଚଢ଼େଇଙ୍କ କୋଳାହଳ ଭିତରେ ରାତି ମେଲାଣି ନେଉଥାଏ । ସକାଳ ଆସୁଥାଏ ତା'ର ରାଜକୀୟ ଠାଣିରେ । ତା'ରି ଭିତରେ ଚା' କପ୍‌ର ବାମ୍ପ ଓ ଢ଼ୋକେ ଢ଼ୋକେ ପିଇ ମୁଁ ସକାଳକୁ ଚାହିଁ ରହେ । ମନପସନ୍ଦ କ୍ୟାସେଟ୍‌ଟେ ଧୀର ସ୍ୱରରେ ବଜାଉଥାଏ । ଏହି ସମୟ ମୋତେ ଭାବାକୁଳ କରିଦିଏ । ଅନେକ କଥା, ଘଟଣା ମନେପଡେ ଆଉ ବହୁ ସ୍ମୃତିର ଝରକା ଏହି ସମୟରେ ଖୋଲି ଖୋଲି ଯାଏ । ନିଜକୁ ନିଜେ ପଚାରିହୁଏ, ଏ କବିତା ! କୁଆଡେ ଚାଲିଛୁ ? ଏଇ କ'ଣ ତୋର ଇପ୍‌ସିତ ଜୀବନ ? ଏଇ କ'ଣ ତୋର ସ୍ୱପ୍ନର ସବୁଜ ଭୂଇଁ ? ସେ ସବୁର ଉତ୍ତର ମିଳେନା । ମୁଁ

ଜାଣେ କେବେ ବି ମିଳିବ ନାହିଁ ମଧ  । ସେତେବେଳେ କେଜାଣି କେମିତି ଏକ ଖାଲିପଣର ଚାଦର ଘୋଡାଇ ହୋଇପଡେ ଆଉ ମୁଁ ସ୍ମୃତିଆଡୁ ମୁହଁ ଫେରାଇ ଅବଶିଷ୍ଟ ଥଣ୍ଡା ପଡି ଯାଇଥିବା ଚା'ତକ ପିଇନିଏ । ବାସ୍ତବିକ ଚା'କପ୍‌ରେ, ଚା' କପ୍‌ରେ ହିଁ ମୋ ଜୀବନ । ତା'ରି ଭିତରେ ସ୍ମୃତି ବତୁରିଯାଏ । ସ୍ମୃତି ତ ଶବ୍ଦର ଗହନ ବନରେ ଥିବା ନିରବ ନିରବ ଅନୁଭବଟାଏ । ତାକୁ ଚା' କପ୍ ହିଁ ଜୀବନ୍ତ କରିପାରେ,  ଚା' କପ୍ ହିଁ ଭୁଲାଇ ଦେଇପାରେ ।

× × × × ×

ମୋର ଆଉ ଏକ ଦୁର୍ବଳତା ହେଲା 'ନିର୍ଜ୍ଜନତା' ପ୍ରତି । ନିର୍ଜ୍ଜନତାକୁ ମୁଁ ଖୋଜି ହେଉଥାଏ । ଟିକେ ସମୟ ପାଇଲେ ମୁଁ ନିଜକୁ ଅଣ୍ଡାଳି ବୁଲେ । ନିର୍ଜ୍ଜନତା ହିଁ ଭାବନାରୂପକ ଶବ୍ଦ ଗୁନ୍ଥିଦିଏ । ମୁଁ ତା' ପାଇଁ ବ୍ୟାକୁଳ ହେଇ ଉଠେ । ନିର୍ଜ୍ଜନତା ମୋ ସହ କଥା କହେ । ତା'ର ନିରବ ସ୍ପର୍ଶରେ ମୁଁ ଶିହରି ଉଠେ । ନିର୍ଜ୍ଜନ ସମୟରେ ହିଁ ବିଗତଦିନର ଭୁଲା / ଅଭୁଲା କଥା ମନେ ପଡିଯାଏ । ମୁଁ ମନଭରି କାନ୍ଦିପାରେ ଏହି ସମୟରେ । ଯାହାକୁ କେହି ଦେଖି ପାରନ୍ତି ନାହିଁ । ହୁଏତ ସାକ୍ଷୀ ଥାଏ ସେହି ନିର୍ଜ୍ଜନତା । ଏଥିପାଇଁ ମୋତେ ତାକୁ ଭଲଲାଗେ । କାହିଁକିନା ମୋ ଆଖିରେ ଶ୍ରାବଣ ଆସିଲେ ସେ କେବେ ସାନ୍ତ୍ୱନା ଦିଏନା । ଚୁପ୍‌ଚାପ୍ ନିଗିଡି ଯିବାକୁ ଦିଏ । ସହାନୁଭୂତି ଜଣାଇ ସେ ମୋତେ ଦୁର୍ବଳ କରି ଦେବାକୁ ଚାହେଁନା । ମୁଁ ତା' ପାଖରେ ମେଘମୁକ୍ତ  ଆକାଶଟିଏ ପାଲଟିଯିବା ପାଇଁ ହିଁ ବର୍ଷି ଯାଏ । ସେ ଚୁପ୍‌ଚୁପ୍ ଭିଜୁ ଥାଏ ମୋ ଆଖିର ବର୍ଷାରେ । ଆଉ ସେ ବର୍ଷା ସୁଅରେ ସ୍ମୃତିର କାଗଜ ଡଙ୍ଗା ସବୁ ଭାସିଯାଏ  । କେବେ ସେ କାଗଜଡଙ୍ଗା ସାଦା କାଗଜର ଫର୍ଦ୍ଦ ପାଲଟି ଯାଏ ଆଉ ମୁଁ ହାଲ୍‌କା ହେଇଯାଏ । ଜୀବନର ଯେତେ ଉପରକୁ ମୁଁ ଉଠି ଚାଲିଛି ମୋର ନିର୍ଜ୍ଜନତା ସେତେ ଆପଣାର ହୋଇଉଠିଛି । ବେଳେବେଳେ ମୁଁ ଆତଙ୍କିତ ହୋଇଉଠେ, ନିର୍ଜ୍ଜନତା ମୋତେ ଶେଷକରି ଦେବନି ତ ? ଏକାନ୍ତ ସମୟରେ ହିଁ ମୁଁ ଗପର ପ୍ଲଟ୍ ସଜାଡେ, ଜୀବନକୁ ପରଖେ ଆଉ ସ୍ମୃତି ପଖାଳେ । ତେଣୁ ନିର୍ଜ୍ଜନତା ବି ମୋ ବନ୍ଧୁପାଲଟି ଯାଇଛି ।

ମୁଁ ସବୁବେଳେ ସ୍ୱପ୍ନ ଦେଖେ ଦୁଇପାଖେ ଜଙ୍ଗଲ । ଲମ୍ବିଯାଇଛି ଲମ୍ବା ସଡକ ଆଉ ମୁଁ ଧଇଁସଇଁ ହୋଇ ଧାଇଁଛି ଏକାକୀ । ଏ ସ୍ୱପ୍ନ ବାରମ୍ବାର ଆସି ମୋ ଚେତନାକୁ ଆଚ୍ଛନ୍ନ କରେ । ବାରମ୍ବାର ଦେଖେ । ଏହା କ'ଣ ମୋର ନିର୍ଜ୍ଜନ ଜୀବନର ଝଲକ ଯାହା ସ୍ୱପ୍ନରେ ଆସେ ?

# ସାତ

ଜୀବନରେ ମୋର କୌତୂହଳ ଆଉ ଅନ୍ୱେଷାର ଶେଷ ନାହିଁ । ଅନେକ ହରାଇବା ଭିତରେ ପାଇବାର ଆଶା ହିଁ ମୋତେ ଆଗେଇ ନେଇଛି । ଛୋଟଛୋଟ ଘଟଣା, ଦୃଶ୍ୟ, ଅନୁଭୂତି ମୋ ଭିତରେ ଦାନା ବାନ୍ଧି ଯାଇଛି । ସମୟ ଖସି ପଡିଛି ସ୍ମୃତିର ମଉଳାଫୁଲ ସାଜି ।

ଓଡ଼ିଶାର କେତେଜଣ ଲେଖକଙ୍କ ସହିତ ମୋର ଆକସ୍ମିକ ଭାବରେ ସାକ୍ଷାତ ହୋଇଛି । ଏହି ଆକସ୍ମିକତା ହିଁ ମୋ ଜୀବନର ଏକ ଏକ ସ୍ମରଣୀୟ ଘଟଣା ପାଲଟି ଯାଇଛି । ଅନେକଙ୍କ ଲେଖା ପଢ଼ିଲେ ଓ ସେ ଲେଖା ଗଭୀର ଭାବରେ ପ୍ରଭାବିତ କଲେ, ସେମାନଙ୍କୁ ଦେଖିବାକୁ, ଜାଣିବାକୁ ମନରେ ଅସୀମ ଆଗ୍ରହ ଜାତ ହୋଇଥାଏ । ଯଦିଓ କାହାରି ବ୍ୟକ୍ତିଗତ ଜୀବନ, ଧନ୍ଦା ସହିତ ପରିଚିତ ହେବାକୁ ଚାହେଁନା । ତାହାଲେ ସେହି ଲେଖକଙ୍କ ପ୍ରତିଭାକୁ ଭଲ ପାଇବାଟା ନଷ୍ଟ ହୋଇଯିବ । କଳାକାର ପ୍ରତି ଶ୍ରଦ୍ଧା କମିଯିବ । ମୋ ମତରେ ଫୁଲର ବାସ୍ନାରେ ମୁଗ୍ଧ ହୁଅ, ଫୁଲ ପାଖକୁ ଯାଅନା କି ତାକୁ ସ୍ପର୍ଶ କରନା, ଛିଣ୍ଡାଅନା । ଦୂରତ୍ୱରେ ହିଁ ମଧୁରତା । ତେଣୁ ତ ବଡ ବଡ କବି ଲେଖକମାନେ କହି ଯାଇଛନ୍ତି 'ଦୂରପର୍ବତ ସୁନ୍ଦର' । ତଥାପି ମୋ ମତରେ ନିରୁତା ଲେଖକଟିଏ ଯାହା ଲେଖୁଛି, ଯେଉଁ ଆଦର୍ଶର ପ୍ରକ୍ଷାଳନ କରୁଛି ତାକୁ ସେ ନିଜ ଜୀବନରେ ପ୍ରଥମେ ପାଳିବା ଦରକାର । ଲାଞ୍ଚୁଆ ହୋଇ ଲାଞ୍ଚ ବିରୋଧରେ ଲେଖିବାଟା ନିଜ ସହ ପ୍ରତାରଣା ନୁହେଁ ତ ଆଉ କ'ଣ ? ସେଥିପାଇଁ ହିନ୍ଦୀରେ ଏକ ନୀତିବାକ୍ୟ ରହିଛି । ହମାରା ଜୀବନ୍ ବୈସାହୀ ହୋତା ହେ ଯୈସା ହମାରା ବିଚାର ଉସେ ବନାତା ହୈ ।'

ଜଣେ ଲେଖକଙ୍କ ସହିତ ବାଣୀବିହାର ପଢ଼ିଲା ବେଳେ ଆକସ୍ମିକ ଦେଖାହୁଏ । ନୂଆ ନୂଆ ଆସିଥାଏ ଭୁବନେଶ୍ୱର । ଆଜିଭଳି ଏତେ ଭିଡ, ଗାଡିମଟରର ଗହଳି, ଦୋକାନ ବଜାର ଖୁନ୍ଦିଖାନ୍ଦି ହେଇ ନଥିଲା ଭୁବନେଶ୍ୱର । ୧୯୮୧ର କଥା । ମାର୍କେଟ ବିଲଡିଂରେ ଥିଲା ଏକ ବହିଦୋକାନ । ଦୋକାନର ନାଁ ଥାଏ 'ନବପ୍ରଭାତ' । ବେଶ୍ କାବ୍ୟିକ ନାଁ । ସକାଳ ପୁରୁଣା ହୁଏ ନାହିଁ ଏଠି । ଦୋକାନରେ ପହଁଞ୍ଚି ଦୋକାନୀଙ୍କୁ ବହିର ଯେଉଁ ତାଲିକା ଦେଲି ସେ ବହିସବୁ ପ୍ରାୟ ନଥିଲା ସେଠି । ସେ କହିଲେ, ଅମୁକ ତାରିଖରେ ଆସନ୍ତୁ ବହିଗୁଡିକ ମଗାଇ ଦେଇଥିବି । ନିର୍ଦ୍ଦିଷ୍ଟ ଦିନର ଦୁଇ ତିନିଦିନ ପରେ ଗଲି । ଦୋକାନୀ କିନ୍ତୁ ମୋତେ ନିରାଶ କଲେ । ପୁଣି ସେ ଏକ ତାରିଖ ଦେଲେ । ସେ ତାରିଖରେ ବି ବହି ଆସିନଥିଲା । ମୁଁ ଚିଡିଗଲି । କହିଲି, ଆପଣ ଯଦି ବହି ମଗାଇ ନ ପାରିବେ ମନା କରି ଦେଉନାହାଁନ୍ତି । ଅମୁକ ଦିନ ସମୁକ ଦିନ ଆସନ୍ତୁ କହୁଛନ୍ତି କାହିଁକି ?

'ନବପ୍ରଭାତ' ଦୋକାନର ନାଁ ରଖିଛନ୍ତି ଆଉ ଲୋକଙ୍କ ନିରାଶ କରୁଛନ୍ତି ? ଏହାଠୁ ଦୋକାନ ନ କରିବା ଭଲ । ଦୋକାନୀ ଜଣକ ମୋର ଠାଏ କଥାରେ ଚମକୃତ ହେଲେ । କହିଲେ, ଆପଣ କ'ଣ ନୂଆ ଆସିଛନ୍ତି ? କାହିଁ ଆଗରୁ ତ କେବେ ଦେଖି ନଥିଲି? କହିଲି, ମୁଁ ନୂଆ ଆସେ କି ପୁରୁଣା, ସେଥିରେ ଆପଣଙ୍କର ଯାଏ ଆସେ କେତେ ? ଆଛା କହନ୍ତୁ, କେବେ ବହି ଆଣିବେ ? ଫେରି ଆସିଲା ବେଳେ ଟିକେ ନମ୍ର ପଡି କହିଲି ହଁ, ବାଣୀବିହାରରେ ଓଡ଼ିଆ ଏମ.ଏ.ରେ ଏଇ ବର୍ଷ ନାଁ ଲେଖାଇଛି ।

ନିର୍ଦ୍ଦିଷ୍ଟ ତାରିଖରେ ପୁଣି ଗଲି । ମୁଁ ରହୁଥାଏ ମାର୍କେଟ୍ ବିଲଡିଂର ଠିକ୍ ପଛପଟ କ୍ୱାର୍ଟରରେ ବଡ ବାପାଙ୍କ ଘରେ । ହଷ୍ଟେଲ ମିଳି ନଥାଏ । ଟାଉନ ବସ୍‌ରେ ଯିବା ଆସିବା କରୁଥାଏ । 'ନବପ୍ରଭାତ' ହିଁ ସେତେବେଳେ ଥିଲା ଏକମାତ୍ର ବହି ଦୋକାନ ଯିଏ ପଢ଼ା ବହି ରଖୁଥାଏ । ସେଠି ଯାଇ ଦିନେ ଦେଖିଲି ୧୯୮୧ ମାର୍ଚ୍ଚ ଝଙ୍କାର ସଂଖ୍ୟାଟି ଦୋକାନର ସାମ୍ନା ଡେକ୍‌ସରେ ମେଲା ହୋଇ ରହିଛି । ' ମୋ ସ୍ମୃତିର ସହର' ଗଳ୍ପଟିର ବିଭିନ୍ନ ଧାଡିରେ ନାଲିଗାରମାନ ଟଣା ହୋଇଛି । ସେ ମୋ ନାଁ ଜାଣି ନଥିଲେ କି ମୁଁ ତାଙ୍କ ନାଁ ଜାଣି ନଥିଲି । ହଠାତ୍ କି ସେ ଗପଟା ମୋ ଲେଖା ବୋଲି କହିଲି ନାହିଁ । ସେ କହିଲେ ଏ ଗପଟା ପଢ଼ିଛନ୍ତି ? ଇଏ କିଏ ଜାଣନ୍ତି ? ବାଣୀବିହାର, ଓଡ଼ିଆ ବିଭାଗ ଲେଖାଯାଇଛି । ଆଗରୁ ତ କବିତା ବାରିକ ନାଁରେ କୌଣସି ଗପ ପଢ଼ି ନାହିଁ ? ଭାଷା, ବର୍ଣ୍ଣନା ଆଉ ନିସଙ୍ଗତାର ଚମତ୍କାର ଅଭିବ୍ୟକ୍ତି ରହିଛି । ଗପଟା ଉପରେ ଆଲୋଚନା, ସମାଲୋଚନା ଶୁଣି କହିଲି, ହଁ ସେ ମୋ କ୍ଲାସ୍‌ରେ ନାଁ ଲେଖାଇଛନ୍ତି । କହିବେ ତ କେବେ ତାଙ୍କୁ ନେଇ ଆସିବି ।

ତାପରେ ସେ କହିଲେ, ଆପଣ ଉପନ୍ୟାସ ପଢ଼ନ୍ତି ? କହିପାରିବେ କେଉଁ କେଉଁ ଉପନ୍ୟାସ ଭଲ ଲାଗେ ଓଡ଼ିଆର !

କହିଲି, ଅମାବାସ୍ୟାର ଚନ୍ଦ୍ର, ଝଞ୍ଜା, ଶାସ୍ତି, ନୀଳଶୈଳ, ଚଲାବାଟ, ଅମଡାବାଟ, ଅନ୍ଧମୁହାଁଣୀ, ବଧୂ ନିରୂପମା...

ସେ କହିଲେ, ଅନ୍ଧମୁହାଁଣୀ ପଢ଼ିଛନ୍ତି ତା'ହାଲେ ?

ହଁ, କେବଳ ପଢ଼ି ନାହିଁ, ତା'ର ବେତାର ରୂପାନ୍ତର କଟକ ଆକାଶବାଣୀରୁ ମଧ ଶୁଣିଛି । ବାସ୍ତବିକ ଦେବ୍ରାଜ ଲେଙ୍କାଙ୍କ ଅନ୍ଧମୁହାଁଣୀ ଚମତ୍କାର ହୋଇଛି । ଔପନ୍ୟାସିକଙ୍କ ଉପରେ ମୁଁ ମୋର ଟୀକା ଟିପ୍ପଣୀ ଦେଇ ଚାଲିଲି । ତା'ପରେ ସେଠୁ ଚାଲି ଆସିଲି । ପରବର୍ତ୍ତୀ ସମୟରେ 'ନବପ୍ରଭାତ'ରେ ପହଞ୍ଚିଲା ମାତ୍ରେ ସେ କହିଲେ କବିତା ଦେବୀ ନମସ୍ତେ । ଆଶ୍ଚର୍ଯ୍ୟ ହେଲି ମୋ ନାଁ ଶୁଣି । ସେ ହସି ହସି କହିଲେ 'ସ୍ମୃତିର ସହର'

ଗପଟି ଲେଖି କହି ନଥିଲେ ନା ? କ'ଣ ନାଁ କବିତା ବାରିକଙ୍କୁ କହିବେ ତ ଦିନେ ନେଇ ଆସିବି । କି ଧୋକ୍‌କା । ଆପଣ ସେଦିନ ଦୋକାନରୁ ଯିବା ପରେ ପରେ ବାଣୀବିହାରର ଓଡ଼ିଆ ବିଭାଗର ଜଣେ ଛାତ୍ର ରଜନୀରଂଜନ ପହଁଞ୍ଚିଲେ । ସେ ଝଙ୍କାର ଗପଟି ଦେଖି କହିଲେ, ଏଇତ ଏ ଗପର ଲେଖିକା ଆପଣଙ୍କ ଦୋକାନରୁ ଗଲେ । ଏ ବର୍ଷ ଓଡ଼ିଆ ଅନର୍ସରେ ବାରିପଦା ଏମ୍‌.ପି.ସି କଲେଜରୁ ଫାଷ୍ଟକ୍ଲାସ୍ ଫାଷ୍ଟ ହେଇ ନାଁ ଲେଖାଇଛନ୍ତି । ଲଜ୍ଜିତ ହେଲି ଧରା ପଡିଗଲି ବୋଲି । କହିଲି, ନୂଆ ନୂଆ ଲେଖୁଛି ତ । କହିବାକୁ ଲାଜ ଲାଗିଲା । ଆଛା ଆପଣ କ'ଣ ପଢ଼ାପଢ଼ି କରନ୍ତି ?

- ମାନେ ?

- ବହିଦୋକାନୀ କିନ୍ତୁ ସାହିତ୍ୟ ପ୍ରତି ଆପଣଙ୍କ ଆଗ୍ରହ ଦେଖି କହିଲି । ସାଧାରଣ ଦୋକାନୀମାନେ ବ୍ୟବସାୟ ପ୍ରତି ଅଧିକ ଧ୍ୟାନ ଦିଅନ୍ତି ।

ତାପରେ ସେ ଯେତେବେଳେ ନିଜର ପରିଚୟ ଦେଲେ ମୁଁ ଆକାଶରୁ ଖସିପଡ଼ିଲି । ବିଶ୍ୱାସ କରି ପାରିଲି ନାହିଁ । ଅନ୍ଧମୁହାଁଣୀର ଲେଖକ ସ୍ୱୟଂ ଦେବ୍ରାଜ ଲେଙ୍କା ଯାହାଙ୍କୁ ପ୍ରଥମରୁ ବହି ଦୋକାନୀଟେ ଭାବି କେତେ କ'ଣ ଭଲମନ୍ଦ କହି ଦେଇଛି ।

ତା'ପରେ ମୋର ସେହି ପ୍ରିୟ ଲେଖକଙ୍କ ସହିତ ପରିଚୟ ଗଢ଼ି ଉଠିଲା । ମିଜାଜୀ, ଶବ୍ଦର ବାଦଶାହୀ ଖୋଲାମନର ମଣିଷ ସେ । ଆପଣାର ଭାବ ଗଦେଇ ପଡେ ଲେଖକ ଲେଖିକାମାନଙ୍କୁ ଦେଖି । ସେମାନେ ଯଦି ତରୁଣ ତରୁଣୀ ହେଇଥାନ୍ତି ତ ସେ ଆହୁରି ପିଲା ହୋଇଯାନ୍ତି । ତାଙ୍କ ମତରେ କଳାକାର କେବେ ବୁଢ଼ା ହୁଏନା । ପୁଣି ସେ ଯଦି ଲେଖକ ହୋଇଥାଏ ତ ତାରୁଣ୍ୟର ପାହାଚ ଡେଇଁ ପାରେନା । ସେତେବେଳେ ମୋର ଝଙ୍କାର, ଇସ୍ତାହାର, ସୁଚରିତା, ଗୋଂକର୍ଣ୍ଣିକା ପ୍ରଭୃତିରେ ନୂଆ ନୂଆ ଯେଉଁ ସବୁ ଗଳ୍ପମାନ ପ୍ରକାଶ ପାଉଥିଲା ତାକୁ ନେଇ ତାଙ୍କ ସହ ଆଲୋଚନା କରୁଥିଲି । ସେ ଆପଣରୁ 'ତୁ'କୁ ଓହ୍ଲାଇ ଆସିଥିଲେ । ନୂଆ ହୋଇ ତାଙ୍କର 'ଜୋକର' ଉପନ୍ୟାସଟା ପ୍ରକାଶ ପାଇଥାଏ । ତାପରେ ବାହାରିଲା 'ଖେଳ' । ଲେଖା ଚାଲିଥାଏ ଧୂର ପୃଥିବୀର ତରା... ହୋ... ହୋ... ହା... ହା... ଠାଏ... ଠାସୁସ୍... ଭଳି ଶବ୍ଦ । ସିଧାସଳଖ ନୁହେଁ ଅରମାବାଟର ରାସ୍ତା ସେ ବାଛି ନେଇଥାନ୍ତି । କଥାରେ ଓସ୍ତାଦ୍, ଶବ୍ଦ ଚମକରେ ଓସ୍ତାଦ, ଆପଣାଇ ନେବାରେ ବି ଓସ୍ତାଦ । ଯୁବପିଢ଼ୀଙ୍କ 'ଆଇକନ୍' ଯିଏ ନିଜକୁ କୃଷକ ବୋଲି କହି କୁଶପଙ୍ଗିରୁ ଆସି ମହାନଦୀର ଗୀତ ଶୁଣୁଥାନ୍ତି । ନିଜ ନାଁକୁ ଦେବରାଜରୁ 'ଦେବ୍ରାଜ' କରି ସ୍ଥାଣୁ ରାଜପଣର ଅଚଳାୟତନକୁ ବିଦ୍ରୂପ କରିବାର ଏକ ବେପରୱା ବିନ୍‌ଦାସ୍ ମିଜାଜ ପୋଷଣ କରନ୍ତି । ବିଭିନ୍ନ ଫେଚ୍‌କାମିରେ ସେ ଶବ୍ଦ ଯୋଡନ୍ତି, ରାଜକୀୟ ଠାଣିରେ ଚା' ପିଅନ୍ତି, ଚା'

ପିଆନ୍ତି । ସୃଜନଶୀଳତାକୁ ଠାବ ଦେବାର ଏଭଳି ବେପରୱା ମିଜାଜ୍ ଓଡ଼ିଆ ସାହିତ୍ୟରେ ଆଉ କାହାଠାରେ ଦେଖାଯାଏ ନାହିଁ । ନୀତି, ସଂସ୍କାର ଠିକ୍ ଓଲଟା । ଆଦର୍ଶ ଫାଦର୍ଶ, ପାପପୁଣ୍ୟ ସବୁ କୁଆଡେ ବହିର ଭାଷା । ତାଙ୍କ ମତରେ 'ସାହିତ୍ୟ ଗୁଡା ଆଜି ଏସି ଘରର ଲବିରେ, ମାର୍ ସେ ସରସ୍ୱତୀକୁ ।'

ପରିଚୟ ହେଲାପରେ ଦେବ୍ରାଜ ଲେଙ୍କା ମୋତେ କବି ଡାକିଲା ବେଳେ ମୁଁ ତାଙ୍କୁ ରାଇଟର ସମ୍ବୋଧନ କରୁଥିଲି । କହିଲେ ତୁ ଉପନ୍ୟାସ ଲେଖ୍ । ମୁଁ କହିଲି ବିଏ ପରେ ଗୋଟେ ଉପନ୍ୟାସ ଲେଖିଛି 'ନେପଥ୍ୟେ ଗୀତି' । କିନ୍ତୁ କାହାକୁ ପଢ଼ିବାକୁ ଦେଇନାହିଁ । ସେ କହିଲେ ଆଣ୍ ତ ଦେଖିବା । ତାପରେ ଆମୂଳଚୂଳ ପଢ଼ି କହିଲେ ସବୁ ଚରିତ୍ର ସ୍ୱଗତ ଉକ୍ତ କରି ନିଜକଥା କହିବାର ଧାରା ଏକ ଉଚ୍ଚ ମନସ୍ତାତ୍ତ୍ୱିକ ଉପନ୍ୟାସର ଦାବିକରେ । ଏ ଧାରାରେ ତ ଉପନ୍ୟାସ ଲେଖା ଯାଇନାହିଁ । ତେବେ ଯାର ନାଁ 'ପର୍ଦ୍ଦାପଛର ଗୀତ' ରଖାଯାଉ ।

- କହିଲି, ହେଲେ ମୋ ବହି କିଏ ଛପାଇବ ?

- ଯେକୌଣସି ପ୍ରକାଶକ । ବୁକ୍ସ ଏଣ୍ଡ ବୁକ୍ସ, ଓଡ଼ିଶା ବୁକ୍ଷ୍ଟୋର । ତାଙ୍କର 'ଜୋକର' ବହିଟା ସେତେବେଳେ 'ବୁକ୍ସ ଏଣ୍ଡ ବୁକ୍ସ' ଛାପିଥାଏ । ବୁକ୍ସ ଏଣ୍ଡ ବୁକ୍ସ ସହିତ ସେ କଥାହେଲେ । ବହି ଛାପିବାର ବନ୍ଦୋବସ୍ତ ହେଲା । ତାଙ୍କର ଆଗ୍ରହ, ବହିଟି ପ୍ରକାଶ ପାଇବା ଲାଗି ଉଦ୍ୟମ ମୋର ଭୁଲିବାର ନୁହେଁ । ସେ ଯଦି ଚେଷ୍ଟା କରି ନଥାନ୍ତେ ତା'ହାଲେ ଓଡ଼ିଶାର ପ୍ରକାଶକମାନେ କ'ଣ ଏତେଶୀଘ୍ର ମୋତେ ଚିହ୍ନି ଥାନ୍ତେ ?

ବହିଟି ପ୍ରକାଶ ପାଇଲା ୧୯୮୧ରେ ମୁଁ ବାଣୀ ବିହାରରେ ଏମ୍.ଏ. ଛାତ୍ରୀଥିବା ସମୟରେ । କିନ୍ତୁ ବହିର ନାଁ ହୋଇଗଲା 'ପର୍ଦ୍ଦା ପୁରର ଗୀତ' । ଓଡ଼ିଶାର ପ୍ରକାଶକ ଏତେ ଯତ୍ନହୀନ ହୋଇପାରନ୍ତି ମୋର ଧାରଣା ନଥିଲା । ଅଶୁଦ୍ଧି ଦେଖିବି କଭର ନ ବଦଳାଇ ଛାପିଦେବାଟା ମୋତେ ଆଶ୍ଚର୍ଯ୍ୟ, କରିଥିଲା । ଶୁଣିଥିଲି ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସ ଟୋପାଏ ସିନ୍ଦୂର, ଦିପଟ ଶଙ୍ଖା ବି କୁଆଡେ 'ଟୋପାଏ'କୁ 'ଠୋପାଏ' ବୋଲି ଛପା ହୋଇଥିଲା । ସେ ଯାହା ହେଉ ମୋର ପ୍ରଥମ କରି ପୁଣି ଛାତ୍ରୀ ଜୀବନରେ ବହି ବାହାରିବା ଥିଲା ମୋ ପାଇଁ ସବୁଠୁ ବଡ ଗୌରବ । ଛାତିରେ ଚାପିଧରି ସେଦିନ ଯେଉଁ ଆନନ୍ଦ ମିଳିଥିଲା ତାହା ପ୍ରକାଶ କରି ହେବନାହିଁ । ମୋ ବହିଟା ମୁଁ ମୋର ସ୍ୱର୍ଗତା ମା'ଙ୍କୁ ଉତ୍ସର୍ଗ କରିଥିଲା । ପ୍ରଥମ କପି ବାପାଙ୍କ ପାଖକୁ ପଠାଇଥିଲି ।

ଯେଉଁଦିନ ଦେବ୍ରାଜ ଲେଙ୍କାଙ୍କୁ 'ପର୍ଦ୍ଦାପଛର ଗୀତ' ଉପନ୍ୟାସଟି ଦେଇଥିଲି ଆନନ୍ଦରେ ମୋର ଆଖି ଛଳଚଳ ହୋଇ ଉଠୁଥିଲା । ସେ ଆଶୀର୍ବାଦ କରି କହିଥିଲେ,

'ମୁଁ ଏବେଠୁ ଦେଖିପାରୁଛି ତୁ ଦିନେ ଖୁବ୍ ପ୍ରତିଷ୍ଠିତା ଲେଖିକା ହେବୁ । ଓଡ଼ିଶାର ସବୁ ଲେଖିକାଙ୍କୁ ପାର୍ ହୋଇଯିବୁ । ଖୁବ୍ ନାଁ କରିବୁ । କିନ୍ତୁ ତୁ ଯେତେବେଳେ ଆକାଶର ଗୁଡି ହୋଇଯିବୁ ମାଟି ଉପରେ ଠିଆ ହେଇ ମୁଁ ହିଁ ଯେଉଁଠି ଥିଲେ ସବୁଠୁ ବେଶି ଖୁସି ହେବି । ତୁ ସେତେବେଳେ ମୋତେ ମନେ ବି ପକାଇ ପାରୁନଥିବୁ ।' (ଯଦିଓ ମୁଁ ଆକାଶର ଗୁଡି ହୋଇନି କି ତାଙ୍କୁ ଭୁଲିନାହିଁ)

କହିଥିଲି ଆପଣ ମୋର ଯେଉଁ ଉପକାର କରିଛନ୍ତି...

ସେ କହିଥିଲେ, କି ଉପକାର ? ବହି ପ୍ରକାଶନ ? ଆଜି ନ ହେଲେ କାଲି ତୋ ବହି ନିଶ୍ଚେ ପ୍ରକାଶ ପାଇଥାନ୍ତା । ଝରଣାର ସ୍ରୋତକୁ ପଥର ଖଣ୍ଡେ ପକାଇ କ'ଣ କେବେ ବାନ୍ଧିହୁଏ ? ତେଣୁ ଏଇଟା ଉପକାର ନୁହେଁ ।

ତାଙ୍କୁ ମୁଁ ରାଇଟରେ ବୋଲି ଡାକୁଥିବା କଥା ପ୍ରଥମରୁ କହିଛି । ସତରେ ରାଇଟରେଙ୍କ ବ୍ୟକ୍ତିତ୍ୱ ବିଚିତ୍ର ଓ ମିଜାଜୀ । ଖୋଲା ହୃଦୟରେ ହୋ ହୋ ହୋଇ ସେ ସମସ୍ତଙ୍କୁ ଆପଣାଇ ନିଅନ୍ତି । ତରୁଣ ଲେଖକ ଦଳ ଆଜି ବି ତାଙ୍କୁ କେନ୍ଦ୍ର ବିନ୍ଦୁ କରିଥାନ୍ତି । ସେତେବେଳେ ଆମ ଉପର ବେଚ୍‌ର ରଜନୀରଂଜନ (ଗୀତିକାର ଡ.ରଜନୀରଂଜନ) ପୁଣି ଅଜୟ ସ୍ୱାଇଁ, ସୁନୀଲ ପୃଷ୍ଟି, ଗିରିଜା ବଳିୟାର ସିଂ, ଭୀମ ପୃଷ୍ଟି ପ୍ରଭୃତିଙ୍କ ଆଡ୍‌ଡା ନବ ପ୍ରଭାତରେ ଖୁବ୍ ଜମୁଥିଲା । ଚା' ମଗାଯାଉଥିଲା । ବହି କିଣିବାକୁ ଆସୁଥିବା ଗ୍ରାହକମାନଙ୍କୁ ସେ ଫେରାଇ ଦେଉଥିଲେ । ସାହିତ୍ୟ ପାଖରେ ବ୍ୟବସାୟର ସ୍ଥାନ ନାହିଁ । ସେଦିନର ବାଣୀବିହାରର ତରୁଣ ଓଡିଆ ଛାତ୍ର ଦଳ ଆଜି ଜଣେ ଜଣେ ପ୍ରତିଷ୍ଠିତ ଗାଳ୍ପିକ, କବି । ଆଜି ତାଙ୍କ କଥା ଲେଖିଲା ବେଳେ ବାଣୀବିହାରର ସେଦିନ ସବୁକୁ ସତେ କି ମୁଁ ଛୁଇଁ ଯାଉଛି । ନବ ପ୍ରଭାତରେ ସତେ କି ଠିଆ ହୋଇଛି । ମୋ ଗପର ଟ୍ରାଜେଡି ଦେଖି ସେ ସବୁବେଳେ କହୁଥିଲେ, କିଏ ଜୀବନରେ ନହରାଇଛି ? ତା' ବୋଲି ଭାଙ୍ଗିପଡିବ ? କେବେ ନୁହେଁ । ତୁ ମରୁଭୂମିରେ କଣ୍ଟା ଦେଖୁଛୁ କିଆଁ ? ମରୁଭୂମିରେ ଫୁଲ ଫୁଟିବାର ଦେଖ୍ । ତାହା ହିଁ ଜୀବନ । ଜୀବନରେ ଆଦୌ ଦୁଃଖ ନାହିଁ । ଆଜି ଖୁସି, କାଲି ଖୁସି ସବୁଦିନ ଖୁସି । ସେ ନିଜକୁ ଜଣେ ନବାବୀ ରାଇଟର ବୋଲି କହିଥାନ୍ତି ଓ ମୋତେ ଅହଙ୍କାରୀ ବୋଲି ଚିଡାଇଥାନ୍ତି ।

ଜୀବନ କେତେ ବ୍ୟାପକ, ଜୀବନ କେତେ ସୁନ୍ଦର ତାଙ୍କ ସହ ଗପିଲା ବେଳେ ସେ ବିଭିନ୍ନ ଦୃଷ୍ଟାନ୍ତ ଦେଇ ଦେଖାଉଥିଲେ । ସେ ମୋର ଥିଲେ ସବୁଠାରୁ ବଡ ସମାଲୋଚକ ପୁଣି ପ୍ରଶଂସକ । 'ନବ ପ୍ରଭାତ' ସତରେ ସେତେବେଳେ ଥିଲା ମୋ ପାଇଁ ଏକ ବଡ ଆକର୍ଷଣ । ବାଦଶାହା ଠାଣିରେ ଠିଆ ହୋଇଥିବା ହସହସ ମୁହଁରେ ଆଶୀର୍ବାଦ ଠାଣିରେ

ସ୍ୱାଗତ କରୁଥିଲା । ଥରେ ମୋର ଜଣେ ବାନ୍ଧବୀ ପ୍ରତିମା, ମୁଁ, ଦେବ୍ରାଜ ଲେଙ୍କା ଓ ଖୋର୍ଦ୍ଧାର ସମ୍ପାଦକ (ପତ୍ରିକା ମହଲ) ସୁନାମଣି ରାଉତ ପୁରୀ ଯାଇଥିଲୁ । ପୁରୀ ସମୁଦ୍ର କୂଳରେ ଠିଆହୋଇ ରାଇଟର ଦେଖାଇଥିଲେ ସମୁଦ୍ରକୁ ଓ ଜୀବନର ବିଶ୍ଳେଷଣ କରିଥିଲେ । ବାଇଶି ପାହାଚ ଚଢ଼ି ଜଗନ୍ନାଥଙ୍କ ପାଖରେ ଠିଆ ହୋଇ ସେ ଯେମିତି ଭକ୍ତି ଓ ବିଶ୍ୱାସରେ ଗଦ୍‌ଗଦ୍ ହୋଇ ଉଠିଥିଲେ ତାହା ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଥିଲା । ଆନନ୍ଦ ବଜାରରେ ବୁଲି ସାରିଲା ପରେ ଅଭଡା ଖିଆ ହୋଇଥିଲା । କଅଁଳ କଦଳୀପତ୍ର, ଲେମ୍ବୁ, ଲଙ୍କା ସହିତ ଅଭଡା, ଡାଲି, ତରକାରୀ । ଜଣେ ଖିଆଲି, ଶଗଡ ଗୁଳାର ବାହାର ତଥା ମିଜାଜୀ ରାଇଟର ଭିତରେ ଯେ ରହିଛି ବିଶ୍ୱାସ, ଭକ୍ତି, ଜଗନ୍ନାଥଙ୍କ ପାଖରେ ସମର୍ପଣ ଭାବ ତାହା ମୁଁ ଦେଖି ବିସ୍ମିତ ହୋଇଥିଲି ।

ବାଣୀବିହାର ଛାଡିଲା ବେଳକୁ ଯାଇଥିଲି ଦେଖା କରିବାକୁ । ସେ ସେଦିନ ବଡ ଉଦାସ ଦିଶୁଥିଲେ । କହିଥିଲେ, ଜାଣେନା ତୋ ସହ କାହିଁକି ଦେଖାହେଲା । ଅନେକ ପାଠିକା, ପ୍ରଶଂସିକା, ଲେଖିକାଙ୍କ ସହ ମୋର ଚିହ୍ନା ପରିଚୟ । ତୁ କେମିତି ଅଲଗା, ନିଆରା । ତୁ କେବେ ତୋ ଜୀବନ କାହାଣୀ କହିନୁ । ମୁଁ ବି କେବେ ମୋ ସମ୍ପର୍କରେ ତୋତେ କିଛି ଶୁଣାଇବି । ଆମର ସମ୍ପର୍କ ଟ୍ରେନ୍‌ର ଦି'ଜଣ ଅଚିହ୍ନା ସହଯାତ୍ରୀ ଭଳି । ଆକସ୍ମିକ ପରିଚୟ, ଏକାଠି ଚା' ପିଆ, ଚିନାବାଦାମ ଚୋବା । ଯେ ଯାହାର ଆଟାଚିକୁ ସାବଧାନର ସହ ରଖିଛୁ । ଷ୍ଟେସନ ପହଁଞ୍ଚିଲା ବେଳକୁ ଜଣେ ଓହ୍ଲାଇ ଯାଇଛି । ଆଉ ଘରେ ପହଁଞ୍ଚିଲା ବେଳକୁ ଦେଖା ଯାଇଛି ସବୁ ସାବଧାନତା ସତ୍ତ୍ୱେ ଆଟାଚ ବଦଳ ହୋଇଯାଇଛି । ପରବର୍ତ୍ତୀ ସମୟରେ ତାଙ୍କର ଏହି ପଦେ କଥାକୁ ନେଇ 'ସହଯାତ୍ରୀ' ନାମକ ଏକ ଗଳ୍ପ ଲେଖିଥିଲି, ଯାହା ମୋର 'ଛକ' ବହିରେ ସଙ୍କଳିତ ହୋଇଛି । ମୋର ଭିନ୍ନ ସହରର ଗଳ୍ପ ସଙ୍କଳନଟିକୁ (୧୯୮୭) ତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଛି । ପ୍ରକୃତରେ ପର୍ଦ୍ଦାପଛରୁ ଆଣି ପ୍ରକାଶକଙ୍କ ସାମ୍ନାରେ ମୋତେ ସେ ହିଁ ପ୍ରଥମେ ଠିଆ କରାଇଥିଲେ ।

ଅନେକ ବର୍ଷ ପରେ ଥରେ ବାଲେଶ୍ୱରର ଚନ୍ଦ୍ରଭାଗାସ୍ରୋତରେ ଦେଖା ହୋଇ ଥିଲେ । ଅଜୟ ସ୍ୱାଇଁଙ୍କ ସହିତ ଆସିଥିଲେ ଚନ୍ଦ୍ରଭାଗା ପୁରସ୍କାର ଗ୍ରହଣ କରିବାକୁ । ଏ ଭିତରେ ଅନେକ ବର୍ଷ ହେଲା ଦେଖା ହୋଇନାହିଁ । କାଁ ଭାଁ କେବେ ଚିଠି ପତ୍ର ସମ୍ପର୍କ । ଧୀରେ ଧୀରେ ମୁଁ ବି ପ୍ରତିଷ୍ଠାର ସିଢ଼ି ଚଢ଼ିବାରେ ଲାଗିଛି । ତଥାପି ଆଜି ବି ଭୁବନେଶ୍ୱର ମାର୍କେଟ୍ ବିଲଡିଂ ଗଲେ 'ନବପ୍ରଭାତ' ଆଖିରେ ପଡେ । ଦୋକାନ ବଦଳି ଗଲାଣି, ନେମ୍‌ପ୍ଲେଟ୍ ବି ବଦଳିଛି । ତଥାପି ସେଠି ମନେହୁଏ ଜଣେ କିଏ ହସହସ ମୁହଁରେ

ମୋତେ ସ୍ୱାଗତ କରି କହୁଛି 'ଏଇ କବି ! ମରୁଭୂମିରେ କଣ୍ଟା ଦେଖୁଛୁ କିଆଁ ? ଜୀବନରେ ଆଦୌ ଦୁଃଖ ନାହିଁ। ଆଜି ଖୁସି କାଲି ଖୁସି, ଜୀବନ ସାରା ଖୁସି !... ଏହାକୁ ନେଇ ମୋର ପ୍ରତି ବେଶୀରେ ପ୍ରକାଶ ପାଇଥିଲା ବଣା ବାଟୋଇ ଗଳ୍ପ । ଯାହା 'ଜୀବନ କେବେ କେମିତି' ଗଳ୍ପ ସଂକଳନରେ ସଙ୍କଳିତ ହୋଇଛି ।

'ଅକ୍ଷୟ ସମ୍ମାନ' ଯେବେ ପାଇଲେ ଇଟିଭିରୁ ଦେଖି ଚିଠିଟିଏ ଲେଖିଥିଲି ଯେ ଆପଣ ସମ୍ମାନ ଗ୍ରହଣ କଲାବେଳେ ମନେ ହେଲା ଏ ବୁଢ଼ା ବୟସରେ ତାରୁଣ୍ୟର ଚଞ୍ଚଳତା ଆଦୌ ହଜି ନାହିଁ । ସେ ଲେଖିଥିଲେ, ତୁ ଭୁଲ୍ ଦେଖିଲୁ । ମୁଁ ବୁଢ଼ା ହେଲି କେତେବେଳେ ? ମୋ ବୟସ ତ ଜମ୍‌ମା ଏବେ ପନ୍ଦର । ଖାଲି ବସନ୍ତ ଆଉ ବସନ୍ତ ମୋ ଦେହରେ । ସେଥିପାଇଁ ଟୋକା ଲେଖକଗୁଡାକ ପରା ମୋ ପାଇଁ ପାଗଳ। ତୁ ମୋତେ ବୁଢ଼ା କହିଲୁ କାହିଁକି ?'

ଦେବ୍ରାଜ ଲେଙ୍କା ଏହିଭଳି ଏକ ତାରୁଣ୍ୟ ଭରା ରାଇଟର ଯିଏ ନିଜ ଅହଙ୍କାର, ମିଜାଜ୍ ନେଇ ବଞ୍ଚନ୍ତି । ଯାହା ମନକୁ ଆସିଲା କଲେ । କେବେ ପିଇକି ଗାଧୋଇଲେଣି ତ କେବେ ସିଧା ରାସ୍ତା ଛାଡି ବଙ୍କା ବାଟରେ ଧାଇଁଲେଣି । ପ୍ରଚାରର ବହୁ ଦୂରରେ ତାଙ୍କର ଇଲାକା । କୌଣସି ପୁରସ୍କାର ପାଇବା ପାଇଁ ତଥାକଥିତ ଲେଖକମାନଙ୍କ ଭଳି ସେ ଲାଇନ୍ ଲଗାଇ ନାହାଁନ୍ତି । ସଭାସମିତିରେ ନିଜର ବାହସ୍ଫୋଟ ମାରି ନିଜକୁ ବଡ ଲେଖକ ବୋଲି ପ୍ରଚାର କରି ନାହାଁନ୍ତି । ସେଥିପାଇଁ ବୋଧହୁଏ ସେ ପଛରେ ପଡିଯାଇଛନ୍ତି । ଧୂର ପୃଥିବୀର ତାରା ହେଇ ଯାଇଛନ୍ତି । ପ୍ରଚଣ୍ଡ ସ୍ୱାଭିମାନୀ, ପ୍ରଚଣ୍ଡ ଅହଙ୍କାରୀ । ଆଜି ବି 'ଅନ୍ଧମୁହାଁଣୀ'ର ସ୍ରଷ୍ଟା, ରାନୁର ସୃଷ୍ଟିକର୍ତ୍ତା ଭାବରେ ଅଜସ୍ର ପାଠକର ହୃଦୟ ଭିତରେ ଜୀବିତ । ଯଦିଓ ତା'ପରେ ଜୋକର, ଖେଳ ଭଳି ଉପନ୍ୟାସ ପ୍ରକାଶ ପାଇଛି ତଥାପି 'ଅନ୍ଧମୁହାଁଣୀ' ଭଳି ଏତେ ପାଠକୀୟ ଶ୍ରଦ୍ଧା ପାଇନାହିଁ । ତାଙ୍କ ମତରେ, ପାଠକର ଶ୍ରଦ୍ଧାଞ୍ଜଳି ତ ଲେଖକ ପାଖରେ ଗୋଟିଏ ଗୋଟିଏ ନୋବେଲ୍ ପ୍ରାଇଜ୍‌ଠାରୁ ସହସ୍ର ଗୁଣରେ ବଡ । ତାଙ୍କ ଲେଖାରେ ଥାଏ ପାହାଡୀ ଝରଣାଭଳି ବେଗ, ନବାବୀ ତଥା ଫଡ୍‌ଫାଡ୍ ଧଡ୍‌ଧାଡ୍ ଷ୍ଟାଇଲ୍ । ଭିତରେ ଯାହା ଥାଉନା କାହିଁକି ପାଠକେତ କହନ୍ତି ଶୈଳୀ ସମ୍ରାଟ୍ । ସେହି ଶୈଳୀ ସମ୍ରାଟ୍‌ଙ୍କ ସହିତ ମୋର ଆକସ୍ମିକ ପରିଚୟ ଓ ସମାପ୍ତି ସତେକି ଥିଲା ବିଧି ନିର୍ଦ୍ଦିଷ୍ଟ ! ଯେମିତି ବିଧି ନିର୍ଦ୍ଦିଷ୍ଟ ହୋଇଥାଏ ଜନ୍ମ ମରଣର ! ମୋତେ ସେ ଏତେ ଶ୍ରଦ୍ଧା, ଆପଣାପଣ ଦେଇଛନ୍ତି, ଆଶୀର୍ବାଦ କରିଛନ୍ତି ତାହା ଭୁଲି ହେବାର ନୁହେଁ ।

× × × × ×

ଜୀବନ ସତେକି ଆକସ୍ମିକତାରେ ଭରପୂର । ବହୁ ଦୁର୍ଘଟଣା, ଉପଘଟଣାରେ

ପୁଣି ସମାହାର । ମୋ ଜୀବନକୁ ନଷ୍ଟ କରି ବୋହି ଗଲାବେଳେ ଆଉ ଜଣେ ବିଖ୍ୟାତ ଲେଖକଙ୍କ ସହିତ ମୋର ଆକସ୍ମିକ ସାକ୍ଷାତ୍ ହୋଇଥିଲା । ସେଥିଲେ ଗାଳ୍ପିକ, ଔପନ୍ୟାସିକ ପଦ୍ମଜ ପାଳ । ତାଙ୍କ ଗଳ୍ପ ମୋତେ ଖୁବ୍ ଭଲ ଲାଗିଥିଲା । କିନ୍ତୁ ଦେଖିବାର ଇଚ୍ଛାଥିଲେ ବି ଭେଟ ହେଇ ନଥିଲା । ଧରିତ୍ରୀର ସହ-ସମ୍ପାଦିକା ଥିଲାବେଳେ ସେ ବର୍ଷ ସେ ଧରିତ୍ରୀ ପୁରସ୍କାର ପାଇବାପାଇଁ ବିବେଚିତ ହୋଇଥିଲେ । ଭାବିଲି ଏଇ ସୁଯୋଗରେ ତାଙ୍କ ସହ ଭେଟ ହେବ । ସକାଳେ ବେଳା ସମ୍ପାଦକ, ବିଭିନ୍ନ ଏଜେଣ୍ଟ, ସାମ୍ବାଦିକମାନଙ୍କୁ ନେଇ ଯେତେବେଳେ ମିଟିଂ ଆରମ୍ଭ ହେଲା ସେତେବେଳେ ବସିଥିବା ସମସ୍ତଙ୍କ ଭିତରେ ମୁଁ ଏଇ ପ୍ରିୟ ଲେଖକଙ୍କୁ ହିଁ ଖୋଜି ହେଉଥିଲି । କେହି ଗପିଲେ କି ମୋର କୌଣସି ଗଳ୍ପ ଉପରେ ଆଲୋଚନା କଲାବେଳେ ମୁଁ ବିଶେଷ ଆଗ୍ରହୀ ହେଉ ନଥିଲି । କାହିଁକି ନା ଆଜି ଦିନଟି ମୁଁ କେବଳ ପଦ୍ମଜ ପାଳଙ୍କ ସହ ଗପିବା ପାଇଁ ରଖିଥିଲି ।

ମିଟିଂ ଆରମ୍ଭ ହେଲା । କିଛି ସମୟ ପରେ ଜଣେ ମଧ୍ୟବୟସ୍କ ପାଖରେ ଆସି ବସି ପଡିଲେ । ପୁରୁଷମାନଙ୍କ ଧାଡିରେ ନ ବସି ସେ ମୋ ପାଖରେ ବସିବାରୁ ମୋତେ ବଡ ଆଶ୍ଵସ୍ତି ଲାଗିଲା । ତାଙ୍କୁ ଦେଖିଲା ମାତ୍ରେ ସହଜରେ ଗ୍ରହଣ କଲି ନାହିଁ । ସେ କିଛି ସମୟ ପରେ ପଚାରିଲେ, କେତେଟା ବାଜିଲା ? ମୁଁ ତାଙ୍କୁ ଅନାଇଲି । ମୋତେ ହିଁ କ'ଣ ତାଙ୍କର ସମୟ ପଚାରିବାର ଥିଲା ? ବିରକ୍ତ ହେଲାଭଳି ସମୟ କହିଲି । ଓଃ, ପଦ୍ମଜପାଳ ଏ ସମୟରେ ପହଞ୍ଚି ଯାଆନ୍ତେ କି ? ଏ ଲୋକଟାର ଚାହାଣୀ ପାଖରୁ ମୁକ୍ତି ମିଳନ୍ତା । ସେ ତା'ପରେ ଯାହା ପଚାରୁଥିଲେ ମୁଁ ଉତ୍ତର ଦେବାକୁ ଇଚ୍ଛା ନଥିଲା ଭଳି କହୁଥିଲି । ସେ ପ୍ରାୟ ରାସ୍ତା ମଝିରେ ବସିଥିଲେ । ଏହି ସମୟରେ ନନ୍ଦିନୀ ଶତପଥୀ ଓ ତାଙ୍କ ସହ କେତେଜଣ ଅତିଥି ପ୍ରବେଶ କଲେ । ବୋଧହୁଏ ସେତେବେଳେ କୁଳଦୀପ୍ ନାୟାର ଆସିଥିଲେ । ମୁଁ କହିଲି, ଆପଣ ରାସ୍ତାଟାରେ ବସିଯାଇଛନ୍ତି । ଟିକେ ଘୁଞ୍ଚିବସନ୍ତୁ । ଗେଷ୍ଟମାନେ ଆସୁଛନ୍ତି । ସେ କ'ଣ ମନେ କଲେ କେଜାଣି ସେଠୁ ଉଠି ଚାଲିଗଲେ ।

ଦିନସାରା କେତେଜଣଙ୍କୁ ପଚାରିଛି, ପଦ୍ମଜପାଳ କେତେବେଳେ ଆସିବେ ? ସେ କ'ଣ ପୁରସ୍କାର ନେବାକୁ ଆସିବେନି ? କେହି ସଠିକ୍ ଉତ୍ତର ଦେଇ ପାରୁ ନଥିଲେ । ସନ୍ଧ୍ୟା ବେଳେ ମିଟିଂ ଆରମ୍ଭ ହେଲା । କୁଆଡେ ଗଲେ ଗାଳ୍ପିକ ପଦ୍ମଜପାଳ ? ସେଥର ଅମୃତାପ୍ରୀତମ୍ ମୁଖ୍ୟ ଅତିଥି ହେଇ ଦିଲ୍ଲୀରୁ ଆସିଥାନ୍ତି । ସଭାରେ ବସିଥାନ୍ତି ତାଙ୍କ ସହ ପଦ୍ମଶ୍ରୀ କାଳନ୍ଦିଚରଣ ପାଣିଗ୍ରାହୀ, ମହାପାତ୍ର ନୀଳମଣି ସାହୁ । ଅଭିନେତ୍ରୀ ଅପରାଜିତା ମହାନ୍ତି ବସିଥାନ୍ତି ମୋ ପାଖରେ, ସେପଟେ ଗାଳ୍ପିକା ସୁଧାଂଶୁ ବାଳା ପଣ୍ଡା, ପ୍ରତିଭା ଶତ୍‌ପଥୀ ପ୍ରଭୃତି । ପୁରସ୍କାର ବିତରଣ କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା । ମୋ ପ୍ରିୟ ଗାଳ୍ପିକଙ୍କ

ନାଁ ଉଚ୍ଚାରଣ କରାଗଲା । ଯେଉଁ ଭଦ୍ରଲୋକ ପୁରସ୍କାର ଆଣିବାକୁ ଗଲେ ସେ ହିଁ ସକାଳ ବେଳା ମୋ ପାଖରେ ବସି କେତୋଟା ବାଜିଲା ବୋଲି ପଚାରିଥିଲେ । ଯାହାଙ୍କ ପାଇଁ ହିଁ ଆଜିର ସମୟତକ ମୁଁ ସାଇତି ରଖିଥିଲି ଓ ସେଥିପାଇଁ ଭଦ୍ରଲୋକଙ୍କ ପ୍ରଶ୍ନରେ ବିରକ୍ତ ହେଉଥିଲି ସେ ଯେ, ସେହି ଅପେକ୍ଷାରତ ପଦ୍ମଜ ପାଳ ଏକଥା ମୁଁ ସ୍ୱପ୍ନରେ କେମିତି ସତେ ଭାବିଥାନ୍ତି ? ଆଶ୍ଚର୍ଯ୍ୟ ଆଉ ଲଜ୍ଜ୍ୟାରେ ଜୁଡୁବୁଡୁ ହୋଇ ଯାଇଥିଲି । କେମିତି ବୁଝାଇବି ତାଙ୍କ ପାଇଁ ଦିନସାରା ମୁଁ କେତେ ବ୍ୟାକୁଳ ଭାବରେ ଅପେକ୍ଷା କରିଥିଲି ବୋଲି । ତାଙ୍କୁ ତାପରେ ଦେଖାକରି କ୍ଷମା ମାଗିବାକୁ ଚିନ୍ତା କରି ଖୋଜିଲା ବେଳକୁ ସେ ଚାଲି ଯାଇ ସାରିଥିଲେ । ଶେଷରେ ଧରିତ୍ରୀର ଜଣେ ସହ-ସମ୍ପାଦକଙ୍କ ଠାରୁ ଠିକଣା ବୁଝି ପୋଷ୍ଟକାର୍ଡଟେ ଡ୍ରପ୍ କରିଥିଲି ମୋର ଭୁଲ ପାଇଁ ଖରାପ ନ ଭାବିବାକୁ । ଏହି ଅଜାଣତ ଭୁଲ ପାଇଁ କ୍ଷମାଦେବାକୁ ।

ଯଥା ସମୟରେ ଗାଳ୍ପିକ ପଦ୍ମଜପାଳଙ୍କ ଠାରୁ ଉତ୍ତର ପହଁଞ୍ଚିଥିଲା । ସେ ଲେଖିଥିଲେ, 'ଆପଣ କବିତା ବାରିକ ବୋଲି ପଚାରି ବୁଝି ହିଁ ଗପିବା ପାଇଁ ପାଖରେ ଯାଇ ବସିଥିଲି । ହଠାତ୍ ନିଜର ପରିଚୟ ନ ଦେଇ କଥା ପ୍ରସଙ୍ଗରେ କହିବି ବୋଲି ଭାବିଥିଲି । କିନ୍ତୁ ଆପଣ ଏକ ପ୍ରକାର ମୋତେ ତଡି ଦେଲେ । ମନେ ହେଲା ଆପଣ ସତେ କି ଜଣେ ବାଘୁଣୀ । ଯେଉଁ କବିତା ବାରିକ ତାଙ୍କର ଅନେକ ଗଳ୍ପରେ ମୋତେ ମୁଗ୍ଧ କରିଛନ୍ତି, ଆକୃଷ୍ଟ କରିଛନ୍ତି, ବ୍ୟକ୍ତିଗତ ଜୀବନରେ ସେ ଏତେ ନିଷ୍ଠୁର ! ଆଉ ପଦ୍ମଜ ପାଳ ତା'ର ଚରିତ୍ର ଭଳି ସବୁଠାରେ ଅବହେଳିତ ।'

ଏକ ଭୁଲ ବୁଝାମଣା ଆଉ ଆକସ୍ମିକତା ଭିତରେ ପଦ୍ମଜ ପାଳଙ୍କ ସହିତ ମୋର ଦେଖା । ତା'ର ଦୁଇ ତିନିବର୍ଷ ପରେ ମୋର ଅଳ୍ପ ସମୟ ପାଇଁ ଭୁବନେଶ୍ୱର ପୁସ୍ତକମେଳାରେ ଦେଖା ହୋଇଥିଲା । ମୁଁ କହିଲି, ମୋତେ ଚିହ୍ନି ପାରୁଛନ୍ତି ? ସେ ହସିଲେ, ଆପଣଙ୍କୁ ଚିହ୍ନିପାରିବିନି ? ଆପଣ ଯେ ମୋତେ ତଡି ଦେଇଥିଲେ ସେ କଥା କ'ଣ ଭୁଲି ହେବ ?

ପୁଣି ମୋତେ କ୍ଷମା ମାଗିବାକୁ ପଡିଲା ।

ପୁଣି ଦୁଇ ତିନିବର୍ଷ ଏ ଭିତରେ ଗଡିଗଲା । ବେଳେବେଳେ ପ୍ରତାଳାପ ହୋଇଥାଏ । ୧୯୯୧ ମାର୍ଚ୍ଚମାସରେ କଟକ ଦୂରଦର୍ଶନ ଏକ ଗଳ୍ପ ଆଲୋଚନା ପାଇଁ ଡାକିଥିଲା । ଏଇଟା ମୋର ପ୍ରଥମ ଟି.ଭି. କାର୍ଯ୍ୟକ୍ରମ ଥିଲା । ସେତେବେଳେ ମୁଁ ରାଉରକେଲାରେ ସରକାରୀ ମହାବିଦ୍ୟାଳୟରେ ଅଧାପିକା ଥାଏ । କଟକରେ ପହଞ୍ଚି ଜାଣିଲି ସେ ମୋ ସହିତ ଭାଗନେବେ ଗାଳ୍ପିକ ଜଗଦୀଶ ମହାନ୍ତି ଓ ପଦ୍ମଜ ପାଳ ।

କାର୍ଯ୍ୟକ୍ରମଟି ପରିଚାଳନା କରିବେ ଗୌରହରି ଦାସ । ପଦ୍ମଜ ପାଳ ମଧ୍ୟ ଦୂରଦର୍ଶନ କେନ୍ଦ୍ରରେ ପହଞ୍ଚି ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ, ଆପଣଙ୍କ ସହିତ ଯେତେବେଳେ ଦେଖାହୁଏ ଏମିତି ଆକ୍‌ସିଡେଣ୍ଟାଲି । ମୁଁ ହସିଲି, ଆକସ୍ମିକତା ତ ଜୀବନର ଅନ୍ୟ ନାଁ । ତେବେ ଦୂରେଇ ରୁହନ୍ତୁ । କାଳେ ମୁଁ ବାଘୁଣୀ ଭଳି ଆପଣଙ୍କୁ ମନେ ହେବି ।

ଦୁହେଁ ହସି ଉଠିଲୁ । ଆମ ସହିତ ଆସି ଯୋଗଦେଲେ ଦୂରଦର୍ଶନରେ ନାଟକ ବିଭାଗର ନାଟ୍ୟକାର ରତିରଞ୍ଜନ ମିଶ୍ର । ଦୂରଦର୍ଶନ କେନ୍ଦ୍ରରେ ଜଗଦୀଶ ମହାନ୍ତିଙ୍କୁ ଅପେକ୍ଷା କରିବା ଭିତରେ ଆମେ ଚା' ପିଇଲୁ । ଚା' ପିଇବା ଭିତରେ ଦୁନିଆ ଗପ ଆରମ୍ଭ ହେଲା । ନୂଆ ବହି, ନୂଆ ଲେଖା, ବିଭିନ୍ନ ଲେଖକଙ୍କ ସମ୍ପର୍କରେ । ଆମେମାନେ ସାହିତ୍ୟ ପାଗଳ ମଣିଷ । ସାହିତ୍ୟ ଚର୍ଚ୍ଚା ହିଁ ଦିଏ ମାନସିକ ଖାଦ୍ୟ । ତେଣୁ ସାହିତ୍ୟ ଆଲୋଚନାରେ ମାତିଗଲୁ । ପଦ୍ମଜସାର କହିଲେ ମୋର ସଦ୍ୟ ପ୍ରକାଶିତ ଉପନ୍ୟାସ 'ଆମ ସମୟର ଦୁଃଖ' ପଢ଼ିଛନ୍ତି । ଏବେ କ'ଣ ଲେଖୁଛନ୍ତି ? ଉପନ୍ୟାସ ଲେଖୁଛନ୍ତି ? କହିଲି ମୋର 'ସୁନାସକାଳ' ଉପନ୍ୟାସଟି ଫ୍ରେଣ୍ଡସ୍ ପବ୍ଲିସର୍ସ ନେଇଛନ୍ତି । ମୋ ପାଇଁ ନିଶ୍ଚିତ ଭାବରେ ଏ ଉପନ୍ୟାସଟି 'ସୁନାସକାଳ' ନେଇ ଆସିବ ବୋଲି ଆଶା କରୁଛି ।

ସେ କହିଲେ, ତାହାଲେ ଉପନ୍ୟାସ ଜଗତରେ ଏହା ନିଶ୍ଚିତ ଭାବରେ ଏକ ଶୁଭଖବର । ଲେଖନ୍ତୁ ଉପନ୍ୟାସ ।

(ଏଠାରେ ଉଲ୍ଲେଖନୀୟ ଯେ ପ୍ରାୟ ଦଶବର୍ଷ ଫ୍ରେଣ୍ଡସ୍ ପବ୍ଲିସର୍ସ ପାଣ୍ଡୁଲିପିଟି ପକାଇଲା ପରେ, ଧାଁଦଉଡ କଲାପରେ ଶେଷରେ ସହଦେବ ପ୍ରଧାନ ପାଣ୍ଡୁଲିପିଟି ଫେରାଇ ଦେଲେ । ତାଙ୍କ ମତ ହେଲା ଦଶ ଏଗାର ବର୍ଷ ସରକାରୀ କଲେଜରେ ଅଧ୍ୟାପିକା ରହିଲା ପରେ ଆମ ପ୍ରକାଶନ ସଂସ୍ଥାଠାରୁ ଆପଣଙ୍କ କଲେଜ ଲାଇବ୍ରେରୀ ପାଇଁ କେତେ ଟଙ୍କାର ବହି କିଣିଛନ୍ତି ? ମୁଁ କେଉଁଥିପାଇଁ ଆପଣଙ୍କ ବହି ଛାପିବି ? ସେଥିରେ ମୋର କ'ଣ ଲାଭ ହେବ ?)

ପୁସ୍ତକ ପ୍ରକାଶନ ପାଇଁ ଏଇ ଦିଆନିଆ ଭାବ, ଲାଭକ୍ଷତି ହିସାବ ମୋତେ ଜଣାନଥିଲା । ଯଦିଓ ୧୯୮୭ରେ ସେ ମୋର 'ଭିନ୍ନ ସହର' ଗଳ୍ପ ସଙ୍କଳନଟି ଛାପିଥିଲେ । ମୁଁ ତ ବହି କିଣାବିକାର ବ୍ୟବସାୟୀ ନୁହେଁ ଯେ ଏତେ ହଜାର ବହି କିଣିବି, ତମେ ମୋର ଅମୁକ ବହିଟା ଛାପ । କଥାଟା ବଡ ବାଧିଲା । ପାଣ୍ଡୁଲିପିଟା ଫେରାଇ ଆଣିଲି । ଦଶବର୍ଷ ପକାଇ ଓଡ଼ିଶାର ପ୍ରକାଶକମାନେ ପାଣ୍ଡୁଲିପି ଫେରାଇ ଦେବାର ଘଟଣା ଶୁଣିଥିଲି । ମୋ କ୍ଷେତ୍ରରେ ବି ସେଇଆ ଘଟିଲା । ଯଦିଓ ପରେ ତାହା

୨୦୦୪ ମସିହାରେ "ଗ୍ରନ୍ଥ ମନ୍ଦିର" 'ଈପ୍‌ସିତ ସକାଳ' ନାଁରେ ଉପନ୍ୟାସଟି ଛାପିଥିଲା । ତେବେ ୧୯୯୦ରେ ଲେଖା ଯାଇଥିବା ଏହି ଉପନ୍ୟାସଟିକୁ ପୃଥିବୀର ଆଲୋକ ଦେଖିବାପାଇଁ ଲାଗି ଗଲା ଦୀର୍ଘ ୧୪ବର୍ଷ । ଏହା ହିଁ ଓଡ଼ିଆ ଲେଖକର ଭାଗ୍ୟ ବିଡମ୍ବନା । ଯଦିଓ ମୋ ଭଳି କେତେକଙ୍କ ପାଇଁ)

କଥା ପ୍ରସଙ୍ଗରେ ବଙ୍ଗଳା, ହିନ୍ଦୀ ଲେଖକ, ପାଠକ, ପ୍ରକାଶକଙ୍କ କଥା ପଡିଲା । ମୁଁ କହିଲି, ମୁଁ ଆଶା ରଖିଛି ବଙ୍ଗଳା,ହିନ୍ଦୀ, ଇଂରାଜୀ ଲେଖକମାନଙ୍କ ଭଳି ନିଶ୍ଚୟ ଦିନେ ସମୟ ଆସିବ ଯେଉଁଦିନ କି ଓଡ଼ିଆ ଲେଖକ ପୁସ୍ତକ ମେଳାରେ ତା'ର ପ୍ରକାଶକଙ୍କ ଦୋକାନରେ ଠିଆ ହୋଇଥିଲା ବେଳେ ଅଟୋଗ୍ରାଫ ନେବାପାଇଁ ପାଠକମାନେ ଧାଡି ବାନ୍ଧିଥିବେ ଯେମିତି କ୍ରିକେଟ୍‌ର, ଚଳଚ୍ଚିତ୍ର ତାରକାଙ୍କ ପାଖରେ ହେଉଛି । ଆମ ପ୍ରକାଶକମାନେ ମଧ୍ୟ ମାଇକରେ ପ୍ରଚାର କରୁଥିବେ ଅମୁକ ଲେଖକ ଏତେରୁ ଏତେ ସମୟ ଅମୁକ ନମ୍ବର ଷ୍ଟଲରେ ଅଛନ୍ତି । ଇଚ୍ଛୁକ ପୁସ୍ତକପ୍ରେମୀ, ପାଠକମାନେ ତାଙ୍କର ସାକ୍ଷାତ୍ ନେଇପାରନ୍ତି । କହନ୍ତୁ ତ ସାର ! ଏମିତି କ'ଣ ଆମ ଓଡ଼ିଆ ଲେଖକମାନଙ୍କ ଭାଗ୍ୟରେ କେବେ ଆସିବନି ?

ଗାଳ୍ପିକ କହିଲେ, ନାଁ ଏହା ସ୍ୱପ୍ନ ନୁହେଁ । ଭବିଷ୍ୟତ ପାଇଁ ସୁନେଲି ସ୍ୱପ୍ନ । ଦିନେ ନା ଦିନେ ନିଶ୍ଚିତ ଭାବରେ ଓଡ଼ିଶାରେ ସମ୍ଭବ ହେବ । ତାହା ହିଁ ହେବ ଲେଖକମାନଙ୍କ ପାଇଁ 'ସୁନାସକାଳ' ଆପଣଙ୍କ ଉପନ୍ୟାସ ଭଳି ।

ମୁଁ କହିଲି, 'ଆମ ସମୟର ଦୁଃଖ' କ'ଣ ଜାଣନ୍ତି ସାର୍ ? ଦୁଃଖ ହେଲା ଯେ, ଆମ ସମୟର ଆମେ ଜଣେ ଜଣେ ଭାବପ୍ରବଣ ଲେଖକ । ପୁଣି ଲେଖକ ବୋଲି ହିଁ ଆମ ନିଜକୁ ଅନ୍ୟ ଆଗରେ କହିବାକୁ ପଡେ । ଅର୍ଥାତ୍ ଆମର ପାଠକମାନେ ଆମକୁ ଚିହ୍ନନ୍ତି ନାହିଁ, ପଢ଼ନ୍ତି ନାହିଁ । ହୁଏତ ଏମିତି ଏକ ସମୟ ଆସିବ ଦିଲ୍ଲୀ ଦୂରଦର୍ଶନରେ ଏକ ଟୁଥ୍ ପେଷ୍ଟ ବିଜ୍ଞାପନରେ ଛୋଟ ଝିଅଟି ତା' ବାପାଙ୍କୁ ପଚାରିଲା ଭଳି 'ଆଧା କ୍ୟା ହେ' ଭଳି ସାହିତ୍ୟ ବୁଝୁନଥିବା ଲୋକେ ପଚାରିବେ, ରାଇଟର କ୍ୟା ହେ ? କିସ୍‌ସେ କହତେ ହେ ରାଇଟର ?

ଆମେ ଗପିଲା ବେଳେ ପାଳ ସାର୍ କହିଲେ, ଆପଣଙ୍କର ଏମିତି ମନେ ହୁଏନି ଏବେ ଯାହା ମିଳୁଛି, ତାହା ଅନେକ ଆଗରୁ ମିଳିବାର ଥିଲା ? ଯେମିତି ପୁରସ୍କାର ସାହିତ୍ୟିକଙ୍କୁ ବିଳମ୍ବରେ ମିଳିବା ବା କୌଣସି ପ୍ରତିଷ୍ଠା । ଏଇ ଧରାଯାଉ, ଆପଣଙ୍କ ସହ ସାକ୍ଷାତ୍ । ମନେ ହୁଏନି ଆହୁରି ଆଗରୁ ଆମର ଦେଖା ହେବାର ଥିଲା ? ଅନେକ ଆଗରୁ ।

ମୁଁ ବୁଝିପାରିଲିନି, ତଥାପି ହସିଦେଲି । ହଁ, ସେମିତି ହୁଏ । ତେବେ ନିଜ ଇଚ୍ଛାମୁତାବକ ଜୀବନ ଚାଲେନା ।

ରତି ମିଶ୍ର ଡାକିଲେ, ଜଗଦୀଶ ମହାନ୍ତି, ଗୌରହରି ଦାସ ଆସିଗଲେଣି । ଷ୍ଟୁଡିଓ ଭିତରକୁ ଚାଲନ୍ତୁ ।

× × × × ×

ଯେତେଦୂର ମନେହୁଏ ସେଇଟା ଥିଲା ୧୯୮୧ ମସିହା । ସେ ଥର ସାରଳା ପୁରସ୍କାର ପାଇଥାନ୍ତି ଗାଳ୍ପିକ ମନୋଜ ଦାସ ତାଙ୍କର 'ଧୂମ୍ରାଭ ଦିଗନ୍ତ ଓ ଅନ୍ୟାନ୍ୟ କାହାଣୀ ପାଇଁ । ମୁଁ ବାଣୀ ବିହାରରେ ସେହି ବର୍ଷ ଆଡ୍‌ମିସନ୍ ହୋଇଥାଏ । 'ସୂଚନା ଭବନ' (ଏବେ ନାଁ - ଜୟଦେବ ଭବନ) ଲେଖକ, ପାଠକମାନଙ୍କୁ ନେଇ ଭର୍ତ୍ତି । ମୁଁ ଯାଇଥାଏ ସୌରୀନ୍ଦ୍ର ବାରିକଙ୍କ ସହିତ । ଯାହାଙ୍କ ପାଖରେ ବସିଥାଏ ସେ ଅସମ୍ଭବ ସ୍ମୋକ୍ କରୁଥାନ୍ତି । ସିଗାରେଟ୍ ଧୂଆଁ ପ୍ରତି ମୋର ବଡ ଆଲର୍ଜି ରହିଛି । ସିଗାରେଟ୍, ବିଡି ଗନ୍ଧ ଆଦୌ ସହିପାରେନା, ବାନ୍ତି ଉଠେଇ ଆସେ । ଯଥା ସମ୍ଭବ ରୁମାଲ୍ ନାକରେ ମାଡି ଧୂଆଁ ଆଘ୍ରାଣଠାରୁ ଦୂରେଇ ରହିବାପାଇଁ ଚେଷ୍ଟା କରୁଥାଏ । ଶ୍ୟାମଳ ବର୍ଣ୍ଣ ଧଳାଧୋତୀ, ପଞ୍ଜାବୀ ପିନ୍ଧିଥିବା ଭଦ୍ରଲୋକ ଜଣକ ଥିଲେ ଚେନ୍-ସ୍ମୋକର । ପୁରସ୍କାର ଉତ୍ସବ ଚାଲିଥିଲା ବେଳେ ସେ ମଝିରେ ମଝିରେ ବକ୍ତାମାନଙ୍କ ଭାଷଣ ଶୁଣି ବେଶ୍ କୌତୁକିଆ ମତବ୍ୟକ୍ତ କରୁଥାନ୍ତି । ବିଶେଷକରି ଔପନ୍ୟାସିକ ଗୋପୀନାଥ ମହାନ୍ତି ଭାଷଣରେ ଇଲା ପଣ୍ଡାଙ୍କୁ ନେଇ ଯେମିତି ଟେକୁଥାନ୍ତି ତାକୁ ବ୍ୟଙ୍ଗକରି ସେ ପଦେ ପଦେ ଯୋଡୁଥାନ୍ତି । ମୋତେ ବେଶ୍ ମଜା ଲାଗୁଥାଏ ଶୁଣିବାକୁ । ଭାବୁଥାଏ, ଭଦ୍ରବ୍ୟକ୍ତିଙ୍କର ଉପସ୍ଥିତି ବୁଦ୍ଧି ଖୁବ୍ ପ୍ରଖର । ବେଶ୍ ସୁନ୍ଦର ଭାବରେ ସେ ମଞ୍ଚାସୀନ ଅତିଥିମାନଙ୍କ ବକ୍ତବ୍ୟକୁ କାଟି ପାରୁଛନ୍ତି ତୀକ୍ଷ୍ଣ ବ୍ୟଙ୍ଗୋକ୍ତି ମାଧ୍ୟମରେ । ଲୋକ ଜଣକ ଓକିଲ ହୋଇଥିଲେ ବେଶ୍ ନିଜ ପ୍ରଫେସନରେ ସକ୍‌ସେସ୍ ହୋଇଥାନ୍ତା । ଜ୍ଞାନୀ ନିଶ୍ଚୟ ।

ସଭା ସରିଲା ପରେ ସୂଚନା ଭବନରୁ ବାହାରି ଆସିଲା ବେଳେ ମୁଁ ସୌରୀଭାଇଙ୍କୁ କହିଲି ମୋ ପାଖରେ ଯେଉଁ ଭଦ୍ରବ୍ୟକ୍ତିଜଣକ ବସିଥିଲେ ସେ ଏତେ ସିଗାରେଟ୍ ଟାଣୁଥିଲେ ଯେ ମୋତେ ବାନ୍ତି ଉଠାଉଥିଲା । କିନ୍ତୁ ସେ ଯେଉଁ କମେଣ୍ଟ କରୁଥିଲେ ତମକୁ ହସ ଲାଗିବ । ଏତେ ବ୍ୟଙ୍ଗ ତାଙ୍କ ତୀକ୍ଷ୍ଣ ଶବ୍ଦ ଭିତରେ ରହିଥିଲା ଯେ ତମକୁ ହସ ଲାଗିବ । ସେ କ'ଣ ଲେଖାଲେଖି କରନ୍ତି ? ଚିହ୍ନିଛ ତାଙ୍କୁ ?

ସୌରୀଭାଇ କହିଲେ, ଆରେ ତୁ ତାଙ୍କୁ ଚିହ୍ନି ପାରିଲୁ ନାହିଁ ? ସେ ପରା ଅଖିଳମୋହନ ? ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ ?

ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ ? ଆଖି ମୋର ତାଳୁକୁ ଉଠି ଯାଇଥିଲା । ଏତେ ସମୟ ଯାହାଙ୍କ ପାଖରେ ବସିଥିଲି ସେ ହିଁ ଥିଲେ 'ଚନ୍ଦ୍ରର ଅଭିଶାପ', ଡିମିରିଫୁଲ, ଗୁବିର ରୁବାୟତ, ଲ୍ୟାମ୍ପ ପୋଷ୍ଟ ଭଳି ମୋର ବହୁ ପ୍ରିୟ ଗଳ୍ପର ସ୍ରଷ୍ଟା ଅଖିଳ ମୋହନ ପଟ୍ଟନାୟକ ।

ବେଳେବେଳେ ଏମିତି ବି ହୁଏ ମନରେ ଦାଗ କାଟିଲା ଭଳି କାଟିଦିଏ ଲେଖାଟିଏ । ଝରକା ଖୋଲି ଦେଲେ ମୁକୁଳା ପବନ ଝଲକାଏ ପଶିଆସି ଦିହ, ମନ ଥଣ୍ଡା କରି ଦେଲାଭଳି ଜୀବନର ଏକ ବନ୍ଦ ଦର୍ଜା ଖୋଲିଯାଏ ଓ ସେଠି ଦିଶେ ଜୀବନର ଆଉ ଏକ ସ୍ୱପ୍ନ, ଆଉ ଏକ ଅନୁଭୂତି । ପାଠକ ଅଭିଭୂତ ହୋଇଯାଏ, ବତୁରିଯାଏ । ସ୍ତବ୍ଧ, ବିଭୋର ଭାବରେ ଜାଣିବାକୁ ଚାହେଁ କିଏ ସେହି ସ୍ରଷ୍ଟା ? ସେ କେମିତି ବଞ୍ଚନ୍ତି ? ବ୍ୟକ୍ତିଗତ ଜୀବନରେ କେମିତି ଦେଖିବାକୁ ? ସ୍ୱଭାବ କେମିତି ହୋଇଥିବ ? ତାଙ୍କ ଲେଖା ତାଙ୍କ ବ୍ୟକ୍ତିଗତ ଜୀବନଧାରା ସହିତ ସାମଞ୍ଜସ୍ୟ ରଖେନା ତାହା ସୃଜନୀ ଠାରୁ ବହୁ ଦୂରରେ । ଏହିଭଳି ଅନେକ ପ୍ରଶ୍ନ । ଅଖିଳମୋହନଙ୍କ ଗଳ୍ପ ପଢି ତାହା ହିଁ ମୋ ମନରେ ଜାଗିଥିଲା । ଜଣେ ବହେମିୟାନ୍ ଗାଳ୍ପିକର ରୂପ ତାଙ୍କ ଲେଖାରୁ ବାରି ହୋଇପଡେ । ଯିଏ ନିଜ ଘରର ନାଁ ବାଲିଘର ରଖନ୍ତି ଏଥିରୁ ତାଙ୍କ ମାନସିକ ଦର୍ଶନ ଅନୁମାନ କରାଯାଇ ପାରେ । ବହେମିୟାନ କହିଲେ ଖାମ୍‌ଖିଆଲି, ବେପରୱା ଅର୍ଥାତ୍ ଡେୟାରିଙ୍ଗ୍ ନେଚରକୁ ହିଁ ବୁଝାଇଥାଏ । ଯିଏ ଧରାବନ୍ଧା ଜୀବନକୁ ସ୍ୱୀକାର କରୁ ନଥିବ କି ତା'ର କୌଣସି କଥାରେ ଡରଭୟ ନଥିବ । ସେଥିପାଇଁ ତ ସେ ଲେଖିପାରେ, ଜୀବନଟା ଏକ ଶେଷହୀନ ଗ୍ରନ୍ଥ, ଯେତେ ପଢୁଥିବ ଆହୁରି ବାକି ରହିଯାଏ ତା'ର ଉତ୍ତର ପୀଢ଼ି ପାଇଁ ।

ଅଖିଳମୋହନଙ୍କ ଅନେକ ଗଳ୍ପ କେବଳ ମୋତେ ଅଭିଭୂତ କରିନଥିଲା, ପରନ୍ତୁ ମୋ ଚେତନାକୁ ବେଶ୍ ପ୍ରଭାବିତ କରିଥିଲା । ଓଡିଆ ଭାଷା, ସାହିତ୍ୟର ଛାତ୍ରୀ ହିସାବରେ କୋର୍ସରେ ବି ମୁଁ ତାଙ୍କ ଗଳ୍ପ ପଢ଼ିଲି । ତାଙ୍କର ସବୁ ବହି ପ୍ରାୟ ମୁଁ ପଢ଼ିଛି । ଗତାନୁଗତିକ ଧାରାରୁ କିଛିଟା ଅଲଗା, କିଛିଟା ନିଆରା । 'ଅନାଗତ ଫାଲଗୁନ', 'ନଦୀର ନାଁ ଗଣତନ୍ତ୍ର' ତାଙ୍କ ମୃତ୍ୟୁ ପରେ ପଢ଼ିବାକୁ ପାଇଥିଲେ ହେଁ ତା' ଆଗରୁ ପଢ଼ିଥିଲି 'ଝଡର ଇଗଲ ଓ ଧରଣୀର କୃଷ୍ଣସାର' ଓ 'ଅନ୍ଧଗଳି' ।

ସେଦିନ ସୂଚନାଭବନ ବାହାରେ ତାଙ୍କ ପରିଚୟ ପାଇ ତାଙ୍କୁ ଖୋଜିଲା ବେଳକୁ ସେ ଚାଲି ଯାଇଥିଲେ । ଏତେ ପାଖରେ ମୋ ପ୍ରିୟ ଗାଳ୍ପିକଙ୍କୁ ପାଇ ତାଙ୍କ ପାଖ ଚେୟାରରେ ଦୁଇଘଣ୍ଟାରୁ ଉର୍ଦ୍ଧ୍ୱ ସମୟ ବସି ମଧ୍ୟ ତାଙ୍କୁ ଚିହ୍ନି ପାରିଲି ନାହିଁ । ବରଂଚ ତାଙ୍କ ସ୍ମୋକ୍ ଓ

ମନ୍ତବ୍ୟ କେମିତି ଏକ ଅସୂୟା ଭାବ ସୃଷ୍ଟି କରିଥିଲା ମୋ ଭିତରେ ।

ବାଣୀବିହାରରେ ପଢୁଥିଲା ବେଳେ ପ୍ରଥମ ଛାତ୍ରୀ ନିବାସ ଯାହା କୁନ୍ତଳା କୁମାରୀ ଛାତ୍ରୀନିବାସ ନାଁରେ ପରିଚିତ ତା'ର ମୁଖପତ୍ର 'ବାଣୀବନ୍ଦନା'ର ସମ୍ପାଦିକା (୧୯୮୧-୮୨) ଥିଲା ବେଳେ ତାଙ୍କର ଏକ ସାକ୍ଷାତ୍‌କାର ପାଇଁ କିଛି ପ୍ରଶ୍ନ ପଚାରି ଥିଲି । ସେ ସବୁର ସେ ଚମତ୍କାର ଉତ୍ତର ଦେଇଥିଲେ । ଯାହାକି ପ୍ରିଣ୍ଟ୍ କଲାଭଳି ମୋ ମନରେ ଛାପିହୋଇ ରହିଯାଇଛି । ପାଠକୀୟ କୌତୁହଳ ଦୃଷ୍ଟିରୁ କିଛି ଅଂଶ ଏଠାରେ ଉଦ୍ଧୃତି କରୁଛି ।

ପ୍ର : - ଜୀବନକୁ କେମିତି ଦେଖିଛନ୍ତି ?

ଉ : - ଜୀବନକୁ ଆଉ ଦେଖିଲି କେଉଁଠି ? ବଞ୍ଚିବାକୁ ଆରମ୍ଭ କରୁ କରୁ ଜୀବନଟା ପ୍ରାୟ ଶେଷ ହୋଇଆସିଲା । ତେବେ ଯେତିକି ଦେଖିଛି ମନେ ହୋଇଛି ଖୁବ୍ ଇଣ୍ଟେରେଷ୍ଟିଙ୍ଗ୍ । ବେଶ୍ ହସିହୁଏ । ମଜା କରିହୁଏ ।

ପ୍ର : - ମୃତ୍ୟୁକୁ କେମିତି ଚିହ୍ନିଛନ୍ତି ?

ଉ : - ନା, ଚିହ୍ନିନାହିଁ । ସମସ୍ତଙ୍କ ଜୀବନରେ ତାହା ବୋଧହୁଏ ଚରମ ଓ ଶେଷ ଅଭିଜ୍ଞତା । ମୋର ସେ ଅଭିଜ୍ଞତା ବେଶ୍ ସୁନ୍ଦର ବୋଲି ଆଶା ପୋଷଣ କରେ । ମୁଁ ଯେତେବେଳେ ଚିହ୍ନିବି ସେ ପରିଚୟ ଅତ୍ୟନ୍ତ ଅନ୍ତରଙ୍ଗ ହେବ ନିଶ୍ଚୟ ।

ପ୍ର : - ପ୍ରେମର ସଂଜ୍ଞା କ'ଣ ?

ଉ : - ସବୁଜିନିଷର କ'ଣ ସଂଜ୍ଞା ଥାଏ ? ଗଛକୁ କେମିତି ପତ୍ର ଆସେ ? ପକ୍ଷୀର କଣ୍ଠରେ ଏତେ ଗୀତ କିଏ ଦିଏ ? ଜଳପ୍ରପାତରେ ପାଣି ସରିଯାଏ ନାହିଁ କାହିଁକି ? ପ୍ରେମର ଅର୍ଥ - ଅନ୍ୟ ବା ଅନ୍ୟଜଣକ ପାଇଁ ତ୍ୟାଗ କରି ନିଜେ ନିଃସ୍ୱ ହୋଇଯିବା ।

ପ୍ର : - ଅଧ୍ୟାତ୍ମିକତା କହିଲେ କ'ଣ ବୁଝନ୍ତି ?

ଉ : - ବୁଝେ ଭାରି ଭାରି ଗମ୍ଭୀର ଲୋକମାନଙ୍କୁ, ଯେଉଁମାନେ କ'ଣ କହନ୍ତି ମୁଁ ବୁଝିପାରେ ନାହିଁ । ସେକଥା ସେମାନଙ୍କୁ ପଚାରିବା ଉଚିତ୍ ।

ମୋର ସେହି ବହେମିୟାନ୍, ଭାଗାବଣ୍ଡ, ଖିଆଲି କିନ୍ତୁ ପ୍ରିୟ ଗାଳ୍ପିକ ଅଖିଳମୋହନ କେବେଠୁ ଆମ ଗହଣରୁ ଉଠି ମାଟି ହୋଇ ଯାଇଛନ୍ତି । ତାଙ୍କ ମତ ଅନୁସାରେ ମୃତ୍ୟୁ ନିଶ୍ଚେ ତାଙ୍କ ପାଇଁ ଅନ୍ତରଙ୍ଗ ହେଇଥିବ । ତାଙ୍କ ମାଟି ଦେହ ମାଟିରେ ମିଳାଇ ଯାଇଥିଲେ ହେଁ ଆଜି ବି ତାଙ୍କ ଗଳ୍ପର ଚରିତ୍ରମାନେ ଏ ମାଟିର ତାଳପତ୍ର ମେଲାଇଲା ଭଳି ଚାଲାବୁଲା ହେଉଛନ୍ତି । ଅଖିଳମୋହନଙ୍କ ସାରସ୍ୱତ ସୃଷ୍ଟିର ମରଣ ନାହିଁ । ଦିନପୁରୁଣା ହେଉଥିଲେ ହେଁ ନୂଆଭାବେ ସେସବୁ ଆମ ଭଳି ପାଠକର ଚେତନାକୁ ଘାରିଯାଉଥିବ ।

× × × × ×

ପଦ୍ମଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ସହିତ ମୋର ସାକ୍ଷାତ ସମ୍ପର୍କରେ ଆଗରୁ ସୂଚନା ଦେଇଛି । ପ୍ରଥମେ ଦେଖିଥିଲି କଟକର ସ୍ୱପ୍ନପୁରୀ ବାସଭବନରେ । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସହ ଯାଇଥିଲି । ଉପର ମହଲାରେ ଗୋଟାଏ ବହି ଭର୍ତ୍ତି ଟେବୁଲ ପାଖରେ ସେ ବସିଥିଲେ । ଆଖିକୁ ଭଲ ଦିଶୁ ନଥିଲା । ତଥାପି ସେ ଥିଲେ ଅଧ୍ୟୟନରତ । ହାତରେ ଥିଲା ଜବକାଚର ଲେନ୍ସ । ଏତେ ପାଖରେ ଏତେ ବଡ ଲେଖକଙ୍କୁ ଦେଖି ସତେ କି ବିଶ୍ୱାସ କରିପାରୁ ନଥିଲି । 'ମାଟିର ମଣିଷ'ର ସ୍ରଷ୍ଟାଙ୍କୁ ଦେଖି ସେଦିନ କୃତକୃତ୍ୟ ହେଇ ଯାଇଥିଲି । ସେ ତାଙ୍କର ଗପର ପେଡି ମେଲାଇ ଦେଇଥିଲେ । ପାଟିରେ ବାଟୁଳି ବାଜୁନଥିଲା । କେତେ ଅଛିଣ୍ଡା କାହାଣୀ, ଅନୁଭୂତି ସତେକି ନଈ ହୋଇ ବୋହିଯାଉଥିଲା । ତାରି ଭିତରେ, ମାଟିର ମଣିଷ'ର ଆବିଷ୍କାର । ରେଲୱେ ଷ୍ଟେସନରୁ ଲେଖକଙ୍କ ଗାଁକୁ ତାଙ୍କର ଜିନିଷପତ୍ର ଧରି ଯାଉଥିବା ଲୋକଟି ହିଁ ବରଜୁ । ସେଦିନ ସେ ଲେଖକଙ୍କୁ ରାସ୍ତାସାରା ତା' ଜୀବନ କାହାଣୀ ଗପିଥିଲା । ସେଇଠୁ 'ମାଟିର ମଣିଷ'ର ଛାଞ୍ଚ ମିଳିଯାଏ । ପରବର୍ତ୍ତୀ ସମୟରେ ଲେଖାହୁଏ ଓଡ଼ିଆ ସାହିତ୍ୟର ଅମର ହର୍ମ୍ୟ କ୍ରାନ୍ତିକାରୀ ଉପନ୍ୟାସ 'ମାଟିର ମଣିଷ' ।

ପୁଣି ନିଜ ଝିଅ ନନ୍ଦିନୀ ଶତପଥୀଙ୍କ ପ୍ରଶଂସାରେ ସେ ଶତମୁଖ ହୋଇ ଉଠିଥିଲେ । ଜଣେ ବାପ ଆଖିରେ ଝିଅର ପ୍ରଶଂସା, ଉନ୍ନତି ଓ ପ୍ରତିଷ୍ଠା କେତେ ଯେ ଆନନ୍ଦ, ଆତ୍ମସନ୍ତୋଷ ଦିଏ ନ ଦେଖିଲେ କେହି ଅନୁଭବ କରି ପାରିବ ନାହିଁ । ସନ୍ତାନର ନାଁ, ପ୍ରଶଂସା ବାପା ମା'ଙ୍କ ପାଇଁ ଗର୍ବର ଯେ କେତେ ବଡ ଜିନିଷ ତାହା ସେଦିନ ମୁଁ କାଳିନ୍ଦୀ ଚରଣଙ୍କ ଆଖିରୁ, କଥାରୁ ଜାଣିବାକୁ ପାଇଥିଲି ଓ ତାଙ୍କ ଭିତରେ ମୋ ବାପାଙ୍କୁ ହିଁ ଦେଖିବାକୁ ପାଇଥିଲି ।

× × × × ×

ପୁଣି ଅଚ୍ଛ କେତେ ବର୍ଷ ପରେ ଶ୍ରୀମତୀ ଶତପଥୀଙ୍କ ଭୁବନେଶ୍ୱରର ସରକାରୀ ବାସଭବନରେ ଦେଖା ହୋଇଥିଲା 'ମାଟିର ମଣିଷ' ସ୍ରଷ୍ଟାଙ୍କ ସହିତ । ଦେବେନ୍ଦ୍ର ଶତପଥୀ ସେତେବେଳେ ଜୀବିତ ଥାନ୍ତି । ସେ ହିଁ କହିଲେ ଆଜିକାଲି ବାପା କାହାକୁ ଚିହ୍ନି ପାରୁ ନାହାଁନ୍ତି । ସତରେ ସେଦିନ ଦେଖିଥିବା କାଳିନ୍ଦୀଚରଣ ସତେ କି ସେ ନଥିଲେ । ବାର୍ଦ୍ଧକ୍ୟ ତାଙ୍କର ସ୍ମରଣ ଶକ୍ତି ସବୁ ନେଇଯାଇଥିଲା । ମୁଁ ଚିହ୍ନା ଦେଲି । ସେ ଚିହ୍ନିଲେନି । କହିଲି ମୁଁ ଏବେ ଅଧାପିକା । ଆପଣଙ୍କ 'ମାଟିର ମଣିଷ' ଉପନ୍ୟାସ କ୍ଲାସ୍‌ରେ ପଢ଼ାଉଛି । ସେ କହିଲେ, ମାଟିର ମଣିଷ କ'ଣ ? କହିଲି, ସେପରା ଆପଣଙ୍କ ଲେଖା ଉପନ୍ୟାସ ?

କାଳିନ୍ଦୀଚରଣ ଠୋ ଠୋ ହସିଉଠିଲେ । ହେ, ସେଇଟା ମୋର କାହିଁକି ହେବ ? ତାଙ୍କୁ ଦେଖାଶୁଣା କରୁଥିବା ଝିଅଟି ତାଙ୍କୁ ଧରି ଧରି ମୋ ସାମ୍ନାରୁ ନେଇ ଗଲାବେଳେ ସେ ମୁଣ୍ଡହଲାଇ ହଲାଇ ସେମିତି ହସୁଥିଲେ । ମୁଁ ସ୍ତମ୍ଭୀଭୂତ ହୋଇ ତାଙ୍କୁ ଚାହିଁ ରହିଥିଲି ଆଉ ଆକାଶକୁ ଚାହିଁ ଖୋଜି ହେଉଥିଲି କେଉଁଠି ହଜି ଗଲେ ପଦ୍ମଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ ? ବାର୍ଦ୍ଧକ୍ୟ କ'ଣ ଏମିତି କରିଦିଏ ମଣିଷକୁ ? ବୁଢ଼ାକାଳ କ'ଣ ବିସ୍ମୃତିର ଏକ ଶ୍ରେଷ୍ଠ ସୋପାନ ? ମଣିଷ ଜୀବନରେ ସଞ୍ଜ ଆସିବାର ସଙ୍କେତ ତ ବୁଢ଼ାକାଳ । ସେହି ବୁଢ଼ାକାଳରେ ଏବେ କାଳିନ୍ଦୀଚରଣ । କାଲି ସକାଳେ ସେ ନଥିବେ । ଅଥଚ 'ମାଟିର ମଣିଷ' ମାଟିରେ ଠିଆହୋଇ ଥିବ ଆକାଶକୁ ମୁଣ୍ଡଟେକି ।

ସେଠୁ ଫେରିଲା ବେଳେ ମୁଁ ମୋ ନିଜର ବୁଢ଼ୀକାଳ କଥା ଚିନ୍ତା କରି ବିବ୍ରତ ହୋଇ ଉଠିଥିଲି । ମୃତ୍ୟୁ ଅପେକ୍ଷା ବାର୍ଦ୍ଧକ୍ୟ କେତେ ଭୟଙ୍କର ? ଦିନେ ମୋର ବି ଏମିତି ସମୟ ଆସିବ । ଏମିତି ବାଉଳା ହେଉଥିବି, ଚିହ୍ନି ପାରୁନଥିବି, ହସୁଥିବି ତ ହସୁଥିବି । ଲୁଗାପଟାରେ ଗୁହମୂତ ହୋଇ ଯାଉଥିବ । ପୁଣି ନିଜର ପିଲା ଅବସ୍ଥାକୁ ଫେରିଯାଇ ଅଝଟ ହେଉଥିବି । ହେଲେ କିଏ ଥିବ ସେତେବେଳେ ମୋ ପାଖରେ ? କିଏ ମୋତେ ସାହାରା ଦେବ, ଧରି ଧରି ନେଇ ଯାଉଥିବ ? ମୋର ଲୁଗାପଟା ସଫା କରୁଥିବ ? ମୋର ସବୁ ଅଝଟପଣକୁ ମାନି ନେଉଥିବ ? ଆଃ, ବୁଢ଼ାକାଳ ଆଗରୁ ସତରେ ମୁଁ ଆଖିବୁଜି ଦିଅନ୍ତି କି ! ଏମିତି ଏକ ଧାରଣା ମନରେ ଜନ୍ମିଥିଲା । ଗୌତମ ବୁଦ୍ଧଙ୍କର ସେହି ବାର୍ଦ୍ଧକ୍ୟକୁ ଦେଖି ଜନ୍ମିଥିବା ବିକାରର ଦୃଶ୍ୟକୁ ମଧ କଳ୍ପନାରେ ଆଙ୍କିଥିଲି । ତାହାଲେ ଜୀବନ କ'ଣ ? ଥରେ ସୁରେନ୍ଦ୍ର ମହାନ୍ତିଙ୍କୁ ବି ପଚାରିବାକୁ ଇଚ୍ଛା ହୋଇଥିଲା 'ସମ୍ବାଦ'ରେ ଥିଲାବେଳେ ଯେ ଜୀବନ କ'ଣ କୃଷ୍ଣଚୂଡ଼ା ନା ଶୁଖିଲା ରୁଟି ଅଥବା ଚନ୍ଦ୍ର ? ଜୀବନ କ'ଣ ନୟନପୁର ଏକ୍ସପ୍ରେସ । ନା' ମଧୁମତୀର ଆକାଂକ୍ଷା ? ଜୀବନ କ'ଣ ଓଃ କାଲ୍‌କାଟା ନା' ଭାରତ ଆବିଷ୍କାର ? କାଳିନ୍ଦୀଚରଣଙ୍କୁ ଦେଖି ଫେରିଲା ପରେ ମୁଁ ସେହି ଜୀବନର ସମଗ୍ର ସ୍ୱରୂପ ସମ୍ପର୍କରେ ହିଁ ଚିନ୍ତା କରୁଥିଲି ବାରମ୍ବାର ।

× × × × ×

ମୋର ଜଣେ ବାନ୍ଧବୀ ଶ୍ରୀଜୟା ମାଧ୍ୟମରେ ପରିଚୟ ହୁଏ 'କଳିଙ୍ଗର ଶିଳ୍ପୀ' ଅଭିଜାତ କଥାଶିଳ୍ପୀ ରାଜକିଶୋର ରାୟଙ୍କ ସହିତ । ବାଣୀ ବିହାରକୁ ସେ ସେ ବର୍ଷ (୧୯୮୧-୮୨) ବୋଧହୁଏ ନାଟ୍ୟ ସଂସଦର ମୁଖ୍ୟ ଅତିଥି ହୋଇ ଆସିଥାନ୍ତି । ମୋର 'ପର୍ଦ୍ଦା ପଛର' ଉପନ୍ୟାସଟି ବାହାରି ସାରି ଥାଏ । ତାଙ୍କୁ ବହିଟି ଦେବା ଅବସରରେ ସେ କହିଲେ ତମେ ମୋ ଝିଅଭଳି । ବିଶେଷ କରି ତମ ଦେହର ରଙ୍ଗ ମୋ ଝିଅ ଗଣ୍ଠି

(ଅଭିନେତ୍ରୀ ମହେଶ୍ୱତା ରାୟ) ଭଳି । ତେଣୁ ଆଜିଠାରୁ ତମେ ମୋତେ ବାପା କହିବ । ମୁଁ 'ତୁ' ବୋଲି ସମ୍ବୋଧନ କଲେ କିଛି ଆପତ୍ତି ରହିବ କି ?

ସେହିଦିନ ଠାରୁ ତାଙ୍କ ସହ ମୋର ଏକ ମମତାର ସମ୍ପର୍କ ଗଢ଼ି ଉଠିଲା । ଅବଶ୍ୟ ତାଙ୍କୁ ନେଇ କେତେ ଜଣ ଶୁଣାଯାଏ । ତେବେ ସେ ମୋତେ ପିତୃତୁଲ୍ୟ ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ ଦେଇ ଋଣୀ କରିଦେଲେ । ତାଙ୍କର ଆଦର ଆଉ ମୋ ଭବିଷ୍ୟତକୁ ନେଇ ଚିନ୍ତା ଦେଖିଲେ ମନେହେଉ ଥିଲା ସତରେ ରକ୍ତର ସମ୍ପର୍କ ସବୁକିଛି ନୁହେଁ । ରକ୍ତ ସମ୍ପର୍କକୁ ତ ଆଜିର ସ୍ୱାର୍ଥପର ମଣିଷ କାଟି ଦେଉଛି । ବର୍ତ୍ତମାନର ଦୁନିଆରେ ପର ହିଁ ଆପଣା ପାଲଟୁଛି । ଏତେ ପ୍ରତିଷ୍ଠିତ, ବିଖ୍ୟାତ ମଣିଷ ମୋତେ ଯେତେବେଳେ 'ମାଆ କବିତା'ରେ ବୋଲି ସମ୍ବୋଧନ କରି ଚିଠି ଲେଖନ୍ତି ସେତେବେଳେ ମନ ମୋର ପୂରି ଉଠେ । କେତେ ଉପଦେଶ, ଆଶ୍ୱାସନା । ମୋର ଗପ, ପୁରସ୍କାର ବିବରଣୀ, ରେଡିଓ କି ଟିଭି କାର୍ଯ୍ୟକ୍ରମ, ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ଲେଖା ଯେଉଁଠି ଯାହା ଦେଖିଲେ, ପଢ଼ିଲେ ଚିଠି ଲେଖନ୍ତି । କେଉଁଠି ସମାଲୋଚନା କରାଯାଇଥାଏ ତ କେଉଁଠି ପ୍ରଶଂସା । କେଉଁଠି ଉପଦେଶ ତ ଆଉ କେଉଁଠି ଖୁବ୍ ବଡ ହୋ ବୋଲି ଆନ୍ତରିକ ପ୍ରଶଂସା । କେତେବେଳେ ଅସମୟରେ ଭାଙ୍ଗି ନ ପଡିବା ପାଇଁ ବୁଝାଇଛନ୍ତି । ଆଗେଇବା ପାଇଁ ପ୍ରେରଣା ଦେଇଛନ୍ତି । ତାଙ୍କରି ଉଦ୍ୟମରେ ହିଁ ମୁଁ ବାଣୀବିହାରରେ ପଢୁଥିଲାବେଳେ ଧୀରେନ୍ ପଟ୍ଟନାୟକଙ୍କ ଖବରକାଗଜରେ ସହ-ସଂପାଦିକା ଭାବେ ନିଯୁକ୍ତି ପାଇ ମୋର ପ୍ରଥମ ଚାକିରୀ ଜୀବନ (ସାମ୍ବାଦିକତା) ଆରମ୍ଭ କରିଥିଲି ।

ଏମ.ଏ ପରେ ବାରିପଦାରେ ଥିଲାବେଳେ ରାଜକିଶୋର ରାୟ କୌଣସି ଏକ ବିଷୁବ ସଂକ୍ରାନ୍ତିରେ ଛଉନୃତ୍ୟ ସମୟରେ ମୟୂରଭଞ୍ଜ ଜିଲ୍ଲା ସାଂସ୍କୃତିକ ପରିଷଦ ତରଫରୁ ମୁଖ୍ୟ ଅତିଥି ହୋଇ ବାରିପଦା ଆସି ସର୍କିଟ୍ ହାଉସ୍‌ରେ ରହିବାର ବ୍ୟବସ୍ଥା ହୋଇଥିଲା । ପୁରୀରୁ ଲେଖିଥିଲେ ମୁଁ ତୋ ଘରକୁ ଯିବି । ସମସ୍ତଙ୍କ ସହ ପରିଚିତ ହେବି । ମୁଁ ଲେଖିଥିଲି, 'ଆମର ଗରିବ ଘର । ମାଟି ଘର । ବାଣୀବିହାରର କବିତା ଆଉ ବାରିପଦାର କବିତା ଭିତରେ ଆକାଶ ପାତାଳ ପ୍ରଭେଦ । ଏଠି ଦେଖିବେ ହଳଦି ତେଲରେ ଲୁଗାକାନି ପୋଛି ଧୂଆଁରେ ଆଲ୍ତାମାଲ୍ତା ହେଉଥିବା ଭିନ୍ନ ଏକ କବିତାକୁ । 'ସେ ଲେଖିଥିଲେ, ମୋର ସେହି ଧୂଆଁରେ, ହଳଦି ତେଲ ମଖା ଆଲ୍ତାମାଲ୍ତା ହେଉଥିବା ମମତାର କବିତାକୁ ଲୋଡା । ଆମ ପୂର୍ବପୁରୁଷ ମାଟିଘରେ ରହୁଥିଲେ । ସାରଳା ଦାସ, ରାଧାନାଥ କି ଗଙ୍ଗାଧର, ଫକୀରମୋହନ କେହି ମହଲ ବା ଅଟ୍ଟାଳିକାରେ ଜନ୍ମ ହୋଇ ନଥିଲେ । ଏ ଦେହ ବି ଦିନେ ସେହି ମାଟିରେ ମିଶିଯିବ ।'

କେତେ ବଡ କଥା ସେ ଲେଖିନଥିଲେ ? ନିର୍ଦ୍ଦିଷ୍ଟ ସମୟରେ ସେ ଆମ ଘରକୁ ଆସିଥିଲେ । କିଛି ସମୟ ରହିଲାପରେ ମୋ ବଡଭଉଣୀଙ୍କ ଘରକୁ ଯାଇଥିଲେ । ଅପା ଘରେ ତାଙ୍କ ଖାଇବା ବନ୍ଦୋବସ୍ତ କରାଯାଇଥିଲା । ପରେ ପରେ ସେଠି ପହଁଞ୍ଚି ଯାଇଥିଲେ କୁନିଆ କକା (ଅଭିନେତା ଉତ୍ତମ ମହାନ୍ତି) । ସେତେବେଳେ ତାଙ୍କର 'ଫୁଲଚନ୍ଦନ' ଚଳଚ୍ଚିତ୍ରଟି ନୂଆ ହୋଇ ରିଲିଜ ହୋଇଥାଏ । ମୋ ଝିଆରୀ ଜଲି ଛୋଟ ଥାଏ ଓ ଦୁଇ ତିନିଦିନ ଆଗରୁ ସିନେମାଟି ଦେଖିଥାଏ । ଉତ୍ତମ ମହାନ୍ତିଙ୍କୁ ନିଜ ଘରେ ଦେଖି ସେ ଆଶ୍ଚର୍ଯ୍ୟ ହୋଇ କହି ପକାଇଥିଲା ଇଏ ତ ଫୁଲଚନ୍ଦନ ହୀରୋ । ଏଠି କେମିତି ? ସମସ୍ତେ ହସି ଉଠିଲାବେଳେ କୁନିଆ କକା (ତାଙ୍କ ଡାକ ନାଁ) କହିଥିଲେ, ଖାଲି ହୀରୋ ନୁହେଁ, ସମ୍ପର୍କରେ ତୋର ଅଜା ବି । ଆମର ମୂଳଘର ବାରିପଦା ବଡବଜାରରେ ଥାନା ପଛପଟେ ଥିଲା । ଉତ୍ତମ ମହାନ୍ତିଙ୍କ ଘର ପାଖରେ । ତାଙ୍କ ବାପା ମୋ ବାପାଙ୍କୁ ପୁଅ କରିଥିଲେ ଓ ପଡୋଶୀ ଥିବାରୁ ଆମର ପାରିବାରିକ ସମ୍ପର୍କ ଥିଲା । ସେହି ହିସାବରେ ସେ ଆମର କକା ଥିଲେ ।

ଗାଳ୍ପିକ, ଅଭିନେତା ରାଜକିଶୋର ରାୟଙ୍କ ଭଳି ଶ୍ରଦ୍ଧାଳୁ, ବିଶାଳ ହୃଦୟ ମଣିଷ ଆଜିଭଳି ହିସାବୀ ଦୁନିଆରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କୁ କେନ୍ଦ୍ରକରି ଅନେକ କଥା ଶୁଣିଛି । ହେଲେ ସେ କନ୍ୟାର ଆସନରେ ମୋତେ ବସାଇ ପିତୃତ୍ୱର ବାତ୍ସଲ୍ୟ ଓ ଶୁଭକାମନାର ଯେଉଁ ଆଶୀର୍ବାଦ ବର୍ଷା କରିଛନ୍ତି ତାହା ମୋ ପାଇଁ ଅଭୁଲା, ଦୁର୍ମୂଲ୍ୟ । ତାଙ୍କ ଭଳି ତାଙ୍କ ପତ୍ନୀ ମାମା ମୋ ପାଇଁ ଏକ ସ୍ୱତନ୍ତ୍ର ଆସନ ଦାବୀ କରନ୍ତି । ଥରେ ଭୁବନେଶ୍ୱର ପୁସ୍ତକମେଳାରେ ବସିଥାଏ । ସେତେବେଳେ ସୂଚନାଭବନ ପରିସରରେ ପୁସ୍ତକମେଳା ଚାଲିଥାଏ । ବରେନ୍ଦ୍ର କୃଷ୍ଣ ଧଳ, ଅଭିନେତା ଶ୍ରୀରାମ ପଣ୍ଡା, ଗାଳ୍ପିକ ରବି ପଟ୍ଟନାୟକ, କବି ସୁରେଶ ରାଉତରାୟ ଏମିତି କେତେଜଣ ବସି ଥାଉ । ଏହି ସମୟରେ ମାମାଙ୍କୁ ଧରି ରାଜକିଶୋର ରାୟ ପହଞ୍ଚିଗଲେ । ପ୍ରଥମେ ଦେଖିଲି ସେହି ମହୀୟସୀ ମହିଳାଙ୍କୁ । ବାର୍ଦ୍ଧକ୍ୟରେ ବି ତାଙ୍କ କ୍ଷୀଣ ଦେହରୁ ସୌନ୍ଦର୍ଯ୍ୟର ଜ୍ୟୋତି ବାହାରୁଥାଏ । ଆଖି ଦୁଇଟି ଟଣାଟଣା । ରାଜକିଶୋର ରାୟ ମୋତେ ଦୂରରୁ ଦେଖି ପାରିଥିଲେ ମୁଁ ଦେଖିବା ଆଗରୁ । ପହଞ୍ଚି କହିଲେ, ଏଠି କବିତା ବାରିକ ନାଁ ରେ ଜଣେ ଲେଖିକା ଅଛନ୍ତି କି ? ମୁଁ ପରିଚିତ ସ୍ୱର ଶୁଣି ଚମକି ଅନାଇଲା ବେଳକୁ ମାମା ମୋତେ କୋଳାଗ୍ରତ କରି ସାରିଥିଲେ । ମା' ସତରେ ଏତେ ମମତାମୟୀ ହୋଇପାରେ ? ଆଜୀବନ ମାଆକୁ ହରାଇଥିବା ମାତୃହରା ଝିଅଟି ସେଦିନ ମାମା ନାଁରେ ସମସ୍ତଙ୍କଠାରେ ପରିଚିତା ସେହି ମମତାମୟୀ ନାରୀଙ୍କ କଣ୍ଠାଗ୍ର ହୋଇ ନିଜକୁ ଧନ୍ୟ ମନେ କରି ନଥିଲା ବରଂଚ ପୂର୍ଣ୍ଣା

ହୋଇ ଯାଇଥିଲା । ସମାଜର କେତେ ଉଚ୍ଚ ଆସନରେ ସେତେବେଳେ ସେମାନେ ପ୍ରତିଷ୍ଠିତ, ପ୍ରତିଷ୍ଠିତା । ଅଥଚ ଗର୍ବ, ଅହଙ୍କାର ଠାରୁ ବହୁ ଦୂରରେ । ପୁଣି ସମସ୍ତଙ୍କୁ ସୁଯୋଗ ସହଜରେ ମିଳେନାହିଁ ।

'ସମ୍ବାଦ'ରେ ସାମ୍ବାଦିକତା କଲାବେଳେ ତାଙ୍କର ମଝିଆଁ ଝିଅ ମନସ୍ୱିନୀ ରାୟ (ରୀନା ଅପା) ସମ୍ବାଦର ଚଳଚ୍ଚିତ୍ର ବିଭାଗରେ ଦାୟିତ୍ୱ ତୁଲାଉ ଥିଲେ । ତା'ର ଅଳ୍ପଦିନ ଆଗରୁ ରିଲିଜ୍ ହୋଇ ରାଷ୍ଟ୍ରପତି ପୁରସ୍କାର ପାଇଥାଏ ନୀରଦ ମହାପାତ୍ରଙ୍କ 'ମାୟା ମିରିଗ' । ସେଥିରେ ରୀନା ଅପା ବଡ ବୋହୂ ଭୂମିକାରେ ଅଭିନୟ କରିଥାନ୍ତି । ସେଠି ଚିହ୍ନା ହେଲାପରେ ବେଶ୍ ଆନ୍ତରିକତା ଗଢ଼ି ଉଠିଥିଲା । ଜ୍ୟୋତ୍ସ୍ନା ରାଉତରାୟ ଓ ମୁଁ ତାଙ୍କ ସହ ଥରେ ପୁରୀ ଯାଇଥିଲୁ । ବଳଗଣ୍ଡି ଛକରେ ଓହ୍ଲାଇ ତାଙ୍କ ଘରେ ପାଦଦେଉ ଦେଉ ବାବା, ମାମା ଏମିତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା କଲେ, ଆହ୍ଲାଦିତ ହୋଇ ଉଠିଲେ ଯେ ଆଜି ବି ସେ ଦୃଶ୍ୟ ନାଚି ଯାଉଛି । ଆମେ ଦୁଇଦିନ ରହିଥିଲୁ ସେଠି । ମାମାଙ୍କୁ ରାଜକିଶୋର ରାୟ କହୁଥିଲେ, ମୋର ତିନିଝିଅଙ୍କ ନାଁ 'ମ'ରେ (ମାଳବିକା, ମନସ୍ୱିନୀ, ମହେଶ୍ୱତା) କିନ୍ତୁ ଚତୁର୍ଥ ଝିଅର ନାଁ 'କ'ରେ । ଚାରିଜଣଯାକ ପ୍ରଚଣ୍ଡ ପ୍ରତିଭାଧାରିଣୀ । ସେଇଠି ମାନିଅପା (ମାଳବିକା ରାୟ)ଙ୍କ ସହ ପରିଚୟ ହେଲା । କଥା ପ୍ରସଙ୍ଗରେ ଜାଣିଲି ସେ ଓଡ଼ିଶାର ପ୍ରଥମ ମହିଳା ଘୋଡା ଚଢ଼ାଳୀ । ତାଙ୍କର ଏକ ସାକ୍ଷାତକାର ଆଣି 'ଧରିତ୍ରୀ'ର ନାରୀବିଭାଗରେ ଛାପିଥିଲି । ଆମେ ସମସ୍ତେ ମିଶି ଜଗନ୍ନାଥଙ୍କ ଦର୍ଶନରେ ଯାଇଥିଲୁ । ଆସିଲା ବେଳକୁ ବାବା ଅଭଡା ମଗାଇ ସାରିଥିଲେ । କଅଁଳ କଦଳୀପତ୍ର ଉପରେ ମାନିଅପା, ମାମା, ରୀନା ଅପା ସବୁ ବଢ଼ାବଢ଼ି କରିଦେଲେ । ସେଠି ରହି ଜାଣିଲି ମାମା ଜ୍ୟୋତିଷ ଶାସ୍ତ୍ରରେ ଜଣେ ବିଶରଦା ନାରୀ । ପୁଣି ସେ କେବଳ ମାଳବିକା, ମନସ୍ୱିନୀ, ମହେଶ୍ୱତାଙ୍କ ମାମା ନୁହଁନ୍ତି, ଓଡ଼ିଶାର ଅଧିକାଂଶ ଲେଖକ, ଛାତ୍ର, ଅଧ୍ୟାପକ,ଚଳଚ୍ଚିତ୍ର ଅଭିନେତା-ଅଭିନେତ୍ରୀ, ପ୍ରଯୋଜକ ପ୍ରଭୃତିଙ୍କର ମାମା । ଦୁଇଦିନ ରହଣି ମଧ୍ୟରେ ବାବା ମାମା ମୋତେ ମନ୍ତ୍ରମୁଗ୍ଧ କରି ରଖିଥିଲେ । ବଡ଼ିଭୋରରୁ ରାଜକିଶୋର ରାୟ ହାରମୋନିୟମ୍ ଧରି ବସିଯାଉଥିଲେ ଓ ଗଳା ସଫା କରି ସାରେଗାମା ରିଆଜ କରି ଶ୍ଳୋକ ବୋଲୁଥିଲେ । ମାମାଙ୍କ ଟଣାଟଣା ଆଖି, ଧର୍ମପୁସ୍ତକର ବ୍ୟାଖ୍ୟା ଆଉ ଜୀବନର ଘାତ ପ୍ରତିଘାତରେ ସ୍ୱାମୀ, ଝିଅମାନଙ୍କୁ ପ୍ରତିଷ୍ଠିତ କରିପାରିବାର କାହାଣୀ ବଖାଣୁଥିଲେ । ସେତେବେଳେ ଏକମାତ୍ର ପୁଅ ରାଜା ରହୁଥିଲା ଦେଶ ବାହାରେ ।

'ସମ୍ବାଦ' ଛାଡିଲା ପରେ 'ଧରିତ୍ରୀ'ରେ ନାରୀପୃଷ୍ଠା ସମ୍ପାଦନା ଓ ତା'ପରେ ଆଇ.ସି.ଡିଏସ୍‌ରେ ଯୋଗଦାନ, ଉଦଳା କଲେଜ, ରାଉରକେଲାରେ ଅଧ୍ୟାପନା ଭିତରେ

ମୋ ଜୀବନ ବଦଳି ଯାଇଥିଲା । ବାହାଘର ପରେ ଛୋଟ ହୋଇଥିବା ପୁଅକୁ ବାରିପଦାରେ ଛାଡି ବାଲେଶ୍ୱରରେ ଚାଲିଥିବା ଲେଖିକା ସମ୍ମିଳନୀ ଯାଇଥିଲି । ବୋଧହୁଏ ୧୯୯୪ ମସିହା ହେବ । ସେଇଠି ଚିହ୍ନା ହେଲା ଜ୍ଞାନଦା ପଟ୍ଟନାୟକଙ୍କ ସହିତ । ଅଖିଳ ପଟ୍ଟନାୟକଙ୍କ ମାନସୀ ତଥା ସହଧର୍ମିଣୀ । ପରେ ପରେ ଦେଖିଲି ରୀନା ଅପାଙ୍କୁ । କହିଲେ ତୋ ସହ ବହୁ ବର୍ଷପରେ ଦେଖାହେଲା । ଆଜିକାଲି ଦେହ ଆଦୌ ଭଲ ରହୁନାହିଁ । ତୁ ଜାଣୁ ନା ନାହିଁ କେଜାଣି ଏ ବୁଢ଼ୀକାଳେ ପୁଣି ଥରେ ବାହା ହୋଇଛି । ଏମିତି ତ ଆଦୌ ରାଜି ନଥିଲି । ବାପା ବୁଝାଇଲେ, କେମିତି ଜୀବନ କାଟିବୁ ? ତୋର ଚାକିରିଟେ ଥାଆନ୍ତା ଭଲା । କହିଲି, ଭଲ ହେଲା । ହେଲେ ତମେ ସୁଖରେ ଅଛ ତ ? କେମିତି ଉଦାସ ଦିଶିଲେ ସେ । କହିଲେ, ଗୋଟାଏ ଗୋଟାଏ ଜୀବନ ଅଭିଶାପକୁ ସାଙ୍ଗରେ ନେଇ ଆସିଥାନ୍ତି । ସୁଖ ମୋ ଭାଗ୍ୟରେ ଲେଖା ହୋଇନାହିଁ । ତେବେ ତୁ ଥରେ ପୁରୀ ଯାଆ ଜୋଇଁକୁ ଧରି । ବାପା ସବୁବେଳେ ପଚାରନ୍ତି କବିତା ସହ ତୋର କ'ଣ ଦେଖା ହେଉନାହିଁ ? ସେ ମୋତେ ଭୁଲିଗଲା । ତୋତେ ଦେଖିଲେ କେତେ ଖୁସୀ ହୁଅନ୍ତେ ବାପା । ନିଶ୍ଚେ ପୁଅକୁ ଧରି ଯିବି କହିଲି । ତାହା ହିଁ ଥିଲା ରୀନା ଅପାଙ୍କ ସହ ମୋର ଶେଷ ସାକ୍ଷାତ । କିଏ ଜାଣିଥିଲା ଆଉ ଏ ଜୀବନରେ ତାଙ୍କ ସହ କେବେ ବି ଦେଖା ହେବ ନାହିଁ ବୋଲି ।

ଖବରକାଗଜରୁ ପଢ଼ି ଜାଣିଲି ବାବା ଅସୁସ୍ଥ ବୋଲି । ସେତେବେଳେ ଆମର ରାଉରକେଲାରୁ ବରଗଡ ବଦଳି ହୋଇଯାଇଥାଏ । ଭୁବନେଶ୍ୱର ଗଲା ଉପଲକ୍ଷେ ସପରିବାର ପୁରୀ ଯାଇଥିଲୁ । ତାଙ୍କୁ ଚିହ୍ନି ହେଉ ନଥିଲା । ରଙ୍ଗ କଳା ମଚ୍‌ମଚ୍ ବାଳ ଝୋଟ ଭଳି ଧଳା, ଫୁରୁଫୁରୁ ଉଡୁଥିଲା । ଗୋଡ ଫୁଲି ଯାଇଥିଲା । କଳିଙ୍ଗଶିଳ୍ପୀ ଆରପୁରକୁ ଟିକେଟ୍ କାଟିବାର ପ୍ରସ୍ତୁତିରେ ଥିଲେ । ପୁଅକୁ କୋଳରେ ବସାଇ ନାଁ ପଚାରିଥିଲେ । ମାମା ଆତିଥ୍ୟ ପାଇଁ ତରବର ହେଲାବେଳେ ମୁଁ ମନାକରିଥିଲି ଆମେ ମନ୍ଦିରରେ ଚଳାଇ ନେବୁ । ପ୍ରଥମ ନାତି ଦେଖା ଉପଲକ୍ଷେ ଯେତେ ମନାକଲେ ହେଁ ସେଭଳି ଅବସ୍ଥାରେ ବି ସେ ଲିପୁନ୍ ପକେଟ୍‌ରେ ଶହେଟଙ୍କା ଗୁଞ୍ଜି ଦେଲେ । ଟଙ୍କା ତ ନଥିଲା, ଥିଲା ସ୍ନେହ, ଆଦର, ମମତାର ଲୁଥୁପୁଥୁ ସ୍ମାରକୀ ।

ଫେରି ଆସିବାର କେତେଦିନ ପରେ ନିଉଜ୍ ଓ ପେପରରୁ ଜାଣିଲି କଳିଙ୍ଗ ଶିଳ୍ପୀ ଚାଲିଗଲେ ବୋଲି । ଶ୍ରାଦ୍ଧ ଉପଲକ୍ଷେ କାର୍ଡ ବି ପଠେଇବାକୁ ମାମା ଭୁଲି ନଥିଲେ । ତା'ର କେତେ ମାସପରେ ମାମା ବି ଚାଲିଗଲେ । ଜୀବନର ଗୋଟାଏ ବଡ ଅଧ୍ୟାୟ ସରିଗଲା ।

ଏବେ ପୁରୀ ଗଲେ ବଳଗଣ୍ଡି ଛକରେ ପହଞ୍ଚିଲେ ଦୃଷ୍ଟି ପହଁରିଯାଏ ସେହି ସ୍ଥାନକୁ । ଦୁଇଟି ବାତ୍ସଲ୍ୟ ଛଳଛଳ ଛବି ଆଙ୍କିହୋଇ ଯାଏ । ସେ ଘରେ ଏବେ କିଏ ଅଛନ୍ତି କେଜାଣି ?

## ଆଠ

'ଆମାର୍ ସକଲ୍-କାଣ୍ଡା ଧନ୍ୟ କରେ
ଫୁଟ୍‌ବେ ଗୋ ଫୁଲ୍ ଫୁଟ୍‌ବେ
ଆମାର ସକଲ୍ ବ୍ୟଥା ରଙ୍ଗୀନ୍ ହୟେ
ଗୋଲାପ ହୟେ ଉଠ୍‌ବେ ।'

ରବୀନ୍ଦ୍ରନାଥଙ୍କ ଏ ଧାଡି କେତୋଟି କେଜାଣି ମୋତେ ପ୍ରେରଣା ଦେବା ସହିତ ଅନେକ ସମୟରେ ଆଶ୍ୱାସନା ମଧ୍ୟ ଦେଇଥାଏ । କଷ୍ଟ କଲେ କୃଷ୍ଣ ମିଳେ ନ୍ୟାୟରେ ଜୀବନର ବ୍ୟଥା ଗୋଲାପଫୁଲ ପାଲଟିବାର ଆଶାରେ ମୁଁ ଜୀବନର ତରି ବାହି ନିଏ । ମଣିଷ ସବୁ ଯୁଗରେ ଆଶାବାଦୀ । ଯେତେ ନିରାଶାର ବାଣୀ ଶୁଣାଇଲେ ହେଁ ଜୀବନପ୍ରତି ମୋହ ତା'ର କିଛି କମ୍ ନୁହେଁ । ସ୍ୱପ୍ନ ଦେଖିବାରେ ବି କିଛି କୃପଣତା ନଥାଏ । ପୁଣି ଜୀବନରେ ବ୍ୟଥା ରଙ୍ଗୀନ୍ ହେଇ ନଥିଲେ ତାହାକୁ କବି କ'ଣ କେବେ ଗୋଲାପ କରିପାରିଥାନ୍ତା ?

ତେଣୁ ମୋର ମନେହୁଏ ପ୍ରତ୍ୟେକ ଶିଳ୍ପୀ, ଲେଖକ ବ୍ୟଥା ଭିତରେ ଗୋଲାପର ସନ୍ଧାନ କରିପାରେ ବୋଲି ସେ ବଞ୍ଚିଥାଏ । ପ୍ରତ୍ୟେକ କଳାକାର ସେଥିପାଇଁ ଜଣେ ଜଣେ ଜୀବନଶିଳ୍ପୀ । ଜୀବନକୁ ସେ ଭଲପାଏ । ଭଲପାଏ ବୋଲି ହିଁ ବ୍ୟଥା, ବେଦନା, ଦୁଃଖ, ସଂଗ୍ରାମର ନିର୍ଯ୍ୟାସ ଭିତରେ ସେ ସ୍ୱପ୍ନ ଦେଖିପାରେ ।

ମୋ ଲେଖା ଯେତେ ଯାହା ହେଲେ ଜୀବନକୁ ଭଲପାଇବାର ନିର୍ଯ୍ୟାସ ଭିତରୁ ହିଁ ଜନ୍ମ ନେଇଥାଏ । କିଛି ଲେଖକ ଲେଖିକାଙ୍କ ଲେଖା ମଧ୍ୟ ପରୋକ୍ଷରେ ପ୍ରେରଣା ଯୋଗାଇଥାଏ । ବେଳେ ବେଳେ ଭାବେ ଭଗବାନ ତେଲଲୁଣର ସଂଘର୍ଷମୟ ଘରେ ଜନ୍ମଦେଇ ମୋ ଭିତରେ ଏତେ ଆବେଗ, ଆକାଂକ୍ଷା, ସ୍ୱପ୍ନ, ବଡହେବାର ବ୍ୟାକୁଳତା ଭର୍ତ୍ତି କରିଦେଲେ କାହିଁକି ? ମୁଁ ବି ମାଟିରେ ଠିଆ ହେବି ଆକାଶରେ ଗୁଡି ହେଇ ଉଡିବାର ସ୍ୱପ୍ନ ପୋଷଣ କଲି କାହିଁକି ?

ଆଇ.ଏ. ପଢ଼ିଲା ବେଳେ ଯେତେବେଳେ ପ୍ରଥମ କରି କମଳା ଦାସଙ୍କ 'My story' ପଢ଼ିଲି ସେତେଟା ବୁଝିପାରି ନଥିଲି । ବି.ଏ.ରେ ତାଙ୍କର ହିନ୍ଦୀ ଅନୁବାଦ ।

'ମେରୀ କାହାନୀ' ପଢ଼ିଲି । କମଲାଦାସଙ୍କ ଜୀବନର ରୋମାଞ୍ଚକର କାହାଣୀ ଅନେକ ପାଠକଙ୍କ ଭଳି ମୋତେ ମଧ୍ୟ ରୋମାଞ୍ଚିତ କରି ଥିଲା । ସେଦିନ ଚିନ୍ତା କରିଥିଲି ମୁଁ ମଧ୍ୟ ଦିନେ ନା ଦିନେ ମୋର ଜୀବନ କାହାଣୀ ଲେଖିବି ଓ ମୋ ଜୀବନୀର ଘଟଣାକୁ ନିଛକ ଭାବରେ ବର୍ଣ୍ଣନା କରିବି । ମୋର ଯେତେଦୂର ମନେହୁଏ ସେତେବେଳେ କୌଣସି ଲେଖିକାଙ୍କ ଆତ୍ମଜୀବନୀ ପ୍ରକାଶ ପାଇନଥିଲା କି ସେମିତି ଲେଖା ମଧ୍ୟ ଯାଇନଥିଲା । ପୁଣି ଆମ ଓଡ଼ିଆ ଲେଖିକାମାନେ ଏତେଟା ଫ୍ରାଙ୍କ୍ ନୁହଁନ୍ତି । ଲେଖା ଉପରେ ଏକ ଆବରଣ ଥାଏ । କମଲାଦାସଙ୍କ ଭଳି extravert ନୁହଁନ୍ତି କି ତସଲିମାଙ୍କ ଭଳି Bold ନୁହଁନ୍ତି । ଯଦିବା କେହି କିଛି ଲେଖିଲା ସମାଲୋଚନା କରିବାକୁ ଦଳେ ଝାମ୍ପି ପଡିଲେ । ଗଠନାତ୍ମକ ପରାମର୍ଶ ଦେବା ଯାଗାରେ ଗୋଡ ଟାଣିବା ନୀତି ଆମ ଓଡ଼ିଆଙ୍କ ଠାରେ ପ୍ରବଳ । ସେ ଯାହାହେଉ 'My story' ଯେ ମୋତେ ଜୀବନୀ ଲେଖିବାପାଇଁ ପ୍ରଥମେ ପ୍ରେରଣା ଯୋଗାଇଥିଲା ଏହା ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ । ମୁଁ ତାପରେ କିଛି କିଛି ଡାଏରି ଲେଖିବାକୁ ଆରମ୍ଭ କରିଥିଲି ।

କଲେଜ ଜୀବନରେ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ ଯେମିତି ମୋତେ ଆକୃଷ୍ଟ କରିଥିଲା, ସେମିତି ଦିନାକେତେ ୰ କନହେଇଲାଲ୍ ଦାସଙ୍କ ଗଳ୍ପର ପ୍ରେମରେ ମଧ୍ୟ ପଡିଥିଲି । ତାଙ୍କର 'ଜୀବନଯନ୍ତଣା ଓ ଯାହା ଯେମିତି ହୁଏ' ପଢ଼ି ଦିନାକେତେ ସ୍ୱପ୍ନପ୍ରବଣ ହେଇଯାଇଥିଲି । ଭାବିଥିଲି, ଲୋକଟା ଯାହା ଲେଖୁନା କାହିଁକି ବେଶ୍ ଜଣେ ରୋମାଣ୍ଟିକ୍ ପ୍ରେମିକ । ଅବଶୋଷର କଥା, କନ୍‌ହେଇଲାଲ୍ ଦାସଙ୍କ ନାଁ ସହିତ, ତାଙ୍କ ଗଳ୍ପ ସହିତ ପରିଚିତ ହେଲାବେଳକୁ ସେ ସ୍ୱର୍ଗକୁ ଟିକେଟ୍ କାଟି ସାରିଥିଲେ । ଏତେ ରୋମାଣ୍ଟିକ୍ ଗଳ୍ପ ଲେଖୁଥିବା, ଜୀବନକୁ ନେଇ ଏତେ ମଧୁର ସ୍ୱପ୍ନ ଦେଖୁଥିବା ଯୁବକଟିକୁ ମୃତ୍ୟୁ କେମିତି ଏତେ କଞ୍ଚାବୟସରେ ସ୍ପର୍ଶ କରିପାରିଲା କେଜାଣି । ମରଣ ସତରେ ଏକ ନିର୍ମମ, ଶୀତଳ ପରଶଟାଏ । ତା'ର ହାତ ବାଜିଲେ ସ୍ୱପ୍ନର ସୁନ୍ଦର ଘର ଭୁଷୁଡିଯାଏ । ସମ୍ଭାବନାପୂର୍ଣ୍ଣ ଜୀବନରେ ପର୍ଦ୍ଦା ପଡିଯାଏ । ଥରେ କନ୍‌ହେଇଲାଲ୍ ଲେଖିଥିଲେ, ମୁଁ ଜାଣେ ମୁଁ ଦିନେ ମରିବି, କିନ୍ତୁ ଏତେ ଶୀଘ୍ର କେବେ ମରିବାକୁ ଚାହେଁ ନାହିଁ । ବର୍ତ୍ତମାନ ତ ପୃଥିବୀରେ ଅନେକ ସହଜ ସୁଲଭ ଅନୁଭୂତିକୁ ଅନୁଭବ କରିନାହିଁ । ତଥାପି ମୋର ମନେହୁଏ ମୁଁ ଖୁବ୍ ବେଶିଦିନ ବଞ୍ଚିବି ନାହିଁ ।'

ସତରେ ସେତେବେଳେ କନ୍‌ହେଇଙ୍କ ପ୍ରତି ପ୍ରେମ ଆଉ ସହାନୁଭୂତିରେ ମୋ ମନ ଭର୍ତ୍ତି ହୋଇଯାଇଥିଲା । ସେ P.B.Shelleyଙ୍କ ଭଳି ମୃତ୍ୟୁକୁ ଜୀବନର ମଧୁର ସଙ୍ଗୀତ ହିସାବରେ ସତେକି ଗ୍ରହଣ କରି ନେଇଥିଲେ । ତାଙ୍କର ଧୃତରାଷ୍ଟ୍ରର ଆଖି,

ପାଚେରି, ଦୁଶ୍ମ୍ୟାନ୍ତର, ତାଙ୍କ ଠିକଣା, ଉତ୍ତାନପାଦ ପ୍ରଭୃତି ଅନେକ ଗଳ୍ପ ମୋତେ ଆକୃଷ୍ଟ କରିଥିଲା । 'ଉତ୍ତାନପାଦ'ରେ ଲେଖି ଥିଲେ, 'ଥରେ ଥରେ ଧରାବନ୍ଧା ଜୀବନରୁ ଛିଟିକି ଯିବାକୁ ବେଶ୍ ଲୋଭହୁଏ । ନ୍ୟାୟ, ନୀତି ମଝିରେ ଜୀବନ ଅଣନିଃଶ୍ୱାସୀ ହୋଇଉଠେ ।' ବାସ୍ତବିକ ତାଙ୍କ ଲେଖନୀରୁ ଓଡ଼ିଆ ଗଳ୍ପର ଏକ ନୂଆଧାରା ଆରମ୍ଭ ହୋଇ ଯାଇଥିଲା । ବଞ୍ଚିଥିଲେ ସେ ତାଙ୍କ ସମସାମୟିକ ଗାଳ୍ପିକମାନଙ୍କଠାରୁ ବହୁ ମାତ୍ରାରେ ଆଗେଇ ଯାଇଥାନ୍ତେ ଓ ଓଡ଼ିଆ ଗଳ୍ପରେ ଏକ ନୂଆ ଧାରା ସୃଷ୍ଟି କରିଥାନ୍ତେ ।

ପୁଣି ପଢ଼ିଲି ଅଖିଳମୋହନଙ୍କ ଗଳ୍ପର ପ୍ରେମରେ । ଡିମିରିଫୁଲ, ଚନ୍ଦ୍ରର ଅଭିଶାପ, ଲ୍ୟାମ୍ପପୋଷ୍ଟର ଇତିକଥା, ରୁବିରରୁବାୟତରୁ ଆରମ୍ଭ କରି ସିଦ୍ଧାର୍ଥର ଉପକଥା, ହଂସ ସଙ୍ଗୀତ, ଗୋଟିଏ ହୋଟେଲର ନକ୍ସା - ସୁକାନ୍ତ ମହାନ୍ତି ପ୍ରଭୃତି ବିଭିନ୍ନ ଗଳ୍ପ ମୋତେ ମୁଗ୍ଧ କରିଥିଲା । ତାଙ୍କର ଭାଷା, ଥିମ୍,ଗଳ୍ପ ଲେଖିବାର ଶୈଳୀ ଥିଲା ଅନନ୍ୟ । ପୁଣି ଆସିଲେ ଜଗଦୀଶ ମହାନ୍ତି । ନଷ୍ଟାଲଜିଆ ଧାରା ଓ ନିଆରା ଦୃଷ୍ଟିଭଙ୍ଗୀ ଯୋଗୁଁ ସେ ଯୁବପୀଢ଼ିଙ୍କ ପାଖରେ ବେଶ୍ ଆଦୃତ ହୋଇ ଉଠିଲେ । ସେତେବେଳେ କଲେଜ, ୟୁନିଭରସିଟିରେ ଜଗଦୀଶଙ୍କ ଗଳ୍ପକୁ ନେଇ ଆମ ଭିତରେ ସରଗରମ୍ ଆଲୋଚନା ହୁଏ । ତାଙ୍କର କୌଣସି ଦୁଆର ଖୋଲାନାହିଁ' । ଗୋଟେ ଟେରିଫିକ୍ ବାଜେ ଗପର ଭୂମିକା, ଆଲବମ୍‌ର କେତୋଟି ମୁହଁ, ଭୂମିକମ୍ପ, ଦକ୍ଷିଣ ଦୁଆରୀ ଘର, ଅନ୍ଧାରକୁ ଗୋଟେ ପାଦ ପ୍ରଭୃତି ଗଳ୍ପ ସେ ସମୟରେ ମୋତେ ବହୁ ଭାବରେ ଅନୁପ୍ରାଣିତ କରିଥିଲା । ମଣିଷର ନିଃସଙ୍ଗତା, ଯନ୍ତ୍ରଣା ସହ ଯେମିତି ନୂଆ ହେଇ ମୁଁ ପରିଚିତ ହେଉଥିଲି । ପୁଣି ବଙ୍ଗଳାର ଶୀର୍ଷେନ୍ଦୁଙ୍କ 'ଘୁଣପୋକ' ଉପନ୍ୟାସ ମଧ ମୋ ଉପରେ ଗଭୀର ପ୍ରଭାବ ପକାଇଥିଲା ।

ହେମିଂୱେଙ୍କ 'Old man and the sea' ପଢ଼ି ଜୀବନର ଏକାକୀତ୍ୱ ସହ ମିଶି ଯାଇଥିଲି । ପୁଣି ଚେକଭ ଓ ହେନେରି ଏବଂ ମୋପାଁସାଙ୍କ କିଛି କିଛି ଗଳ୍ପ ମୋ ଦୃଷ୍ଟିକୋଣକୁ ବଦଳାଇ ଦେଇଥିଲା । ମୋପାଁସା ତାଙ୍କର 'The necklace' ଗଳ୍ପରେ ଲେଖିଥିଲେ, 'How singular is life and how full of changes ? How small a thing will ruin or save one.' ଜୀବନର ଏହି ଛୋଟିଆ ଅଥଚ ବୃହତ ଜୀବନ ଦର୍ଶନ ମୋ ଜୀବନରେ ସତେ କି ନୂଆ ପୃଷ୍ଠାଟିଏ ଉନ୍ମୋଚନ କରିଥିଲି । ସତରେ ଗୋଟାଏ ଗଳ୍ପ ମଣିଷର ସମଗ୍ର ଜୀବନକୁ ବଦଳାଇ ଦେବାର କ୍ଷମତା ରଖିପାରେ । ଓ ହେନେରିଙ୍କ ଗଳ୍ପର ନାଟକୀୟ ପରିଣତି ବି ମୋତେ ଅବାକ୍ କରି ଦେଇଥିଲା । 'The last leaf', ' The gift' ଭଳି ଗଳ୍ପର ତୁଳନା ନାହିଁ । ତାଙ୍କର ଯେତୋଟି ଗଳ୍ପ ପଢୁଥିଲି, ଜୀବନର ସେତୋଟି ନୂଆ ଦିଗର ନାଟକୀୟ ପରିଣତି ପାଖରେ ପହଁଞ୍ଚୁଥିଲି ।

ପୁଣି ପଢ଼ିଲି ମୈତ୍ରେୟୀ ଦେବୀଙ୍କ 'ନ ହନ୍ୟତେ' । ଥରେ ନୁହେଁ ଦୁଇ ତିନିଥର । କ'ଣ ମନ୍ତ୍ର ଥିଲା ସେ ବହିରେ କେଜାଣି ପୃଷ୍ଠାଗୁଡିକ ଉପରୁ ଆଖି ଉଠେଇ ହେଉନଥିଲା । ସେଦିନ ମନେମନେ ଭାବିଥିଲି, ମୁଁ ବି ନିଶ୍ଚେ ଏକ perfect ଆତ୍ମଜୀବନୀ ଲେଖିବି ଯେଉଁଠି କମଳା ଦାସଙ୍କ 'My story', ମୈତ୍ରେୟୀ ଦେବୀଙ୍କ 'ନ ହନ୍ୟତେ' ଆଉ ଅମୃତା ପ୍ରୀତମ୍‌ଙ୍କ 'କାଗଜତେ କେନ୍‌ଭାସ୍'ର ମିଶ୍ରିତ ରୂପ ଥିବ । ହେଲେ ସେଭଳି ଜୀବନଟେ ମୋର ଥିଲେ ତ ? ତେବେ ସଂଘର୍ଷ, ଭଲପାଇବା ଆଉ ନିଜ ଗୋଡରେ ନିଜେ ଠିଆ ହେବାର ରୂପ ତ ସବୁ ଭୂଇଁରେ ଏକାଭଳି । ମୋ ଜୀବନ ହିଁ ହେବ ମୋ ପାଇଁ Master piece, ଓ.ହେନେରିଙ୍କ ଦି ଲାଷ୍ଟ ଲିଫ୍‌ର ଆର୍ଟିଷ୍ଟର ସ୍ୱପ୍ନ ଭଳି । କହିବା ବାହୁଲ୍ୟ ମୁଁ ମୋ ଗଳ୍ପ ଭିତରେ ଜୀବନର ଆରାଧନା କରେ, ଜୀବନକୁ ଗଭୀର ଭାବରେ ଅନୁଭବ କରେ । ତା'ର ସୁଖଦୁଃଖ, ବିରହଯନ୍ତ୍ରଣା, ଆଶା, ସ୍ୱପ୍ନ, ହତାଶା, ନିଃସଙ୍ଗତାରେ ବର୍ଷାରେ ବତୁରି ଯାଏ ।

ଗୋବିନ୍ଦ ଦାସଙ୍କ 'ଅମାବାସ୍ୟାର ଚନ୍ଦ୍ର' ଉପନ୍ୟାସର କାଉଲ୍ ଚରିତ୍ର ଅନେକ ବର୍ଷ ଯାଏଁ ମୋତେ ସମ୍ମୋହିତ କରିଥିଲା । ରବି ପଟ୍ଟନାୟକଙ୍କ 'ରାଗତୋଡି', 'ବହୁରୂପୀ'ର ଚରିତ୍ରମାନେ, ଜୀବନ ଓ ପୃଥିବୀକୁ ନେଇ ଅନନ୍ତ ଜିଜ୍ଞାସା ନିକ୍ଷେପ କରୁଥିବା ରାମଚନ୍ଦ୍ରଙ୍କ ବେହେରାଙ୍କ ଗଳ୍ପ ଦ୍ୱିତୀୟ ଶ୍ମଶାନ, ଅବଶିଷ୍ଟ ଆୟୁଷ, ଶୋଷ, ସତ୍ୟ ମିଶ୍ରଙ୍କ 'ଯୀଶୁଖ୍ରୀଷ୍ଟ' କିଶୋରୀ ଦାସଙ୍କ 'ବିଧର୍ମୀ', 'ମଣିହରା' ଓ ମନୋଜ ଦାସଙ୍କ 'ଶେଷବସନ୍ତର ଚିଠି', 'ସୀତାପାଇଁ ବର', 'ଭୁତୁଣୀ ଏକ ବିଦାୟ', 'ଲକ୍ଷ୍ମୀର ଅଭିସାର' ପ୍ରଭୃତି ଗଳ୍ପ ମୋ ଚେତନାରେ ଘାରି ଯାଇଥିଲେ । କହିବା ବାହୁଲ୍ୟ ସବୁ ଭିତରେ ମୁଁ ଅଲଗା ଭାବରେ ନିଜକୁ, ନିଜର ଶୈଳୀକୁ ବାଛି ନେଇଛି । କାହାକୁ ଅନୁସରଣ କରିନାହିଁ । ଅନୁପ୍ରାଣିତ ହେବା ଅର୍ଥ ନୁହେଁ ଅନୁସରଣ କରିବା । ମୁଁ ମୋ ନିଜର ପ୍ରକାଶ ଭଙ୍ଗୀ, ଜୀବନର ଅନୁଭୂତି, ନିଜ ଚାରିପାଖେ ରହିଥିବା ପୃଥିବୀ ଓ ଚରିତ୍ରମାନଙ୍କୁ ନେଇ ସ୍ୱତନ୍ତ୍ର ହୋଇଯାଇଛି । ମୋ ଶୈଳୀ କେବଳ କବିତା ବାରିକାୟ ଶୈଳୀ । ମୋ ଗଳ୍ପରେ କେବଳ ମୋ ନିଜସ୍ୱ ପାଦଚିହ୍ନ । ଏଠି କାହାର ଛାଇ ନାହିଁ, ଅଛି ପ୍ରେରଣା କେବଳ । ପୁଞ୍ଜି ବି ହୋଇପାରେ । ତେଣୁ ମୋ ପୂର୍ବସୂରୀ ଓ ଅଗ୍ରଜ ଲେଖକମାନଙ୍କୁ ମୁଁ ଭଲପାଏ, ଭକ୍ତିକରେ । ଆଗ୍ରହରେ ଖୋଜି ଖୋଜି ପଢ଼େ । ମୁଁ ସବୁବେଳେ କଣ୍ଟାର ବ୍ୟଥା ଭିତରୁ ଗୋଲାପର ସନ୍ଧାନ କରିବାକୁ ଚାହିଁଛି । ମୁଁ ନିଜେ ତ ବ୍ୟଥା, ଯନ୍ତ୍ରଣା, ପାଇବା, ହରାଇବାର କଣ୍ଟା ଭିତରେ ଆଜୀବନ ସଢ଼ିଛି । ସବୁ ବ୍ୟଥା, ଯନ୍ତ୍ରଣା, ଅବଶୋଷକୁ ଗୋଲାପରେ ରୂପାନ୍ତରିତ କରିବାରେ ଚେଷ୍ଟା କରିଛି । ତେଣୁ ମୁଁ ମନେ କରେ ମଣିଷର ବ୍ୟକ୍ତିତ୍ୱ ସ୍ୱଚ୍ଛଦର୍ପଣ

ଭଳି ଯେଉଁଠି ତା'ର ପ୍ରକୃତ ସ୍ୱରୂପ ପ୍ରତିବିମ୍ବିତ ହୁଏ । ମୋ ଲେଖା, ମୋ ଗଳ୍ପ ମୋ ବ୍ୟକ୍ତିତ୍ୱର ନିଛକ ପରିପ୍ରକାଶ । ସେଥିରେ ଏତେ ଟିକିଏ ବି ଫାଙ୍କି ନାହିଁ । ମୁଁ ଯାହା ନୁହେଁ, ତାକୁ କେବେ ରୂପ ଦେବାକୁ ଚେଷ୍ଟା କରିନାହିଁ । ମୁଁ ଯାହା, ତାକୁ ବିଭିନ୍ନ କଳ୍ପନା, ପ୍ଲଟ୍, ଚରିତ୍ର ମାଧ୍ୟମରେ ପ୍ରକାଶ କରିବାକୁ ଚେଷ୍ଟା କରିଛି । ଏଥିରେ ଟିକିଏ ବି ଖାଦନାହିଁ, ସଫେଇ ନାହିଁ । ଯଦିଓ ଅନେକ ମୋତେ ନୈରାଶ୍ୟବାଦୀ ଲେଖିକା କହିଥାନ୍ତି, ତାହା ମୋ ଜୀବନର ନୈରାଶ୍ୟ ହୋଇପାରେ । ତେବେ ଘୋର ନୈରାଶ୍ୟ ଭିତରେ ବି ମୁଁ ସୂଚେଇ ଦେବାକୁ ଚାହେଁ ଯେ ଜୀବନର ଗୋଟିଏ ଅସଫଳତା ସମଗ୍ର ଜୀବନ ନୁହେଁ ବା ସମଗ୍ର ଜୀବନର ବିଫଳତା କେବେ ହୋଇନପାରେ । ନହେଲେ ତ ମଣିଷ ଅସଫଳତାକୁ ନେଇ ନିଜକୁ କେବେଠୁ ନିଃଶେଷ କରିଦେଇ ସାରିଥାନ୍ତା । ସେଥିପାଇଁ ବୋଧହୁଏ ଶ୍ରୀ ଅରବିନ୍ଦ କହିଥିଲେ, 'କାହିଁକି ମଣିଷକୁ ଆବହମାନ କାଳ ଚାଲିବାକୁ ହୋଇଛି, ସୁଖକୁ ପ୍ରାଣର ମୂଲ୍ୟ ଦେଇ କିଣିବାକୁ ହୋଇଛି ? ବଡବଡ ଲୋକେ କହିଯାଇଛନ୍ତି,' ଭାଗ୍ୟ ମେଁ ଖଟାସ୍ ମିଲେ ତୋ ଉସେ ମିଠାସ୍ ମେଁ ବଦଲ୍ ଲିଜିଏ ।' ତାହାଲେ ଦେଖିବ ଜୀବନସୁନ୍ଦର ହେଇ ଯାଇଛି । ବ୍ୟଥା ତ ମିଠା ପାଇବାର ଏକ ସିଡି, ଏକ perfect ମାଧ୍ୟମ ।

ଜୀବନ ସାରା ବ୍ୟଥାର ସିଡି ହିଁ ମୁଁ ଚଢ଼ିଛି । ନିଜ ମନ ବୁଝିଲା କି ବୁଝେଇଲା ଭଳି ମାଧ୍ୟମ ଖୋଜିଛି । ଯେମିତି ଏ ଖୋଜିବାରେ ଅନ୍ତଃ ନାହିଁ । ପୁଣି ଯେଉଁ ଡାଳ ଧରିଛି ତାହା ବି ଭାଙ୍ଗି ଭାଙ୍ଗି ଯାଇଛି । ତଥାପି ମୁଁ ହାରିନାହିଁ । ବରଂଚ ହରାଇବା ଭିତରୁ ମୁଁ ନିଜକୁ ଠିଆ କରାଇବାର ଆଶ୍ୱାସନା ସାଉଁଟି ନେଇଛି । ଏଇ ସାଉଁଟି ନେବା ହିଁ ହୋଇପାରେ ମୋର ଆତ୍ମବିଶ୍ୱାସ । ଏହି ଆତ୍ମବିଶ୍ୱାସ ହିଁ ମୋତେ ଚାଲିବାର ବାଟ କଢ଼ାଇ ନେଇଛି । ସେଥିପାଇଁ ତ ଏବେ ମୁଁ ଚାଲୁଛି । ଚାଲିବି ଚାଲିବି ପଥ ବହୁଦୂର ଆହୁରି କେତେ ଯେ ବାକି !

## ନଅ

ମୁଁ ଏକ ସ୍ମୃତିସ୍ନାତା ଝିଅ
ଆପଣାକୁ ଭେଟୁଥାଏ ବାରମ୍ବାର
ଶୈଶବର କାଗଜ ଡଙ୍ଗାରୁ ବାର୍ଦ୍ଧକ୍ୟ ଯାଏଁ
ମୋ ଚାରିପାଖେ ସଜଳ ସକାଳର ଭିଡ ।

ହଁ, ସେ ସଜଳ ସକାଳକୁ ଠେଲି ଦେଇ ମୁଁ କ'ଣ ବାଟଖୋଜି ପାରିବି ? ବରଂ

ସ୍ମୃତି ସବୁ ଛାଇ ହୋଇ ମୋ ସହିତ ଏମିତି ଚାଲିଥାଉ । ତା'ରି ଭିତରେ ମୁଁ ମୋର ଜଣେ ପାଠକ ବନ୍ଧୁଙ୍କ କଥା ଆରମ୍ଭ କରୁଛି । ଆଗରୁ କହିଛି ବନ୍ଧୁହୀନ ଭାବରେ ବଞ୍ଚିବା ଭାରି କାଠିକର । ଜୀବନରେ ଯଦି ପ୍ରକୃତ ବନ୍ଧୁଟିଏ ଅଛି ତାହାଲେ ଜୀବନର ବୋଝ ବେଶ୍ ହାଲ୍‌କା ହୋଇଯିବ । ଅନ୍ତତଃ ନିଜ ଜୀବନର ସୁଖଦୁଃଖ କଥା ଶୁଣାଇବା ପାଇଁ ବନ୍ଧୁଟିଏ ନିହାତି ଦରକାର । ପୁଣି ବନ୍ଧୁଟି ଯଦି ତମର ଅସମୟରେ, ଦୁଃଖ, ଦୁର୍ଦ୍ଦିନରେ ଠିଆ ହୋଇ ନପାରିଲା ତା'ହେଲେ କି ବନ୍ଧୁତ୍ୱ ?

ମୁଁ ଜୀବନ ରାସ୍ତାରେ ବଞ୍ଚିବାର କଣିକା ଗୋଟାଉ ଗୋଟାଉ କେତେ କାହାକୁ ପାଇଛି ଆଉ ହଜାଇ ଦେଇଛି । ତଥାପି ମୋର ଜଣେ ଏମିତି ଏକ ବିଚିତ୍ର ବନ୍ଧୁ ଅଛନ୍ତି ଯାହାଙ୍କ ସହିତ ଦୀର୍ଘବର୍ଷ ହେଲା ବନ୍ଧୁତ୍ୱ ରହିଛି ଯଦିଓ ମନୋମାଳିନ୍ୟ, ଭୁଲ ବୁଝାମଣା ଘଟିଛି, ବର୍ଷ ବର୍ଷ ଦେଖା ହୋଇନାହିଁ । ତଥାପି ବନ୍ଧୁତ୍ୱ ଭାଙ୍ଗିଯାଇ ନାହିଁ । ମୋର ଅନେକଙ୍କ ପାଠକ ଭିତରୁ ସେ ପାଠକ ହୋଇ ହିଁ ଆସିଥିଲେ । ଆମ ଦୁହିଁଙ୍କ ଜୀବନଧାରା, ଦୃଷ୍ଟିଭଙ୍ଗୀ, ରୁଚି, ଶୈଳୀ ସବୁକିଛି ପରସ୍ପରଠାରୁ ସମ୍ପୂର୍ଣ୍ଣ ଅଲଗା । ତଥାପି ଏମିତି କେଉଁଠି କିଛି ଗୋଟେ ଅଦୃଶ୍ୟ ସାମଞ୍ଜସ୍ୟ ରହିଯାଇଛି । କେଜାଣି ଯାହାକୁ କେନ୍ଦ୍ର କରି ଆମର ବନ୍ଧୁତ୍ୱ ବହୁ ଉତ୍‌ଥାନ ପତନ ଭିତରେ ଚାଲିଛି । ସମୟ ସ୍ରୋତରେ ଏ ବନ୍ଧୁତ୍ୱ କେବେ ଯେ ହଜି ନଯିବ ତାହା କହି ହେବନାହିଁ । ଅଦୃଶ୍ୟର ଇଙ୍ଗିତ କଥା କିଏ କହିପାରିବ ? ପ୍ରଚଣ୍ଡ କ୍ରୋଧ, ଗର୍ବୀ, ଅହଙ୍କାରୀ, ସ୍ୱାଭିମାନୀ ଏହି ବନ୍ଧୁଟି ଭିତରେ ରହିଛି ଏକ ସହୃଦୟ, ଦରଦୀ, ଆପଣାର କରି ନେବାର ଭାବ । ଚରିତ୍ରହୀନତାର ବହୁ ଆକ୍ଷେପ ଭିତରେ ରହିଛି ଏକ ଛଳଛଳ ନଦୀ ହୋଇ ଗଡିଯିବାର ଉଚ୍ଛ୍ୱାସ । ହୁଏତ ଏଇଥିପାଇଁ ହୋଇପାରେ ଏ ବନ୍ଧୁତ୍ୱ ଏତେ ଲମ୍ବା ହୋଇ ରହିପାରିଛି । ଜଣେ କଳଙ୍କିତ ନାୟକ ପୁଣି ଜଣେ ଚର୍ଚ୍ଚିତ ନାଟ୍ୟକାର ହେବା ଆଗରୁ ଆମର ବନ୍ଧୁତ୍ୱ ଗଢ଼ି ଉଠି ସାରିଥିଲା । ମୋର ଆତ୍ମବିଶ୍ୱାସ ଅଛି ମୋ ଦୁର୍ଦ୍ଦିନ ସମୟରେ କେହି ନ ଆସିଲେ ହେଁ ଖବର ପାଇଲେ ଏ ବନ୍ଧୁଟି ହିଁ ନିଶ୍ଚେ ଆସି ଠିଆହେବ । କାହିଁକି ନା ଆମେ ସୁଖର ବନ୍ଧୁ ନୋହୁଁ, ଦୁର୍ଦ୍ଦିନର ବନ୍ଧୁ । ସୁଖ ସମୟରେ କେହି କାହାକୁ ମନେ ପକାଉନା । ସୁଖରେ ତ ଅନେକ ଖିଆଲି ବନ୍ଧୁ, ପ୍ରଶଂସକଙ୍କର ଅଭାବ ନଥାଏ । କିନ୍ତୁ ଦୁଃଖରେ ହିଁ ଆମେ ମନେ ପକାଉ । ନିଜର ଅବଶୋଷ, ଖାଲି ପଣକୁ ବାଣ୍ଟୁ ।

ଏଇ ବନ୍ଧୁଟି ସହିତ ମୋର ପରିଚୟ ହୁଏ ୧୯୮୪ ମସିହାରେ । ବାଣୀବିହାରରେ ମୁଁ ଏମ୍.ଫିଲ କରୁଥାଏ । ସେତେବେଳେ ପ୍ରଚୁର ଗପ ଲେଖୁ ଥିଲି ଓ ଓଡ଼ିଶାର ସବୁ ପ୍ରତିଷ୍ଠିତ ପତ୍ରପତ୍ରିକାରେ ପ୍ରାୟ ମୋର ଗପସବୁ ପ୍ରକାଶ ପାଉଥିଲା । ବେଶ୍ କିଛି ପାଠକଙ୍କର

ଚିଠି ପାଉଥିଲି । ଆଜି ଭଳି ଟି.ଭି. ଓ ମୋବାଇଲର ପ୍ରସାରଣ ନଥିଲି । ତେଣୁ ନିରୁତା ପାଠକଟିଏକୁ ଯଦି କୌଣସି ଲେଖା ଛୁଇଁ ଯାଉଥିଲା ସିଏ ଲମ୍ବା ଲମ୍ବା ଚିଠି ଲେଖିବାକୁ ଆଦୌ ହେଳା କି କାର୍ପଣ୍ୟ କରୁ ନଥିଲା । ଯଦିଓ ସବୁପାଠକଙ୍କୁ ଉତ୍ତର ଫେରାଇବା ସମ୍ଭବ ହେଉନଥିଲା । ତଥାପି ବେଳେବେଳେ ଭଲ ଲାଗୁଥିବା ପାଠକଙ୍କୁ ଉତ୍ତର ଫେରାଉଥିଲି । ଏହି ଭଳି ପାଠକ ଥିଲେ ରଣଜିତ । ମୋ ଗଳ୍ପରେ ଏକ ସହୃଦୟ, ମୁଗ୍ଧପାଠକ ହିସାବରେ ସେ ଏଭଳି ଏକ ସୁନ୍ଦର, ଲମ୍ବାଚିଠି ଲେଖିଥିଲେ, ଯେଉଁ ଚିଠିଟିକୁ ବାରମ୍ବାର ପଢ଼ିବାର ଇଚ୍ଛା ହେଉଥିଲା । ଉତ୍ତର ଫେରାଇବା ଆଗରୁ ପୁଣି ପାଇଥିଲି ସାତ ଆଠ ପୃଷ୍ଠାର ଚିଠି । ଯେଉଁଠି ମୋର ବିଭିନ୍ନ ଗଳ୍ପର ଧାଡିସବୁ ଉଦ୍ଧୃତି ଆକାରରେ ଲେଖାଯାଇଥିଲା । ମୋ ଗଳ୍ପରେ ସେତେବେଳେ ଥିଲା ପ୍ରଚୁର ଭାବପ୍ରବଣତା ଆଉ ଜୀବନକୁ ଗଭୀର ଭାବରେ ଚିହ୍ନିବାର ଅନ୍ୱେଷା । ହୁଏତ ଏହା ହିଁ ମୋର ଏହି ନୂଆ ପାଠକଙ୍କୁ ପ୍ରଚୁର ଆକୃଷ୍ଟ କରିବାଲାଗି ଯଥେଷ୍ଟ ଥିଲା । ବାଧ୍ୟ ହୋଇ ଉତ୍ତର ଦେବାକୁ ପଡିଲା । ସେତେବେଳେ ଏହି ପାଠକଙ୍କ ସମ୍ପର୍କରେ ମୁଁ କିଛି ଜାଣିଥିଲି କି ତାଙ୍କର କୌଣସି ନାଟକ ପଢ଼ି ନଥିଲି କି ଶୁଣି ନଥିଲି । ପରିଚୟରୁ ଜାଣିଲି ସେ ପାତ୍ରପୁରର କାନରା ବ୍ୟାଙ୍କରେ କ୍ଲର୍କ ଅଛନ୍ତି । ଇତିହାସରେ ଏମ.ଏ. ଏମ୍.ଫିଲ୍ । ନାଟକ ଲେଖନ୍ତି ଓ ଓଡ଼ିଶାର ବିଭିନ୍ନ ସ୍ଥାନରେ ତାଙ୍କର ନାଟକ ମଞ୍ଚସ୍ଥ ହୋଇଛି । ତାଙ୍କ ଚିଠିରେ ଥିଲା ଭଲ ପାଇବାର ମୁଗ୍ଧ, ବିହ୍ୱଳ ଭାବ । ଜଣେ ମୁଗ୍ଧ ପାଠକର ତା' ସ୍ରଷ୍ଟାକୁ ଭଲ ପାଇବା । ଜଣକର ଲେଖା ଅନ୍ୟଜଣକୁ ଏତେ ମୁଗ୍ଧ, ବିଭୋର କରିପାରେ ? ଆଶ୍ଚର୍ଯ୍ୟ ହୋଇଥିଲି । ମୋ ଲେଖାରେ ଏତେ ଯାଦୁ ଥାଇ ପାରେ ମୁଁ ନିଜେ ବି ଜାଣି ନଥିଲି । ବନ୍ଧୁ ପାଠକଙ୍କ ଭିତ ଭିତରୁ ରଣଜିତ ପାଠକ ଆସନରୁ ବନ୍ଧୁ ଆସନକୁ ଓହ୍ଲେଇ ଆସିଥିଲେ । ତାଙ୍କ ଚିଠିରେ ଥିଲା ବି ପ୍ରଚୁର ଭାବପ୍ରବଣତା । ସେ ଲେଖୁଥିଲେ ପ୍ରେମ ପାଇଁ ସିଏ ଜୀବନ ଦେଇପାରନ୍ତି, ଟିକିଏ ସ୍ନେହ, ଆଦର, ଆପଣାର ଭାବ ପାଇଲେ ସେ ପୃଥିବୀର ସବୁ ପ୍ରାଚୂର୍ଯ୍ୟ, ସ୍ୱର୍ଗୀୟ ସୁଖକୁ ମଧ୍ୟ ଗୋଇଠା ମାରି ପାରନ୍ତି ।

ଏଭଳି ପାଠକଙ୍କୁ ଦେଖିବାର ଉତ୍କଣ୍ଠା ଜନ୍ମିବା ସ୍ୱାଭାବିକ । ସେ ବି ତାଙ୍କ ପ୍ରିୟ ଲେଖିକାଙ୍କୁ ମନଭରି ଦେଖିବାପାଇଁ ମୋ ଠାରୁ ଅଧିକ ବ୍ୟାକୁଳ ହେବାଟା ବି ସ୍ୱାଭାବିକ । ଆମ ବନ୍ଧୁତ୍ୱ ଆପଣରୁ ତମେକୁ ଓହ୍ଲେଇ ଆସିଥାଏ । ଦିନେ ପାତ୍ରପୁରରୁ ସେ ଲେଖିଥିଲେ ମୁଁ ଦେଖାକରିବି ଯେତେବେଳେ କହିବ । ତମେ ତାରିଖ ଫିକ୍ସ କରି । ମୁଁ ପ୍ରଥମ ଥର ପାଇଁ ମୋର ପ୍ରିୟ ଲେଖିକାକୁ ମନଭରି ଦେଖିବାକୁ ଚାହେଁ ।

କୌଣସି ଏକ ରବିବାରରେ ଦେଖା ହେବାର ଠିକ୍ ହେଲା । ଏକ କୋହରା

ବାଳ ଥିବା, ଗୋରା, ଚିହ୍ଲା ଆଖିଆ, ଚଷ୍ମାଲଗା, ବେଲ୍ ପିନ୍ଧା ଯୁବକ ଆସି ହଷ୍ଟେଲରେ ମୋତେ ଶୁଭେଚ୍ଛା ଜଣାଇଲେ । ଏଇ ରଣଜିତ ? ମୋର ନିଆରା ପାଠକ ? ଏତେ ପ୍ରଗଳ୍‌ଭ ? ମୋର କେଉଁ ପତ୍ରିକାରେ, କେଉଁଗପ, କେଉଁ ଧାଡି ସବୁ ମୁଖସ୍ଥ । ସମାଲୋଚନା ଆଉ ଆଲୋଚନା ଦେଖୁଦେଖୁ ଆରମ୍ଭ ହୋଇଗଲା । ରାତିସାରା ଅନିଦ୍ରା ହୋଇ ବସ୍ ଜର୍ଣ୍ଣି କରି ଆସିଥିବା ଏଇ ପାଠକଟିର ଆଖିରେ ତନ୍ଦ୍ରା ନଥିଲା । ଥିଲା ଭେଟିବାର ଆଗ୍ରହ, ଉତ୍କଣ୍ଠା ଆଉ ଭଲପାଇବା ପ୍ରଚୁର ଅନ୍ତରଙ୍ଗତା । ସବୁଠୁ ଆଶ୍ଚର୍ଯ୍ୟ ହେଲି ତାଙ୍କ ତରଫରୁ ଏକ ସୋନି କ୍ୟାସେଟ୍ ପାଇ । ମୋର ଏକ ଗଳ୍ପ 'ପରିଚିତ ସହରର ଖୁବ୍ ଦୂରରେ ମୃତ୍ୟୁ ପାଇଁ ଅପେକ୍ଷା (ପୂଜା ଇସ୍ତାହାରରେ ପ୍ରକାଶ ପାଇଥିଲା, ମସିହା ମନେ ନାହିଁ) ଗଳ୍ପଟିକୁ ନିଜେ ଆବୃତ୍ତି କରି ରେକର୍ଡ କରିଥିଲେ ରଣଜିତ୍ ରବିଶଙ୍କରଙ୍କ ମ୍ୟୁଜିକ୍ ଦେଇ । ଏଭଳି ପାଠକ ଅଛନ୍ତି ଯିଏ ମୋର ଗପକୁ କ୍ୟାସେଟ୍ କରି ମୋତେ ଉପହାର ଦେଇପାରନ୍ତି ? ସେଦିନ ଆଶ୍ଚର୍ଯ୍ୟ ଯେତିକି ହୋଇଥିଲି ତା'ଠୁ ଖୁସି ଅଧିକ ହୋଇଥିଲି । କି ଅଭିନବ ପରିକଳ୍ପନା ! ଜାଣିଲି ସେ ସମ୍ବଲପୁର ରେଡିଓ ଷ୍ଟେସନର ଜଣେ ଆର୍ଟିଷ୍ଟ । ଘର ବି ସମ୍ବଲପୁରରେ । ରଣଜିତ କୌଣସି ପାଖ ହୋଟେଲକୁ ଯାଇ କଫି ପିଇବା ଭିତରେ ଗପିବା ପାଇଁ ମୋତେ ସବିନୟ ନିମନ୍ତ୍ରଣ କଲେ । ମୁଁ କିନ୍ତୁ ରାଜିହେଲି ନାହିଁ । ଅଳ୍ପ ସମୟ ଗପ ପରେ ସେ ବିଦାୟ ନେଇଗଲେ । ତା'ପରେ ଆସିଲା ତାଙ୍କର ଲମ୍ବା ଚିଠି । ମୁଁ ଜଣେ ନିଷ୍ଠୁରଲେଖିକା । ଯାହା ପାଇଁ ସାରାରାତି ଅନିଦ୍ରା ରହି ସେ ବସ୍ ଚଢ଼ି ବରହମପୁରର ପାତ୍ରପୁରରୁ ଆସିପାରିଲେ, ତାଙ୍କ ସହିତ ଦୁଇପାଦ ଚାଲିବାକୁ ମନା କରି ଦେଲି । ତଥାପି ସେ ମୋତେ ଭଲ ପାଆନ୍ତି, ନିବିଡ ଭଲ ପାଆନ୍ତି । ଏ ଭଲ ପାଇବା ସ୍ୱାମୀ ସ୍ତ୍ରୀ, ପ୍ରେମିକାର ନୁହେଁ । ଦୁଇଜଣ ବନ୍ଧୁ ବାନ୍ଧବୀଙ୍କର । ଜଣେ ସ୍ରଷ୍ଟା ଆଉ ଜଣେ ରୁଚିଶୀଳ ପାଠକର । ଏମିତି ଅନେକ ମାନ ଅଭିମାନ, ଦାର୍ଶନିକ ତତ୍ତ୍ୱରେ ଭରା ଚିଠି ।

ମୋତେ ବି ରଣଜିତ ବନ୍ଧୁ ହିସାବରେ ଭଲ ଲାଗିଲେ । ତାଙ୍କର ଆପଣା ଆପଣା ଭାବ, ସ୍ପଷ୍ଟବାଦିତା ଆକୃଷ୍ଟ କଲା । ସାଧାରଣତଃ ଜଣେ ପୁଅ ଓ ଜଣେ ଝିଅ ଯେମିତି ଭଲ ପାଆନ୍ତି ସେମିତି ଭଲପାଇବାର ସମ୍ପର୍କ ଆମ ଭିତରେ ମୂଳରୁ ହିଁ ଗଢ଼ି ଉଠି ନଥିଲା । ବନ୍ଧୁତ୍ୱର ସେହି ଅନାବିଳ ପବିତ୍ର ସମ୍ପର୍କରେ ଆମେ ବାନ୍ଧି ହୋଇଗଲୁ । ପରସ୍ପରର ଶୁଭ ମନାସିବା, ପରସ୍ପରର ଦୁଃଖରେ ଠିଆହେବା ଏହିଭଳି ଏକ ପ୍ରତିଶ୍ରୁତି ଭିତରେ ଆମ ବନ୍ଧୁତ୍ୱର ଭିତ୍ତିଭୂମି ପଡିଲା ।

ମୋ ଗପର ସେହି କ୍ୟାସେଟ୍‌ଟି ଯେତେଥର ବଜାଇଛି, ସେତେଥର ସେହି ଅନାବିଳ ବନ୍ଧୁତ୍ୱ ହିଁ ମୋତେ ମୁଗ୍ଧ, ବିହ୍ୱଳିତ କରିଛି । ଏଭଳି ଏକ ସୁନ୍ଦର ଉପହାର

ଆଜିଯାଏଁ ମୋତେ କେହି ଦେଇ ନାହାଁନ୍ତି । ରାତିରେ ଅନିଦ୍ରା ରହି ରବିଶଙ୍କରଙ୍କ ମ୍ୟୁଜିକ୍ ସହ ପଢ଼ିବା ଆଉ ରେକଡିଂ କରିବା ପାଇଁ ସମୟ ବାହାର କରିବା ନିଶ୍ଚିତ ଭାବରେ ଅଭିନନ୍ଦନୀୟ । ସେଥିପାଇଁ ବୋଧହୁଏ ରଣଜିତ ସବୁ ପାଠକଙ୍କ ଭିତରେ, ସବୁ ବନ୍ଧୁଙ୍କ ଭିତରେ ଅନନ୍ୟ, ଅଲଗା, ନିଆରା ।

ତା'ପରେ ଚିଠି ମାଧ୍ୟମରେ ମୁଁ ତାଙ୍କ ଜୀବନୀ ଭିତରକୁ ପଶିଯାଏ । ରୀତା ନାମ୍ନୀ ନିଜର କ୍ଲାସ୍‌ମେଟ୍‌କୁ ଦିନେ ଗଭୀର ଭଲ ପାଉଥିଲେ ଓ ଅନେକ ସ୍ୱପ୍ନ ମଧ୍ୟ ଦେଖିଥିଲେ । ହେଲେ ହିସାବୀ ରୀତା ଜଣେ ଉଚ୍ଚପଦସ୍ଥଙ୍କୁ ବାହା ହେଇଗଲା । ଭାଙ୍ଗିପଡିଥିଲେ ରଣଜିତ । ପୁଣି ଭଲପାଇବାର ଧକ୍‌କା ସମ୍ଭାଳି ହସିହସି ଜୀବନର ସାମ୍ନା କରିବାକୁ ଚେଷ୍ଟା କଲେ । ଏହି ସ୍ନେହ କାଙ୍ଗାଳ ବନ୍ଧୁଟି ପ୍ରତି ସହାନୁଭୂତିରେ ମୁଁ ଓଦା ହୋଇଯାଇଥିଲି । ରୀତାଙ୍କ ବିବାହ ଦିନ କେତେ କଷ୍ଟ ଲାଗି ନଥିବ ! ବନ୍ଦଘରେ ନିରବରେ କାନ୍ଦିବା ଛଡା ଆଉ କି ଉପାୟ ଥିବ ? ସେ ଲୁହକୁ ନା ସହିହେଉଥିବା ନା' ଦେଖାଇ ହେଉଥିବ ।

ପୁଣି ଛ'ମାସ କି ବର୍ଷେ ପାଖାପାଖି ପରେ ତାଙ୍କ ସହ ଦେଖାହେଲା 'ସମ୍ବାଦ' ଅଫିସରେ । ସେତେବେଳେ ମୁଁ ସମ୍ବାଦର ସହ-ସମ୍ପାଦିକା ଥାଏ । ଭୁବନେଶ୍ୱରକୁ କ'ଣ କାମ ପାଇଁ ସେ ଆସିଥିଲେ । ସେଠୁ ତାଙ୍କର ଜଣେ ବନ୍ଧୁଙ୍କ ସ୍କୁଟରରେ ମୋତେ ଖୋଜି ପହଁଞ୍ଚି ଯାଇଥିଲେ । ବନ୍ଧୁଜଣକ ଜଣେ ଡାକ୍ତର ଥିଲେ ଓ ଖୁବ୍ ସୁନ୍ଦର ଗୀତ ଗାଆନ୍ତି ବୋଲି ପରିଚୟ କରାଇ ଦେଲେ ଯଦିଓ ନାଁ ମୋର ମନେପଡୁ ନାହିଁ ଏବେ । ସେ ଡାକ୍ତର ଜଣକ କୁଆଡେ ମୋ ଗଳ୍ପର କ୍ୟାସେଟ୍ ପ୍ରସ୍ତୁତିରେ ମ୍ୟୁଜିକ୍ ସେଟ୍ କରିଥିଲେ । ଏଠାରେ କହିରଖେ ବାଣୀବିହାରର ପ୍ରଥମ ଦେଖାବେଳେ ଝିପି ଝିପି ବର୍ଷା ହେଉଥିଲା । ଏହି ଦ୍ୱିତୀୟ ଦେଖା ବେଳେ ବି ବର୍ଷା । ସେ ଦୁହେଁ ତିନ୍ତି ଯାଇଥିଲେ । ମୁଣ୍ଡଝାଡୁ ଝାଡୁ ଦୁଇବନ୍ଧୁ ସମ୍ବାଦ ଅଫିସର ବାରଣ୍ଡାକୁ ଉଠିଆସିଲା ବେଳେ ରଣଜିତ କହୁଥିଲେ ତମଭଳି ନିଷ୍ଠୁର ଲେଖିକାଟିକୁ ଯେତେବେଳେ ଦେଖା କରୁଛି ବର୍ଷା ଆସୁଛି । ବର୍ଷା ସହିତ ଆମକୁ ବନ୍ଧୁତ୍ୱର କ'ଣ ସମ୍ପର୍କ ଅଛି କହିଲ ? ଡାକ୍ତର ବନ୍ଧୁଟି କହିଥିଲେ, ଆପଣ ବଡ ଭାଗ୍ୟବାନ ଯେ ଆପଣଙ୍କ ଗପର ଜଣେ ପାଗଳ ପାଠକ ଅଛି ।

ତା'ପରେ ରଣଜିତଙ୍କର ବଦଳି ହେଇଗଲା ରାଉରକେଲା । ମୁଁ ବି ସାମ୍ବାଦିକତା ସହିତ ଆହୁରି କେତେ ପ୍ରକାରର ଜୀବନ ଭିତରେ ପଶିଗଲି । ଏହାରି ଭିତରେ କିଛି ବର୍ଷ ପଳାଇଗଲା । କାଁ ଭାଁ ଚିଠିପତ୍ରର ସମ୍ପର୍କ । ଚିଠି ଭିତରେ ସେହି ବିହ୍ୱଳତା ଆଉ ଭାବପ୍ରବଣତା । ତା' ବି ବନ୍ଦ ହୋଇଗଲା କ୍ରମଶଃ । ମୋର ମନେ ହୋଇଥିଲା ବୋଧହୁଏ ଏ ଭିତରେ ବନ୍ଧୁଟି ମୋର ବାହା ହୋଇଯାଇଛନ୍ତି । ଘର ସଂସାରର ଜଞ୍ଜାଳ ଭିତରେ

ମନେ ପକାଇବାକୁ ଭୁଲି ଯାଇଛନ୍ତି ଅଥବା ବଦଳି ଯାଇଛନ୍ତି । ପୁଣି ମାତ୍ର ଦୁଇଥର ଅଳ୍ପ ସମୟ ପାଇଁ ଦେଖା ହୋଇଥିବା ଜଣେ ଲେଖିକାକୁ କେତେବା ମନେ ରଖନ୍ତେ ? ଅଥବା ଆଉ କାହାର ଲେଖା ଏ ଭିତରେ ମନକୁ ଛୁଇଁ ଯିବଣି । ମୁଁ ବି ପାଞ୍ଚ ଓ ଛଅ ବର୍ଷ ଭିତରେ ଏକପ୍ରକାର ପାଶୋରି ଦେଇଥିଲି । କିନ୍ତୁ ଭଗବାନଙ୍କର ଇଚ୍ଛା ଥିଲା ଅଲଗା । ସେତେବେଳେ ମୁଁ ଉଦଳା କଲେଜରେ ଅଧ୍ୟାପିକା ଥାଏ, ବୋଧହୁଏ ୧୯୮୯ ମସିହା ହେବ । ମୁଁ ବାରିପଦାରେ ଥାଏ । ତା' ପରଦିନ ଉଦଳା ଯିବି । ସେଦିନ ସନ୍ଧ୍ୟାରେ ସେ ଆମ ଘରକୁ ହଠାତ୍ ଆସି ମୋତେ ଚମକାଇ ଦେଇଥିଲେ । ବାପାଙ୍କ ସମେତ ମୋ ଭାଇଭଉଣୀଙ୍କ ସହ ପରିଚିତ ହୋଇଥିଲେ । ଶୁଣିଲି ଅଭିନେତା ଅସିତ ପତି ତାଙ୍କର ବନ୍ଧୁ । ତାଙ୍କର ଚଳଚ୍ଚିତ୍ର ବୋଧହୁଏ 'ଗୋପରେ ବଢୁଛି କଳା କହ୍ନେଇ' ଯାହାର ସ୍କ୍ରିପଟ୍ ରାଇଟର ରଣଜିତ ଥିଲେ ତା'ର ସୁଟିଂ ସକାଶେ ସେ ବାରିପଦା ଆସିଥିଲେ । ଠିକଣା ଖୋଜିଖୋଜି ସେ ଆମଘରେ ପହଁଞ୍ଚି ଯାଇଥିଲେ । କହିଲେ ସାତଆଠଦିନ ତ ରହିବି । ସୁବିଧା ହେଲେ ଉଦଳା ଯିବି । ମୋର ଅନେକ କଥା କହିବାର ଅଛି ।

ସତକୁ ସତ ଅସିତ ପତିଙ୍କଠାରୁ ମଟର ସାଇକେଲଟେ ମାଗି ଦିନେ ସେ ଉଦଳା କଲେଜରେ ହାଜର । ରାଉରକେଲାରେ ଘଟିଥିବା ତାଙ୍କ ଜୀବନର ଏକ କାହାଣୀ ଶୁଣାଇବା ପାଇଁ କୁଆଡେ ସେ ଧାଇଁ ଆସିଛନ୍ତି । ଏମିତି କି କାହାଣୀ ସେଠି ତିଆରି ହୋଇଛି ଯେ ସେ ପଚାଶ ଷାଠିଏ କି.ମି. ଗାଡି ଚଳାଇ ଆସିଛନ୍ତି କହିବାକୁ ? ମୁଁ କହିଲି ମୁଁ ଯଦି ନ ଶୁଣେ ? ସେ କହିଲେ, ନା' ତମେ ଶୁଣିବାକୁ ବାଧ୍ୟ । ତମେ ନ ଶୁଣିଲେ ଆଉ କାହାକୁ ଶୁଣାଇବି ? ଯଦିଓ ମୁଁ ଜାଣେ ଏସବୁ ଶୁଣିଲା ପରେ ତମେ ହୁଏତ ବନ୍ଧୁତ୍ୱ ସବୁଦିନ ପାଇଁ ତୁଟାଇ ଦେବ । ମୋତେ ଘୃଣା କରିବ, ଚରିତ୍ରହୀନ କହି ଦୂରେଇ ଦେବ । ତଥାପି ତମକୁ ଶୁଣିବାକୁ ହେବ ମୋର ଜଣେ ହିତାକାଂକ୍ଷୀ ବାନ୍ଧବୀ ହିସାବରେ । କି ଅଜବ କଥା ! ଯାହା ଶୁଣିଲେ ମୁଁ ତାଙ୍କୁ ଘୃଣା କରିବି ଓ ବନ୍ଧୁତ୍ୱ ତୁଟାଇ ଦେବାର ଆଶଙ୍କା କରାଯାଏ ସେଭଳି କାହାଣୀ ଶୁଣାଇବା ପାଇଁ ଫେର୍ ଏତେ ବ୍ୟାକୁଳତା ?

ତାଙ୍କ ଜୀବନରେ ଘଟିଥିବା ଘଟଣାର ନିଛକ ବର୍ଣ୍ଣନା ଶୁଣି ମୁଁ ସ୍ତମ୍ଭୀଭୂତ ହୋଇ ଯାଇଥିଲି । ମନେ ହୋଇଥିଲା ଅତୀତର ସେହି ବନ୍ଧୁଟିକୁ ମୁଁ ସବୁଦିନ ପାଇଁ ହଜାଇ ଦେଇଛି ଆଉ ଏ ଜଣେ ଅଜଣା ମଣିଷ, ଯାହାକୁ ସମାଜ କହେ କଳଙ୍କିତ, ଚରିତ୍ରହୀନ । ଏହା କେମିତି ସମ୍ଭବ ? ନିଜଠାରୁ ବୟସରେ ଆଠ ଦଶବର୍ଷ ବଡ, ବିବାହିତା ପୁଣି ଦୁଇଟି ପିଲାର ମାଆ, ଜଣେ ପ୍ରତିଷ୍ଠିତ ଇଞ୍ଜିନିୟର ପତ୍ନୀଙ୍କ ପ୍ରେମରେ ଘଟଣାକ୍ରମେ ପଡନ୍ତି ବନ୍ଧୁଟି ମୋର । ତାଙ୍କ ସହିତ ପଳାଇ ଯାଇ ଦିନେ ଘରସଂସାର କରିବାକୁ ବାହାରିଥିଲେ ।

ନିଜର ଏହି କଳଙ୍କକୁ ବଖାଣିବା ପାଇଁ ଫେର୍ ଜଣେ ଏମିତି ବ୍ୟାକୁଳ ହୋଇପାରେ ? ରଣଜିତ୍ କହି ଚାଲିଥିଲେ, ମୁଁ ପ୍ରେମ ପାଇଁ ନିଜକୁ ସାରି ଦେଇଛି । ସମାଜ କଳଙ୍କ, ଚରିତ୍ରହୀନ କହିପାରେ । ସେଥିରେ ମୋର କ୍ଷୋଭ ନାହିଁ । ଦୁଃଖ ବି ନାହିଁ । ସେହି କଳଙ୍କ ହିଁ ମୋର କାମ୍ୟ । ହାୟ ! ପାତ୍ରପୁରରେ ଥିଲାବେଳେ ଯେତେବେଳେ ତମ ସହ ମୋର ଦେଖା ହୋଇଥିଲା କେତେ ଭଲ ଥିଲି ମୁଁ । କେତେ ପବିତ୍ର ଥିଲା ମୋ ଦେହ ମନ । ଏ କ'ଣ ହୋଇଗଲା ! ତମକୁ ଏ କାହାଣୀ ଏଇଥିପାଇଁ କହିଲି କାହିଁକି ନା ତମେ ଅନ୍ୟ ପାଞ୍ଚଜଣଙ୍କଠାରୁ ଅଲଗା । ଜଣେ ସମ୍ବେଦନଶୀଳା ଲେଖିକା । ଭଲପାଇବାର ଅର୍ଥ ତମେ ଗଭୀର ଭାବରେ ବୁଝୁଥିବ ନିଶ୍ଚେ । ପ୍ରେମ ଜାତି, ବୟସ, ବିବାହିତ, ଅବିବାହିତ କୌଣସି ବନ୍ଧନ ମାନେନା । ସେ ତ ଏକ ପ୍ରବଳ ଲହଡି । କୁହ, ଜଣେ ଚରିତ୍ରହୀନ ସହିତ ତମଭଳି ଜଣେ ପବିତ୍ର, କଳଙ୍କ ଲାଗି ନଥିବା ଝିଅର କ'ଣ ବନ୍ଧୁତ୍ୱ ହୋଇପାରେନା ? ସମାଜ ଚରିତ୍ରହୀନ କହିପାରେ ମୋତେ । ହେଲେ କେବେ ମୋ ଚରିତ୍ରହୀନତାର ପ୍ରମାଣ ପାଇଛ ତମେ ? କେବେ ଉତ୍ତେଜିତ କଲାଭଳି କିଛି ଲେଖିଛି, ବ୍ୟବହାର ଦେଖାଇଛି ? ମୁଁ ଜାଣେ ଆମ ଜୀବନର ରାସ୍ତା ଦୁଇଟି ସରଳରେଖା ଭଳି । ଜୀବନରେ ଏତେବଡ ଧକ୍କା ପାଇ ସମ୍ଭାଳିବା କେତେ କଷ୍ଟକର ତମେ ବୁଝିପାରିବନି । ମୁଁ ଜାଣେନା ତମ ଜୀବନରେ କ'ଣ ଘଟିଛି । ତଥାପି ମୋର ଆଶା ମୋ ଭଳି ଏକ ଚରିତ୍ରହୀନ ପାଇଁ ତମଭଳି ଏକ ପୁଣ୍ୟତୋୟା ବାନ୍ଧବୀର ସହାନଭୂତି, ବନ୍ଧୁତ୍ୱ ଆବଶ୍ୟକ । ମୁଁ କୌଣସି ପ୍ରକାରେ ତମଭଳି ବାନ୍ଧବୀଟିକୁ ହରାଇବାକୁ ଚାହେଁନା ।

ସେଦିନ ବିଦାୟ ଦେଲାବେଳେ ବି ବର୍ଷା ହେଉଥିଲା । ରଣଜିତ ମୁରୁକି ହସି କହୁଥିଲେ, ଦେଖ ବର୍ଷା କେମିତି ପିଛା କରୁଛି । ତମ ସହ ଦେଖା ହେଲେ ବର୍ଷା ହିଁ ଆସେ । ଏ ବର୍ଷା କାଳେ କେବେ ବନ୍ୟାର ରୂପନେଇ ଯିବ ସେଥିପାଇଁ ମୁଁ ଭୀଷଣ ଭୟପାଏ ।

ଭାଗ୍ୟର କି ବିଡମ୍ବନା । ତା'ର କିଛିଦିନ ପରେ ମୁଁ ପି.ଏସ୍.ସି.ପାଇଲି । ମାସ କେଇଟା ଭିତରେ ମୋର ସରକାରୀ ମହାବିଦ୍ୟାଳୟ, ରାଉରକେଲାକୁ ପୋଷ୍ଟିଂ ହୋଇଗଲା । ଇସ୍ପାତ ନଗରୀକୁ ଆମ ଘରର କେହି ଦେଖି ନଥିଲେ । ବାପା ବ୍ୟସ୍ତ ହୋଇ ପଡିଲେ । ସେଠି ଏକମାତ୍ର ଚିହ୍ନା ବନ୍ଧୁ ହିସାବରେ ରଣଜିତ ହିଁ ଥାନ୍ତି । ତାଙ୍କୁ ୱାର୍କିଂ ଓମେନ୍ସ ହଷ୍ଟେଲରେ ବୁଝାବୁଝି କରିବା ପାଇଁ ଚିଠି ଲେଖିଲି । ସେ ଠିକ୍‌ଠାକ୍ କରିବା ଭିତରେ ତାଙ୍କର ବଦଳି ଅର୍ଡର ଆସିଗଲା କଟକର ଚୌଧୁରୀ ବଜାରସ୍ଥିତ 'କାନରା

ବ୍ୟାଙ୍କକୁ । ମୁଁ ସରକାରୀ ମହାବିଦ୍ୟାଳୟ, ରାଉରକେଲାରେ ଜୟେନ୍ କଲାପରେ ଜାଣିଲି ସେଠି ନୂଆହୋଇ ଛାତ୍ରୀନିବାସଟେ ଖୋଲିଛି ଯାହାର ବହୁ କୋଠରୀ ଖାଲି ପଡିଛି । ସେଠି ରହିବାର ବନ୍ଦୋବସ୍ତ ହୋଇଗଲା ।

କଟକରେ ଜୟେନ୍ କରିବା ଆଗରୁ ରଣଜିତଙ୍କ କୋଏଲ ନଗରସ୍ଥିତ ଭଡା ଘରକୁ ପ୍ରତି ସପ୍ତାହରେ ଯିବାଟା ମୋ ପାଇଁ ବାଧବାଧକତା ହୋଇଗଲା । ବନ୍ଧୁଟି ମୋର ତାଙ୍କର ବିଧବା ବୁଢ଼ୀମା ସହିତ ରହୁଥିଲେ । ପାଖରେ ଅନ୍ୟ ଏକ ଭଡାଘରେ ରହୁଥିଲେ ତାଙ୍କର ବିବାହିତା ଭଉଣୀ । ରଣଜିତଙ୍କ ଆଜ୍ଞାଧୀନ ଇଞ୍ଜିନିୟରିଂ ପଢୁଥିବା ଶିଷ୍ୟ ଓ ମୋର ପାଠକ ଜ୍ଞାନରଂଜନ ନାୟକ ପ୍ରତି ଶନିବାର ସ୍କୁଟର ନେଇ ପହଞ୍ଚିଯାଏ । ମୁଁ ମୋ ବନ୍ଧୁଙ୍କ ପରିବାରର ସଦସ୍ୟ ପାଲଟିଯାଏ । ତାଙ୍କ ପଡୋଶୀ ରୀନା ଅପା (ରୀନା ସାମନ୍ତରାୟ) ଯିଏ କି ହିନ୍ଦୀ ଶିକ୍ଷୟିତ୍ରୀ ଥିଲେ ଓ ତାଙ୍କର ସ୍ୱାମୀ ଅଧର ସାମନ୍ତରାୟ ରାଉରକେଲା ଉଦିତନଗରରେ ଓକିଲଥିଲେ ଓ ଲ' କଲେଜରେ ମଧ୍ୟ ପଢ଼ାଉଥିଲେ ତାଙ୍କ ସହ ପରିଚିତ ହୁଏ । ରୀନା ଅପା ମୋତେ ଭଉଣୀ କରନ୍ତି । ତାଙ୍କର ଛୋଟ ଝିଅଟେ ଥାଏ ନାଁ ମୁନ୍‌ମୁନ୍ । ଯିଏକି ପ୍ରତି ସପ୍ତାହରେ ମୋ ଆସିବା ବାଟକୁ ଅନାଇଥାଏ । ପୁଣି ଏମିତି ହେଲା କବିତା ଆଣ୍ଟି ତାଙ୍କ ଘରେ ନରହିଲେ କି ତାକୁ ଖୁଆଇ ନଦେଲେ ସେ ଖାଇବ ନାହିଁ କି ଶୋଇବ ନାହିଁ । ତେଣୁ ସପ୍ତାହରେ ଥରେ ଯିବାକୁ ପଡିଲା ବି ମୁନ୍‌ମୁନ୍ ପାଇଁ ଓ ରଣଜିତଙ୍କ ଘରେ ନରହି ମୋର ଆସନ ଜମିଲା ରୀନା ଅପାଙ୍କ ଘରେ । ତାଙ୍କର ଭଉଣୀ ନଥିଲା । ପୁଣି ମୁନ୍‌ମୁନ୍‌କୁ ନେଇ ମୋର ଗପ । 'ଝିଅର ନାଁ ମୁନ୍‌ମୁନ୍' ଲେଖାଗଲା ଯାହା ସେ ସମୟରେ ଝଙ୍କାରରେ ପ୍ରକାଶ ପାଇଥିଲା । 'ଆଜି ମୁନ୍‌ମୁନ୍ ଯୁବତୀ ହେଇଯିବଣି । ୧୯୯୨ରେ ଦ୍ୱିତୀୟ କି ତୃତୀୟରେ ସେ ପଢୁଥିଲା । ସେଦିନର ଛାତ୍ର ପାଠକ ଜ୍ଞାନରଂଜନ ଆଜି ଇଞ୍ଜିନିୟର ତଥା କୃଷ୍ଣଚୂଡାର ସଂପାଦକ ।

ରାଉରକେଲାରେ ହିଁ ଶୁଣିଲି ତାଙ୍କ ଭଉଣୀ, ମା'ଙ୍କଠୁ ରଣଜିତଙ୍କ ବ୍ୟକ୍ତିଗତ ଜୀବନର ବହୁ ସଫଳ / ବିଫଳ କାହାଣୀ । ଏଇଠି ହିଁ ଜାଣିଲି ଏଇ ଯୁବକଟିକୁ ଅନେକ ଭଲପାନ୍ତି । ଅନେକ ଘୃଣା ବି କରନ୍ତି । ପୁଣି ଆପଣାପଣରେ ସେ ସମସ୍ତଙ୍କୁ ନିଜର କରନ୍ତି । କାହାକୁ ନ ଖୁଆଇ ଘରୁ ଛାଡନ୍ତୁ ନାହିଁ । ଜଣେ ମଣିଷ ଏତେ ଜଣକୁ କେମିତି ସ୍ନେହ, ଭଲପାଇବା ଦେଇପାରେ ? ଜଣକ ଭିତରେ ଗୋଟିଏ ଦିଗରେ ପ୍ରଚଣ୍ଡ ପ୍ରତିଭା, ଭାବପ୍ରବଣ, ଦୟା, ଅନୁରାଗ ଆଉ ଭଲପାଇବା ଥିଲାବେଳେ ଅନ୍ୟପଟରେ ପ୍ରଚଣ୍ଡକ୍ରୋଧ ଆଉ ପ୍ରଚୁର ବଦ୍‌ନାମ ଘର ବାନ୍ଧିଛନ୍ତି । ପୁଣି ପାନବାଲାକୁ କହିବାର ଶୁଣିଛି, ଭାଇ ପାନରେ ତ ମୋ ବରାଦି ମୁତାବକ ମସଲା ଦେବୁ କିନ୍ତୁ ଭାଙ୍ଗିଲା ବେଳେ ସେଥିରେ

ଟିକେ ପ୍ୟାର୍ ମିଶାଇ ଦେବୁ ।'

ଆଜି ବନ୍ଧୁତ୍ୱ ଶବ୍ଦଟି କେତେ ଡେଲିକେଟ୍ ହୋଇ ଯାଇଛି ! ପୁଣି ତାହା ଯଦି ପୁଅ କି ଝିଅ ଭିତରେ ଆବଦ୍ଧ; ତାହାଲେ ଆମ ସମାଜ ତାକୁ କିଛିଟା ଭିନ୍ନ ଦୃଷ୍ଟିରେ ଦେଖେ । ରଣଜିତଙ୍କ ଜୀବନରେ ସେହି ଦୁର୍ଦ୍ଦିନ ସମୟରେ ମୁଁ ବୁଝାଇ ଚାଲିଥିଲି, ତମେ ଭାଙ୍ଗିପଡନା, ଦୁର୍ବଳ ହୁଅନା । ସମୟ ସବୁ ଠିକ୍ କରିଦେବ । ବରଂଚ ତମେ ଏକ ସାଧାସିଧା, ସାହିତ୍ୟ କରୁ ନଥିବା, ସାହିତ୍ୟ ବୁଝୁ ନଥିବା ଝିଅକୁ ବାହା ହୋଇପଡ । ଅତୀତରେ ଯାହା ଘଟିଗଲା ଏକ ଦୁଃସ୍ୱପ୍ନ ଭାବି ଭୁଲିଯାଅ । ଝଡପରେ ବସା ଉଡିଯାଇଥିବା ବା ବସା ଭାଙ୍ଗିଯାଇଥିବା ଚଢ଼େଇବି ଯଦି କାଠିକୁଟା ଏକାଠି କରି ଘର ସଜାଡି ପାରେ ତାହାଲେ ତମେ କାହିଁକି ପାରିବନି ? ଅନ୍ତତଃ ତମେ ଜୀବନରେ ସୁଖରେ, ଶାନ୍ତିରେ ରହିଲେ ମୁଁ ଖୁସି ହେବ । ଜଣେ ସହୃଦୟା ବାନ୍ଧବୀ ତମ ଜୀବନରେ ସୁଖ, ସଫଳତା ଭଗବାନଙ୍କଠାରେ କାମନା କରିବା ଛଡା ଆଉ କ'ଣ ବା ମାଗିପାରେ ?

ରଣଜିତ ହସିଥିଲେ । ଆମର ଏ ଦର୍ଶନ, ଏ ବନ୍ଧୁତ୍ୱର ଦାମ୍ କିଏ ଦେବ କବିତା ? କିଏ ବୁଝିବ ଏ ପବିତ୍ର ଅହେତୁକ ଆକର୍ଷଣର ମୂଲ୍ୟ ? ଆମ ସମ୍ପର୍କର ନାଁ କ'ଣ ? ହେଲେ ସେଭଳି ଝିଅ କ'ଣ ମିଳିବେ ଯିଏ ତା' ସ୍ୱାମୀର କଳଙ୍କକୁ କ୍ଷମା ଦେବ ? ସବୁ ଜାଣିବି ମୋତେ ବାହା ହେବାକୁ ଆଗେଇ ଆସିବ ?

- ନ ମିଳିବେ କାହିଁକି ? ସେଭଳି ଝିଅ ଯେ ପୃଥିବୀରେ ଶେଷ ହୋଇଗଲାଣି ଭାବନି । ଯଦିଓ ସଂଖ୍ୟାରେ ଅତି କମ୍ ହୋଇପାରନ୍ତି ।

ରୀନା ଅପାଙ୍କ ଘରେ ଆସର ଜମ୍ନେ । ନୂଆ ଲେଖାଯାଇଥିବା ଗଳ୍ପ ପଢ଼ାଯାଏ । ବଛାବଛା କ୍ଲାସିକ୍ ସିନେମାର କ୍ୟାସେଟ୍ ଆଣି ରାତି ଅଧଯାଏଁ ଦେଖାଯାଏ । ରୀନା ଅପା ମଝିରେ ମଝିରେ ଚା' ତିଆରି କରି ଆଣି ଦିଅନ୍ତି । କେବେ ତାଙ୍କ ବଗିଚାରେ ଜହ୍ନରାତିରେ ବସି ଜ୍ଞାନ, ମୁଁ, ରଣଜିତ, ରୀନାଅପା ଦୁଃଖସୁଖ ହେଉ । ରାଉରକେଲା ଛାଡିବାକୁ ରଣଜିତ୍‌ଙ୍କର ଚାରିପାଞ୍ଚଦିନ ଥାଏ, ରୀନା ଅପାଙ୍କ ଘରେ ଭୋଜିଟିଏ କରାଯାଏ । ତା'ରି ଭିତରେ ପୃଥିବୀର ସବୁ ଆର୍ଟିଷ୍ଟ, କଳାକାର ଧରାହୋଇ ଆସନ୍ତି । ମୁଁ, ଜ୍ଞାନ, ରୀନାଅପା, ମୁନ୍‌ମୁନ୍, ରଣଜିତ୍ ଓ ଅଧର ଭାଇ (ରୀନା ଅପାଙ୍କ ସ୍ୱାମୀ)ଙ୍କୁ ନେଇ ଏକ ପୃଥିବୀ ଗଢ଼ାଯାଏ । ତାଙ୍କର ସୁନ୍ଦର ବଗିଚାରେ କାକ୍‌ଟସ୍ କୁଣ୍ଡ ଉପରେ ତେର୍ଚ୍ଛା ହୋଇ ଜହ୍ନପଡେ । ଗପ ସରେନା । ଚିନ୍ତାକରୁ ଆଜିଠାରୁ ଦଶବର୍ଷ ପରେ କିଏ କେଉଁଠିଥିବୁ ? କେଉଁ ପରିସ୍ଥିତିରେ ପହଁଞ୍ଚିଥିବୁ ତା'ର କ'ଣ କିଛି ଠିକଣା ଅଛି ? ସତରେ ଜୀବନ କେଡେ ଅଦ୍ଭୁତ । ସମୟ ସ୍ଥିର ହୋଇଯାଆନ୍ତା କି ! ଆମେ ଚିନ୍ତାକରୁ ବୟସ ଆମକୁ ବୁଢ଼ା କରି

ଦେଇଥିବ । ଏଇ ବର୍ତ୍ତମାନର ଦିନ ସବୁ ସ୍ମୃତି ହୋଇ ଓହଳୁ ଥିବେ । ଅଥଚ ତାକୁ ଛୁଇଁ ବି ଛୁଇଁ ହେବନାହିଁ ।

ମୁଁ କହେ, ନା' ଆମର ଏଭଳି ଆଉ କେବେ ଦେଖା ହେବନାହିଁ । ଏମିତି ବସି ବସି ପଖାଳ କଂସାଧରି, ବଡିଚୁରା, ସଜନାଛୁଇଁ ଭଜା, ଆଚାର ଖାଇବାକୁ ମିଳିବନି କି ପୃଷ୍ଠାପରେ ପୃଷ୍ଠା ଗପ ପଢ଼ିବା, ନାଲି ଚା'ର ଆସର କିମ୍ବା ସିନେମା ଦେଖିବା ସମ୍ଭବ ହେବନାହିଁ । ରଣଜିତ କହନ୍ତି, ତମେ ସତରେ ତମ ଗପଭଳି ବ୍ୟକ୍ତିଗତ ଜୀବନରେ ବି ପେସିମିଷ୍ଟ୍ । ମୁଁ କିନ୍ତୁ ଆଶାବାଦୀ ଯେ ଆମର ପୁଣି ଦେଖାହେବ । ଏମିତି ସାହିତ୍ୟ, ଜୀବନକୁ ନେଇ ଗପିବା । ତମେ ଥରେ ଚିନ୍ତାକର ତ କଫି ଟିକେ ପିଇବାପାଇଁ ପାଖ କ୍ୟାଣ୍ଟିନକୁ ଦୁଇପାଦ ସାଥୀରେ ଚାଲି ଯିବାପାଇଁ ଯାହାକୁ ଦିନେ ମନା କରି ଫେରାଇ ଦେଇଥିଲ ଓ ଅଳ୍ପ ସମୟ ଦେଖା ଭିତରେ ଯେଉଁଠି ପାଞ୍ଚ ଛଅ ବର୍ଷ ପାରି ହୋଇଯାଇଥିଲା, ତା'ରି ଘରେ ଯେ ବସି ତମେ ପଖାଳ ଖାଇବ, ଚା' ପିଇବ, ପୃଥିବୀର ସାହିତ୍ୟିକମାନଙ୍କୁ ନେଇ ଗପିବ କେବେ ଭାବିଥିଲ ? ସମୟ ହିଁ କହିବ ଭବିଷ୍ୟତରେ କିଏ କେଉଁଠି ଥିବ । ମୁଁ ତ କିନ୍ତୁ ପ୍ରମିଜ୍ କରୁଛି ତମେ ବାହା ହୋଇ ଯାଇଥିଲେ ମଧ୍ୟ ତମ ମିଷ୍ଟର ନିଶ୍ଚେ ମିନ୍ ହୋଇନଥିବେ, ଯିଏ ବନ୍ଧୁତ୍ୱର ଅନାବିଳ ଅର୍ଥକୁ ବୁଝି ପାରିବେ ନାହିଁ। ଜୀବନରେ ସ୍ତ୍ରୀଟିଏ, ପ୍ରେମିକାଟିଏ ପାଇବା ସହଜ କବିତା କିନ୍ତୁ ବନ୍ଧୁଟିଏ ନୁହେଁ। ଆମେ ଜୀବନରେ ଆଶାବାଦୀ ନ ହେବା କାହିଁକି ?

ରଣଜିତ୍ ରାଉରକେଲା ଛାଡ଼ିଲା ବେଳେ ଥିଲେ ଏକବାରେ ନିଃସ୍ୱ । ଭଉଣୀ ବାହାଘରର ଋଣ ସୁଝିବାକୁ ଯାଇ ନିଜର ସ୍କୁଟରଟିକୁ ମଧ୍ୟ ବିକି ଦେଇଥିଲେ । ସବୁଠୁ ମହାନ ନାରୀ ଥିଲେ ରୀନା ଅପା, ଯେ'କି ସମୟ ଅସମୟରେ ତାଙ୍କୁ ସାହାଯ୍ୟ କରୁଥିଲେ । ତହୁଁ ମହାନ ଥିଲେ ତାଙ୍କ ସ୍ୱାମୀ ଆଡଭୋକେଟ୍ ଅଧର ସାମନ୍ତରାୟ ଯେ କି ତାଙ୍କ ବିଶାଳ ହୃଦୟରେ ରଣଜିତଙ୍କୁ ଗ୍ରହଣ କରୁଥିଲେ ଓ ରୀନା ଅପାଙ୍କର ବଦାନ୍ୟତାକୁ ବିରୋଧ କରୁ ନଥିଲେ। ତାଙ୍କ ଭଳି ଖୋଲା ହୃଦୟ, ଖୋଲା ମନର ଦମ୍ପତି ବିରଳ ।

ଆମ ସମସ୍ତେ ତାଙ୍କୁ ଛାଡ଼ିବାକୁ ବସ୍‌ଷ୍ଟାଣ୍ଡ ଯାଇଥିଲୁ । ରଣଜିତ ଠପ୍ ଠପ୍ କାନ୍ଦି ପକାଇଥିଲେ। ବହୁ ସ୍ମୃତି / ଅପସ୍ମୃତିକୁ ଛାଡି ସେ ଯାଉଥିଲେ କଟକ । ସେଦିନ ଭାବିଥିଲି ସତରେ ଏଡେ ବିଶାଳ ହୃଦୟଟିକୁ କିଏ ବୁଝି ପାରିଲା ? ସମସ୍ତେ ତାଙ୍କର କଳଙ୍କିତ ଜୀବନକୁ ନେଇ ହିଁ ଚର୍ଚ୍ଚା କରିଛନ୍ତି । ଅଥଚ ଏହି କଳଙ୍କିତ ଦେହ ଭିତରେ ଥିବା ଭଲପାଇବାର ଏକାଗ୍ର ମନଟିକୁ କେହି ଦେଖିପାରି ନାହାଁନ୍ତି । କିଏ କହିଥିଲେ ପାପକୁ ଘୃଣାକର କିନ୍ତୁ ପାପୀକୁ ନୁହେଁ ? ରଣଜିତଙ୍କ ପାପକୁ ମୁଁ ଘୃଣା କରିଛି ବୋଲି ହିଁ ଆମେ

ବନ୍ଧୁ ହୋଇପାରିନ୍ଥୁ ।

କଟକ ଗଲାପରେ ରଣଜିତଙ୍କ ଚିଠି ହିଁ ହୋଇଛି ସମ୍ପର୍କର ମାଧମ । କେବେ କିଛି ଯୁକ୍ତିତର୍କ ତ ପୁଣି କିଛି କିଛି ଭୁଲ ବୁଝାମଣା, ଅଭିମାନ । ଥରେ ବନ୍ଧୁତ୍ୱର ଏ ନାଁ ଅଜଣା ସମ୍ପର୍କକୁ ଏଇଠି ବନ୍ଦ କରି ଦେବି ବୋଲି ଲେଖିଥିଲି । ତାପରେ ବନ୍ଧୁଟିକୁ ମୋର କିଏ ସମ୍ଭାଳେ ? ପୃଷ୍ଠାପରେ ପୃଷ୍ଠା ଚିଠି ସେ ଲେଖିଥିଲେ । ଆଜିଭଳି ଯେହେତୁ ମୋବାଇଲର ସୁବିଧା ନ ଥିଲା ତେଣୁ ଚିଠି ହିଁ ଥିଲା ଭାବପ୍ରକାଶର ମାଧ୍ୟମ । ସେ ଲେଖିଥିଲେ, 'କେମିତି ତମେ ବନ୍ଧୁତ୍ୱକୁ ତୁଟେଇ ଦେବା କଥା ଲେଖିପାରିଲ କବିତା ? ସମ୍ପର୍କକୁ ତୁଟେଇ ଦେବା ସହଜ କିନ୍ତୁ ଗଢ଼ିବା ଏତେ ସହଜ ନୁହେଁ । ଜୀବନରେ ଅନେକ ବନ୍ଧୁବାନ୍ଧବୀ ପାଇଛି । କିନ୍ତୁ ତମ ଭଳି ବାନ୍ଧବୀଟେ କେଉଁଠୁ ପାଇବି ? ତମଭଳି ଦରଦୀ, ସହାନୁଭୂତିଶୀଳା ଝିଅଟି ମୋ ନିମନ୍ତେ ଏତେ ନିଷ୍ଠୁରା ହେଇ ପାରିଲା କେମିତି ? ଜୀବନରେ ସମସ୍ତେ ମୁହଁ ଫେରାଇ ନେଇଛନ୍ତି, ଦ୍ୱାର ବନ୍ଦ କରି ଦେଇଛନ୍ତି । ତମେ ବି ସେହି ଅନେକଙ୍କ ସହିତ ସାମିଲ ହୋଇଗଲ ? ତମକୁ ଭାବିଥିଲି ଅନ୍ୟମାନଙ୍କ ଠାରୁ ଅଲଗା, ତମେ ଭୁଲ ବୋଲି ପ୍ରମାଣ କରିଦେଲ । ଅନେକ ଭରସା ତୁମ ଉପରେ ଥିଲା, ଅଛି, ରହିବ ।

ତମେ ଜାଣ ମୋର ମାନସିକ ସ୍ଥିତି । ସମ୍ଭାଳି ପାରିଲନି ଦୋହଲିଯାଇ ଥିବା ମଣିଷଟିକୁ । ସଜାଡି ପାରିଲନି ଅସଜଡା ବନ୍ଧୁଟିକୁ । ମୋ ମନ ଉପରେ ଯେତିକି ଅଧିକାର ମୋ କାନ ଉପରେ ସେତିକି ଅଧିକାର । ଯଦି କିଛି ଭୁଲ ହେଲା ଧରି ପକାଇ ଥାନ୍ତ କାନ । କହିଥାନ୍ତ, ଆଉ ଦିନେ ? କେବେ ଦିନେ ତୁମ ବ୍ୟକ୍ତିତ୍ୱ, ସାହିତ୍ୟ, ତୁମ ଜୀବନକୁ ଉପେକ୍ଷା କରିବାର ଦେଖିଚ ? ତା'ହାଲେ କାହିଁକି କବିତା ? ତୁମ ସୋସିଆଲ୍ ଷ୍ଟାଟସ୍ ମୋଠୁଁ ବଡ ବୋଲି ? ତୁମେ ମୋଠୁଁ ବଡ ଲେଖିକାଟିଏ ବୋଲି ? ନା' ମୁଁ ଗୋଟାଏ ଚରିତ୍ରହୀନ ମଣିଷ ବୋଲି ? ଆମ ମିଳିତ ମୁହୂର୍ତ୍ତମାନଙ୍କରେ ଲମ୍ବା କିନ୍ତୁ ଛୋଟ ପ୍ରତୀୟମାନ ଦିନମାନଙ୍କରେ ତୁମପାଇଁ ମୋ ଚରିତ୍ରହୀନତାର ସାମାନ୍ୟ ଟିକିଏ ବି ଆଭାସ ପାଇଚ କେବେ ? ମୁଁ ରାଉରକେଲା ଛାଡିଲି । ତୁମେ ମୋତେ ଛାଡିଦେଲ ? ଅତି ନମ୍ରତାର ସହ କହୁଚି କବିତା, ପ୍ରିୟ କବିତା, ଭୁଲ କରୁଚ ମୋତେ କଷ୍ଟ ଦେଇ । ତୁମ ସମଗ୍ର ସତ୍ତାକୁ ମୁଁ ଯେତେ ଦରଦ ଦେଇ ବୁଝେ, କେତେ ଜଣ ବୁଝିଥିବେ ତମକୁ ? ତେବେ ଏବେ ବି ତୁମେ ମୋ ପାଇଁ ଅନନ୍ୟ, ସ୍ୱତନ୍ତ୍ର ।'

ତଥାପି ମୁଁ ନୀରବ ରହିଥିଲି । ଆଦୌ ଉତ୍ତର ଦେଇ ନଥିଲି । ମୁଁ ଜାଣିଥିଲି ଏଭଳି ଏକ ବନ୍ଧୁ ସହିତ ବନ୍ଧୁତ୍ୱ ଛେଦ୍ରେ କାଟିହେବ ନାହିଁ । ମୋତେ ବି କମ୍ କଷ୍ଟ

ହେଉନଥିଲା ଅସମ୍ପର୍କିତ ରହିବାରେ । ଘରେ ବାହାରେ କିଛି ସମାଲୋଚନା ମନରେ ଆଘାତ ଦେଉଥିଲା । ଭାବିଥିଲି ଜଣେ କଳଙ୍କିତ ନାୟକ ସହିତ ଆଉ ଜଣେ କଳଙ୍କ ଛୁଇଁ ନଥିବା ଝିଅର ବନ୍ଧୁତ୍ୱ ହେଇପାରେନା । ଆମକୁ ସମାଜର ଏହି ଗଡ୍ଡାଳିକା ପ୍ରବାହର ସନ୍ଦେହକୁ ଭାଙ୍ଗିଦେବାକୁ ପଡିବ । ସାମାନ୍ୟ ଚରିତ୍ରହୀନତାର ସଂକେତ ପାଇଥିଲେ କେବେଠୁ ମୁଁ ଏଇ ବନ୍ଧୁଟିକୁ ମୋ ଜୀବନ ପରିଧିରୁ ଦୂରେଇ ଦେଇଥାନ୍ତି ।

ପୁଣି ଆସିଲା ମୋର ଏହି ସ୍ନେହ କାଙ୍ଗାଳ ବନ୍ଧୁଟିର ଭାବପ୍ରବଣ ଚିଠି । ଲେଖିଥିଲେ 'ତମେ ମୋର କଳଙ୍କ ଦେଖିଛ କବିତା । କଳା ଦେଖିବାର ଅବକାଶ ପାଇନା । ମୋ ସବୁଜ ଦିନଗୁଡିକରେ ମୋ ଚାରିପଟର ଉତ୍ସାହୀ ମଣିଷଙ୍କର ସପ୍ରଶଂସ ଆଖିମାନଙ୍କୁ ଦେଖିନ । ତୁମେ ମୋର ନାଟ୍ୟପ୍ରତିଭା ସହ ପରିଚିତ ନୁହଁ । ତଥାପି ମୁଁ ଜାଣେ ତୁମେ ମୋର ଶବ୍ଦର ଖେଳ ଅପେକ୍ଷା ମୋତେ ହିଁ ସମ୍ମାନକର । ଭଲପାଅ ମୋର ବ୍ୟକ୍ତିତ୍ୱକୁ । ମୋ କଳଙ୍କକୁ ହେୟଜ୍ଞାନ କରି ମୋ ଦୁର୍ଦ୍ଦିନରେ ମତେ ସାହଚର୍ଯ୍ୟ ଦେଇଚ । ଦେଇଚ ସମ୍ବେଦନା, ବିଶ୍ୱାସ । ଆଉ କେତେଥର କୃତଜ୍ଞତା ଜଣାଇଲାପରେ ତୁମେ ବିଶ୍ୱାସ କରିବ ଯେ ମୁଁ କୃତଜ୍ଞ ?

ମୋର ବିଶ୍ୱାସ ଥିଲା ଆମେ ପରସ୍ପରକୁ ବୁଝୁ । ପରସ୍ପରକୁ ଯଥେଷ୍ଟ ସମ୍ମାନ ଦେଉ ଏବଂ ବୋଧହୁଏ ଏକ ବିକଳ୍ପ ବିହୀନ ସମ୍ପର୍କକୁ ଦେଲେ ଯେ ଆମେ ଅନ୍ୟାନ୍ୟଙ୍କ ପରି ଅତି ସାମାନ୍ୟ । ଜାଗତିକ ମଣିଷଙ୍କ ପରି ବହୁବିଧ ମାୟାର କ୍ରୀତଦାସ । ଭାବିଥିଲି କବିତା ଜଣେ ଭଲ ଏବଂ ଦରଦୀ ବାନ୍ଧବୀ । ଅଥଚ ତମେ କେତେ ଶୀଘ୍ର ବଦଳିଗଲ ? ନିଜକୁ ଅସମ୍ପର୍କୀତ ରଖିବାର ପ୍ରସ୍ତୁତି କଲ ? କେମିତି କଲ ? କରିପାରିଲ ? ତମେ ତ ଏମିତିରେ ଉଦାର ଝିଅଟିଏ । ମୋରି ବେଳକୁ ଏତେ ରୁକ୍ଷ ? ବାଜିମାରିବାରେ ମୋର ଦ୍ୱିଧା ନାହିଁ ଯେ ମୁଁ, ତୁମର ରଣଜିତ୍ ହିଁ ସଠିକ୍ ବୁଝେ ତୁମକୁ... ତୁମର ଭାବର, ଶବ୍ଦର ପୃଥିବୀକୁ । ତା'ଠାରୁ ଦୂରତ୍ୱ ଚାହଁ ? ତୁମ ଇଚ୍ଛା, ତୁମ ଖିଆଲ ।

ଲୁହଭର୍ତ୍ତି ଏବେ ମୋର ଆଖି । ପାଖରେ ଥାଆନ୍ତ କି ଦେଖିଥାନ୍ତ ସେ ଢଳଢ଼ଳ ଲୁହ ଦି'ଟୋପାରେ ତୁମ ନିଜ ମୁହଁ । କେତେ ସ୍ପଷ୍ଟ ତୁମର ଛବି ଆଉ ପବିତ୍ର ମୋର ଦି'ଟୋପା ଲୁହ । ଶ୍ରଦ୍ଧେୟ ଲୋକଙ୍କ ପାଖରେ ହିଁ ମୁଁ ନ୍ୟୁନ ହୋଇଯାଏ । ତୁମ ପାଖକୁ ମୋର ଏ ଆବେଗ ସର୍ବସ୍ୱ ପତ୍ର ଯେ ମୋତେ ନ୍ୟୁନତର କରିବ ମୁଁ ଜାଣେ । ତେବେ ତୁମେ ମୋର ଶ୍ରଦ୍ଧାର ପାତ୍ରୀ ।'

ନା..., ଏଭଳି ବନ୍ଧୁଟିର ବନ୍ଧୁତ୍ୱ ଭାଙ୍ଗିପାରିଲି ନାହିଁ । ମୋର ଅଭିମାନ ରାଗ ସବୁ ପାଣି ପାଲଟି ଗଲା । ଜୀବନରେ କେବେ ତ କେହି କାହାଠାରୁ କିଛି ଚାହିଁନୁ । ତାହାଲେ

ପରସ୍ପରର ସୁଖକାମନା କରିବା ଦୁଃଖରେ ସମ୍ବେଦନା ଜଣାଇ ଦୁଇଧାଡି ଲେଖିଲେ କ'ଣ ଯେ ମହାଭାରତ ଅଶୁଦ୍ଧି ହୋଇଯିବ ? ପାଇବାର ଲାଳସା ଥିବା ବନ୍ଧୁତ୍ୱରେ ହିଁ ସ୍ୱାର୍ଥ ଲୁଚିଥାଏ । ତା'ହାଲେ କିଏ କ'ଣ କହୁଛି ସେଥିରେ କ'ଣ ବା ଯାଏ ଆସେ ? ଯଦିଓ ଆମ ଜୀବନଧାରା, ଦୃଷ୍ଟିକୋଣ ସମ୍ପୂର୍ଣ୍ଣ ଅଲଗା' ତଥାପି ବନ୍ଧୁତ୍ୱକୁ କାଏମ୍ ରଖିଲେ କ୍ଷତିକ'ଣ ?

ବନ୍ଧୁତ୍ୱ ରହିଲା ଯଦିଓ ଦେଖା ହେଲାନାହିଁ । ଉଭୟ ଓଡ଼ିଶା ଭିତରେ ଯେତେବେଳେ ଦେଖା ତ ନିଶ୍ଚେ ହେବ କେବେ କେଉଁ ସାହିତ୍ୟ ସଭାରେ କି କେଉଁ ବହିମେଳାରେ ଅଥବା କଫି ହାଉସରେ । ଅନ୍ତତଃ କହିପାରିବୁ, କେମିତି ଅଛ ? କେମିତି ଚାଲିଛି ଜୀବନ ? କହିତ ପାରିବି ଜୀବନକୁ ତମେ ଯେତେବେଳେ ଏତେ ଭଲପାଅ ତେବେ ସେ ଜୀବନକୁ ଏମିତି ଖିଆଲି ଭାବରେ ନଷ୍ଟ କରିଦିଅନା, କିଛିଟା କମ୍ପ୍ରୋମାଇଜ୍ କରି ନିଅ । ସେ ବିତ କହିପାରିବେ, କିଛି ନ କରିପାରିଲେ ଏ କବିତା ଥକି ପଡୁଛ ? ମୋତେ ଦେଖ, ତମେ ତ ମୋଭଳି କାହାଠାରୁ ଏତେଟା ଆଘାତ, ଧକ୍କା ପାଇନ ?

କହିବା ବାହୁଲ୍ୟ ଯେ,ପରେ ମୁଁ ଚିନ୍ତା କରିଛି ମୁଁ ବି ରଣଜିତଙ୍କ ଭଳି ଏକ ଦରଦୀ ବନ୍ଧୁଙ୍କୁ କେବେ ହରାଇବାକୁ ଚାହେଁନା । ମୋ ଜୀବନରେ ତାଙ୍କ ସ୍ଥାନ ବି ସ୍ୱତନ୍ତ୍ର । ତାଙ୍କର କଳଙ୍କ, ତାଙ୍କ ପ୍ରଶଂସାରେ ମୋର ଯାଏ ଆସେ ନାହିଁ । ଯିଏ ଯେତେ ଉନ୍ନତିର ସିଡି ଚଢ଼ିଲେ ବି ଆମେ ସେହି ମାଟିର ମଣିଷ । ଆମର ପରିଚୟ ପରସ୍ପରର ବନ୍ଧୁ ଓ ବାନ୍ଧବୀ । ହଁ ମୋ ସମ୍ପର୍କ ଉପନ୍ୟାସରେ ଯେଉଁ ନୀଲୁଦା ଚରିତ୍ରଟି ରହିଛି ସେ ଚରିତ୍ରଟି ହିଁ ରଣଜିତଙ୍କର । ମୋର ବିଶ୍ୱାସ ହୋଇ ଯାଇଛି କେମିତି କେଜାଣି ମୃତ୍ୟୁ ପର୍ଯ୍ୟନ୍ତ ଆମର ଏ ବନ୍ଧୁତ୍ୱ ଅତୁଟ ରହିବ । ସମୟର କୌଣସି ଝଡ ଏହାକୁ ନଷ୍ଟ କରିଦେଇ ପାରିବନି ।

ରାଉରକେଲାରେ ଥିଲାବେଳେ ହିଁ କାର୍ଡଟେ ପାଇ ଚମତ୍କୃତ ହେଲି । ରଣଜିତଙ୍କ ବାହାଘରର କାର୍ଡ । ଯାହାହେଉ ରଣଜିତ ବିବାହ କରୁଛନ୍ତି । ତାଙ୍କ ମନଲାଖି ଝିଅଟିଏ ଖୋଜି ପାଇଛନ୍ତି । ବାହାଘରର କିଛିଦିନ ପରେ ଚିଠି ପାଇଲି କେବେ ଆସ କବିତା । ମୋ ସ୍ତ୍ରୀ ଦୀପ୍ତି ସହ ପରିଚୟ ହୁଅ । ଆଦୌ ସାହିତ୍ୟ କରୁନଥିବା ଓ ବୟସରେ ବେଶ୍ ଛୋଟ ଦୀପ୍ତି ମୋ ଅତୀତକୁ ନେଇ ମୁଣ୍ଡ ଖେଳାଏନା । ତାକୁ ବି ମୋ ଜୀବନରେ ଘଟିଥିବା ଘଟଣାଗୁଡିକ କହିବାରେ ମୁଁ କାର୍ପଣ୍ୟ କରିନାହିଁ । ପରେ ପରେ ମୋର ବି ବାହାଘର ହୋଇଗଲା । ପୁଅର ମାଆ ହେଲି ମୁଁ । ରଣଜିତ ବି ପୁଅର ବାପ ହେଲେ । ବେଳେବେଳେ ମୁଁ ତାଙ୍କ ଡାକ ନାଁରେ ଡାଲୁଦା ବୋଲି ବି ଡାକୁଥିଲି । ଏ ଭିତରେ ପଳାଇଗଲା ଛଅସାତ ବର୍ଷ । ଯେ ଯାହାର ସାଂସାରିକ, ସାହିତ୍ୟ ଦୁନିଆରେ ବୁଡିଗଲୁ ।

ଯୋଗାଯୋଗ ରହିଲା ନାହିଁ । ଛଅ ସାତବର୍ଷ ପରେ କ'ଣ ଏକ କାମରେ କଟକ ଯିବାର ଥିଲା । ଠିକଣା ଖୋଜିଲି । ମୁଁ ଯାଉଛି ଶୁଣି ସେ ଫୋନ୍ ନମ୍ବରଟେ ଦେଲେ । ବାଦାମବାଡ଼ିରେ ପହଞ୍ଚି ରିଙ୍ଗ୍ କଲେ ଆସି ନେଇଯିବେ । ତାହା ହିଁ ହେଲା । ଡାଲୁଦାଙ୍କ ଘରେ ପହଞ୍ଚି ଦେଖିଲି ତାଙ୍କ ଭଉଣୀ ନୀଲୁ, ମାଆ ସମସ୍ତେ ଆସିଛନ୍ତି । ସ୍ତ୍ରୀ, ପୁଅ ସହ ବି ପରିଚିତା ହେଲି । ବୋଧହୁଏ ୨୦୦୦ ମସିହା ହେବ । ଫ୍ରେସ୍ ହେଲା ପରେ ଚା' ପିଉ ପିଉ ଡାଲୁଦା କହିଲେ ଛଅ ସାତ ବର୍ଷ ପରେ ଆସିଲ । ପ୍ରାୟ ଆଠ ନଅବର୍ଷ ପରେ ଦେଖାହେଲା । ଆମ ବନ୍ଧୁତ୍ୱ ପ୍ରାୟ ଷୋଳବର୍ଷ ହୋଇଗଲା । ଆସିଲ ଯେ ବଡ ଦୁର୍ଦ୍ଦିନରେ । କଥାଟା ବୁଝିପାରିଲନି । ପରେ ଜାଣିଲି ତାଙ୍କ ବଡଭାଇଙ୍କର କ୍ୟାନ୍ସର ହୋଇଯାଇଛି । ଶେଷ ସମୟ । ସେଥିପାଇଁ ସମସ୍ତେ ଦେଖିବାକୁ ଆସିଛନ୍ତି । ଅଶୀବର୍ଷ ପାଖାପାଖି ମାଆ ବସିଛନ୍ତି । ସମସ୍ତେ ଜାଣନ୍ତି ସେ ଚାଲିଯିବେ । କେବଳ ଦିନର ଯାହା ଅପେକ୍ଷା । ମୁଁ କହିଲି ମୁଁ ତମ ଦୁର୍ଦ୍ଦିନରେ ବାନ୍ଧବୀ କିନା । ସୁଖର ସମୟରେ ସିନା ଆସିପାରିଲିନି । ଦେଖ ତମ ଅସମୟରେ ପାଖରେ ଛିଡା ହୋଇଛି । ତାଙ୍କ ପରିବାର ସହ ଗଲି କଟକର କ୍ୟାନ୍ସର ୱାର୍ଡକୁ । ଅଦ୍ଭୁତ ପରିବେଶ । ସମସ୍ତେ ମୃତ୍ୟୁକୁ ଅପେକ୍ଷା କରିଛନ୍ତି । ଡାଲୁଦାଙ୍କ ବଡଭାଇଙ୍କ ବେଡ୍ ସେପଟେ ଶୋଇଥିଲା ଆଠନବର୍ଷର ଝିଅଟିଏ । ପଚାରି ବୁଝିଲି ତାକୁ ବି କ୍ୟାନସର । ସବୁ ଚିକିତ୍ସା ବ୍ୟର୍ଥ ହୋଇଯାଇଛି । ଦିନ ବି କୁହା ସରିଛି । ଦେଖିଥିଲି ଅସହାୟ ଯୋଡେ ବାପା ମାଆଙ୍କୁ । ଲୁହ କେବେଠୁ ପଥର ହେଇଯାଇଛି । ଭାବିଥିଲି ଏତେ ଛୋଟ ଝିଅଟିକୁ ଫେର୍ କ୍ୟାନସର ? ଭଗବାନ ତାକୁ ପୃଥିବୀକୁ ତେବେ କେଉଁ ଉଦ୍ଦେଶ୍ୟରେ ଆଣିଥିଲେ ?

ରଣଜିତଙ୍କ ମାଆ ପୁଅର ଗୋଡ ଆଉଁସି ଦେଉ ଦେଉ ସୁଁ ସୁଁ କାନ୍ଦୁଥାନ୍ତି । ତାଙ୍କ ସ୍ତ୍ରୀ, ପିଲାଙ୍କୁ ଦେଖିଲି ନାହିଁ । ଜାଣିଲି ଏ କୋଠରୀରେ ଯେଉଁମାନେ ଶୋଇଛନ୍ତି ସମସ୍ତେ କିଛି ଦିନପରେ ଶବପାଲଟି ଯିବେ । ଜୀବନର ଏହି କଠୋର ବାସ୍ତବତାକୁ ସହଜରେ ଗ୍ରହଣ କରି ପାରିଲି ନାହିଁ । କାରୁଣ୍ୟ, ବିଷାଦର ଚାଦର ଘୋଡାଇ ସମସ୍ତେ ଶୋଇଥିଲେ ମୃତ୍ୟୁକୁ ଅପେକ୍ଷା କରି । ସେଠୁ ଫେରି ସାତଟା ପାଖାପାଖି ବସ୍‌ରେ ଫେରି ଆସିଲି ବରଗଡ । ସେତେବେଳେ ପଞ୍ଚାୟତ କଲେଜ, ବରଗଡକୁ ବଦଳି ହୋଇ ଯାଇଥାଏ । ସେଠୁ ଆସି ହିଁ ଲେଖିଲି 'ଜୀବନରେଖା' ଗଳ୍ପ । ଯେଉଁଠି ଡାଲୁଦାଙ୍କୁ ସମ୍ବୋଧନ କରି ବନ୍ଧୁତ୍ୱ ସହ କ୍ୟାନସର ଓ ବାସ୍ତବ ଜୀବନକଥା ବ୍ୟକ୍ତ କରାଯାଇଥିଲା । ପୁଣି ପୁଅକୁ ନେଇ ଗଲି କଟକ । ମୋର 'ଶହେବର୍ଷର ଆଧୁନିକ ଓଡ଼ିଆ ଗଳ୍ପ : ଏକ ତାତ୍ତ୍ୱିକ ବିଶ୍ଳେଷଣ'ର ପ୍ରୁଫ୍ ଦେଖିବା ସହ ତାଙ୍କ ଘରେ ହିଁ ମୁଖବନ୍ଧ ଲେଖି ବିଦ୍ୟାପୁରୀରେ

ଦେଇଥିଲି । ମୋ ପୁଅ ଲିପୁନ୍ ଓ ଡାଲୁଦାଙ୍କ ପୁଅ ରାତ୍ ବେଶ୍ ସାଙ୍ଗ ହୋଇ ଯାଇଥିଲେ । ଦୀପ୍ତି ଖୁବ୍ ହସକୁରୀ ଆଉ ଆତିଥ୍ୟ ଦେବାରେ କାର୍ପଣ୍ୟ କରି ନଥିଲା । ପୁଣିଗଲି ୨୦୦୨ରେ ବୋଧହୁଏ 'ଜୀବନରଙ୍ଗ' ପୁରସ୍କାର ଗ୍ରହଣ କରିବାକୁ । ଗାଳ୍ପିକା ବିଜୟିନୀ ଦାସ ଓ ଗାଳ୍ପିକ, ସମ୍ପାଦକ ରଣଧୀର ଦାସଙ୍କ ଘରେ ଗୋଟେ ଦିନ ରହିଲି । ତେବେ ତାଙ୍କର ଭଡାଘରକୁ ସେତେବେଳେ ଉଠି ଆସିଥିଲେ ରଣଜିତ । ଶୁଣିଲି ସେହିଘରେ କୁଆଡେ ଆଗରୁ ପ୍ରଖ୍ୟାତ କବି ଅନନ୍ତ ପଟ୍ଟନାୟକ ରହୁଥିଲେ । ବିଜୟିନୀ ଅପାଙ୍କ ଘରେ ରହିଯିବାରୁ ରଣଜିତଙ୍କ ଅଭିମାନ କହିଲେ ନସରେ । ସେଇଠି ହିଁ ପରିଚୟ ହେଲା ଓ ଦେଖାହେଲା ଡକ୍ଟର ବିଜୟାନନ୍ଦ ସିଂହଙ୍କ ସହ । ପୁଣି ଓଡ଼ିଆ ସାହିତ୍ୟକୁ ମୟୂରଭଞ୍ଜର ଦାନ ସମ୍ପର୍କରେ କିଛି ତଥ୍ୟ ସଂଗ୍ରହ କରିବାକୁ ଡାଲୁଦାଙ୍କ ସହ ଗଲି ପ୍ରଖ୍ୟାତ ଗୀତିକବି ଗୁରୁକୃଷ୍ଣ ଗୋସ୍ୱାମୀଙ୍କ ଘରକୁ । ତା' ଆଗରୁ ବି ଥରେ ଯାଇଥିଲି 'ମୋ ଦୃଷ୍ଟିରେ ନାରୀ'ର ମୁଖବନ୍ଧ ଲେଖିବାପାଇଁ ପଦ୍ମଶ୍ରୀ ସଚ୍ଚି ରାଉତରାୟଙ୍କ ପାଖକୁ । ଏ ଭିତରେ ରଣଜିତ୍‌ଙ୍କ ଦୁଇ ତିନିଟି ବହି ପ୍ରକାଶିତ ହୋଇ ସାରିଥିଲା । ସେ ଟି.ଭି. ସିରିଏଲ୍ ଓ ଓଡ଼ିଆ ସିନେମା ସହ ସମ୍ପୃକ୍ତ ହୋଇ ସାରିଥିଲେ । 'କାହାଣୀ' (ଦୂରଦର୍ଶନରେ ଓଡ଼ିଆ ଗଳ୍ପକୁ ନେଇ ଏକ ମେଗା ସିରିଏଲ୍)ର ସେ ଥିଲେ ସ୍କ୍ରିପ୍ଟ ରାଇଟର । ପୁଣି ଗାଁ ନାଟକ ଲେଖା ଚାଲିଥିଲା । ଏପଟେ ଟି.ଭି. ପାଇଁ ପ୍ରସ୍ତୁତ ହେଉଥିଲେ । ଟିକିଏ ଟିକିଏରେ ସେ ଚଳଚ୍ଚିତ୍ର ଦୁନିଆର ନାୟକ ନାୟିକାଙ୍କ କଥା ଗପୁଥିଲେ । ତାଙ୍କ ଘରକୁ ଅଭିନେତା ବାପୁଲେଙ୍କା, ହାସ୍ୟାଭିନେତା ବୁଲ୍ଲସିଂ ଆସିବାର ଦେଖିଛି । ଓଡ଼ିଆ ଚଳଚ୍ଚିତ୍ରର ଅଭିନେତା ସିଦ୍ଧାର୍ଥ, ମିହିର ଦାସ, ବିଜୟ ମହାନ୍ତି ପ୍ରଭୃତିଙ୍କ ସହିତ ସମ୍ପର୍କ ଗଢ଼ି ଉଠିଥିଲା । ସେ ସେଠି ଏକ ଭି.ଆଇ.ପି ମଣିଷରେ ପରିଣତ ହୋଇ ସାରିଥିଲେ । ଅଭିନେତ୍ରୀ ଅପରାଜିତା, ପ୍ରଯୋଜକ ସଞ୍ଜୟ ନାୟକ, ଗାଳ୍ପିକା ଜୟନ୍ତୀ ରଥ, ଗାଳ୍ପିକ ବିଷ୍ଣୁ ସାହୁ, ଦେବବ୍ରତ ମଦନରାୟ ପ୍ରଭୃତିଙ୍କୁ ନେଇ ତାଙ୍କର ଆଉ ଏକ ବନ୍ଧୁତ୍ୱର ଦୁନିଆ ଗଢ଼ି ଉଠିଥିଲା । ମୋର କେଜାଣି କାହିଁକି ମନେ ହେଲା ପାତ୍ରପୁରରୁ ଆସି ବନ୍ଧୁତ୍ୱର ହାତ ବଢ଼ାଇଥିବା ସେଦିନର ପାଠକ ରଣଜିତଙ୍କୁ ମୁଁ କେମିତି ହଜାଇ ଦେଇଛି । ଏ ଭିନ୍ନ ଏକ ମଣିଷ ଯାହା ପଛରେ ଖ୍ୟାତି, ଅର୍ଥ ଗଦାହୋଇ ପଡୁଛି । ଅନେକ ବନ୍ଧୁବାନ୍ଧବୀଙ୍କ ମେଳରେ ମୁଁ କେମିତି ଦୂରରେ ଛିଡା ହୋଇଛି । ଗ୍ଲାମର, ଚଳଚ୍ଚିତ୍ରର ରୂପେଲି ପରଦା ଆଉ ପ୍ରାଚୁର୍ଯ୍ୟ ଭିତରେ ହଜିଯାଇଛନ୍ତି ସେଦିନର ରାଉରକେଲାର ଦୁଃସ୍ଥ, ଦରଦୀ ମୋର ପ୍ରିୟ ପାଠକ ରଣଜିତ ।

ଯେତେଦୂର ସମ୍ଭବ ୨୦୦୩ ପରେ ଆମର ଆଉ ଦେଖା ହେଇନି । ଟେଲିଫୋନ୍‌ର ଯାହା କେତେବେଳେ କଥା ହେଉଛୁ । ପୁଣି ବି ତାହା ବନ୍ଦ ହୋଇଗଲା

ବରଗଡ ଛାଡ଼ିଲାପରେ । ସି.ଡିଏ.ରେ ସେ ବିରାଟ କୋଠା ତୋଳିଛନ୍ତି ବୋଲି ଶୁଣିଛି । ଘର ପ୍ରତିଷ୍ଠାକୁ ଡାକିଥିଲେ ବି ଯାଇ ପାରିନାହିଁ । ଏମିତି ଭାବରେ ଯୋଗାଯୋଗ ବନ୍ଦ ହୋଇଯାଇଛି । କଟକକୁ ବିଭିନ୍ନ କାମରେ ଗଲେ ବି ଦେଖା ହୋଇପାରି ନାହିଁ । ଯଦିଓ ପୁଣି ଚାଲିଗଲାଣି ଛଅବର୍ଷ । ଏବେ ୨୦୦୯ ମସିହାରେ ମୁଁ ମୋ ଆତ୍ମକଥାର ଏହି ପରିଚ୍ଛେଦଟି (ଫେବୃଆରୀ ୨୮) ଲେଖୁଛି । ୧୯୮୪ ମସିହାରେ ଆରମ୍ଭ ହୋଇଥିବା ବନ୍ଧୁତ୍ୱ ୨୦୦୯ ମସିହା (ପ୍ରାୟ ୨୫ବର୍ଷ)ରେ କେମିତି ଫିକା ଧରିଯାଉଛି । ପ୍ରଚଣ୍ଡ ଅଭିମାନ ଆଉ କିଛି ଭୁଲ୍ ବୁଝାମଣା ବି ହୋଇପାରେ ତା'ର କାରଣ । ପୁଣି ଏବେତ ଡାଲୁଦାଙ୍କ ଜୀବନ ପ୍ରାଚୁର୍ଯ୍ୟ ଓ ଖୁସିର ଜୀବନ । ମୁଁ ଯେ ଦୁଃଖ ଦିନର ବାନ୍ଧବୀଟିଏ । ସୁଖ ସମୟରେ ମୋର ବା ସ୍ଥିତି କାହିଁ ? ସ୍ଥାନ କାହିଁ ସେଠି ? ସେ ଏବେ ଓଡ଼ିଆ ଚଳଚ୍ଚିତ୍ରରେ ସଂଳାପ ଲେଖକ ଭାବେ ପରିଚିତ ନାଁଟିଏ ।

ତଥାପି ଡାଲୁଦାଙ୍କ ଭାଷାରେ, ଆମର ନିଶ୍ଚେ ଦେଖାହେବ । ହୁଏତ ସେତେବେଳେ ଆମେ ବୁଢ଼ାବୁଢ଼ୀ ହୋଇ ଯାଇଥିବୁ । ଆଖିକୁ ଭଲ ଦିଶୁନଥିବ । ଚିଠି ଲେଖିବାର ଶକ୍ତି ନଥିବ । ପଢ଼ିବାପାଇଁ ଆଖିରେ ଜ୍ୟୋତି ନଥିବ । ତଥାପି ଆମେ ଜୀବନକୁ ନେଇ, ସାହିତ୍ୟକୁ ନେଇ ଆଲୋଚନା କରୁଥିବୁ । ଅତୀତର କିଛି ଭଲଦିନକୁ ଛୁଉଁଥିବୁ । ପରସ୍ପରର ପାଇବା ହରାଇବାର କାହାଣୀ ଶୁଣୁଥିବୁ । ସେତେବେଳେ ବି କାକ୍‌ଟସ, କ୍ରୋଟନର କୁଣ୍ଡଥିବ । ଆକାଶରେ ଜହ୍ନକୁ ବାଦଲ ଘୋଡାଇ ଦେଇଥିବ ଅଥବା ଝିପିଝିପି ବର୍ଷା ହେଉଥିବ । ସ୍ମୃତିଫୁଲ ହୋଇ ଝଡୁଥିବ । ପରସ୍ପର ଜୀବନର ଲମ୍ବା କାହାଣୀ ଶୁଣାଇଲା ବେଳେ ସମୟ ସତେ କି ସ୍ଥିର ହୋଇ ଯାଇଥିବ । ଆମେ ହସିହସି କହୁଥିବୁ, ହାୟ ! ଜୀବନ କେତେ ଶୀଘ୍ର ସରିଗଲା ! ଆଉ ଯଦି ପୁନର୍ଜନ୍ମ ଥାଏ ? ତାହାଲେ ସେ ଜନ୍ମରେ ବି କ'ଣ ଆମେ ପରସ୍ପରର ବନ୍ଧୁ ହୋଇ ହିଁ ଜନ୍ମନେବୁ ?

ଥରେ ରଣଜିତ୍ ଲେଖିଥିଲେ, 'ଓ. ହେନେରୀଙ୍କ' ଦି ଲାଷ୍ଟ ଲିଫ୍ ଭଳି ବରଫ ଝଡ ଭିତରେ ଶେଷ ପତ୍ର ଭଳି ଆମ ବନ୍ଧୁତ୍ୱ ଜୀବନର ଶେଷଯାଏଁ ଝୁଲୁଥିବ । ବରଫ୍ ଝଡଟା ଏମିତି କେତେ ଭୟାନକ ଯେ, ବନ୍ଧୁତ୍ୱକୁ ଉଡାଇ ନେବ ? ମୋର ଦୃଢ଼ ବିଶ୍ୱାସ ଆମେ ଚିରକାଳ ବନ୍ଧୁ ହୋଇ ରହିବା ।'

ଏହାର ଉତ୍ତର ସମୟ ହିଁ ଦେବ । ତେବେ ବରଫଝଡ ଯେ ୨୦୦୩ ମସିହାରୁ ତା'ର ଶେଷପତ୍ରଟି ଝଡାଇ ଦେଇସାରିଛି ! ତାଙ୍କୁ କେଉଁ ଶିଳ୍ପୀ ଆସି ତୂଳୀରେ ଆଙ୍କି ଯୋଡିବ ? ତେବେ ହରିବଂଶ ରାୟ ବଚ୍ଚନଙ୍କ ଭାଷାରେ କୁହାଯାଇପାରେ –

'ଶବ୍ଦମୟ ତୁମ୍ ଔର, ମେଁ, ଜଗ୍ ଶବ୍ଦୋଁ ସେ ଭରପୂର

ଦୂର ତୁମ୍ ହୋ ଔର୍ ମେଁ ହୁଁ ଆଜ୍ ତୁମ୍‌ସେ ଦୂର୍
ଅବ୍ ହମାରେ ବୀଚ୍ ମେଁ ହୈ ଶବ୍ଦୋଁକୀ ଦିଓ୍ୱାର୍
କ୍ଷୀଣ୍ କିତ୍‌ନା ଶବ୍ଦକା ଆଧାର ।' (ନିଡ୍ କି ନିର୍ମାଣ ଫିର୍)

ସତରେ ବୟସ ପାଣିହୋଇ ଆଗେଇ ଯାଇଛି ? କୁଆଡେ ଗଲେ ରୀନା ଅପା ? କେମିତି ଅଛି ସେଦିନର ମୁନ୍‌ମୁନ୍ ? ଜ୍ଞାନ ବି ତା'ର ସଂସାର କଲାଣି । ମୋ ବନ୍ଧୁଟି ତାଙ୍କ ସଂସାର ଓ ପୁଅକୁ ନେଇ ସୁଖର ସାମ୍ରାଜ୍ୟଟିଏ ଗଢ଼ିଛନ୍ତି । ସରଳରେଖା ଭଳି ଚାଲିଛି ଜୀବନ । ପ୍ରଚଣ୍ଡ ଅଭିମାନ ଏତେବର୍ଷର ବନ୍ଧୁତ୍ୱକୁ ଫିକା କରିଦେଲା । ତଥାପି ମୁଁ ସ୍ୱୀକାର କରିବି, ମୋର ବହୁ ଶୁଭେଚ୍ଛୁଙ୍କ ଭିତରେ ରଣଜିତ ଜଣେ ଭଲ ବନ୍ଧୁ ଥିଲେ । ସେ ଯେଉଁଠି, ଯେମିତି, ଯେଉଁ ଅବସ୍ଥାରେ ଥାଆନ୍ତୁ ନା କାହିଁକି - ଭଲରେ, ସୁଖରେ ରହନ୍ତୁ । (ତା. ୨୮.୨.୨୦୦୯)

## ଦଶ

ମୁଁ ବଡ଼ ସ୍ନେହ କାଙ୍ଗାଳ ।

ସ୍ନେହ, ପ୍ରେମ ଶ୍ରଦ୍ଧା ପାଇଁ ମୁଁ ପାଗଳ ହୋଇଛି । ମୋତେ ବି କିଛି ଏସବୁ ଦେବାକୁ କେହି କୁଣ୍ଠା ପ୍ରକାଶ କରିନାହାନ୍ତି । ତେଣୁ ଆଜି ନିଜ ଜୀବନରେ ସତ୍ୟ ପାଠ କଲାବେଳେ ନିଶାଭାଇ, ବଡ଼ବୋଉଙ୍କ ଚେହେରା ଆପେ ଆପେ ସାମ୍ନାକୁ ଚାଲିଆସୁଛି । ହେଲେ ସେ ଦୁହେଁ କେବେଠାରୁ ମାଟିରେ ମିଶି ଘାସ ପାଲଟି ଯାଇଛନ୍ତି ।

ଭୁବନେଶ୍ୱରକୁ ଏମ୍.ଏ. ପଢ଼ିବାକୁ ଆସି ନିଶାଭାଇ ବଡ଼ବୋଉଙ୍କ ଘରେ ହଷ୍ଟେଲ୍ ନ ପାଇଲା ଯାଏ ରହିଲି । ବାପାଙ୍କର ଦାଦା ପୁଅ ଭାଇ ବଡ଼ବାପା । ତାଙ୍କର ଏକମାତ୍ର ପୁଅ ନିଶାଭାଇ । ନିଶାଭାଇ ବାହା ହେବାକୁ ରାଜି ହେଲେ ନାହିଁ ଓ ଶେଷ ପର୍ଯ୍ୟନ୍ତ ଅବିବାହିତ ରହିଗଲେ । ବଡବାପା ରିଟାୟାର୍ଡ୍ କେବେଠୁ କରିସାରିଥିଲେ । ଏଇ ତିନିଜଣଙ୍କ ବ୍ୟତୀତ ଚାକର ପିଲାଟେ ଥିଲା ରନ୍ଧା ବଢ଼ା କରିବାକୁ । ମୁଁ ଆସିଲା ପରେ ସମସ୍ତଙ୍କ ସ୍ନେହ ଆଦରର ପାତ୍ରୀ ହୋଇଗଲି । ବାହା ହୋଇଥିଲେ ନିଶାଭାଇଙ୍କ ଝିଅ ମୋରି ବୟସର ହୋଇଥାନ୍ତା । ହଷ୍ଟେଲ୍ ପାଇଲା ପରେ ବି ପ୍ରାୟ ଶନିବାର ରବିବାର ମୁଁ ଚାଲି ଆସୁଥିଲି । ପୁରୁଣା ବସ୍‌ଷ୍ଟାଣ୍ଡ ପାଖ ଗଳି ଓ ମାର୍କେଟ୍ ବିଲ୍ଡିଂ ପଛପଟେ ଥିଲା ତାଙ୍କର କ୍ୱାର୍ଟର । ଟାଉନ୍‌ବସ୍‌ରୁ ଓହ୍ଲାଇଲେ ଘର ଦିଶୁଥିଲା । ଏମ୍.ଏ. ଏମ୍. ଫିଲ୍, ପି ଏଚ୍ ଡି କରିବା ଭିତରେ ଭୁବନେଶ୍ୱରରେ ଯେଉଁ ମୋର ସାତ ଆଠ ବର୍ଷର ରହଣୀ ସେଥିରେ ଅଧିକାଂଶ ଦିନ ବଡ଼ବାପାଙ୍କ ଘରେ କଟିଥିଲା ।

ନିଶାଭାଇଙ୍କ ଅବିବାହିତ ନିଃସଙ୍ଗ ଜୀବନ, ବଡ଼ ବୋଉ, ବଡ଼ବାପାଙ୍କ ବୁଢ଼ାକାଳରେ ପୁଅବାହା ନ ହେବାର ଅବଶୋଷ ଏହି ବାତାବରଣ ଭିତରେ ବର୍ଷ ବର୍ଷ ଧରି ମୁଁ ବୁଡ଼ି ରହିଛି ଓ ସେ ପରିବେଶରେ ନିଜକୁ ମିଶାଇ ଦେଇଛି । ତେଣୁ ବାର୍ଦ୍ଧକ୍ୟର ନିଃସଙ୍ଗତା ଓ ଅବିବାହିତ ଜୀବନର ଏକାକୀତ୍ୱ ଏ ଦୁଇଟି ସତ୍ତାକୁ ପାଖରୁ ଦେଖିଛି । ଖୁବ୍ ଗଭୀର ଭାବରେ ଉପଲବ୍ଧ କରିଛି । ଏମାନଙ୍କ ମଝିରେ ରହି ସେହି ଯୁବତୀ ବୟସରେ ମୋତେ ବୁଢ଼ାକାଳ ଡରାଇଛି ଆଉ ନିଃସଙ୍ଗତା ଖାଇଯାଇଛି ।

ବାଣୀ ବିହାରରୁ ସବୁ ଛୁଟିଦିନରେ ଯେତେବେଳେ ଚାଲି ଆସୁଥିଲି ଏହି ଛୋଟ ଘରଟିରେ ଖୁସିର ହିଲ୍ଲୋଳ ଖେଳି ଯାଉଥିଲା । ବଡ଼ବୋଉ ମୁଁ କଣ ଖାଇବି, କଣ ଜଳଖିଆ ଝିଅପାଇଁ କରାଯିବ ଯେମିତି ବ୍ୟସ୍ତ ହେଇପଡୁଥିଲେ, ସେମିତି ନିଶାଭାଇ ମୋତେ କଣ ଭଲ ଖୁଆଇବେ ସେଥିପାଇଁ ବିଭିନ୍ନ ମେନ୍ୟୁ ତିଆରି କରୁଥିଲେ । ଜୀବନରେ ଏତେ ଆଦର, ଭଲପାଇବା ଯେ ଥାଏ ଏଠାକୁ ଆସି ହିଁ ମୁଁ ପ୍ରଥମେ ଉପଲବ୍ଧି କଲି । ସତୁରି ଅଶି ବର୍ଷର ବୁଢ଼ାବୁଢ଼ୀଙ୍କ ମେଳରେ ଜଣେ ଯବୁତୀ ଝିଅ ବର୍ଷ ବର୍ଷ ଧରି ସମୟ କାଟିବା ଓ ସେମାନଙ୍କ ପୁରୁଣା କାଳିଆ ମାନସିକତା ସହ ଆଡଜଷ୍ଟ କରି ଚଳିବା ବି ମୋ ପାଇଁ ଯେମିତି ପରୀକ୍ଷାର ସମୟ ଥିଲା । ବଡ଼ବାପାଙ୍କର ମୁଣ୍ଡ ଠିକ୍ ରହୁନଥିଲା । ସେ ମୋତେ କେତେବେଳେ ଚିହ୍ନୁଥିଲେ ତ କେତେବେଳେ ନୁହେଁ । ଘର ଅଗଣାରେ ପଣସ ଗଛଟାଏ ଥିଲା । ସେଠି କାଉ ବସି କାଆକାଆ କଲେ ବି ସେ ତାକୁ ଖତେଇ ହୋଇ କାଆ କାଆ କରୁଥିଲେ । କୁକୁରଟେ ଭୋ ଭୋ କଲେ ସେ ବି ତାକୁ ଅନୁକରଣ କରି ସେମିତି କରୁଥିଲେ । ସଂସାରର କିଛି କଥା ତାଙ୍କର ମନେ ରହୁନଥିଲା । ତାଙ୍କ ନିର୍ଦ୍ଦେଶରେ କେତେବେଳେ ଗୀତା, ଭାଗବତରୁ ଅଧ୍ୟାୟେ ପଢ଼ିଦେଉଥିଲି । ବେଳେବେଳେ ସେ ଏତେ ଗପୁଥିଲେ ଯେ କାହାଣୀ ସରୁନଥିଲା । ତାଙ୍କର ଅଧିକାଂଶ ସମୟ ଠାକୁର ଘରେ କଟୁଥିଲା । ଘଣ୍ଟା ଘଣ୍ଟା ପୂଜା କରୁଥିଲେ । ପୂଜା ନକଲେ ପାଣି ଛୁଉଁ ନଥିଲେ ।

ମୋର ଏମ୍.ଫିଲ୍ କଲା ସମୟରେ ହିଁ ସେ ଚାଲିଗଲେ । ପ୍ରାୟ ଦେଢ଼ବର୍ଷ ପାଖାପାଖି ବିଛଣାରେ ପଡ଼ିଥିଲେ । ଶେଷ ବେଳକୁ ଠାକୁର ପୂଜା ଛାଡ଼ିଦେଲେ । କାହାକୁ ଚିହ୍ନିଲେ ନାହିଁ । ପେଟକୁ ଦାନା ଗଲା ନାହିଁ । ବିଛଣାରେ ଗୁହମୂତ । ଏତେବଡ଼ ମଣିଷର ଗୁହମୂତ ସଫା କରିବାଟା ବି କାଠିକର କାମ ଥିଲା । କେହି ଲୋକ ମିଳୁନଥାନ୍ତି । ରମା ଅପା (ସୌରୀଭାଇଙ୍କ ସ୍ତ୍ରୀ) ପ୍ରାୟ ଆସି ସେ ସବୁ ନିର୍ବିକାର ଭାବରେ ସଫା କରୁଥିଲେ । ବଡ଼ବୋଉ ବି ସଫା କରନ୍ତି । ଶେଷରେ ମୋର ବି ଘୃଣା ଚାଲିଯାଇଛି । ନିର୍ବିକାର ଭାବରେ ତାଙ୍କ ଗୁହମୂତ ସଫାକଲା ବେଳେ, ତାଙ୍କୁ ଗାଧେଇ ପୋଛି ଲୁଗା ପିନ୍ଧାଇ

ଦେଲାବେଳେ କୌଣସି ବିକାର ଆସିନାହିଁ । ହାୟ, ବାର୍ଦ୍ଧକ୍ୟ ମଣିଷକୁ କେତେ ଅସହାୟ କରିନଦିଏ ।

ତାଙ୍କ ମୃତ୍ୟୁ ଶଯ୍ୟାରେ ମୁଁ ହିଁ ଏକୁଟିଆ ପାଖରେ ଥିଲି । ବାଣୀ ବିହାରରୁ ଫେରି ଜଳଖିଆ ଖାଇ ଚା ପିଉଥିଲି । ହଠାତ୍ ବଡ଼ ବାପାଙ୍କ ହିକ୍କା ଉଠାଇଲା । ଧାଇଁଗଲି । ବଡ଼ବୋଉଙ୍କ ଆଖିକୁ ଭଲ ଦିଶୁନଥିଲା । ମୁଁ ବି ଜାଣିନଥିଲି ଏଇଟା ତାଙ୍କର ଶେଷ ସମୟ ବୋଲି । ନିଶାଭାଇ ଅଫିସ୍‌ରୁ ଫେରି ଦାଣ୍ଡଘରେ ଚା ପିଉଥିଲେ । ମୁଁ କିଛି ନଭାବି ଗ୍ଲୁକୋଜ୍ ପାଣି ଚାମୁଚେ ଚାମୁଚେ ଦେଲି । ଘଡ୍ ଘଡ୍ ଶବ୍ଦ କରି ସେ ସବୁବି ତାଙ୍କ ପାଟିରୁ ଗଳି ପଡ଼ିଲା । ଆଉ ସେ ଗୋଟିଏ କଡ଼କୁ ଢଳିଗଲେ । କିଛି ନବୁଝି ମୁଁ ଚିତ୍କାର କରି ଉଠିଲି । ନିଶାଭାଇ ଧାଇଁ ଆସି ନାଡ଼ି ଦେଖିଲେ । ଡାକ୍ତର ଡକାଗଲା । ବାସ୍ ଶେଷ୍ ।

କେଉଁଠି ଜନ୍ମ ହେଇଥିଲି, କେଉଁଠୁ ଆସିଥିଲି ! ଅଥଚ ବଡ଼ ବାପାଙ୍କ ଶେଷ ଶଯ୍ୟାରେ ମୋତେ ହିଁ ପାଣି ଦେବାକୁ ପଡ଼ିଲା । ଆଖି ସାମ୍ନାରେ ଏକ ଜୀବନ୍ତ ଦେହ ସ୍ଥିର ହୋଇ ଶବ ପାଲଟି ଯିବାର ଦେଖିଲି । ମୃତ୍ୟୁକୁ ଏତେ ପାଖରେ ଅନୁଭବ କଲି । ଜୀବନ ସମ୍ପର୍କରେ ଆହୁରି ଉଦାସ ହୋଇଗଲି । କୁନ୍ତଳା କୁମାରୀଙ୍କ କବିତାର ଧାଡ଼ିଟିଏ ମନେ ପଡ଼ିଗଲା ।

"ମୃତ୍ୟୁ ଯେଦିନ କରାଳ ଲୋଚନେ
ତରାଟି ଚାହିଁବ ମୋତେ
ନିଜର ମହତ୍ତ୍ୱେ କରିବି ତାହାକୁ
ନ ମରିବି ଅଣାୟତେ" ।

ମୋରି ଆଗରେ ଅଶୀ ବର୍ଷର ବଡ଼ବାପା ଚାଲିଗଲେ । ପଚସ୍ତରୀ ବର୍ଷର ବଡ଼ବୋଉଙ୍କୁ ଧରି ଧରି ତାଙ୍କ ପାଖକୁ ଅଣାଗଲା । ନାତି ତାଙ୍କର ହାତର କାଚକୁ ପଥରରେ ଭାଙ୍ଗି ଚୂର୍ଣ୍ଣ କରିଦେଲା । ମୁଣ୍ଡର ସିନ୍ଦୁର ଲିଭାଇ ଦେଲା । ଏ ବୟସରେ ବିଧବାର ଗୁରୁତ୍ୱ ସତେକି ବଡ଼ବୋଉ ସେତେଟା ବୁଝିପାରୁନଥିଲେ । ମୁଁ ଜଳ ଜଳ ହୋଇ ତାଙ୍କର ବିଧବା ରୂପକୁ ଚାହିଁ ରହିଥିଲି । ଧଳାଥାନଟେ ଯେତେବେଳେ ତାଙ୍କୁ ପିନ୍ଧାଇ ଦିଆଯାଉଥିଲା ବଡ଼ବାପାଙ୍କର ପ୍ରତିଦିନ ବସି ରହୁଥିବା ଚେୟାରଟା ଉପରେ ମୋର ଦୃଷ୍ଟି ନିବଦ୍ଧ ଥିଲା । ପଣସ ଗଛରେ ସବୁଦିନ ଭଳି କାଉଟା କାଆକାଆ କରୁଥିଲା, କିନ୍ତୁ ତାକୁ ଖେଦେଇବା ପାଇଁ ସେହି ମଣିଷଟି ନଥିଲା ।

ସେଦିନ ଭାବିଥିଲି ନାରୀ ଜୀବନଟା କଣ ? ପୁରୁଷର ବୈଧବ୍ୟକୁ ଆଙ୍କିବାକୁ

କିଛି ମାଧ୍ୟମ ଅଛି ? ଅଥଚ ନାରୀର ବୈଧବ୍ୟ କେତେ ସ୍ପଷ୍ଟ । ଜୀବନସାରା ବାହାହେଲା ପରେ ଜଣକର ଭଲମନ୍ଦ/ସୁଖଦୁଃଖ ଭିତରେ ସେ ଫେଣ୍ଟି ହେଇଯାଏ । କଣ ମିଳେ ତାକୁ ? ସାରା ଜୀବନ କେବଳ ମିଛ ମାୟାକୁ ଗୋଟାଉଥାଏ । ଶେଷରେ ସ୍ୱାମୀର ବିଦାୟରେ ଶଙ୍ଖା, ସିନ୍ଦୂର ଟିକକ ହରାଇବାକୁ ପଡେ । ଏ ରୀତି, ଏ ଚଳଣି କିଏ ତିଆରି କରିଥିଲା ? ନାରୀପାଇଁ କାହିଁକି ସବୁ ଲକ୍ଷ୍ମଣ ରେଖା ?

ବଡ଼ବୋଉଙ୍କ ଭିତରେ ମୁଁ ମା'ର ରୂପ, ସ୍ନେହ ପାଇଥିଲି । ପିଲା ଦିନରୁ ମାତୃହରା ଝିଅଟି ମା'ର ଆଦର, ସ୍ନେହରୁ ବଞ୍ଚିତ ଥିଲା । ବଡ଼ବୋଉଙ୍କ ପାଖରେ ଶୋଇଲା ବେଳେ ସେ ଆଦରରେ ଯେତେବେଳେ ମୋ ମୁଣ୍ଡ, ମୁହଁ, ଦେହରେ ହାତ ବୁଲାଇ ନିଅନ୍ତି ମୁଁ ସତେକି ଗଙ୍ଗାରୁ ସ୍ନାନ କରିଯାଏ । ଯଦି କେତେବେଳେ ଆସି ଚୁପ୍‌ଚାପ୍ ବସିଥାଏ ସେତେବେଳେ ମୁଣ୍ଡରେ ହାତ ବୁଲାଇ କହନ୍ତି, ମା'ରେ କ'ଣ ଦେହ ଭଲ ଲାଗୁନି'ନା ବାପାଙ୍କ କଥା ମନେ ପଡୁଛି ? ମୋତେ ସେ ଏତେ ଆଦର କରନ୍ତି ଯେ ମୋ ଆଖି ଭର୍ତ୍ତି ହୋଇ ଉଠେ ? ଅଭାବ, ସ୍ନେହ, ଶ୍ରଦ୍ଧାହୀନ ଭାବରେ ବଢ଼ିଥିବା ମୁଁ ସତେ କି ଏତେ ଆଦର, ଏତେ ସ୍ନେହକୁ ସମ୍ଭାଳି ପାରେନି । ତେଣୁ ସେ ସବୁ ପାଣି ହୋଇ ଆଖିବାଟେ ନିଗିଡି ପଡେ । ସେ ସିନା ତାଙ୍କର ପରଳ ଢଙ୍କା ଆଖିରେ ମୋ ଆଖିର ପାଣି ଦେଖିପାରନ୍ତି ନାହିଁ, ମୁଁ ଭାବେ ଏତେ ଆଦରକୁ ସାଇତି ରଖିବା ପାଇଁ ମୋର ଛାତି କାହିଁ? ମା' ନଥିଲେ ମାଉସୀ, ମା'ତ ଗୋଟିଏ ଝିଅ । ପୁଣି ମା ନଥିଲେ ପିଉସୀ, ଖୁଡୀଙ୍କ କଥା ଉଠେ । ସେମାନେ ତ ଥାଇ ବି ନଥିଲେ । ଅଥଚ ବଡ଼ବୋହୂ ଅମୃତର ଧାରା ଭଳି ସ୍ନେହ, ଆଦର ଏତେ ବୁହାଇ ଦେଇଥିଲେ ଆଜି ଏତେ ବର୍ଷ ପରେ ତାଙ୍କ ଅବର୍ତ୍ତମାନରେ ବି ସେ ଅମୃତର ସ୍ପର୍ଶ ମୋ ଦେହ ମନ ଭିତରେ ତାଜା ହୋଇ ରହିଛି ।

ଯେତେବେଳେ ତାଙ୍କ ସହ ବସିଛି ପୁଅ ବାହା ନ ହେବାର ଅବଶୋଷ ତାଙ୍କ ପାଖରୁ ଶୁଣିଛି । ବୋହୂ ଥିଲେ ଏ ଘର ପୂର୍ଣ୍ଣ ହୋଇଥାନ୍ତା । ନାତି ନାତୁଣୀଙ୍କର କଳରବରେ ଘର ଭରି ଉଠିଥାନ୍ତା । ଏଇ ଅବଶୋଷର ବୋଝ ନେଇ ସେ ଜୀଇଁ ଥିଲେ । ପୁଅର ବାହାଘର ଥିଲା ସତେ କି ତାଙ୍କ ଜୀବନର ସର୍ବଶ୍ରେଷ୍ଠ କାମନା । ଏହି ଟିକକ ସ୍ୱପ୍ନ ଛଡା ଯେ ଜୀବନରେ ଆଉ କିଛି ବୃହତ୍ତର ସ୍ୱପ୍ନ ଥାଇପାରେ ଏକଥା ସେ ଜାଣନ୍ତି ନାହିଁ । ବିଶ୍ୱାସ ବି କରନ୍ତି ନାହିଁ ।

ଏଇଠି ରହି ହିଁ ମୁଁ ଏକ ଉପନ୍ୟାସିକା ଲେଖିଥିଲି । ଏହାର ନାଁ ଥିଲା "ତମର ବି ସମୟ ଆସିବ" । ମୁଖ୍ୟତଃ ଅଜା, ଆଈ, ନାତୁଣୀ, ସମୁଦ୍ର, ନିଃସଙ୍ଗତା ତଥା ସମସ୍ତଙ୍କ ମନସ୍ତତ୍ତ୍ୱକୁ ନେଇ ଲେଖାଯାଇଥିଲା । "ଆଈ ଚରିତ୍ରଟି ଭିତରେ ମୁଁ କିଛିଟା ବଡ଼ବୋଉଙ୍କୁ

ହିଁ ରୂପ ଦେଇଥିଲି । ସେମିତି ଭୁବନେଶ୍ୱରର ପୁନାମାଗେଟ୍ ପାଖରେ ନିଶାଭାଇଙ୍କ ନୂଆଘର ଯେବେ ପ୍ରତିଷ୍ଠା ହେଲା ବଡ଼ବୋଉ ସେଠି ପ୍ରଥମେ କ୍ଷୀରି ରାନ୍ଧିଥିଲେ । ଘରଟାରେ ଇଟା ବଦଳରେ ପଥର ଯୋଡି ହିଁ ତିଆରି ହୋଇଥିଲା । ମୁଁ କହିଥିଲି ଦେଖ ପଥରରେ କେତେ ସୁନ୍ଦର ହୋଇଛି ଘରଟା । ସେ କିନ୍ତୁ ମୋତେ ଚମକାଇ ଦେଇ କହିଥିଲେ, ପଥର ଘର ମୋର କ'ଣ ହେବ ? ନିଶାଠାରୁ ତ ମୁଁ ପଥର ଘର ଗଢ଼ିନଥିଲି । ତାର ସଂସାର ଗଢ଼ିଥିଲି । ତୁ କହ, ଆଜି ବୋହୂ ଥିଲେ ଏ ଘରେ ହିଁ ପ୍ରଥମେ କ୍ଷୀରି ରାନ୍ଧିନଥାନ୍ତା ! ମୋର ମନେ ପଡିଯାଇଥିଲା ସୁରେନ୍ଦ୍ର ମହାନ୍ତିଙ୍କ ସାରୀପୁତ୍ର ଗଳ୍ପ । ମାଆଟିଏ ଚାହିଁଛି ନିର୍ବାଣ ନୁହେଁ, ଜୀବନ ।

ଏଇ କଥା ଓ ପରିବେଶକୁ ନେଇ ମୋର 'ନୂଆ ଘର' ଗପ ଲେଖାଗଲା । ଯାହା 'ଇସ୍ତାହାର'ରେ ପ୍ରକାଶିତ ହୋଇଥିଲା । ଗାଳ୍ପିକଟିଏ ଆଉ ଗଳ୍ପର ପଞ୍ଜର କେଉଁଠୁ ଆଣେ କି ? ନିଜ ଅନୁଭୂତି ଆଉ ତା ଚାରିପଟର ଦୃଶ୍ୟ ହିଁ ଗଳ୍ପର କାନ୍ଥ ତିଆରି କରେ ।

ବଡ଼ ବୋଉଙ୍କର ମୋ ପାଇଁ ବ୍ୟସ୍ତତା, ବ୍ୟଗ୍ରତାର ସୀମା ନଥିଲା । ବାଣୀବିହାରରୁ ନ ଫେରିଲାଯାଏ ସେ ଘର ଭିତରକୁ ଓପରଓଳା ଯାଉନଥିଲେ । ପିଣ୍ଡାରେ ଚେୟାର ପକାଇ ବସି ରହୁଥିଲେ । ସେ ସମୟରେ ଟାଉନ୍ ବସ୍ ଅଳ୍ପ ଥିଲା । ପ୍ରବଳ ଭିଡ ହେଉଥିଲା । ଫେରଓ୍ୱେଲ୍, ରିସର୍ଚ୍ଚକାମ, ସେମିନାର ଅଥବା ବସ୍‌ରେ ଉଠି ନପାରିଥିଲେ ମୋର ଯଦି ବିଳମ୍ବ ହେଇଯାଉଥିଲା ସେ ସେମିତି ବସି ଅପେକ୍ଷା କରୁଥିଲେ । ଘରର ପିଲା ଶ୍ରୀଧର ଖାଇବାକୁ ଡାକିଲେ ମଧ୍ୟ ମୁଁ ଆସିଲା ଯାଏ ପାଟିକୁ କିଛି ନେଉ ନଥିଲେ । ଆସିଲି କି ନାହିଁ, କାହିଁକି ଡେରି ହେଲା ଝୁଅଟାର ବୋଲି କହି ହେଉଥିଲେ । ଅଜଣା ସହରରେ ମୋତେ ଯେ ଜଣେ ଅପେକ୍ଷା କରୁଛି , ମୋର ଫେରିବା ବାଟକୁ ସତୃଷ୍ଣ ନୟନରେ ଚାହିଁ ରହୁଛି ଭାବି ଦେଲାମାତ୍ରେ ମୁଁ ଫୁଲି ଯାଉଥିଲି । ଯେତେକାମ ଥିଲେ ବି ଫେରିବା ପାଇଁ ଠିକ୍ ସମୟରେ ତର୍ ତର୍ ହେଉଥିଲି । ଖାଇଲା ବେଳେ ସାଙ୍ଗ ହୋଇ ଖାଉଥିଲୁ । ଏଟା ଖା, ସେଟା ବୋଲି ସେ କହୁଥିଲେ । ବେଳେ ବେଳେ ଭାବୁଥିଲି ବଡ଼ବୋଉ ଆମମାନଙ୍କୁ ଯେତେବେଳେ ଛାଡି ଚାଲିଯିବେ ନିଶାଭାଇ, ରମା ଅପା ପ୍ରଭୃତି ଯେତେଟା ମାତୃହରା ହେବେ ନାହିଁ ସେତେ ମୁଁ ଛେଉଣ୍ଡ ହେଇଯିବି । ବଡ଼ବୋଉଙ୍କୁ ଦେଖିଲେ ହିନ୍ଦୀ କବି ଜୟଶଙ୍କର ପ୍ରସାଦଙ୍କ କବିତାର ଧାଡି କୋଟାଟି ମନେପଡେ-

"ନାରୀ ତୁମ୍ କେବଲ୍ ଶ୍ରଦ୍ଧା ହୋ
ବିଶ୍ୱାସ ରଜତ୍ ନଗ୍‌ପଗ୍ ଦଲ୍ ମେ
ପୀୟୂଷ୍ ସ୍ରୋତସି ୱ୍ହାକର

ଜୀବନ୍‌କେ ସୁନ୍ଦର, ସଚ୍ଚଳ ମେ
ନାରୀ ତୁମ୍ କେବଲ୍ ଶ୍ରଦ୍ଧା ହୋ" ।

ମୋ ଜୀବନର ବଡ଼ବୋଉଙ୍କ ଭଳି ନିଶାଭାଇଙ୍କ ସ୍ଥାନ ବି ସ୍ୱତନ୍ତ୍ର । ନିଜ ରକ୍ତର ଭାଇ ଯେତେ ନିଜର କରିନାହିଁ ତାଠୁ ବଳି କରିଛନ୍ତି ସେ । ପର ଆପଣାର ଭାବ ସେ ଜାଣିନାହାନ୍ତି । ନିଜ ଭଉଣୀ, କକାଝିଅ ଭଉଣୀ ଭିତରେ ପାର୍ଥକ୍ୟ ଦେଖି ନାହାନ୍ତି । ଆତ୍ମୀୟମାନେ ହଷ୍ଟେଲ୍ ମିଳିନଥିବା ବେଳେ ତାଙ୍କ ଘରେ ରଖିବାକୁ ମନା କରିଦେଲେ । ଏତେବଡ଼ ଝିଅକୁ ରଖି କିଏ ବଦ୍‌ନାମ୍ ହେବ ବା କିଏ ସମ୍ଭାଳିବ ବୋଲି ଦ୍ୱାର ବନ୍ଦ କରିଦେଲେ ଓ ସେମାନଙ୍କୁ ବ୍ୟାକୁଳ ହୋଇ ଚିଠି ଲେଖି ବାପା ନିରାଶ ହେଲେ । ସେତେବେଳେ ନିଶାଭାଇ ହିଁ ମୋ ପାଇଁ ଦ୍ୱାର ଖୋଲି ଦେଇଥିଲେ ଓ ବାପାଙ୍କୁ ଆଶ୍ୱାସନା ଦେଇଥିଲେ ଇତିଲୀ ମୋ ପାଖରେ ରହିବ । ସାନବାପା ! ଆପଣ ଚିନ୍ତା କରନ୍ତୁ ନାହିଁ । ମୁଁ ତା'ର ଭଲମନ୍ଦ ବୁଝିବି । ସେଦିନ କୃତଜ୍ଞତାରେ ମୋ ମୁଣ୍ଡ ତାଙ୍କ ପାଖରେ ନଇଁ ଯାଇଥିଲା ।

ନିଶାଭାଇଙ୍କୁ ସମସ୍ତେ ଭୟ କରନ୍ତି । ସେ କ୍ଷଣକୋପୀ, ଯାହା ବୁଝିଥିବେ ସେଇଆ । ବ୍ରହ୍ମା ଆସିଲେ ବି ଟଳାଇ ପାରିବେ ନାହିଁ । ତାଙ୍କର ସେହି କଡା, କଠୋର ସ୍ୱଭାବ ଭିତରେ ଅନ୍ତଃସଲୀଳା ଭଳି ସ୍ନେହର ଝରଣାଟେ ବୋହୁଥାଏ । ତା'ର ସନ୍ଧାନ ଯିଏ ପାଇଯିବ ତାର ଭୟ ଭାଙ୍ଗିଯିବ । ନଡିଆ ଭଳି ବାହାରେ କଠିନ, ଭିତରେ ନରମ । ଅନ୍ୟକୁ ସାହାଯ୍ୟ କରିବାରେ ମିଳେ ତାଙ୍କୁ ପ୍ରଚୁର ଆନନ୍ଦ । କୃପଣତା କଣ ସେ ଜାଣି ନାହାନ୍ତି । ହାତ ଖୋଲା ଯେମିତି ମନ ବି ଖୋଲା ସେମିତି ।

ଭୁବନେଶ୍ୱର ରହଣିର ଖରାଦିନେ ପ୍ରାୟ ଆମେ ସନ୍ଧ୍ୟାରେ ବାଡିରେ ଚେୟାର ପକାଇ ବସୁ । ବାଦାମ୍ ଚୋବା ହୁଏ । କେବେ କେବେ ଗରମ ପକୋଡି ଅବା ମିକ୍ସଚର, ବରା । ଚା କପ୍ ଥୁଆହୋଇଥାଏ । ନିଶାଭାଇ ତାଙ୍କ ଜୀବନ ସମ୍ପର୍କରେ ଅନେକ କଥା ଗପନ୍ତ ଯାହା ସେ କାହାକୁ କହି ପାରି ନାହାନ୍ତି । ତାଙ୍କର ଅବିବାହିତ ରହିବାର ନିଷ୍ପତ୍ତି, ଅତୀତର ସଂଘର୍ଷପୂର୍ଣ୍ଣ ଜୀବନ, ମୋ ମାଆଙ୍କର ତ୍ୟାଗ, ବାପାଙ୍କର ଭାଇମାନଙ୍କୁ ମଣିଷ କରିବା, ଭିନ୍ନେ ହେବା ଏମିତି ଅନେକ କଥା । ତାରି ଭିତରେ ସେ ମୋତେ କହନ୍ତି, "ତୁ ଯାହାହେଲେ ବି କେବେ ଅବିବାହିତା ରହିବୁ ନାହିଁ । ବିଶେଷକରି ରିଟାୟାର୍ଡ ପରେ ବଡ଼ ନିଃସଙ୍ଗ ହୋଇଯାଏ ମଣିଷ । ଏମିତି ତ ବୁଢା କାଳଟାହିଁ ନିଃସଙ୍ଗ । ଜୀବନର କ୍ଷମତା, ପଇସା ଥିଲା ଯାଏଁ ଅନେକ ହିତାକାଂକ୍ଷୀ ମିଳିବେ । କିନ୍ତୁ କେହି ବିପଦ ବେଳେ ସାହାରା ଦେବେ ନାହିଁ । ତୁ ତ୍ୟାଗ କରି କିଛି ପାଇବୁ ନାହିଁ । ଯଦି ପାରିବୁ ତ ନିଜେ

ନିଜର ଜୀବନସାଥୀ ବାଛି ନେ । କେହି ରାଜି ନହେଲେ ମୁଁ ଅଛି ତୋ ପାଖରେ ।"

ସବୁବେଳେ ସେ ମୋତେ ଭବିଷ୍ୟତର ବାସ୍ତବ ଅଥଚ ନିଷ୍ଠୁର ବାଣୀ ଶୁଣାନ୍ତି । ତାଙ୍କ ଭାଷାରେ ଆଜି ଯେଉଁ ଭାଇ, ଭଉଣୀ, ବାପାଙ୍କ କଥା ଚିନ୍ତା କରୁଛୁ କାଲି ସକାଳେ କେହି ନଥିବେ । ଯେ ଯାହାର ସଂସାର ଭିତରେ ହଜି ଯାଇଥିବେ । ମୁଁ ନିଜେ ତା'ର ଅନୁଭବୀ । ଝିଅଟିଏ ଏକୁଟିଆ ବାଟ ଚାଲିବା ଭାରି କଷ୍ଟ । ସମାଜ ଟିକିଏ ଟିକିଏ କଥାରେ ସଜମାଛରେ ପୋକ ଛାଡିବେ ।

କୌଣସି ସମୟରେ ହାତରେ ପଇସା ନଥିଲେ ବା କିଛି ଅଭାବ ପଡିଥିଲେ ସେ ଆଗଭର ହେଇ ଦିଅନ୍ତି । ମୁଁ ପହଞ୍ଚିଲା ମାତ୍ରେ ଖୁସି, ଆନନ୍ଦରେ ଝଲମଲ ଦିଶେ ମୁହଁ ତାଙ୍କର । ମୋତେ ପୃଥିବୀର ଶ୍ରେଷ୍ଠ କୃପଣ କହି ଚିଡାଇବାରେ ତାଙ୍କୁ ବେଶ୍ ମଜା ଲାଗେ । କୃପଣ, ମାରୱାଡି ବୋଲି ସ୍ନେହରେ ସମ୍ବୋଧନ କରନ୍ତି । କହନ୍ତି ତୁ ତୋ ଦେହରୁ ମଳି ଟିକେ ବି ଦେବୁନି । ମୋ ଭବଷ୍ୟତ ସମ୍ପର୍କରେ ସେ ସେତେବେଳେ ଯେତିକି ଚିନ୍ତା କରୁଥିଲେ ମୋ ବାପା ବି ସେତିକି ଚିନ୍ତା କରୁନଥିଲେ । ତାଙ୍କ କଥା ମୋତେ ଭୟଙ୍କର ଭବିଷ୍ୟତର ସାମ୍ନା କରିବାକୁ ଏକୁଟିଆ ଡରାଏ । କେବେକେବେ ତାଙ୍କ ନିଃସଙ୍ଗ ଜୀବନ ମୋତେ ଭାରି କଷ୍ଟ ଦିଏ । ସବୁବେଳେ କହନ୍ତି, ଆସିଛି ଏକା, ଯିବି ମୁଁ ଏକା, ମୋ ଜୀବନଟା ଖାଲି ଏକା ଏକା । ତାଙ୍କ କଥା ଅନେକ ସମୟରେ ମୋତେ ଭାବପ୍ରବଣ କରି ଦିଏ । ସମସ୍ତଙ୍କ ପାଇଁ ତ୍ୟାଗ କରିବାରେ ଯାହାର ଆନନ୍ଦ, ପ୍ରକୃତରେ ନିଜେ ସେ କଣ ପାଇଲେ ? ବେଳେବେଳେ ମନେ ହୁଏ ନିଶାଭାଇଙ୍କ ଜୀବନ ସହିତ ମୋ ଜୀବନର ଅନେକ ସାମଞ୍ଜସ୍ୟ ରହିଛି । ସତରେ ଯଦି ମୁଁ ଅବିବାହିତା ରହିଯାଏ କେମିତି କଟିବ ଏ ପାହାଡ ପରି ଜୀବନ ? ବୁଢୀ କାଳରେ କିଏ ଥିବ ପାଖରେ ?

ନିଶାଭାଇଙ୍କ ସହିତ ଥରେ ପୁରୀ ଯାଇଥିଲି । ସମୁଦ୍ର କୂଳରେ କିଛି ସମୟ ବସିଥିଲୁ । ମନ୍ଦିର ବେଢା, କୋଇଲି ବୈକୁଣ୍ଠ ପ୍ରଭୃତି ବୁଲିଥିଲୁ । ସେଠୁ ଆସିଲା ପରେ 'ଜଗାକାଳିଆର ମାୟା' ନାଁରେ ଗପଟିଏ ଲେଖିଥିଲି ଯାହା "ଗୋକର୍ଣ୍ଣିକା"ରେ ପ୍ରକାଶ ପାଇଥିଲା ।

ରିଟାୟାର୍ଡ କଲାପରେ ନିଶାଭାଇ କ୍ୱାର୍ଟର ଛାଡି ତାଙ୍କ ଘରକୁ ଉଠିଯାଇଥିଲେ । ମୁଁ ବି ଚାକିରୀ କଲାପରେ ଭୁବନେଶ୍ୱର ଛାଡିଦେଇଥିଲି । କିନ୍ତୁ ଯେତେଥର ଭୁବନେଶ୍ୱର ଯାଇଛି ନିଶାଭାଇଙ୍କ ଘରେ ହିଁ ଓହ୍ଲାଇଛି । ସେ କହନ୍ତି ଅବସର ନେଲା ପରେ ତୁ କୃପଣ ମୋ ପିଛା ଛାଡିଲୁ ନାହିଁ । ତୁ ଆସିବା ଜାଣିଥିଲେ ତ ଗେଟ୍‌ରେ ତାଲା ପକାଇ ଦେଇଥାନ୍ତି । ତାପରେ ସେ ପାଟି କରି କହନ୍ତି, ଶ୍ରୀଧର ! ଇଡିଲୀ ଆସିଛି । କିଛି ସ୍ପେଶାଲ ଖାନା

ବନା । ଭଲକି ରାନ୍ଧିବୁ ନହେଲେ ତୋ ଉପରେ ଗପ ଲେଖିଦେବ । ତାପରେ ପଚାରନ୍ତି, କେମିତି ଲାଗୁଛି ଜାଗାଟା ? ଟ୍ରେନ୍ ଯିବା ଆସିବା, ଲୋକଙ୍କ ଗହଳି ଦେଖୁ ଦେଖୁ ସମୟ କଟିଯାଉଛି ।

ଅବସର ନେଲା ପରେ ବି ସେ ସେମିତି ଖର୍ଚ୍ଚୀ, ଖୋଲା ହାତ ଥିଲେ । ଖାଇବାରେ ଥିଲା ତାଙ୍କର ବଡ଼ ସୌକ । ଦିନରାତି ଘରେ ଟିଭି ରେଡିଓ ବାଜୁଥାଏ । ଦେଖନ୍ତୁ ନଦେଖନ୍ତୁ, ଘରଟା ଶବ୍ଦମୟ, ଗହଳ ଚହଳ ରହିଥାଉ । ସେ ଆଦୌ ସେଣ୍ଟିମେଣ୍ଟାଲ୍ ନଥିଲେ । ହୋ ହୋ ହୋଇ ଜୀବନର ଦୁଃଖକୁ ଉଡେଇ ଦିଅନ୍ତି । ବାକି ସମୟ ଶୋଇ ପଡନ୍ତି । କୁମ୍ଭକର୍ଣ୍ଣ କହି ମୁଁ ଚିଡାଏ । ଅବସର ପରେ ରକମ ରକମ ଖାଇବା । ବିଭିନ୍ନ ପତ୍ର ପତ୍ରିକା ପଢାପଢି କରିବା । ମର୍ଣ୍ଣିଂ ୱାକ୍, ଟି.ଭି. ଦେଖା, ଶୋଇବାରେ ଦିନ କାଟୁଥିଲେ । ବାକି ସମୟ ପ୍ରାୟ ପୁରୀ ପଳାନ୍ତି । ବେଳେବେଳେ କହନ୍ତି, ମୋ ନିଜ ସମ୍ପର୍କରେ ଯେତେ ଚିନ୍ତା ନାହିଁ, ବେଶି ଚିନ୍ତା ମୋ ବୋଉ ପାଇଁ । ବୋଉର ମୁଣ୍ଡ ଠିକ୍ ରହୁନାହିଁ । ଆଖିକୁ ଆଜିକାଲି ଦିଶୁନାହିଁ । ମୋର ବି ଦେହ ଭଲ ରହୁନାହିଁ । ବୋଉ ଆଗରୁ ମୋର ଯଦି କିଛି ହୋଇଯାଏ... ।

ମୁଁ ସେହି ଭୟଙ୍କର ବାସ୍ତବତା କଥା ଚିନ୍ତା କରିପାରେନା । ବଡ଼ ବୋଉଙ୍କୁ ଧରି ଧରି ବାଥ୍‌ରୁମ୍ ନେଲା ବେଳେ ସେ ବାଉଳି ହୁଅନ୍ତି ତୁ ଟା କିଏ ଲୋ, ମୋତେ କୁଆଡେ ନେଉଛୁ ? ତାଙ୍କ କଥା ପ୍ରତିଧ୍ୱନି ପାଲଟି ଯାଏ । କାହାର କେତେ ପ୍ରକାରର ସମସ୍ୟା । କେଉଁ ଜୀବନ ସମ୍ପୂର୍ଣ୍ଣ ପୂର୍ଣ୍ଣତା ପାଇଛି ?

ମୁଁ ଭାବୁଥାଏ ଦିନେ ନା ଦିନେ ଏ ଘରର ପରିବେଶ ବଦଳିଯିବ । ବଡ଼ ବୋଉଙ୍କର ଅବର୍ତ୍ତମାନରେ କେମିତି ଲାଗିବ ଏ ଘର ? ପୁଣି ନିଶା ଭାଇଙ୍କ ପରେ ମୋ ଜୀବନରେ ଏକ ବଡ଼ ଅଂଶ ନଷ୍ଟ ହୋଇଯିବ । ତେଣୁ ସେ ସମୟରେ ଈଶ୍ୱରଙ୍କୁ ମନେ ମନେ କହେ ନିଶାଭାଇଙ୍କୁ ସୁସ୍ଥ, ସବଳ କରି ମୋ ଆୟୁଷ ନେଇ ବଞ୍ଚାଇ ରଖ । ଅତ୍ୟନ୍ତ ବଡ଼ବୋଉଙ୍କୁ ତାଙ୍କ ଆଗରୁ ନେଇଯାଅ । ସବୁଠୁ ଦୁଃଖର ବିଷୟ ହେଲା ନିଶାଭାଇଙ୍କ ଭଳି ସହୃଦୟ, ବିଶାଳ, ସ୍ନେହୀ ମଣିଷଙ୍କ ସଂଖ୍ୟା ଧୀରେ ଧୀରେ କମି ଆସୁଛି । ଆତିଥ୍ୟ କଥା ଉଠିଲେ ସମ୍ପର୍କୀୟମାନେ କେତେଦିନ ରହିବେ, କେତେ ଖର୍ଚ୍ଚ ହେବ ଏଥିପାଇଁ ଆତଙ୍କିତ ହୋଇ ଉଠୁଛନ୍ତି ।

ବରଗଡରେ ଥିଲା ବେଳେ ବଡ଼ବୋଉ ଚାଲିଗଲେ । ଏମିତି ପାରିବାରିକ ସମସ୍ୟା ଠିଆ ହୋଇଥିଲା ଯେ ପୁଅକୁ ଧରି ଯାଇ ପାରିଲିନି । ପୁଣି ନିଶା ଭାଇ ଚାଲିଗଲେ । ପୁଅର ବାର୍ଷିକ ପରୀକ୍ଷା ଚାଲିଥିଲା । ପ୍ରକୃତରେ ମଣିଷ ଭାବେ କ'ଣ ପୁଣି ହୁଏ କ'ଣ ।

ଯେଉଁମାନଙ୍କର ସ୍ନେହ, ଶ୍ରଦ୍ଧା ଏତେ ପାଇଥିଲି ନିଜ ପାରିବାରିକ ସମସ୍ୟା ଭିତରେ ଶୁଦ୍ଧ ଘରକୁ ମଧ୍ୟ ଯିବ ସମ୍ଭବ ନଥିଲା । ପୁଣି ମୋ ଗୋଡ ମକଚି ଯାଇଥିଲା ଯେ ଛୋଟେଇ ଛୋଟେଇ ଚାଲୁଥିଲି ନିଜକୁ ଧିକ୍କାର କରୁଥିଲି । ପୁଣି ମନକୁ ବୁଝାଇ ଥିଲି ଯାଇଥିଲେ କ'ଣ ଆଉ ଦେଖିପାରିଥାନ୍ତି ? ଶୁଦ୍ଧି ହୋଇ ଭୋଜି ଖାଇ ଫେରିଥାନ୍ତି । ସେମାନଙ୍କ ଅବର୍ତ୍ତମାନରେ ସେ ଘର ଗୋଡାଇ ଧରନ୍ତା ।

ଆଜି ବି ମନେ ହେଉଛି ସତେକି ସମୟ ସେହି ବାଣୀବିହାର ଜୀବନ ପାଖରେ ସ୍ଥିର ହୋଇ ଯାଇଛି । କେହି ହଜି ନାହାନ୍ତି । ସେମାନେ ମୋ ଚାରିପଟେ ଆତଯାତ ହେଉଛନ୍ତି । ମୁଁ ବୟସ୍କା ମହିଳାଟିଏ ନୁହେଁ । ସେମିତି ସେହି ଏମ୍.ଏ. ପଢୁଥିବା ଝିଅଟି ନିଶାଭାଇଙ୍କ ଆଦରର କୃପଣ, ମାରୱାଡି । ଆମେ ତାଙ୍କ କ୍ୱାର୍ଟରର ସାମ୍ନା ବଗିଚାରେ ବସିଛୁ । ଶ୍ରୀଧର ଗରମ ଗରମ ପକୁଡି, ଚା ଥୋଉଛି, ଆମର ଦୁଃଖ ସୁଖ ଲମ୍ୱିଯାଉଛି ।

ସତରେ ଜୀବନ କୁଆଡେ ଭାସି ଚାଲିଛି ? କେଉଁଠି କିଏ ହଜିଗଲାଣି ସେ ପୁରକୁ ଗଲେ ନିଶ୍ଚେ ଦେଖାହେବ । ଏବେ ଖାଲି ତା' ପାଇଁ ପ୍ରସ୍ତୁତି ଓ ଅପେକ୍ଷା !

## ଏଗାର

ଭଗବାନଙ୍କ ସୃଷ୍ଟି ସତରେ ବିଚିତ୍ର । ଏତେ ମଣିଷ ଅଥଚ ଚିନ୍ତା, ଚେତନା, କର୍ମ, ଚେହେରାରେ କେହି ସମ୍ପୂର୍ଣ୍ଣ ସମାନ ନୁହନ୍ତି । ପୁଣି ସବୁଠୁ ବିଚିତ୍ର ହେଲା ଈଶ୍ୱରଙ୍କ ସୃଷ୍ଟିରେ ନାରୀ । କେତେ ରଙ୍ଗର, କେତେ ଧରଣର, ପ୍ରଜାପତି ଭଳି ଚିତ୍ର ବିଚିତ୍ର, ଛପିଛପିକା, କୌଣସି ଅବୋଧ ଗଦ୍ୟ କବିତା ଭଳି ଦୁର୍ବୋଧ ତ ପୁଣି ସେବା, ତ୍ୟାଗ, ଜ୍ଞାନ, ଗରିମାରେ ବିଦୂଷୀ । କେବେ ଲାଳିତପୂର୍ଣ୍ଣ, ତରଳ ସରଳ, ସୌନ୍ଦର୍ଯ୍ୟମୟୀ ତ କେବେ ଗର୍ବ ଅହଂକାରରେ ଗର୍ବିଣୀ, କେବେ ଭକ୍ତି ତ କେବେ ପକ୍‌କା ଗୃହସ୍ଥି ।

ମୁଁ ମୋ ଜୀବନରେ ବିଭିନ୍ନ କିସମର ନାରୀକୁ ଦେଖିଛି, ଭେଟିଛି । ସୌନ୍ଦର୍ଯ୍ୟ ନେଇ ଗର୍ବ କରିବାର ନାରୀ ତ, କ୍ଷମତା, ପ୍ରତିପତ୍ତି, ଅହଙ୍କାର ତଥା ଶାଢୀ, ଗହଣା, ଗାଡି, କୋଠାକୁ ନେଇ ମଣିଷର ମୂଲ୍ୟାଙ୍କନ କରୁଥିବା ନାରୀ ତ ପୁଣି ଦୟା, ଶ୍ରଦ୍ଧା, ସେବା ତ୍ୟାଗରେ ବିଶ୍ୱାସ କରୁଥିବା ନାରୀ, କେତେବେଳେ ପ୍ରେମରେ ଧୋକ୍‌କା ଦେଉଥିବା ପୁଣି ପ୍ରେମ ପାଇଁ ନିଜକୁ ଉତ୍ସର୍ଗ କରି ଦେଉଥିବା ନାରୀ । ଏ ସବୁ ନାରୀ ଭିତରୁ କାହା ପ୍ରତି ମୋ ମନରେ ଶ୍ରଦ୍ଧା, ସମ୍ମାନ ଆସିଛି ତ ପୁଣି କାହାପ୍ରତି ଘୃଣା । କେତେ ପ୍ରକାରର ଝିଅମାନଙ୍କ ସହିତ ମିଶିଛି, କେତେକଙ୍କୁ ଭୁଲି ବି ଯାଇଛି । ତେବେ ନିଜ ସମ୍ପର୍କରେ ଆଜି ଲେଖିଲା ବେଳେ କେତେଜଣ ବୈଚିତ୍ର୍ୟମୟୀ ନାରୀ ବା ଝିଅଙ୍କ ଚେହେରା

ମନେ ପଡୁଛି ।

ଏମ୍. ଫିଲ୍ କଲାବଳେ ରୁମ୍‌ମେଟ୍ ବାନ୍ଧବୀ ଜଣକ ରାଜନୀତି ବିଜ୍ଞାନରେ ଏମ୍.ଫିଲ୍ କରୁଥିଲା । ତାର କୃଷ୍ଣ ପ୍ରୀତି ଅସମ୍ଭବ । ମୀରାବାଈଙ୍କ ସମ୍ପର୍କରେ ପଢିଥିଲି । ମୋ ବାନ୍ଧବୀଜଣକ ଥିଲେ ଜୀବନ୍ତ ମୀରବାଈ । ତା ପାଖରେ କୃଷ୍ଣଙ୍କର ଏକ ବଡ଼ ଫୋଟ କାଚଫ୍ରେମରେ ବନ୍ଧା ହୋଇଥିଲା । ପ୍ରତିଦିନ ସେ ଫୋଟ ଉପରେ ଚନ୍ଦନ ଚର୍ଚ୍ଚା କରାଯାଉଥିଲା । କୃଷ୍ଣଙ୍କ ପାଇଁ ରାତି ନପାହୁଣୁ ତୁଳସୀ, ଫୁଲ ହଷ୍ଟେଲ୍ ବଗିଚାରୁ ତୋଳା ଯାଉଥିଲା । କୃଷ୍ଣଙ୍କୁ ଚନ୍ଦନଫୁଲ ଦ୍ୱାରା ସଜାଇଲା ବଳେ ସେ କୃଷ୍ଣଙ୍କର ଭଜନ ସବୁ ଗାଉଥିଲା । କୃଷ୍ଣଙ୍କର ସେବା ନ କଲା ଯାଏଁ ସେ ପାଣି ମଧ ପିଉନଥିଲା । ସକାଳୁ ତାଙ୍କର ନିତ୍ୟକର୍ମ କରାଯାଉଥିଲା । ପୁଣି ଦ୍ୱିପହରରେ କୃଷ୍ଣ ଖାଇପିଇ ଶୋଉଥିଲେ । ତାଙ୍କୁ ପୁଣି ଠିକ୍ ସମୟରେ ଉଠାଇ ମୁହଁପୋଛି ଦିଆଯାଉଥିଲା । ସବୁଠାରୁ କୌତୁହଳର ବିଷୟ ଥିଲା କୃଷ୍ଣ ମଶାରି ଭିତରେ ବିଛଣା ଉପରେ ରାତିରେ ଶୋଉଥିଲା ବେଳେ ସେ ତଳେ ବିନା ମଶାରୀରେ ଶୋଉଥିଲା । ତାର ଅଚରଣ ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା । କେବେ କେବେ ଯଶୋଦା ଭଳି ସେ କୃଷ୍ଣଙ୍କର ଯତ୍ନ ନେଉଥିଲା ତ କେବେ ରାଧା ଭାବରେ ରସରେ ହେଉଥିଲା ଜୁଡୁବୁଡୁ । ବେଳେବେଳେ କୃଷ୍ଣ ଫଟୋ ସହ ଏମିତି ବ୍ୟବହାର କଥାବାର୍ତ୍ତା କରୁଥିଲା ଯେ ମନେ ହେଉଥିଲା ସେଟା ଫଟୋ ନୁହେଁ, ସ୍ୱୟଂ କୃଷ୍ଣ ବା ତା'ର ସ୍ୱାମୀ । ସବୁଠୁ ଆଶ୍ଚର୍ଯ୍ୟ କଥା ହେଲା ତା ଭଳି କିଛି ଝିଅ, ସ୍ତ୍ରୀ ଲୋକଥିଲେ ଯେଉଁମାନେ ମଝିରେ ମଝିରେ ଆମ ରୁମ୍‌କୁ ଆସୁଥିଲେ । ମୋ ବାନ୍ଧବୀ ସେମାନଙ୍କୁ କୃଷ୍ଣ କୃଷ୍ଣ କହି ସ୍ୱାଗତ କଲା ବେଳେ କେବେ ରାଧେ ରାଧେ କହି ସେମାନେ ପରସ୍ପରକୁ କୋଳାଗ୍ରତ କରୁଥିଲେ । ବୟସ୍କା ସ୍ତ୍ରୀ ଜଣେ ପ୍ରାୟ ଆସୁଥିଲେ । ମୋ ସାଙ୍ଗ ତାଙ୍କୁ ଦେଖିଲା ମାତ୍ରେ ତାଙ୍କ ଗୋଡ ତଳେ ପଡିଯାଉଥିଲା ଓ ତାଙ୍କୁ ମା' ବୋଲି ସମ୍ବୋଧନ କରୁଥିଲେ । ମୋର ମନେ ହେଉଥିଲା ଯାଙ୍କୁ ଯଶୋଦା ଜ୍ଞାନରେ ମୋ ବାନ୍ଧବୀ ବୋଧହୁଏ ଭକ୍ତି କରୁଥିଲା ଓ ନିଜକୁ ରାଧା ସ୍ଥାନରେ ରଖି କୃଷ୍ଣଙ୍କ ମା' ଭାବି ସମ୍ମାନ ଦେଖାଉ ଥିଲା ।

ତାଙ୍କ ଦଳଟି ଯେତେବେଳେ ଆମ ରୁମ୍‌ରେ ବସି କୃଷ୍ଣଙ୍କର ଫଟୋ ପାଖରେ ଭଜନ, କୀର୍ତ୍ତନ ଆରମ୍ଭ କରି ଦେଉଥିଲେ ମୁଁ ସେ ରୁମ୍‌ରୁ ପଳାଇ ଆସି ଅନ୍ୟ ରୁମ୍‌ରେ ବସୁଥିଲି କିମ୍ୱା ବାଲ୍‌କୋନିରେ ବୁଲୁଥିଲି । ବୁଝି ପାରୁନଥିଲି ଏହି ତଥାକଥିତ ରାଧାପ୍ରାଣମାନଙ୍କ ସହିତ କୃଷ୍ଣଙ୍କର ସମ୍ପର୍କଟା କ'ଣ । ଏତେ ଶିକ୍ଷିତ ହେଲା ପରେ ବି ଫଟୋକୁ ଖୁଆଇବା, ସଜାଇବା, ଶୁଆଇବା ଭିତରେ ସେହି ରାଗାନୁରାଗ ପ୍ରେମ ଭକ୍ତି ହିଁ ବୋଧ ହୁଏ କାମ କରୁଥିଲା । ପୁଣି ଛୁଟିଦିନ କି ଜନ୍ମାଷ୍ଟମୀ, ରାଧାଷ୍ଟମୀରେ ସେ ବିଭିନ୍ନ

ମଠ, କୃଷ୍ଣ ମନ୍ଦିରକୁ ଯାଉଥିଲା । କେଉଁ ବାବା, ମାଆ, ଆଶ୍ରମ କଥା କହୁଥିଲା । ଆଖି ବୁଜି ମାଳା ଗଡାଇ ଶହେ ଆଠ ଥର କୃଷ୍ଣ ନାମ ଜପ କରୁଥିଲା । ନୂଆ ନୂଆ ଛୋଠ ଛୋଟ ବସ୍ତ୍ର କିଣି ଆଣି ଫଟୋଟିକୁ ପିନ୍ଧାଇ ଦେଉଥିଲା ।

ଥରେ ତାଙ୍କ କୃଷ୍ଣପ୍ରାଣା ରାଧାଗ୍ରୁପ୍‌ଟି ବୃନ୍ଦାବନ ବାହାରିଲେ । ମୋ ବାନ୍ଧବୀ ବି ଯିବା ପାଇଁ ବାହାରିଲା । ସେଠି ସେ ସବୁଦିନ ରହିଯିବ ମାତାଜୀ ହୋଇଯିବ ଏମିତି କଣ କହୁଥିଲା । ମୁଁ ତାକୁ ବୁଝାଇଥିଲି । ଅନ୍ତତଃ ତୁ ଯାହା କରୁଛୁ କର କିନ୍ତୁ ତୋ ବାପା ମା'ଙ୍କ ମନରେ ଆଘାତ ଦେ ନା । ତୁ ସେଠିକୁ ଯିବା ଜାଣିଲା ପରେ ସେମାନଙ୍କ ମାନସିକ ଅବସ୍ଥା କ'ଣ ହେବ ଥରେ ଚିନ୍ତା କରିଛୁ ? ଯାହାହେଉ ସମ୍ଭବତଃ ପଇସାପତ୍ର ଯୋଗାଡ ହୋଇ ନ ପାରିବାରୁ ଯେତେଦୂର ସମ୍ଭବ ତାର ବୃନ୍ଦାବନ ଯାତ୍ରା ସ୍ଥଗିତ ହୋଇଥିଲା । କେବେ କେବେ କଳା ତୁଳସୀମାଳ ଗୁନ୍ଥି ସେ ତାକୁ ପିନ୍ଧୁଥିଲା । ତାର ପ୍ରଚୁର ଲମ୍ବା ବାଳ ଥିଲା ଓ ଦେହର ରଙ୍ଗ ଖୁବ୍ କଳା ଥିଲା । ରାତି ଅଧରେ ସେ ବାଳ ଖୋଲା କରି ଧଳା ଶାଢ଼ି ପିନ୍ଧି ତିଳକ ମୁଣ୍ଡରେ ଲଗାଇ ତୁଳସୀମାଳ ପିନ୍ଧି ଯେତେବେଳେ କୃଷ୍ଣ ଭଜନ ଗାଉଥିଲା, ମୋର ନିଦ ଭାଙ୍ଗି ଯାଉଥିଲା । ସେତେବେଳେ ମୋତେ ଖୁବ୍ ଡର ମାଡୁଥିଲା । ଶୀତଦିନ ହୋଇଥିଲେ ଡରି ରେଜେଇ ଭିତରେ କୁଙ୍କୁରି କାଙ୍କୁରି ଯାଉଥିଲି ।

ଥରେ ଗାଳ୍ପିକା ସରୋଜିନୀ ସାହୁ ଓ ଗାଳ୍ପିକ ଜଗଦୀଶ୍ ମହାନ୍ତି ହଠାତ୍ ହଷ୍ଟେଲ୍‌ରେ ପହଞ୍ଚିଲେ । ବାହାଘର ତାଙ୍କର କେଇମାସ ହୋଇଥାଏ । ମୋ ପାଖରେ ଗୋଟିଏ ରାତି ରହିବେ ବୋଲି ଜଗଦୀଶ୍ ମହାନ୍ତିଙ୍କୁ ଫେରାଇ ଦେଲେ । ମୋ ସାଙ୍ଗଟି ସେତେବେଳେ ତାର କେଉଁ ବାନ୍ଧବୀ ଘରକୁ ଯାଇଥାଏ । ମୋ ରୁମ୍‌ରେ କୃଷ୍ଣଙ୍କର ଚନ୍ଦନ ଚର୍ଚ୍ଚିତ ଫଟୋଟିକୁ ଦେଖି ସେ ଚମକୃତ ହୋଇଥିଲେ । ପୁଣି କୃଷ୍ଣଙ୍କୁ ବିଛଣାରେ ଶୋଇ ଫୁଲ ସଜା ଦେଖି କୌତୁହଳ ପ୍ରକାଶ କରିଥିଲେ । ମୁଁ ମୋ ବାନ୍ଧବୀଙ୍କ କୃଷ୍ଣ ପ୍ରେମ କଥା କହିବାରୁ ସରୋଜୀନି ସାହୁ ରୋମାଞ୍ଚିତ ହେବା ସଙ୍ଗେ ସଙ୍ଗେ ଏହା ଉପରେ ଗପ ଲେଖାଗଲାଣି କି ନାହିଁ ପଚାରିଥିଲେ । କହିଥିଲେ ଏଭଳି କୃଷ୍ଣପ୍ରେମୀ ମାନଙ୍କ କଥା ଶୁଣିଥିଲି, କେବେ ଦେଖିନଥିଲି । ତମର ତ ବେଶ୍ ସୁନ୍ଦର ଅନୁଭୂତି ହେଉଛି । ସାଇତି ରଖ ପରେ କାମ ଦେବ ।

ମୋର ଏ ବାନ୍ଧବୀଙ୍କୁ ଦେଖି ବେଳେବେଳେ ଭାବୁଥିଲି ଦ୍ୱାପର ଯୁଗର କଥା । ଯେତେବେଳେ ସତକୁ ସତ କୃଷ୍ଣ ଜନ୍ମ ନେଇଥିଲେ ଓ ଷୋଳ ସହସ୍ର ଗୋପୀଙ୍କ ନେଇ ରାସଲୀଳା ଆରମ୍ଭ କରିଥିଲେ । ସେତେବେଳେ ଗୋପୀମାନେ କୃଷ୍ଣଙ୍କ ପାଇଁ କିଭଳି ବାତୁଳୀ ନ ହୋଇଥିବେ ! ଆଜିର ସମୟରେ ସହସ୍ର ବର୍ଷ ବିତି ଯାଇଥିବା ସତ୍ତ୍ୱେ ଯଦି

କୃଷ୍ଣପ୍ରାଣା ଝିଅମାନେ ଏଭଳି ଆଚରଣ କରୁଛନ୍ତି ବାସ୍ତବିକ ସେତେବେଳେ କୁଳଶୀଳ ଲଜ୍ଜ୍ୟା ତ୍ୟାଗ କରି କୃଷ୍ଣପ୍ରେମରେ ପାଗଳୀ ହୋଇ ବଇଁଶୀଧୁନ୍‌ରେ ଟାଣି ହୋଇ ଘରୁ ପଳାଇ ଆସିବା ଗୋପୀକାମାନଙ୍କ ପାଖରେ ସ୍ୱାଭାବିକ ଘଟଣା ହୋଇଥିବ ।

ମୁଁ ହଷ୍ଟେଲ୍ ଛାଡିବା ଆଗରୁ ସେ କୌଣସି ଏକ ପ୍ରାଇଭେଟ୍ କଲେଜ୍‌ରେ ଅଧ୍ୟାପିକା ଚାକିରୀ ପାଇ ଚାଲି ଯାଇଥିଲା । ଗଲାଦିନ ଅତି ଯତ୍ନରେ କୃଷ୍ଣଙ୍କ ଫଟୋ ଲୁଗାରେ ଗୁଡାଇ ବାସ୍କେଟ୍‌ରେ ଭର୍ତ୍ତି କରିଥିଲା । କହଥିଲା କୃଷ୍ଣ ତୋର ଭଲ କରିବେ । ତାଙ୍କ ଶରଣରେ ଥିବୁ ।

ପରେ ଶୁଣିଥିଲି ସେ ବାହା ହୋଇଯାଇଛି । ଯାହାହେଉ ବାନ୍ଧବୀଟି ମୋର ଯେ ସଂସାରୀ ହୋଇ ପାରିଛି ଶୁଣି ଖୁସି ଲାଗିଥିଲା । ତେବେ ତା ଗ୍ରୁପ୍‌ର ଅଧିକାଂଶ ମାତାଜୀ ହୋଇ ଯାଇଛନ୍ତି ଓ କିଛି ବୃନ୍ଦାବନରେ ରହିଯାଇଛନ୍ତି ବୋଲି ମଧ କାନରେ ପଡିଥିଲା । ତେବେ ମନରେ କୌତୂହଳ ଉଠିଥିଲା ଆଜିକାଲି କୃଷ୍ଣ ତା ପାଖରେ ଅଛନ୍ତି ନା ନାହିଁ ? କୃଷ୍ଣଙ୍କୁ ମଶାରି ପକାଇ ବିଛଣାରେ ଶୁଆଉଛି ନା ନାହିଁ । ଯଦି ଶୁଆଉଛି ତେବେ ତା ସ୍ୱାମୀଙ୍କ ଆସନ କେଉଁଠି ?

ଘଟଣାକ୍ରମେ ବାରିପଦାରେ କୌଣସି ଏକ ସାହିତ୍ୟ ସଭାରେ ଜଣେ ଚିହ୍ନା ଓକିଲଙ୍କ ସହ ଦେଖା ହେଲା । ସେ ବାଧ କରି ତା ଘରକୁ ଡାକିନେଲେ ମୋତେ ସର୍‌ପ୍ରାଇଜ୍ ଦେବାପାଇଁ । ସତରେ ସେ ସର୍‌ପ୍ରାଇଜ୍ ହିଁ ଦେଲେ । ତାଙ୍କ ପତ୍ନୀ ଆସନରେ ମୋର କୃଷ୍ଣପ୍ରାଣା ବାନ୍ଧବୀଟିକୁ ଦେଖି ଯେମିତି ଆଶ୍ଚର୍ଯ୍ୟ ହୋଇ ଥିଲି ସେତିକି ଖୁସି ମଧ ହୋଇଛଥିଲି । ସେତେବେଳେ ସେ ପୁଅର ମା । ଛୋଟ ପୁଅକୁ ଆଣି ମୋ କୋଳେରେ ଥୋଇ ପଚାରୁଥିଲା ତୁ କେବେ ବାହାହେବୁ ? କେମିତି ଚାଲିଛି ଲେଖାଲେଖି ଇତ୍ୟାଦି ? ହେଲେ ମୁଁ କିନ୍ତୁ କେମିତି ଅଛନ୍ତି ତୋ କୃଷ୍ଣ ବୋଲି ତାକୁ ପଚାରିଲି ନାହିଁ ।

ଏଥର ମିତାଅପା କଥା କହୁଛି । ମନସ୍ତତ୍ତ୍ୱର ଅଧାପିକା ହେଲାପରେ ମୁଁ ଛାତ୍ରୀ ନିବାସରେ ରହିଲି । ସେଇଠି ସେ ମଧ ରହୁଥିଲେ । ମୋ ପାଖରୁ ପ୍ରାୟ ବାରବର୍ଷ ପାଖାପାଖି ବଡ଼ ଓ ଅବିବାହିତା । ପ୍ରଥମରୁ ସେ ତାଙ୍କର ସ୍ନେହ ଓ ସୁନ୍ଦର ବ୍ୟବହାରରେ ମୋତେ ମୁଗ୍ଧ କରି ଦେଇଥିଲେ । ତାଙ୍କର ଆଦର ଶ୍ରଦ୍ଧା ଦେଖି ମୁଁ ଭାବୁଥିଲି ନିଜ ଭଉଣୀ ବି ଏତେ ଭଲ ପାଇବ ନାହିଁ । ଆସ୍ତେ ଆସ୍ତେ ଯେତେଦିନ ପୁରୁଣା ହେଲା, ତାଙ୍କ ସହ ମୁଁ ଘନିଷ୍ଠ ହେଲି । ତାଙ୍କର ବିଚିତ୍ର ସ୍ୱଭାବ, ଅଦ୍ଭୁତ ମନସ୍ତତ୍ତ୍ୱ ସହ ପରିଚିତା ହେଲି । ରାନ୍ଧି ଖୁଆଇବାରେ ସେ ପାଉଥିଲେ ଅପାର ଆନନ୍ଦ । ଦେଖିବାକୁ ଏତେ ଅସୁନ୍ଦରୀ ଥିଲେ ଯେ ହୁଏତ ସେଥିପାଇଁ ବାହାଘର ହେଇ ପାରିନାହିଁ । ହେଲେ କେଉଁ ଝିଅ ଚାହେଁ ଏମିତି

ରହିଯିବାକୁ ? ସନ୍ନ୍ୟାସିନୀ, ବୈରାଗୀଙ୍କ କଥା ଅଲଗା ।  ନିଜେ ନାରୀ ହୋଇ ବି ନାରୀ ଯେ ସତରେ ରହସ୍ୟମୟୀ ତାଙ୍କୁ ଦେଖି ହିଁ ମୁଁ ସ୍ୱୀକାର କରିଥିଲି । ଭାବିଥିଲି ଅମାର ପୂର୍ବ ପରୁଣ, କବି, ଲେଖକ, ଦାର୍ଶନିକମାନେ ନାରୀ ମାୟା ନାରାୟଣଙ୍କୁ ଅଗୋଚର କହି କିଛି ଭୁଲି କରି ନାହାନ୍ତି ।

ଦିନେ ସେ ମୋ ରୁମ୍‌କୁ ଆସି ସେ କାହିଁକି ଅବିବାହିତା ରହିଲେ ବଖାଣି ବସିଲେ । ମୋର  ଆଗ୍ରହ ବଢିବା ସ୍ୱାଭାବିକ ।  ଜଣକୁ ଅଠର ବର୍ଷ ଧରି ସେ ଭଲ ପାଇ ଆସୁଛନ୍ତି । କିନ୍ତୁ ଏମିତି କିଛି ସମସ୍ୟା ଅଛି ତେଣୁ ସେମାନେ ବାହା ନ ହୋଇ ବରଞ୍ଚ ପ୍ରେମିକ ପ୍ରେମିକା ହେଇ ରହିବାଟାକୁ ଉଚିତ୍ ମନେ କଲେ ।

ଆଶ୍ଚର୍ଯ୍ୟ ହେଲି ।  ଏମିତି କ'ଣ ସମସ୍ୟା ମୁଣ୍ଡ ଟେକିଲା ଯେ ଦୁଇଟା ଜୀବନ ଅପେକ୍ଷା ଭିତରେ ହିଁ ଶେଷ ହୋଇଗଲା ? ସେ ସମସ୍ୟାର କି ସମାଧାନ ଏବେବି ନାହିଁ । ପୁଣି ସାରା ଜୀବନ ଦୁହେଁ ଦୁହିଁଙ୍କୁ ଅପେକ୍ଷା କରିବେ ଭଲ ପାଇବେ ଅଥଚ ବାହାହେବେ ନାହିଁ ?

ସେ କହିଲେ ମୁଖ୍ୟ ହେଲା ଆମର ଜାତି ।  ମୁଁ ବଙ୍ଗାଳି ସେ ଓଡିଆ ତାଙ୍କ ଘରେ କି ଆମ ଘରେ କେହି ରାଜି ହେଲେ ନାହିଁ  । ସେ ତାର ସମାଜରେ ଅଭିମାନ ଦେଖାଇଲା । ଆଉ ମୁଁ ସମାଜର ଅଭିମାନ ଛାଡିଲି ନାହିଁ ।  ପୁଣି ତା' ବାପା ଯୌତୁକ ମାଗିଲେ ଓ ବାପାଙ୍କ କଥାକୁ  ସେ ଭାଙ୍ଗି ପାରିଲା ନାହିଁ ।  ନିରବ ରହିବା କଥାଟା ବାଧିଲା ।  କେହି କାହା ମୁହଁ ଚାହିଁଲୁ ନାହିଁ ।  ସେ ଏବେ ଦିଲ୍ଲୀରେ ।  ଏ କଥା କହାକୁ କହିବ ନାହିଁ କବିତା ।  ତମକୁ ବିଶ୍ୱାସ କରି କହିଲି ।  ମୁଁ ସହାନୁଭୂତିରେ ତାଙ୍କୁ ଓଦା କରିଦେଇଥିଲି ।

ପରବର୍ତ୍ତୀ ସମୟରେ ଜାଣିଲି ମାଡାମ୍‌ଙ୍କର ଏ କାହାଣୀ ସମସ୍ତେ ଜାଣନ୍ତି । ଏପରିକି ଛାତ୍ରୀମାନେ ମଧ୍ୟ ଯେଉଁମାନେ ହଷ୍ଟେଲ୍‌ରେ ରହୁଥିଲେ ।  ଡାକି ଡାକି ସେ ନିଜର ପ୍ଲାଟୋନିକ୍ ଲଭ୍ କଥା ଛାତ୍ରୀରୁ ଅଧ୍ୟାପିକା ଯାଏଁ ଶୁଣାନ୍ତି ଓ କହନ୍ତି କାହାକୁ କହିବ ନାହିଁ ।  ସବୁଠୁ ଆଶ୍ଚର୍ଯ୍ୟ ଯେ ସେ ପିଲାଟି ଯେତେଦୂର ସମ୍ଭବ ବାହାସାହା ହୋଇ ରହିଗଲାଣି ।  ଇଏ ମିଛରେ ଏକ କପୋଳ କଳ୍ପିତ କାହାଣୀ ବନାଇ କହନ୍ତି ଓ ପରସ୍ପର ପରସ୍ପର ପାଇଁ ଅପେକ୍ଷା କରିବାର କଳ୍ପନା ଭିତରେ ଆତ୍ମସନ୍ତୋଷ ଲାଭ କରନ୍ତି । ଏମିତି ବି ହୋଇପାରେ ତାଙ୍କ ଜୀବନଟା ଏକ ଧୂ ଧୂ ମରୁଭୂମି  !  ଏଯାଏଁ କେହି ବି ସେଠି ପାଦ ପକାଇ ନାହାନ୍ତି !!  ଏଇ ଅବଶୋଷରୁ ଜନ୍ମ ନେଇଛି ଏକ ସୁନ୍ଦର କଳ୍ପିତ କାହାଣୀ ଯାହା ଆରବ୍ୟରଜନୀ ଠାରୁ ଆହୁରି ରୋମାଞ୍ଚକର !!

ପୁଣି ଦିନେ ଆସି କହିଲେ, ମୋର ଜଣକ ସହିତ ନିର୍ବନ୍ଧ ହୋଇଯାଇଥିଲା ।

ବାହାଘର ତାରିଖ ବି ଠିକ୍ ହୋଇଯାଇଥିଲା । ମୁଁ ବି ରାଜି ହୋଇଥିଲି । କଣହେଲା ଜାଣ ? ବାହାଘରକୁ ଅଳ୍ପଦିନ ଅଛି ପିଲାଟିକୁ କ୍ୟାନ୍‌ସର ହେବା ଜଣାପଡିଲା । କିଛିଦିନ ପରେ ସେ ବି ଚାଲିଗଲା । ସେଇଠୁ ଠିକ୍ କଲି ନା, ଆଉ ମୁଁ ବାହା ହେବି ନାହିଁ ।

ସେଦିନ ତାଙ୍କ ପ୍ରତି ସହାନୁଭୂତିରେ ଓଦା ହୋଇଯାଇଥିଲି । ବିଚରା, କେତେ ଦୁଃଖିନୀ ଝିଅଟି ସତରେ ! ପୁଣି କେତେଜଣ କହିଲେ ଆପଣ ତାଙ୍କ କଥା ବିଶ୍ୱାସ କରୁଛନ୍ତି ? ତାଙ୍କର କେଉଁ କଥା ମିଛ ବା ସତ ଜାଣିବା ସହଜ ନୁହେଁ ।

ଆଉଦିନେ ସେ ଏମିତି କଥା କହିଲେ ମୁଁ ସ୍ତମ୍ଭୀଭୂତ ହୋଇଯାଇଥିଲି । ଆଶ୍ଚର୍ଯ୍ୟରେ ବାକ୍‌ଶୂନ୍ୟ ହୋଇଯାଇଥିଲି । ସେ କହିଲେ, ରାଉରକେଲାର ଓ୍ୱାର୍କିଂ ଓମ୍ୟାନ୍‌ସ ହଷ୍ଟେଲ୍‌ରେ ରହିବା ଆଗରୁ ସେ ଏକ ଭଡା ଘରେ ଥିଲେ । ଘରବାଲା ବେଶ୍ ଭଲ ଲୋକ ଥିଲେ । ତାଙ୍କ ପୁଅ ତାଙ୍କୁ ଅପା ଡାକୁଥିଲା ଓ ମଝିରେ ମଝିରେ ମାର୍କେଟିଂ ବି କରିଦେଉଥିଲା ।

ଦିନେ କ'ଣ ହେଲା ନା ରାତିରେ ଠକ୍ ଠକ୍ ଶୁଭିଲା । ଘରବାଲା ପୁଅର ଅପା ଅପା ଡାକ ଶୁଣି କବାଟ ଖୋଲିଦେଲା ବେଳକୁ ସେ ଓ ତା ସହିତ ଆଉ ତିନିଜଣ ପିଲା ପଶି ଆସିଲେ । କିଛି ଭାବିବା ପୂର୍ବରୁ ସେମାନେ ଏକ ପ୍ରକାର ଖଟରେ ମୋତେ ବାନ୍ଧି ଦେଲେ । କାଳେ ପାଟି କରିବି ପାଟିରେ ଲୁଗା ଭର୍ତ୍ତି କରିଦେଲେ । ଆଉ ତାପରେ ଜଣେ ପରେ ଜଣେ ମୋତେ... ତାଙ୍କର ପରବର୍ତ୍ତୀ କଥା ଶୁଣି ମୋ ପାଦତଳୁ ସତେ କି ମାଟି ଧସି ଯାଉଥିଲା । ମୁଁ ନିଜ ଭିତରେ ଏକ ପ୍ରଚଣ୍ଡ ଭୂମିକମ୍ପ ଅନୁଭବ କରିଥିଲି । ଏ ପ୍ରକାର ଘଟଣା ଖବର କାଗଜରୁ ପଢିଛି । ସିନେମାରେ ଦେଖିଛି । ଅଥଚ ବାସ୍ତବରେ ଶିକାର ହୋଇଥିବା କୌଣସି ଝିଅ ସହିତ ମୋର ଭେଟ ହୋଇ ନଥିଲା । ସେ କାନ୍ଦୁଥିଲେ । ତାଙ୍କୁ ସାନ୍ତ୍ୱନା ଦେବାର ଭାଷା ମୁଁ ହଜାଇ ଦେଇଥିଲି । ସବୁ ଯୁଗରେ ନାରୀ ପୁରୁଷର ଭୋଗ୍ୟ ବସ୍ତୁରେ ପରିଣତ ହୋଇଛି । ଯେତେ ସେ ଶିକ୍ଷିତା ସ୍ୱାଧୀନା ହେଲେ ହେଁ ଦିନକୁ ଦିନ ତା'ର ନିରାପତ୍ତା ବିପନ୍ନ ହେବାରେ ଲାଗିଛି । ସବୁ ଯୁଗରେ ନାରୀ ପୁରୁଷ ପାଇଁ କେବଳ ଏକ ଖେଳଣା ପାଲଟିଛି । ତାର ରକ୍ତ ମାଂସରେ ଦେହକୁ ହିଁ ଗୁରୁତ୍ୱ ଦିଆଯାଇଛି । ସେ ରକ୍ତ ମାଂସ ଦେହ ଭିତରେ ଯେ ଗୋଟାଏ ମନ ରହିଛି ଏ କଥା ଭୋଗ ବିଳାସୀ ପୁରୁଷ ଭୁଲି ଯାଇଛି । ଗାନ୍ଧିଜୀ ଠିକ୍ କହିଥିଲେ ପ୍ରକୃତ ସ୍ୱାଧୀନତା ସେହିଦିନ ଆସିବ ଯେଉଁଦିନ ଝିଅଟିଏ ରାତି ବାରଟାରେ ସମ୍ପୂର୍ଣ୍ଣ ସୁରକ୍ଷିତ ଭାବରେ ବୁଲାଚଲା କରିପାରିବ । କିଏ ଜାଣିଛି ସେ ପ୍ରକୃତ ସ୍ୱାଧୀନତା ଆମ ପାଇଁ କେବେ ଆସିବ ?

ବ୍ୟଥିତ କଣ୍ଠରେ ତାଙ୍କୁ ପଚାରିଥିଲି, ତମେ କଣ ଥାନାରେ ଖବର ଦେଇଥିଲ ? କଣ ହେଲା ?

ସେ କହିଥିଲେ, ଥାନାରେ ଦେଇ ଲାଭ କ'ଣ ? ଆଇନ୍ କଥାତ ଜାଣ । ନ୍ୟାୟ ଦେବା ବଦଳରେ କେବଳ ଟଙ୍କା ଖାଇବେ । ବରଂଚ ମୋର ବଦ୍‌ନାମ ହେବ । ରାସ୍ତାରେ ମୁଣ୍ଡ ଟେକି ଚାଲିପାରିବି ନାହିଁ । ତା ଛଡା ମୋର ଯାହା ଚାଲିଗଲା ତାହା ତ ଆଉ ଫେରିଆସିବନି । ,ଯେଉଁମାନେ ଏ ଘଟଣା ଘଟାଇଥିଲେ ସେମାନେ ବେଶ୍ ପ୍ରତିଷ୍ଠିତ ଘରର ପିଲା ଥିଲେ । ବାପାଙ୍କ କ୍ଷମତା, ପଇସା ବଳରେ। ସେମାନେ ନିର୍ଦ୍ଦୋଷରେ ଖଲାସ ହୋଇଯିବେ । ମୁଁ ହିଁ ସମାଜର ପତିତା, କଳଙ୍କିନୀ ହେଇ ରହିଯିବି । ସେ ଯାହାହେଉ ମୋ ଭିଣୋଇ ଡାକ୍ତର ଥିଲେ । ନାନୀଙ୍କୁ ଯେତେବେଳେ କହିଲି ଭିଣୋଇକୁ କହିଲା ପରେ ସେ ମୋତେ ଷ୍ଟେଥୋରେ ବାଡେଇ ଦେଇ ଗଲେ । ପରେ ଡାକ୍ତରିମାଇନା କରି କଥାଟା ଚପିଦେଲେ । ବିଶ୍ୱାସ କରି କହିଲି ତମକୁ । ତମେ ଲେଖିକା କି ନା । ମୋ ମାନସିକତାକୁ ଠିକ୍ ଭାବରେ ବୁଝି ପାରିବ ଏଇ ଭରସାରେ କହିଲି ।

ସେଦିନ ରାତିସାରା ମୁଁ ଶୋଇ ପାରିନଥିଲି ତାଙ୍କ କଥା ଚିନ୍ତା କରି । କେତେବେଳେ କଥା ମୁଣ୍ଡକୁ ଜୁଟିଥିଲା । କି ଅଜବ ଆମର ଆଇନ୍, ଆମର ସମାଜ ବ୍ୟବସ୍ଥା । କୋର୍ଟ କେବଳ ପ୍ରମାଣ ଚାହିଁବ । ଯେତେବେଳେ ଅସହାୟ ଝିଅଟିକୁ ଟେକିନେଇ ଧର୍ଷଣ କରାଯାଏ ସେତେବେଳେ କ'ଣ କହି ସାକ୍ଷୀରଖେ ଯେ ଦେଖୁଥା, କୋର୍ଟ କଚେରିରେ ପ୍ରମାଣ କରିବୁ । ପ୍ରମାଣ କରିନପାରିଲେ ଦୋଷୀ ନିର୍ଦ୍ଦୋଷରେ ଖୋଲାସ ହୋଇଯିବ । ସମାଜ ଯୁଗେ ଯୁଗେ ନାରୀକୁ ହିଁ କଳଙ୍କିନୀ, ବେଶ୍ୟା କରିଛି ଓ ଏଥିପାଇଁ ଯେଉଁ ପୁରୁଷ ଦାୟୀ ସେ ନିର୍ଭୀକରେ ଛାତି ଫୁଲାଇ ସମ୍ମାନର ସହ ସମାଜରେ ଚଳପ୍ରଚଳ ହେଉଛି । ପୁରୁଷର କାମନା ପାଖରେ ବିବାହିତା- ଅବିବାହିତା, ବୟସ୍କା- ବାଳିକା କେହି ବି ବାଦ୍ ପଡୁ ନାହାନ୍ତି । କୌଣସି ସମ୍ପର୍କ ନୀତିନିୟମ ବି ରହୁନାହିଁ । ଦିନେ ପୁରୁଷ ଯେଉଁମାନଙ୍କୁ ସୀତା, ସାବିତ୍ରୀ କହି ସମ୍ମାନ ଦେଉଥିଲା, ସେହି ସୀତା ସାବିତ୍ରୀମାନେ ଆଜି ବିଚ୍ ବଜାରରେ ଧର୍ଷିତା ହେଉଛନ୍ତି । ଏଭଳିଭଳି ଅମାନୁଷିକତାର ଶିକାର ହେଉଥିବା ନାରୀମାନଙ୍କୁ ଥଇଥାନ୍ କରିବା ପାଇଁ ଆମ ସମାଜରେ କି ବ୍ୟବସ୍ଥା ରହିଛି ? ଏଭଳି ଝିଅମାନଙ୍କର ଭବିଷ୍ୟତ ଓ ବଞ୍ଚିବା ପାଇଁ ସରକାର କ'ଣ ପଦକ୍ଷେପ ନେଇଛନ୍ତି ? କୁଆଡେ ଯାଆନ୍ତି ଏଇ ହତଭାଗିନୀମାନେ ? କିଏ ଜୀବନ ସାରା ସାହାରା ଦେବା ଲାଗି ଆଗେଇ ଆସେ ? ନା କପାଳ ଆଦରି ଲାଞ୍ଛିତ ଜୀବନକୁ ଆଦରି କେବଳ ଲୁହ ଗଡାନ୍ତି ଅଥବା ମରଣକୁ ଅପେକ୍ଷା କରନ୍ତି ? ଏଭଳି ବିଭିନ୍ନ କଥା ଭାବି ଆଖିରୁ ମୋର ନିଦ ହଜିଯାଉଥିଲା । ଘର ଛାଡି ଦୂରରେ ରହୁଥିବାରୁ ସେଦିନ ମୁଁ ନିଜକୁ ଖୁବ୍ ଅସୁରକ୍ଷିତ ଦୁର୍ବଳା ମନେ କରିଥିଲି ।

ମିତ୍ରାଅପାଙ୍କ ଜୀବନର ଏତେବଡ ଘଟଣା କଥା ମୁଁ କାହାକୁ କହିନଥିଲି । କେତେ

ବିଶ୍ୱାସରେ ସେ ମୋତେ କହିଛନ୍ତି । ଅଥଚ ହଷ୍ଟେଲ୍‌ରେ ଆଉ କେତେଜଣଙ୍କ ସହିତ ଆଲୋଚନା କଲାବେଳେ ସେମାନଙ୍କଠାରୁ ଏ କଥା ଶୁଣି ଜାଣିଲି ସେ ଏକଥା ମୋତେ ନୁହେଁ, ମୋ ଆଗରୁ କେତେଜଣଙ୍କୁ କହିସାରିଛନ୍ତି । ମୋତେ ସେ ମାସ୍ ରେପ୍ କଥା କହିଲା ବେଳେ ଆଉ କାହାକୁ କହିଛନ୍ତି ତାଙ୍କ ଭିଣୋଇଙ୍କ ଡ୍ରାଇଭର ତାଙ୍କୁ..... ପୁଣି କାହାକୁ କହିଛନ୍ତି ସେ ତାଙ୍କ ସାଙ୍ଗ ଘରକୁ ଯାଇଥିଲେ ଯେ ସାଙ୍ଗ ନଥିଲା । ତାଙ୍କ ମିଷ୍ଟର ଏକୁଟିଆ ପାଇ ତାଙ୍କୁ.... । ହଷ୍ଟେଲ୍‌ରେ ଥିବା ସାତ ଆଠ ଜଣ ଝିଅ ବି ଏକଥା ଜାଣିଛନ୍ତି ବୋଲି ଶୁଣିଲି ।

ସେଦିନ ଘୃଣା, ସହାନଭୂତିରେ ତାଙ୍କ ପ୍ରତି ମନ ଭର୍ତ୍ତି ହୋଇଯାଇଥିଲା । କେଉଁଟା ସତ ତାହାହେଲେ ? ଅବିବାହିତା ରହିଯାଇଥିବାରୁ ନିଜ ମନ ଭିତରର ଅଦମ୍ୟ ଇଚ୍ଛାକୁ କପୋଳ କଳ୍ପିତ କାହାଣୀ ମାଧ୍ୟମରେ ସେ ରୂପ ଦେଉନାହାନ୍ତି ତ ? ସେ ନିଜ ବିଷୟରେ ଏଭଳି କଥା କେମିତି କହିପାରୁଛନ୍ତି ? ଯଦିବି କେବେ ଏଭଳି ଦୁର୍ଘଟଣାଟେ ତାଙ୍କ ଜୀବନରେ ଘଟିଥାଏ ତାହାହେଲେ ତାହାକୁ କଣ କୁହାଯାଏ କି ? ତାଙ୍କ ସମ୍ପର୍କରେ ବିଚିତ୍ର ବିଚିତ୍ର କାହାଣୀ ଶୁଣିଲି । କେତେଜଣ ଛାତ୍ରୀ କହିଲେ ଏଠିକା ମହିଳା କଲେଜ୍‌ରେ ଥିଲାବେଳେ ସେ କ୍ଲାସ୍‌ରେ କହୁଥିଲେ ତାଙ୍କ ସ୍ୱାମୀ କଲିକତାରେ ଚାକିରୀ କରନ୍ତି ବୋଲି । ପୁଣି କାହାକୁ କହିଛନ୍ତି ତାଙ୍କର Contrct marriage ହୋଇଥିଲା ଇତ୍ୟାଦି ଇତ୍ୟାଦି ।

ଥରେ ତାଙ୍କର ଜଣେ କ୍ଲାସ୍‌ମେଟ୍‌ଙ୍କ ଘରକୁ ଯାଇଥିଲୁ । କଥା ପ୍ରସଙ୍ଗରେ ସାଙ୍ଗ ଜଣକ କହିଲେ, ସେ ଦୁହେଁ ଏକାଠି ପି. ଜି. କରୁଥିଲା ବେଳେ ରୁମ୍‌ମେଟ୍ ଥିଲେ । ପଢିଲାବେଳେ କହନ୍ତି କେଉଁ ଟି କମ୍ପାନିର ମ୍ୟାନେଜିଂ ଡିରେକ୍ଟର ସହ ତାଙ୍କର ଲଭ୍ ଅଛି । ସେ ପ୍ରତିଦିନ ଓପରବେଳା ତାଙ୍କୁ ଦେଖା କରି ଆସନ୍ତି । ନିର୍ଦ୍ଦିଷ୍ଟ ସମୟରେ ମିତ୍ରାଅପା ସଜବାଜ ହୋଇ ତଳକୁ ଯାଆନ୍ତି ଓ ଫେରି ଆସି କହନ୍ତି ସେହି ଟି କମ୍ପାନିର ଏମ୍. ଡି ଜଣକ କେମିତି ତାଙ୍କୁ ବାହା ନହେଲେ ପାଗଳ ହୋଇଯିବ, ସାରାଜୀବନ ଏମିତି ବାଚେଲର ରହିଯିବ ତ୍ୟାଦି ପ୍ରଗଲ୍‌ଭା ହୋଇ ଗପନ୍ତି । ତାଙ୍କ କଥା ଶୁଣି ଶୁଣି ତାଙ୍କର ଦୁଇ ତିନିଜଣ ବାନ୍ଧବୀ କିଏ କେହି ପାଗଳପ୍ରେମୀ ବୋଲି ଦେଖିବାକୁ ତାଙ୍କ ପଛେ ପଛେ ଛପି ଛପି ଥରେ ଗଲେ । ଦେଖିଲା ବେଳକୁ ଇଏ କୃଷ୍ଣଚୂଡା ଗଛ ମୂଳରେ ସଜବାଜ ହୋଇ ଠିଆ ହୋଇଛନ୍ତି । କେହି ଦେଖା କରିବାକୁ ଆସିନାହାନ୍ତି । ପରେ ଜଣା ପଡିଲା କେହି ଡିରେକ୍ଟର ଫିରେକ୍ଟର ଆସନ୍ତି ନାହିଁ । ଇଏ ନିଜେ ମନରୁ ଏକ ଚରିତ୍ର ସୃଷ୍ଟି କରନ୍ତି । କଳ୍ପନାରେ କାହାଣୀ ଗଢନ୍ତି । ନିତି ସଜବାଜ ହେଇ କୃଷ୍ଣଚୂଡା ଗଛ

ମୂଳରେ ଏକା ଏକା ଠିଆ ହୋଇ ଫେରିଆସନ୍ତି ଓ କଳ୍ପିତ ପ୍ରେମୀଙ୍କ ସମ୍ପର୍କରେ ନୂଆ ନୂଆ ମନଗଢା କଥା କୁହନ୍ତି । କିଏ କହିଲା ତାଙ୍କୁ ହିଷ୍ଟିଆ ହୋଇଯାଇଛି ତ କାହା ମତ ହେଲା ମନସ୍ତତ୍ତ୍ୱର ଅଧ୍ୟାପିକା ଜଣକ ନିଜେ ଜଣେ ମାନସିକ ରୋଗୀ ।

ତାଙ୍କ ରୁମ୍‌ମେଟ୍ ଜଣକ କହିଚାଲିଛନ୍ତି, ଥରେ ସେ ମୁଁ ପ୍ରେଗ୍‌ନାଣ୍ଟ ହୋଇଯାଇଛି ବୋଲି ମୋତେ ରେଜେଷ୍ଟ୍ରି ଚିଠିଟିଏ ଲେଖି ପଠାଇ ଥିଲେ ଓ ଅମୁକଦିନ ସୁଇସାଇଡ୍ କରୁଛି, ତୁ ଚିଠି ପାଇଲା ବେଳକୁ ମୁଁ ନଥିବି । ଚିଠି ପାଇ ତାଙ୍କ ବାନ୍ଧବୀ ଜଣକ ଜଡ ପାଲଟି ଗଲେ । କହିଲେ ଆତ୍ମହତ୍ୟା କଲେ ପୋଲିସ୍ ମୋତେ ଆସି ପଚରାଉଚୁରା କରିବ । ତାଙ୍କର ସେଦିନ ରାତିସାରା ନିଦ ନାହିଁ । କଣ କରିବେ, ଘରକୁ ପଳାଇବେ ଏମିତି ଭାବି ରାତି ପାହିଲା ବେଳକୁ ଇଏ ସ୍ୱୟଂ ଜୀବନ୍ତ ହାଜର । କହିଲେ, ତୋତେ ଚିଠିଟା ରେଜେଷ୍ଟ୍ରି କଲାପରେ ଆତ୍ମହତ୍ୟା କରିପାରିଲି ନାହିଁ । ମୋର ନା ଆବୋରସନ୍ ହୋଇଗଲା... ।

ପ୍ରକୃତରେ ତାଙ୍କର ସ୍କ୍ରୁ ଢିଲା ବୋଲି କହି ସାଙ୍ଗ ଜଣକ ହସିଲେ । ତାଙ୍କର ବ୍ୟବହାର ଦେଖିଲେ ବେଳେବେଳେ ଦୁଃଖ ଲାଗେ । ପୁଣି ବେଳେ ବେଳେ ତାଙ୍କ ପ୍ରତି ଦୟା ଆସେ । ପ୍ରକୃତରେ ଅବିବାହିତା ବୟସ୍କା ଏହି ମ୍ୟାଡାମ୍‌ଙ୍କ ଭିତରେ ସ୍ୱାମୀ, ଘର ସଂସାର, ମା' ହେବାର ଅଭିଳାଷ ରହିବା ସ୍ୱାଭାବିକ । ତାକୁ ସେ ବିଭିନ୍ନ ଅଭିବ୍ୟକ୍ତି ମାଧ୍ୟମରେ ହିଁ ରୂପାୟିତ କରିଥାନ୍ତି । ତାଙ୍କୁ ନେଇ ଅନ୍ୟମାନେ ହସାହସି କଲାବେଳେ ମୁଁ ତାଙ୍କ ମାନସିକ ଅବସ୍ଥା କଥା ଭାବି ବ୍ୟଥିତ ହୋଇଯାଏ । ଭାବେ ବିଚାରୀ କେତେ ଏକୁଟିଆ । ନିଜର ଅସୁନ୍ଦର ଚେହେରା ଯୋଗୁଁ ହେଉ କି ଅନ୍ୟ କେଉଁ କାରଣ ହେଉ ସେ ଅବିବାହିତା ରହିଯାଇଛନ୍ତି । କିନ୍ତୁ ମନ ନିଶ୍ଚୟ ଚାହୁଁଥିବ କାହାରି ଭଲ ପାଇବା, କାହାରି ସାନିଧ୍ୟ । ବାସ୍ତବ ଜୀବନରେ ଯାହା ପାଇ ପାରି ନାହାନ୍ତି ତାହାକୁ ସେ ମନଗଢା କାହାଣୀ ରୂପ ଦେଉଛନ୍ତି । ତାଙ୍କୁ କେନ୍ଦ୍ର କରି ଗପଟିଏ ଲେଖିଥିଲି 'ଜୀବନ କେବେ କେମିତି' ଯାହା କଥାରେ ପ୍ରକାଶିତ ହୋଇଥିଲା । ସେହି ଗପନାଁରେ ହିଁ ମୋର ଗଳ୍ପ ସଂକଳନ "ଜୀବନ କେବେ କେମିତି" ପ୍ରକାଶିତ ହୋଇଛି ଲାର୍କବୁକ୍ସ ପ୍ରକାଶନ ମାଧ୍ୟମରେ ୨୦୦୧ରେ ଯାହାର ପ୍ରଚ୍ଛଦ ଶିଳ୍ପୀ ଥିଲେ ୰ଛନ୍ଦା ଚରଣ ଆଚାର୍ଯ୍ୟ ।

ଆଜିବି ମିତ୍ରା ଅପାଙ୍କର ସେହି ଆରବ୍ୟ ରଜନୀର ରୋମାଞ୍ଚକର କାହାଣୀ କଥା ମନେପଡେ । ଭାବେ ସେ ଯଦି ଲେଖାଲେଖି କରିପାରୁଥାନ୍ତେ ଆମ ସମୟରେ ଗାଳ୍ପିକା ମାନଙ୍କୁ ନିଶ୍ଚେ ଅତିକ୍ରମ କରିଯାଇଥାନ୍ତେ । ଏ ଭିତରେ ସେ ରିଟାୟାର୍ଡ କରିସାରିବେଣି । କେଉଁଠି କେମିତି ଅଛନ୍ତି କେଜାଣି ? ତାଙ୍କ ଜୀବନର କେଉଁ କଥାଟି ସତ ଥିଲା ? ନା

ତାଙ୍କ ଜୀବନର ପ୍ରକୃତ କାହାଣୀ ମୋ ପାଖରେ ଅପହଞ୍ଚ ରହିଗଲା ସବୁଦିନ ପାଇଁ? ସତରେ ସେ କ'ଣ ହିଷ୍ଟିଆ ରୋଗୀ ଥିଲେ? ସହାନୁଭୂତି ପାଇବା ପାଇଁ ନିତି ନିଜକୁ କାହାଣୀର ଚରିତ୍ରବିନ୍ଦୁ କରି ଆନନ୍ଦ ପାଉଥିଲେ ।

ମନସ୍ତତ୍ତ୍ୱବିତ୍‌ମାନେ କ'ଣ ନାଁ ଦେବେ ତାଙ୍କୁ? ମୋର ଗାଢ଼ିକ ହୃଦୟରେ ସେ ଏକ ସ୍ୱତନ୍ତ୍ର ସ୍ଥାନ ନେଇ ଯାଇଥିଲେ । ନହେଲେ ଏତେ ବର୍ଷ ପରେ ସ୍ମୃତିର ପୃଷ୍ଠା ଓଲଟାଇଲା ବେଳେ ସେ କ'ଣ ଆଜି ଏତେ ନିବିଡ ଭାବରେ ମନେ ପଡିଥାନ୍ତେ? ସତରେ ଜୀବନ କାହାପାଇଁ କେବେ କେମିତି!

× × × × ×

ମୋର ସ୍ମିତା ଦାସ ବୋଲି ବାନ୍ଧବୀଟିଏ ଥିଲା । ଅଳ୍ପ ଦିନର ଚିହ୍ନା । ବାଣୀବିହାରରେ ଓଡିଆରେ ପି.ଜି. କରୁଥିଲା । କିନ୍ତୁ ଅଧାରୁ କାହିଁକି କେଜାଣି ପଢା ଛାଡିଦେଲା । ପରେ ସେ କେଉଁ ଏକ ବ୍ୟାଙ୍କ୍‌ରେ ଋକିରି କରିବାର ଶୁଣିଥିଲି ଖବର କାଗଜରେ (ଓଡିଆ, ଇଂରାଜୀ ସମେତ) ତା ସମ୍ପର୍କରେ ପଢି ଆଶ୍ଚର୍ଯ୍ୟ ହୋଇଥିଲି । ବୋଧହୁଏ ୧୯୮୪/୮୫ ମସିହାରେ କଥା ହେବ । ବାଲେଶ୍ୱରର ଜନୈକ ଏମ୍.ଏଲ୍‌ଙ୍କ ସହିତ ତାଙ୍କୁ ନେଇ ବିଭିନ୍ନ ଋଞ୍ଚଲ୍ୟକର କଥା ପ୍ରକାଶ ପାଇଥିଲା । ଏମ୍.ଏଲ୍.ଏ. ଜଣକ ବର୍ତ୍ତମାନ ମୃତ । ସେ କେମିତି ଋକିରୀ କରିଦେବାର ପ୍ରତିଶ୍ରୁତି ଦେଇ ତାଙ୍କ ଗାଁ ଝିଅ ସ୍ମିତାକୁ କଲିକତା ନେଇ ଯାଇଥିଲେ । ସେଠାରେ କେଉଁ ହୋଟେଲ୍‌ରେ ବାପ ସମାନ ଏମ୍. ଏଲ୍.ଏ ଜଣକ ତା ଉପରେ ପାଶବିକ ଅତ୍ୟାଚାର କରିଥିଲେ ଇତ୍ୟାଦି ଇତ୍ୟାଦି । ସେତେବେଳେ ସ୍ମିତାଦାସ ସାମ୍ବାଦିକମାନଙ୍କର କେନ୍ଦ୍ରବିନ୍ଦୁ ପାଲଟିଥିଲା । ତାପରେ ତାର ପାଠପଢା ଛାଡି କେଉଁ ବ୍ୟାଙ୍କରେ ଚାକିରୀ । ଭୁବନେଶ୍ୱର କର୍ମଜୀବୀ ମହିଳା ହଷ୍ଟେଲ୍ 'ନିବେଦିତା'ରେ ରହଣି । ସେଠି ବିଭିନ୍ନ ଏମ୍.ଏଲ୍.ଏ ରାଜନୈତିକ ନେତା, ବଡ଼ ବଡ଼ ଅଫିସରଙ୍କ ସହ ତାର ଚିହ୍ନାଜଣା । ନିବଦେିତା ହଷ୍ଟେଲ୍‌ରେ ସଂଗୀତ ମହାବିଦ୍ୟାଳୟରେ ଓଡିଆ ଅଧ୍ୟାପିକା ଥିବା ମୋର ଜଣେ ବାନ୍ଧବୀ ରହୁଥିଲେ । ଥରେ ତା ସହିତ ପ୍ରଥମ ଥର ପାଇଁ ସେ ହଷ୍ଟେଲ୍‌କୁ ଯାଇଥିଲି । ମୋର ସେ କର୍ମଜୀବୀ ହଷ୍ଟେଲ୍ ସମ୍ପର୍କରେ କୌଣସି ଧାରଣା ହିଁ ନଥିଲା । ସେଥିପାଇଁ ସେଠିକା ପରିବେଶ ବଡ଼ ଅଜବ ଲାଗୁଥିଲା । ବାଣୀବିହାର ଛାତ୍ରୀ ନିବାସ ଭଳି ଶୃଙ୍ଖଳିତ ନିୟମକାନୁନ୍ ସେମିତି କିଛି ନଥିଲା ବୋଧହୁଏ । ଏଠିତ ସମସ୍ତେ କର୍ମଜୀବୀ । ବହୁ କିସମର ଝିଅ । ବୟସ୍କା, ଅଳ୍ପବୟସ୍କା, ବିବାହିତା, ଅବିବାହିତା ଏମିତି କେତେ ପ୍ରକାରର । ସେଇଠି ହିଁ ହଠାତ୍ ସ୍ମିତା ଦାସ ସହ ମୋର ଦେଖା ହୋଇଗଲା । ଅଳ୍ପଦିନ ମୋ ସହ ପଢିଥିବାରୁ ମୋର ତା ଚେହେରା ଏତେଟା ମନେ ନଥିଲା । କିନ୍ତୁ

ସେ ବର୍ଷ ମୁଁ ଅନର୍ସରେ ଫାଷ୍ଟକ୍ଲାସ୍ ଫାଷ୍ଟ ହୋଇଥିବାରୁ ମୋ ଗଳ୍ପ ସବୁ ଝଙ୍କାର, ଇସ୍ତାହାର, ସୁଚରିତା, ଗୋକର୍ଣ୍ଣିକାରେ ପ୍ରକାଶିତ ହେଉଥିବାରୁ ମୋତେ ଅନେକେ ଜାଣି ଥିଲେ । ସେ ଟାଣି ନେଇଗଲା ମୋତେ ତା ରୁମ୍‌କୁ ଆଉ କହିଲା, କଣ ମୋତେ ଚିହ୍ନା ଦେଲେ ତମର ପ୍ରେଷ୍ଟିଜ୍ ଚାଲିଯିବ ବୋଲି ମୋତେ ଆଡଦେଖା କରିଦେଉଛ ? ମୁଁ ଜଣେ ବଦ୍‌ନାମ୍ ଗଳିର ଝିଅ । ତଥାପି ତମେ ଜଣେ ଲେଖିକା ହୋଇଥିବାରୁ ସବୁ କିସମର ମଣିଷମାନଙ୍କ ସହିତ ମିଶିବା ନିହାତି ଆବଶ୍ୟକ ନୁହେଁ କି ? ଶରତଚନ୍ଦ୍ର କେତେବଡ଼ ଔପନ୍ୟାସିକ ? ତାଙ୍କ ଜୀବନର ଅଧିକାଂଶ ସମୟ ତ ବଦ୍‌ନାମ ଗଳିରେ କଟିଥିଲା । ନ ହେଲେ କଣ "ଦେବଦାସ" ଲେଖାଯାଇ ପାରିଥାନ୍ତା ?

ସେ କହିଚାଲିଥିଲା- ଅନେକ ସମୟରେ ଇଚ୍ଛା କରିଛି ତମକୁ ଖୁବ୍ ଲମ୍ବା ଚିଠିଟିଏ ଲେଖିବି । ମନର ସମସ୍ତ କୋହ, ବ୍ୟଥା ଓଜାଡି ଦେବି । ମୋ ଚରିତ୍ର ହୀନତାର କୌଣସି ସଫେଇ ଦେବି ନାହିଁ । ମୋ ଜୀବନରେ ଯାହା ଯାହା ଘଟିଗଲା ତାକୁ ନେଇ ତ ଗପଟିଏ ହେବ ନାହିଁ, ବରଂ ଉପନ୍ୟାସଟିଏ ହିଁ ଲେଖା ହେବ । ତାକୁ ଫିଲ୍ମ କଲେ ତ ନିଶ୍ଚେ ଖୁବ୍ ହିଟ୍ ହେବ । କେତେ ପ୍ରକାରର ପୁରୁଷ ଦେଖିଛି ମୁଁ ଏ ଭିତରେ । ଜାଣ, ପୁରୁଷ ଆଖିରେ କାମନା ଛଡା ଆଉ କିଛି ଦେଖିନାହିଁ । ତେଣୁ ପୁରୁଷଙ୍କ ପ୍ରତି ମନରେ କେମିତି ଗୋଟାଏ ଘୃଣା ଆସି ଯାଇଛି ।

ତା ରୁମ୍‌ରେ କିଛି ଠାକୁର ଫଟୋ ଥାକରେ ସଜା ହୋଇ ରହିଥିଲା । କହିଲି ତମେ ପୂଜା କର ? ଏବେ ବି ଠାକୁରଙ୍କ ଉପରେ ତମର ବିଶ୍ୱାସ ଅଛି ?

ସେ ହସିଥିଲା, କହିଥିଲା, ବିଶ୍ୱାସ ଅଛି ବୋଲି ତ ବଞ୍ଚିଛି । ସବୁବେଳେ ଏହି ଈଶ୍ୱର ନାମକ ଆରାଧ ଦେବତାକୁ ପଚାରିଛି, ମୋ ଜୀବନଟା ନଷ୍ଟ କରିଦେଲ ବୋଲି କଣ ମୁଁ ହାରିଯିବି ବୋଲି ଭାବୁଛ ? କେବେ ନୁହେଁ । ତୁ ମୋ ପାଖରୁ କେତେ ପରୀକ୍ଷା ନେବୁ ନେ । ପରୀକ୍ଷା ଦେବାକୁ ମୋ ମନରେ ଏବେ ବି ବେଶ୍ ବଳ ଅଛି । ଜାଣ କବିତା, ପୂଜା କରିସାରି ଉଠିଲା ପରେ ହିଁ ମୁଁ ଅନେକ ସମୟରେ ଅଶୁଭ ଘଟଣାର ସମ୍ବାଦ ପାଇଛି । ଚକ୍ରାନ୍ତ କରି ମୋ ବାପା, ଭାଇକୁ ଥାନା ନେଇଯିବା, ଆମ ଘର ଚଢାଉ କରିବା, ମୋତେ ନଷ୍ଟ କରିବା ସବୁ କିଛି ଶୁଣିଛି ପୂଜା ସାରି କିମ୍ବା ମନ୍ଦିରରୁ ଫେରି ।

ମୁଁ ଆଶ୍ଚର୍ଯ୍ୟରେ ପଚାରିଥିଲି ତଥାପି ତମର ଭଗବାନଙ୍କ ଉପରେ ଅଗାଧ ବିଶ୍ୱାସ ରହିଛି ?

ହଁ ରହିଛି । କାରଣ ମୁଁ ତାଙ୍କ ଉପରୁ ବିଶ୍ୱାସ ହରାଇ ନିଜ ପାଖରେ ହାରିଯିବାକୁ ଚାହେଁନା । ଯଦିଓ ଆଗକୁ କ'ଣ ଆହୁରି ବାକି ଅଛି ମୋତେ ଜଣା ନାହିଁ ।

ସେତିକିବେଳେ ୧୯୮୫ରେ ସୁଚରିତାର କୌଣସି ଏକ ସଂଖ୍ୟାରେ "ରେବତୀ" ନାମକ ଗଳ୍ପଟିଏ ମୋର ପ୍ରକାଶ ପାଇଥିଲା । ଫକୀରମୋହନଙ୍କ ରେବତୀ, ବାସୁକୁ ନେଇ ଭିନ୍ନ ଏକ ସମୟରେ ଦୁହିଁଙ୍କୁ ଠିଆ କରାଇଥିଲି । ରେବତୀ ସ୍କୁଲ୍‌ରୁ ଫେରିଲା ବେଳେ ବାଟରେ କିଛି ଅସାମାଜିକ ଟୋକାଙ୍କ ଦ୍ୱାରା ଧର୍ଷିତା ହୋଇଛି । ଘରେ ସମସ୍ତେ ତା'ର ବଞ୍ଚି ରହିବା ଅପେକ୍ଷା ମରିଯିବାଟାକୁ ଅଧିକ ଶ୍ରେୟ ବୋଲି ପରୋକ୍ଷରେ ଇଙ୍ଗିତ ଦେଇଛନ୍ତି । କାରଣ ତାରି ଯୋଗୁଁ ସେମାନେ ମୁହଁ ଦେଖାଇ ପାରିବେନି କି ରେବତୀର ସାନଭଉଣୀର ବାହାଘର ହେଇପାରିବନି ଭବିଷ୍ୟତରେ । ଏପରିକି ବାସୁ ସାର୍ ମଧ୍ୟ ତାଙ୍କୁ ଭୁଲିଯିବାକୁ କହିଛନ୍ତି ଓ ଅନ୍ୟତ୍ର ବାହାହେବାର କଥା ସୂଚନା ଦେଇଛନ୍ତି । ରେବତୀର ଚାରିପାଖର ସମାଜ ତାକୁ ଏତେ ଲାଞ୍ଛିତା ଅପମାନିତ କରିଛି ଯେ ଶେଷରେ ମାନସିକ ଭାରସାମ୍ୟ ହରାଇ ରେବତୀ ବାଧ୍ୟ ହୋଇ ଆତ୍ମହତ୍ୟା କରିଛି ।

ଏ ଗଳ୍ପଟି ପ୍ରକାଶ ପାଇଲା ପରେ ପୁଣି ମୁଁ ମୋ ଅଧ୍ୟାପିକା ବାନ୍ଧବୀ ସହ ଯାଇଥିଲି ନିବେଦିତା ହଷ୍ଟେଲ । ସ୍ମିତା ଧାଇଁ ଆସି ମୋତେ ଆକ୍ରମଣ କରିଥିଲା ତର୍କ ମାଧ୍ୟମରେ । ହାତରେ ଧରିଥିଲା ସୁଚରିତାର ସେହି ନିର୍ଦ୍ଦିଷ୍ଟ ସଂଖ୍ୟା ଯେଉଁଠି ପ୍ରକାଶିତ ହୋଇଥିଲା ମୋର ରେବତୀ ଗଳ୍ପଟି । କହିଥିଲା ତମେ ଲେଖିକା ହେଲ ବୋଲି ଯାହାକୁ ପାରିବ ତାକୁ ମାରିଦେବ? ତାହାହେଲେ ତମେ କ'ଣ କହିବାକୁ ଚାହଁ ରେବତୀ ଭଳି ଧର୍ଷିତା ହେଉଥିବା ଝିଅମାନଙ୍କର ଏ ସମାଜରେ କୌଣସି ପ୍ରକାରେ ବଞ୍ଚିବାର ଅଧିକାର ନାହିଁ? ତେଣୁ ସେମାନେ ଆତ୍ମହତ୍ୟା କରିବାକୁ ବାଧ୍ୟ? ତା ମାନେ ତମର କହିବାର ଅର୍ଥ ମୋର ବି ଆତ୍ମହତ୍ୟା କରିବା ଉଚିତ୍? ମୋର ବଞ୍ଚିବାର ଅଧିକାର ନାହିଁ ।

ମୁଁ ଚକିତ ହୋଇ ତାକୁ ଚାହିଁ ରହିଥିଲି । । ତାର ଉଗ୍ରମୂର୍ତ୍ତି ଦେଖି କିଛି କହି ପାରି ନଥିଲି । କିଛି ବୁଝିବା ଅବସ୍ଥାରେ ବି ସ୍ମିତା ସେତେବେଳେ ନଥିଲା । ପରେ ତା ସମ୍ପର୍କରେ ଚିନ୍ତା କରି ଗପଟିଏ ଲେଖିଥିଲେ 'ରୁନୁଅପା, ବାପା, ମୁଁ ଓ ସମୁଦ୍ର" । ଅମୃତାୟନର ପୂଜା ସଂଖ୍ୟାରେ ସେହି ବର୍ଷ ତାହା ପ୍ରକାଶ ପାଇଥିଲା । ସେଥିରେ ଏଭଳି ଏକ ଚରିତ୍ର ସୃଷ୍ଟି କରିଥିଲି ଯେକି ସୋନାଗାଛିରେ ପହଞ୍ଚି ଯାଇଛି ସତ କିନ୍ତୁ ଆତ୍ମହତ୍ୟା କରିନାହିଁ । ଜୀବନର ସ୍ୱପ୍ନ, ଆବେଗ ପାଖରେ ଏଭଳି ବନ୍ଧୁରି ଯାଇଛି ଯେ ତାକୁ ପୃଥିବୀ, ପ୍ରକୃତି, ନିଜ ଜୀବନ ଖୁବ୍ ଲୋଭନୀୟ ମନେ ହୋଇଛି । ଜୀବନକୁ ଅଦରକାରି କହି ଫିଙ୍ଗିଦେଇ ପାରି ନାହିଁ ।

ପରେ ପରେ ଭୁବନେଶ୍ୱର ଛାଡିଦେଲି । ନିବେଦିତା ହଷ୍ଟେଲ୍‌କୁ ବି ଭୁଲିଗଲା । ହେଲେ ସ୍ମିତାର ସେହି କେଇପଦ କଥା ଆଦୌ ଭୁଲି ପାରିଲି ନାହିଁ । ମୋର "କର୍ମଜୀବୀ

ମହିଳା ହଷ୍ଟେଲ୍" (ଗଙ୍ଗାସ୍ନାନ ଗଳ୍ପ ସଂକଳନରେ ସଂକଳିତ) ଗପଟି ତାକୁ ନେଇ ହିଁ ଲିଖିତ । ସେଠି ତା ନାଁ ହୋଇଛି ରୀତା । ସ୍ମିତା ସହିତ ୧୯୮୫ ପରେ ଆଉ ଦେଖା ହୋଇ ନାହିଁ । ଏବେ ସେ କେଉଁଠି କଣ କରୁଛି ତା' ବି ମୋତେ ଜଣା ନାହିଁ । ହାୟ, ସେ କଣ କେବେ ଜାଣିପାରିବ ତାକୁ ବଞ୍ଚାଇ ରଖିବା ପାଇଁ ପରବର୍ତ୍ତୀ ସମୟରେ ମୋତେ କେତେ ଚେଷ୍ଟା କରିବାକୁ ପଡିଛି ! ରାତି ରାତି ଅନିଦ୍ରା ରହି ଚିନ୍ତା କରିବାକୁ ହୋଇଛି ! ମୁଁ ଜାଣେ ଏଭଳି ଚରିତ୍ରମାନେ କେବେ ଦୟା, ସହାନୁଭୂତିର ଅପେକ୍ଷା ରଖନ୍ତି ନାହିଁ । ମୋର ସହାନୁଭୂତି କି ଦରଦ ତା ଜୀବନରେ କିଛି ବି କାମରେ ଲାଗିବ ନାହିଁ । ସବୁଠୁ ଦୁଃଖର ବିଷୟ ହେଲା ଏଭଳି ପାଶବିକତା କି ବିପର୍ଯ୍ୟୟର ଶିକାର ହେଉଥିବା ଝିଅମାନଙ୍କୁ ପତ୍ନୀର ମର୍ଯ୍ୟାଦା ଦେବାକୁ କେତେଜଣ ପୁରୁଷ ଆଗେଇ ଆସନ୍ତି ? ସାହାରା ଦେବାକୁ ଆନ୍ତରିକ ହାତ ବଢାନ୍ତି ? କେତେଜଣ ପୁଅର ବାପା ମାଆ ଏଇ ଝିଅମାନଙ୍କୁ ବୋହୂ କରିନେବାରେ ଆଗ୍ରହ ପ୍ରକାଶ କରନ୍ତି ? କେତେଜଣ ଚିନ୍ତା କରନ୍ତି ଏ ଝିଅମାନଙ୍କର ପ୍ରକୃତରେ ଦୋଷ କ'ଣ ? ଏମାନଙ୍କର ଏଭଳି ଅବସ୍ଥା କରିଥିବା କାପୁରୁଷଙ୍କ ଦେହରେ ତ କଳଙ୍କ ଲାଗେ ନାହିଁ ? ସେମାନେ ତ ବେଶ୍ ବେଦୀରେ ବସି ସୁନ୍ଦରୀ, ଉଚ୍ଚ ଶିକ୍ଷିତା ଝିଅକୁ ବାହା ହୋଇ ପଡନ୍ତି । ସମାଜ ବାଛନ୍ଦ କରେ ନାହିଁ କି ଝିଅ ଦେବାକୁ ବାପାମାଆ ଦ୍ୱିଧା ପ୍ରକାଶ କରନ୍ତି ନାହିଁ ? ଜଣେ ଧର୍ଷିତା ସହିତ ତେଲଲୁଣ ସଂସାର ପାତିଲା ବେଳେ ସ୍ୱାମୀ କ'ଣ କେବେ ଚିନ୍ତାକରେ ଆଉ ଏକ ନିରିହା, ଅସହାୟ ଝିଅର କଥା ? ଅଥଚ ଆଦୌ ଦୋଷ କରିନଥିବା ନିର୍ଯ୍ୟାତିତା ଝିଅଟି ପାଇଁ କାହିଁକି ବରମିଳେ ନାହିଁ ? କାହିଁକି ସମାଜ ଲକ୍ଷ୍ମଣର ତିନିଗାର ଟାଣିଦିଏ ? ତାହାହେଲେ ଝିଅଜନ୍ମ ହେବାଟା କଣ ଅଭିଶାପ ? ଭ୍ରୁଣ ହତ୍ୟା କରିବା ଠୁ ଆରମ୍ଭ କରି ବଧୂ ହତ୍ୟା ଯାଏ କେତେ କେତେ ଲମ୍ବା ସଂଘର୍ଷ ତା ପାଇଁ ଠିଆ ହୋଇଥାଏ ? ଏହାର କି ସମାଧାନ ନାହିଁ ? ସମାଜର ଏଭଳି ପକ୍ଷପାତ ରୀତିନୀତି ଦେଖିଲେ ମୋର ଆତ୍ମା ବିଦ୍ରୋହ କରି ଉଠେ । ଆମ ପୁରୁଷ କୈନ୍ଦ୍ରିକ ସମାଜ କେତେ ଭାବରେ ନାରୀକୁ ଶୋଷଣ କରି ନ ଆସିଛି ସତରେ !

କହିବା ବାହୁଲ୍ୟ ଆଜି ଆମେ ଉଚ୍ଚଶିକ୍ଷିତା, ସ୍ୱାଧୀନଚେତା, କର୍ମଜୀବୀ ବୋଲି ଯେତେ ଯାହା ପ୍ରଚାର କଲେ ହେଁ ସତରେ ଆମର ବ୍ୟକ୍ତିଗତ ସ୍ୱାଧୀନତା, ଅଧିକାର ସାବ୍ୟସ୍ତ ହୋଇ ପାରିଛି ? ନା ଆମେ ପ୍ରକୃତରେ ପୁରୁଷଭଳି ସମାନ ଅଧିକାର ପାଇ ପାରିଛୁ ? ତାହେଲେ ଏକୁଟିଆ ଯିବାକୁ କାହିଁକି ଡରୁଛ ? କାହିଁକି ଠିକ୍ ସମୟରେ ଝିଅଟି ସ୍କୁଲ୍, କଲେଜ୍‌ରୁ ଟ୍ୟୁସନ୍‌ରୁ କି ଚାକିରୀ କ୍ଷେତ୍ରରୁ ନ ଫେରିଲେ ବାପା, ମାଆ, ଆତ୍ମୀୟ ସ୍ୱଜନ ନାନା ଆଶଙ୍କାରେ ଆଶଙ୍କିତ ହୋଇ ଉଠୁଛନ୍ତି ? ଆଜି ବି ନାରୀ ପୁରୁଷର ଆଦିମ

କାମନାର ଏକ ସମାଗ୍ରୀ ବା ଉପଭୋଗର ଏକ ରକ୍ତମାଂସର ଖେଳଣା । କେବେ ପରିବର୍ତ୍ତନ ଆସିବ ? କେବେ ଗାନ୍ଧିଜୀଙ୍କ କହିବାନୁସାରେ ଝିଅଟିଏ ରାତି ବାରଟାରେ ସୁରକ୍ଷିତ ଭାବରେ ଚଲାବୁଲା କରି ପାରିବ ? କେବେ ସମଗ୍ର ନାରୀଜାତି ଏକ ନୂଆ ସକାଳର ସନ୍ଧାନ ପାଇବ ? ବାସ୍ତବିକ "In the shadows of night man infits woman to sin. But in full day light he disowns the sin and fair sinner" ଏହାଠାରୁ ପରିତାପର ବିଷୟ ଆଉ କଣ ହୋଇପାରେ ?

ତଥାପି ମୁଁ ବଡ଼ ଆଶାବାଦୀ ଯେ ଦିନେ ନା ଦିନେ ନାରୀର ଏ ଅବସ୍ଥା ନିଶ୍ଚେ ବଦଳିଯିବ । ହେଲେ ମୋ ମୃତ୍ୟୁର କେତେ ଶହ କି କେତେ ହଜାର ବର୍ଷ ପରେ ତାହା କିନ୍ତୁ ମୋତେ ଜଣା ନାହିଁ ।

ଆଉ ଏକ ଚରିତ୍ର ମୋ ଜୀବନରେ ।

ମୁଁ ଆଇ.ସି.ଡି.ଏସ୍‌ରେ ସୁପର ଭାଇଜର ଭାବରେ କେତେମାସ କାମ କରିଥିଲି । ଜୟେନ୍ କଲାପରେ ଭୁବନେଶ୍ୱରଠାରେ SIRD Trainig Centerରେ ଆମର ଟ୍ରେନିଂ ପଡିଲା । ସେତେବେଳେ ମୋର ସେଠି ରୁମ୍‌ମେଟ୍ ହୋଇଥିଲେ ସ୍ୱାତୀ କବି । ସେ ମୋର ବାଣୀ ବିହାରର ଜଣେ ସାଙ୍ଗ· ସାବିତ୍ରୀ କବିର ବଡ଼ ଭଉଣୀ ଥିଲେ । ଆମର ଟ୍ରେନିଂ ସରିବାର ଅଳ୍ପଦିନ ଅଛି ତାଙ୍କର ପାଗଳାମି ବାହାରିଲା । ତାଙ୍କୁ ରାଞ୍ଚି ନିଆଗଲା । ସେ ପର୍ଯ୍ୟନ୍ତ ମଧ୍ୟ ମୁଁ ଜାଣିନଥିଲି ଆଗରୁ ସେ ରାଞ୍ଚି ପାଗଳଖାନାରେ ରହି ଭଲ ହୋଇ ଆସିଥିଲେ ବୋଲି । ଅଥଚ ତାଙ୍କ ସହ ଏକାଠି ପ୍ରାୟ ଦୁଇମାସ ଗୋଟିଏ ରୁମ୍‌ରେ ରହିଥିଲି । ଯଦିଓ ତାଙ୍କର ବିଚିତ୍ର ବ୍ୟବହାର ବେଳେବେଳେ ମୋତେ କେମିତି ସନ୍ଦେହରେ ପକାଉଥିଲା । କେତେବେଳେ ସେ ଖୁବ୍ ସ୍ନେହରେ ଗେଲ କରି ପକାଉ ଥିଲେ ତ କେତେବେଳେ ଗପୁଥିଲେ ଯେ ଆଉ ଗପ ସରିବାର ନଥିଲା । ପୁଣି ଥରେ ଯଦି ହସିବାକୁ ଆରମ୍ଭ କରୁଥିଲେ ତ ସେ ହସ ବନ୍ଦ ହେଉନଥିଲା । ଦେଖିବାକୁ ସେ ବେଶ୍ ସୁନ୍ଦରୀ ଥିଲେ । ଅଥଚ ଭଗବାନ୍ କାହିଁକି ତାଙ୍କୁ ଏଭଳି କଲେ କେଜାଣି । ସେଥିପାଇଁ ତ ଭଗବାନଙ୍କର ଏହି ବିଚିତ୍ର ଲୀଳା ବିରୋଧରେ ମନରେ ବିଦ୍ରୋହ ଜାଗେ ।

ଥରେ ମୁଁ ଓପର ବେଳା ଶୋଇ ପଡିଥାଏ । ଉଠିଲାବେଳକୁ ଦେଖିଲି ଡବାରେ ଯାହା ଚିନି ଥିଲା ତାକୁ ଢାଳି ବାଲ୍‌ତିରେ ସରବତ୍ କରୁଛନ୍ତି । ଆଶ୍ଚର୍ଯ୍ୟ ହୋଇ ପଚାରିଲି ଏତେ ସରବତ୍ ? କିଏ ପିଇବ ? ସେ ଚିଡିଗଲେ । ସେ ସବୁ ପୁଣି ଟ୍ରେନିମାନଙ୍କ ମଧ୍ୟରେ ବଣ୍ଟାଗଲା ।

ଆମେ ମାର୍କେଟ୍ ବିଲ୍‌ଡିଂ ଯାଇଥାଉ କିଛି କିଣାକିଣି କରିବାକୁ । ଦରମା

ମିଳିଥାଏ । କିଣୁ କିଣୁ ଦେଖିଲି ସ୍ୱାତୀନାନୀ ନାହାନ୍ତି । ଗଲେ କୁଆଡେ ? ବହୁତ ଖୋଜା ଖୋଜି କଲୁ । ପାଇଲୁ ନାହିଁ । ବହୁ ସମୟ ପରେ ହଷ୍ଟେଲ୍‌ରେ ପହଞ୍ଚି ଦେଖିଲା ବେଳକୁ ସେ ହଷ୍ଟେଲ୍‌ରେ । ସବୁ ଦରମା ଟଙ୍କାରେ ମିଲଟନ୍‌ର ବିଭିନ୍ନ କୁକିଙ୍ଗ୍ ସେଟ୍‌ଠୁ ଆରମ୍ଭ କରି ସରବତ୍ ସେଟ୍, କପ୍‌ପ୍ଲେଟ୍, ଡାଇନିଂ ଟେବୁଲ୍‌ର ଜିନିଷମାନ କିଣି ରିକ୍ସା କରି ପଳାଇ ଆସିଛନ୍ତି । ପୁଣି ସେସବୁ ଜିନିଷ ରୁମ୍‌ରେ ନରଖି ଆଉ ଜଣକ ରୁମ୍‌ରେ ଲୁଚାଇ ରଖି କହିଛନ୍ତି, କବିତା ବାହାହେବ ତ । କାଲେ ଏ ସବୁ ସିଏ ତା ଶାଶୁ ଘରକୁ ନେଇଯିବ ତେଣୁ ତମ ରୁମ୍‌ରେ ରଖିଥାଅ ।

ଦିନେ ଶୋଇଛି ହଠାତ୍ କାହା ସ୍ପର୍ଶରେ ଚଉଙ୍କି ନିଦଟା ଭାଙ୍ଗିଗଲା । ରାତି ଦୁଇଟା ପାଖାପାଖି ହେବ । ଦେଖିଲି ସ୍ୱାତୀନାନୀ ନିଜ ଖଟରେ ନ ଶୋଇ ମୋ ଖଟକୁ ଉଠି ଆସି ମୋ ପାଖରେ ବସି ମୋ ଉପରକୁ ଝୁଙ୍କିପଡି ଏକ ଲୟରେ ଚାହିଁ ରହିଛନ୍ତି ଆଖିରେ ପଲକ ପଡୁନାହିଁ । ମୋତେ ଭୀଷଣ ଡର ଲାଗିଲା । ଭାବିଲି ସେ ଏବେ ମୋ ଗଳା ଚିପି ଦେଲେ ବି ମୁଁ ଉଠିପାରିବିନି କି ଚିତ୍କାର କରିପାରିବିନି । ଡରି ଡରି କହିଲି, ତମେ ଶୋଇନା ? ଏତେ ରାତିରେ କ'ଣ ଦେଖୁଛ ? ସେ ଗେହ୍ଲେଇ ହୋଇ କହିଲେ, ତମକୁ ।

ମୋତେ ?

ହଁ, ତମକୁ । ତମେ ଶୋଇଲାବେଳେ କେତେ ଶାନ୍ତ, ସୁନ୍ଦର ଦିଶୁଥିଲ ତାକୁ ଇ ମୁଁ ନଇଁପଡି କେତେବେଳୁ ଦେଖୁଛି । ମୋତେ ସେତେବେଳେ ସେ ବଡ଼ ଅସ୍ୱାଭାବିକ, ଆବ୍‌ନର୍ମାଲ୍ ଲାଗୁଥିଲେ । ତା ପରଠୁ ମୁଁ ଆଉ ଜଣକୁ ଅଲଗା ରୁମ୍‌ରୁ ଡାକି ତିନିଜଣ ଶୋଇଥିଲୁ ।

ଟ୍ରେନିଂ ସରିବାକୁ ଅଳ୍ପଦିନ ଅଛି ଓ ପରୀକ୍ଷା ପାଇଁ ପ୍ରାକ୍‌ଟିକାଲ୍ ଲାଗି ଆମେ ଲାଗିପଡିଥିଲା ବେଳେ ହଠାତ୍ ଦିନେ ହଷ୍ଟେଲ୍‌ରୁ ସ୍ୱାତୀନାନୀ ଫେରାର- ହୋଇଗଲେ । ସାରା ହଷ୍ଟେଲ୍ ଉପରୁ ତଳୁ ଯାଏଁ ଖୋଜାଗଲା । ଭୁବନେଶ୍ୱରରେ ତାଙ୍କର ଯିଏ ସବୁ ଜଣାଶୁଣା ଖବର ନିଆଗଲା । କେଉଁଠି ମିଳିଲେ ନହିଁ । ଟ୍ରେନିଂ ହଷ୍ଟେଲ୍‌ର ସୁପରିଟେଣ୍ଡେଣ୍ଟଙ୍କ ବ୍ଲଡ୍ ପ୍ରେସର ବଢିଗଲା । ସେଇଠୁ ତାଙ୍କ ଘରକୁ ଟ୍ରଙ୍କଲ୍ କରାଗଲା । ଜଣାପଡିଲା ଯେ ସେ କଟକରେ କେଉଁ ପ୍ରଫେସରଙ୍କ ମେଣ୍ଟାଲ୍ ପେସେଣ୍ଟ ବୋଲି । ସେ ପର୍ଯ୍ୟନ୍ତ ତାଙ୍କ ପାଗଳାମି କଥା କେହି ଜାଣିନଥିଲୁ କି ମୋ ବାନ୍ଧବୀ ସାବିତ୍ରୀ ମଧ ମୋତେ କିଛି ଜଣାଇ ନଥିଲା । ସେ ପ୍ରଫେସରଙ୍କ ପାଖକୁ କାଳେ ଯାଇଥିବେ ଭାବି ଫୋନ୍ କରାଗଲା । ସେଠି ବି ସେ ନଥିଲେ । ଶେଷରେ ନିକଟସ୍ଥ ଇଞ୍ଜିନିୟରିଂ କଲେଜ୍‌ର ଲେଡିଜ୍ ହଷ୍ଟେଲ୍‌ରେ କେଉଁ ସାଙ୍ଗ ପାଖରେ ପହଞ୍ଚିଛନ୍ତି ବୋଲି ଦୁଇଦିନ ପରେ

ଜଣାପଡ଼ିଲା । ଜିପ୍ ନେଇ ପ୍ରିନ୍‌ସପାଲ୍ ଷ୍ଟାଫ୍‌ମାନେ ଜବରଦସ୍ତ ତାଙ୍କୁ ନେଇ ଆସିଲେ । ସେଠି ସେ ଦୁଇଦିନ ହେଲା କାହାକୁ ପଢ଼ାଇ, ଶୁଆଇ ଦେଉନଥିଲେ । ହସୁଥିଲେ ତ ହସୁଥିଲେ । ବକର ବକର ହେଉଥିଲେ ତ ବନ୍ଦ ହେଉନଥିଲା । ଅଧ୍ୟାପକମାନଙ୍କ ସହିତ ମୁଁ ବି ଯାଇଥିଲି ତାଙ୍କୁ ଆଣିବାକୁ । ତାଙ୍କ ଲୁଗାପଟା ସମ୍ଭାଳି, ଚପଲ୍ ଧରି ତାଙ୍କୁ ଜିପ୍‌ରେ ଚଢ଼ାଇଲା ବେଳେ ସେ ମୋ ଉପରେ ଭୀଷଣ କ୍ଷୁବ୍ଧ ହୋଇ ଉଠୁଥିଲେ । ପରେ ଗାଡ଼ି ନେଇ ତାଙ୍କ ଘର ଲୋକେ ଆସିଥିଲେ । ସବୁ ଜିନିଷ ତାଙ୍କର ପ୍ୟାକ୍ କରିଦେଇଥିଲି । ସେଠୁ ତାଙ୍କୁ ରାଞ୍ଚି ନିଆଯାଇଥିଲା । ସାର୍ ଓ ଟ୍ରେନିମାନେ କହୁଥିଲେ, କବିତା ! କେମିତି ତମେ ଦୁଇମାସ ତାଙ୍କ ସହ ରହିଥିଲ ? ରକ୍ଷା ହେଇଛି ତମ ଶୋଇବା ଅବସ୍ଥାରେ ସେ ଗଳା ଚିପି ଦେଇ ନାହାନ୍ତି । ପୁଣି ଜଣେ ମନସ୍ତତ୍ତ୍ୱ ଅଧ୍ୟାପକ ସାର୍ କହିଲେ ତମ ପାଖରେ ତାଙ୍କୁ ଭଗବାନ୍ କାହିଁକି ଜୁଟେଇଲେ ଜାଣ ? ତମର ଅନୁଭୂତିକୁ ବଢ଼ାଇବା ପାଇଁ । ନଚେତ୍ ପାଗଳମାନଙ୍କ ମାନସିକତାକୁ ନେଇ ଗପ ଲେଖିବ କେମିତି ?

ସେ ଛଅ ସାତ ମାସ ପରେ ରାଞ୍ଚିରୁ ଭଲ ହେଇ ଜୟେନ୍ କରିବା କଥା ଶୁଣିଥିଲି କିନ୍ତୁ ସେତେବେଳକୁ ଚାକିରିରୁ ରିଜାଇନ୍ କରି ମୁଁ ଉଦଳା କଲେଜ୍‌ର ସିଲେକ୍ସନ୍ ବୋର୍ଡ ଦ୍ୱାରା ମନୋନୀତ ହେଇ ଜୟେନ କରି ସାରିଥିଲି । ସ୍ୱାତୀନାନୀ ଭଲ ହେଲାପରେ ମୋ ନୂତନ କର୍ମସ୍ଥଳୀ ଠିକଣାରେ ସୁନ୍ଦର ଚିଠିଟେ ଲେଖିଥିଲେ । ମୋତେ ତାଙ୍କ ବ୍ୟବହାର ପାଇଁ କ୍ଷମା ମାଗିଥିଲେ । ତାଙ୍କର ସବୁ ଜିନିଷ ଗୋଟି ଗୋଟି କରି ପ୍ୟାକ୍ କରି, ତାଙ୍କୁ ଲୁଗାପଟା ଠିକ୍ କି ପିନ୍ଧାଇ, ସଜାଡ଼ି ସେ ସମୟରେ ପଠାଇ ଦେଇଥିବା ଯୋଗୁଁ ଚିଠିରେ କୃତଜ୍ଞତା ଜଣାଇଥିଲେ ।

ବେଳେବେଳେ ତାଙ୍କ କଥା ମନେପଡ଼େ । ବେଶି ମନେ ପଡ଼େ ସେଦିନ କଥା, ଯେଉଁଦିନ ଅନ୍ଧାରରେ ସେ ତାଙ୍କ ବିଛଣା ଛାଡ଼ି ମୋ ଖଟରେ ବସି ନଇଁ ପଡ଼ି ମୁଁ ଶୋଇପଡ଼ିଥିବା ଅବସ୍ଥାରେ ଏକ ଲୟରେ ଚାହିଁ ରହିଥିଲେ । ମନେ ପଡ଼େ ବି ସେହି ଇଞ୍ଜିନିୟିରିଂ ଲେଡିଜ୍ ହଷ୍ଟେଲ୍ କଥା ଯେଉଁଠି ସେ ଯାଇ ଲୁଚିଥିଲେ । ତାଙ୍କୁ ଧରି ଆଣୁଥିଲା ବେଳେ ସେ ମୋତେ ମାରିବା ପାଇଁ ମୋ ଗଳା ଚିପି ଧରିବା ପାଇଁ ହାତ ବଢ଼ାଇଥିଲେ ।

ଏବେ କେମିତି ଅଛନ୍ତି ସ୍ୱାତୀନାନୀ କେଜାଣି ? ୧୯୮୮ ପରେ ସେହି ଯେ ଠାକୁର ମୁଣ୍ଡା ଛାଡ଼ି ଆସିଲି ଆଉ ଯାଇ ନାହିଁ କି ତାଙ୍କ ଖବର ସେମିତି କିଛି ଜାଣିନାହିଁ । ଶୁଣିଥିଲି ବାହା କରି ଦେବା ପାଇଁ ଘରଲୋକେ ଚେଷ୍ଟା ଚଳାଇଥିଲେ । କଣ ହେଲା ତାପରେ ଆଉ କିଛି ଖବର ପାଇପାରି ନାହିଁ । ସେ ଯେଉଁଠି ଥାଆନ୍ତୁ ଭଲରେ, ସୁସ୍ଥରେ

ଗୁହନ୍ତୁ । ବାସ୍ତବିକ ହୃଦୟରେ ସେ ବେଶ୍ ସରଳ, ସୁନ୍ଦର ଝିଅଟେ ଥିଲେ । ମୋ ସାଙ୍ଗର ବଡ଼ ଭଉଣୀ ବୋଲି ତାଙ୍କୁ ଯେମିତି ମୁଁ ସମ୍ମାନ କରୁଥିଲି, ସୁସ୍ଥ ଥିଲା ବେଳେ ସେ ବି ତାଙ୍କ ସାନ ଭଉଣୀର ସାଙ୍ଗ ବୋଲି ମୋତେ ସେତେ ସ୍ନେହ ଆଦର କରୁଥିଲେ । ତାକୁ ନେଇ କିଛି ଲେଖିବାକୁ ଚେଷ୍ଟା କରିଛି କିନ୍ତୁ ଲେଖିପାରି ନାହିଁ । କାହିଁକି କେଜାଣି କଲମ ଚାଲିନାହିଁ । ଜୀବନର ସବୁ ଘଟଣା କି କାହାଣୀ ବନିପାରେ ?

× × × × ×

ସେହି SIRD ଟ୍ରେନିଂ ସେଣ୍ଟରରେ ଆଉ ଜଣେ ଝିଅ ସୁପର ଭାଇଜର ଟ୍ରେନିଂ ନେବାକୁ କୋରାପୁଟ୍‌ରୁ ଆସିଥିଲା । ନାଁ ଥିଲା ପ୍ରତିମା ରାଉଳ । ସେ ମୋର ଜଣେ ବିଶେଷ ପାଠିକା ଥିଲା । ମୋର ସେତେବେଳେ ସୁଚରିତାରେ, ଝଙ୍କାର, ଇସ୍ତାହାରରେ ପ୍ରାୟ ଗଳ୍ପ ସବୁ ପ୍ରକାଶ ପାଉଥିଲା । ଯେତେବେଳେ ସେ ଜାଣିଲା ଯେ ମୁଁ ତାର ସେହି ପ୍ରିୟ ଗାଳ୍ପିକା କବିତା ବାରିକ ବୋଲି, ସେଦିନ ସେ ଟେକି ଧରି ଏଭଳି ଭାବରେ ଆନନ୍ଦରେ ଘୁରାଇବାରେ ଲାଗିଥିଲା ଯେ ଅନ୍ୟ ଝିଅମାନେ ଆଶ୍ଚର୍ଯ୍ୟ ହେଇ ଯାଇଥିଲେ । ମୋ ଲେଖା ଯେ ଏମିତି କାହାକୁ ପାଗଳ କରିପାରେ ଓ ସେ ଯେ ମୋତେ ଏମିତି ଭଲପାଇପାରେ ଜାଣି ବିସ୍ମିତ ହୋଇଥିଲି । ପ୍ରତିମା ମୋର ଜୁନିୟର ଥିଲା । ସେହି କେଇମାସ ଟ୍ରେନିଂ ସମୟରେ ସେ ଛାଇ ଭଳି ମୋ ସହିତ ରହୁଥିଲା । ମୋତେ ଚା କରି ଦେବା ଠାରୁ ଜିନିଷପତ୍ର ସଜଡାସଜଡି, ମାର୍କେଟିଂ କରିବା, ବୁଲିବାରେ ଆନନ୍ଦ ପାଉଥିଲା । ମୋର ବ୍ୟକ୍ତିତ୍ୱ, କାର୍ଯ୍ୟାବଳୀ, ଲେଖା ସବୁକିଛି କୁଆଡେ ତାକୁ ଭଲ ଲାଗୁଥିଲା । ସେଇଠୁ ଶୁଣିଲି ସେ ଜଣକୁ ଭଲପାଏ । ଉଭୟଙ୍କ ଘରେ କେହି ବି ରାଜି ନୁହନ୍ତି । ବିଶେଷକରି ଜାତି ହିଁ ସାଜିଛି ବାଧକ । କିନ୍ତୁ ପଙ୍କଜ (ସେ ପିଲାଟିର ନାଁ) ତାକୁ ଯେମିତି ହେଲେ ନିଜର କରିବାକୁ ଚାହେଁ ।

ଥରେ ସେ କହିଲା, କବିତା ଅପା ! ତମେ ପୁଅ ନହେଲ କାହିଁକି ? ସତ କହୁଛି ଯଦି ପୁଅ ହେଇଥାନ୍ତ ପଙ୍କଜର ଭଲପାଇବାକୁ ପ୍ରତ୍ୟାଖାନ କରି ମୁଁ ତମକୁ ବାହା ହେଇଥାନ୍ତି । ମୁଁ ହସି ପକାଇ କହିଲି ଦୂର୍- ପାଗଳୀ ! ଏମିତି କ'ଣ କୁହାଯାଏ ? ତା ଛଡା ପୁଅ ହେଇଥିଲେ ମୁଁ ଯେ ତୋତେ ବାହାହେଇଥାନ୍ତି ତା'ର କିଛି ମାନେ ଅଛି ? ମୋର ବି କେତେ ପ୍ରେମିକା ହୋଇଯାଇଥାନ୍ତେ ନା ।

କାହିଁକି ନୁହେଁ, କଣ ପାଇଁ ମୋତେ ବାହା ହେଇ ନଥାନ୍ତ କହି ସେ ପିଲାଙ୍କ ଭଳି ମିଛରେ କାନ୍ଦିବା ଆରମ୍ଭ କରିଦେଇଥିଲା । ଟ୍ରେନିଂ ସରିବା ଆଗରୁ ସେ ମୋ ସହିତ ମନଇଚ୍ଛା ଫଟୋ ଉଠାଇଥିଲା । ଗଲାବେଳେ ମୋତେ କେତେଟା ଫଟୋ ଦେଇ ବାକିସବୁ

ନେଇ ଯାଇଥିଲା । ବିଦାୟ ବେଳେ ତା'ର ଯେ କି କାନ୍ଦ । ଆଉ ଦେଖା ହେବ କି ନାହିଁ ଏହି ସନ୍ଦେହରେ ସେ କାନ୍ଦୁଥିଲା । ମାତ୍ର ତିନିମାସର ପରିଚୟ । ସେ କୋରାପୁଟର ଝିଅ ମୁଁ ମୟୂରଭଞ୍ଜର ଝିଅ । ଦୁହିଁଙ୍କ ଭିତରେ ଯୋଜନ ଯୋଜନ ଦୂରତ୍ୱ । ତେଣୁ ଦେଖା ନହେବା ସ୍ୱାଭାବିକ । ବିଦାୟ ପରେ ସେ ଲମ୍ବା ଲମ୍ବା ଚିଠି ଲେଖିଥିଲା । ମୁଁ କୁଆଡେ ସବୁବେଳେ ତାର ମନେ ପଡୁଛି । ମୋ କଥା ସେ ପଙ୍କଜ ଆଗରେ ଏତେ ଗପୁଛି ଯେ ପଙ୍କଜ କହିଲେଣି ତମେ ତମ କବିତା ଅପାଙ୍କ ପ୍ରେମରେ ପଡିଯାଇଛ । ପଙ୍କଜ କୁଆଡେ ମୋତେ ଈର୍ଷା କରିବାକୁ ଆରମ୍ଭ କଲେଣି ମୁଁ ତାଙ୍କ ଭଲ ପାଇବାରେ ଭାଗ ବସାଇଛି ବୋଲି ।

ହଠାତ୍ ଦିନେ ପ୍ରତିମା ଚମକାଇ ଦେଇ ଲେଖିଥିଲା ସେ ଓ ପଙ୍କଜ ମନ୍ଦିରରେ ବାହା ହେଇ ଯାଇଛନ୍ତି । ଉଭୟଙ୍କ ଘରୁ କେହି ଆସିନାହାନ୍ତି କେବଳ ସାଙ୍ଗମାନଙ୍କ ବ୍ୟତୀତ । ସେ ବାହାଘରେ ବାଜା ନଥିଲା କି ସାହାନାଇ ନଥିଲା । ଅଥଚ ପିଲା ଦିନରୁ ବେଦୀରେ ବସି ଦୁହ୍ଲୋନ୍ ସାଜିବ ବୋଲି ତାର କୁଆଡେ ଅନେକ ସ୍ୱପ୍ନ ଥିଲା । ସେ ଦୁହିଁଙ୍କୁ ବୁଝାଇ, ଉପଦେଶ, ଆଶୀର୍ବାଦ ଜଣାଇ ମୋତେ ଚିଠିଟିଏ ଲେଖିବାକୁ ପଡିଥିଲା । ସେ ମୋ ଚିଠି ପାଇବା ମାତ୍ରେ ବିଳମ୍ବ ନକରି ଲମ୍ବା ଲମ୍ବା ଚିଠି ଲେଖୁଥିଲା ଓ ନିଜ ମନର ବ୍ୟଥା ଭାବନାକୁ ବ୍ୟକ୍ତ କରୁଥିଲା । ଏ ସମ୍ପର୍କକୁ ମୁଁ ହିଁ ରଖିପାରିନଥିଲି । ଆଜିଭଳି ଫୋନ୍ ମୋବାଇଲ୍ ବ୍ୟବସ୍ଥା ନଥିଲା । କେହି କାହା ନଂ କି ଠିକଣା ରଖି ପାରିନାହୁଁ । ତେବେ ପତ୍ର ପତ୍ରିକା ଓଲଟାଇଲେ ପ୍ରତିମା ତ ମୋ ଠିକଣା ପାଇପାରନ୍ତା । ଅବଶ୍ୟ ସେ ଏବେ ପତ୍ରପତ୍ରିକା ପଢେ କି ନା କେଜାଣି ।

ଆଜି ବି ଆଲ୍‌ବମ୍ ଓଲଟାଇଲେ ପ୍ରତିମା ମନେପଡେ ଓ ତାର ଭଲପାଇବା ଫର୍ଦ୍ଦ ଫର୍ଦ୍ଦ ଚିଠି ପାଲଟିଯାଏ ମୋ ଆଗରେ । ମୁଁ ଜାଣେ ମୋ ଗପ ସହ ମୋ ଠିକଣା ସହ ତା'ର ବାରମ୍ବାର ସାକ୍ଷାତ ହେଉଥିବ । କିନ୍ତୁ ଅଭିମାନରେ ସେ ଚିଠି ଦେଇନାହିଁ । ମୁଁ ବି ତାକୁ ଭୁଲିନାହିଁ । ମୋର ଅନେକ ପାଠିକାଙ୍କ ଭିତରୁ ସେ ଜଣେ ନିଆରା ପାଠିକା । ନହେଲେ ଏତେବର୍ଷ ପରେ ତା ସମ୍ପର୍କରେ ଆଜି ଲେଖି ପାରିଥାନ୍ତି କିପରି ?

× × × × ×

ବାନ୍ଧବୀ ବନଲତା ମୋ ଜୀବନର ଅନ୍ୟ ଏକ ପୃଷ୍ଠା । କିନ୍ତୁ ସେ ପୃଷ୍ଠା ଏକ ମୂଲ୍ୟବାନ୍ ପୃଷ୍ଠା । ବନଲତା ଭଳି କୋମଳହୃଦୟା, ଆଡ୍‌ଜଷ୍ଟିଭ୍ ଝିଅ ଖୁବ୍ କମ୍ ଥିବେ । ମୋତେ ସେ ଏତେ ଭଲ ପାଉଥିଲା ଯେ ତା ଭଳି ବାନ୍ଧବୀଟେ ପାଇ ମୁଁ ବି କିଛି କମ୍ ଗୌରବାନ୍ୱିତା ହେଇନାହିଁ । ସେ ମୋର ସ୍କୁଲ୍, କଲେଜ୍ ଜୀବନର ବାନ୍ଧବୀ,

ବିଜ୍ଞାନର ଛାତ୍ରୀ ଥିବାରୁ କଲେଜ୍ ଜୀବନରେ ଏତେଟା ବନ୍ଧୁତ୍ୱ ନଥିଲା । ଏମ୍.ଏ. କଲାବେଳେ ତା ସହିତ ଆଉ ଦେଖା ହୋଇ ନଥିଲା । ଏ ଭିତରେ ସାତ ଆଠ ବର୍ଷ ବି ପାରି ହୋଇଯାଇଥିଲା । ଅନେକ ପଢା ସାଥୀଙ୍କୁ ପାଶୋରି ପକାଇଲା ଭଳି ମୁଁ ବି ଅନେକଙ୍କ ଭିତରେ ଏଇ ବାନ୍ଧବୀଟିକୁ ଭୁଲି ଯାଇଥିଲି । କିନ୍ତୁ ଜୀବନରେ ସେ ଯେ ଏକା କଲେଜ୍‌ରେ ଜୟେନ୍ କରିବ ଓ ଆମେ ଦୁହେଁ ଏକାଠି, ଗୋଟାଏ ରୁମ୍‌ରେ ରହିବୁ ଏ କଥା କଣ କେବେ ଭାବିଥିଲୁ ?

ମୁଁ ଉଦଳା କଲେଜ୍‌ରେ ଜୟେନ୍ କଲା ପର ବର୍ଷ ବନଲତା ମହାନ୍ତି ଜୁଲୋଜିରେ ଅଧ୍ୟାପିକା ଭାବରେ ଜୟେନ୍ କଲା । ହଷ୍ଟେଲ୍ ଦାୟିତ୍ୱ ତୁଲାଇବା ସହ ଆମକୁ ଗୋଟାଏ ରୁମ୍ ରହିବା ପାଇଁ ମିଳିଲା । ସେଇଠୁ ସମ୍ପର୍କ ଘନିଷ୍ଠ ହେଲା । ପରସ୍ପର ସମ୍ପର୍କରେ ଜାଣିଲୁ, ପରସ୍ପରକୁ ବୁଝିଲୁ, ପରସ୍ପରର ମାନସିକତା ସହିତ ପରିଚିତ ହେଲୁ । ବିଜ୍ଞାନର ଛାତ୍ରୀ ହେଲେ ହେଁ କ୍ରମଶଃ ଅଳ୍ପଦିନ ଭିତରେ ସେ ମୋ ଗପର ମୁଗ୍ଧ ପାଠିକା ପାଲଟିଗଲା । ମୁଁ ଲେଖିଲାବେଳେ ସେ ଚା' ବନାଇ ଚୁପ୍‌ଚାପ୍ ମୋ ଟେବୁଲ୍‌ରେ ରଖି ଦେଉଥିଲା । ପ୍ରତି କ୍ଷେତ୍ରରେ ସେ ମୋତେ ଏତେ ଆଦର କରୁଥିଲା ଯେ ମୁଁ କୃତକୃତ୍ୟ ହେଇଯାଉଥିଲି । ଆମେ ପ୍ରତିଦିନ ସନ୍ଧ୍ୟାବେଳେ ଅନେକ ରାସ୍ତା ଚାଲିଚାଲି ଯାଉଥିଲୁ, ଏକାଠି ମାର୍କେଟିଂ କରୁଥିଲୁ, ରନ୍ଧାବଢା କରୁଥିଲୁ । କେବେ ଶାଳବଣର ଜଙ୍ଗଲ ତ କେବେ ପାଖରେ ଥିବା ଏକ ପୋଲ ନିକଟକୁ ଅଥବା କଲେଜ୍ ଭିତରେ ଥିବା ଉତ୍କଳମଣି ଗୋପବନ୍ଧୁଙ୍କ ମୂର୍ତ୍ତିତଳେ ବସୁଥିଲୁ । ତାରି ଭିତରେ ଭବିଷ୍ୟତର କେତେକେତେ ଯୋଜନା ତିଆରି ହେଉଥିଲା । କିଏ କେଉଁ ଆଡେ ଦିନେ ଚାଲିଯିବା । ମୋର ହିଁ କଲେଜ୍ ଛାଡି ଯିବାର ଥିଲା । କାରଣ ମୁଁ ପିଏସ୍ ସି ପାଇଯାଇଥିଲି । କେବଳ ପୋଷ୍ଟିଂକୁ ଅପେକ୍ଷା କରିଥିଲି ।

ଆମେ କୁବୁଲି ଲେଡିଜ୍ ହଷ୍ଟେଲ୍‌ର ସାମ୍ନାରେ ଥିବା ନିର୍ଦ୍ଦିଷ୍ଟ ଗଛତଳେ ଠିଆ ହୋଇ ବ୍ରସ୍ କରୁ । ସୀତା ଫୁଲଗଛ ସେଇଟାକୁ କହନ୍ତି । ଶୀତଦିନେ ମୁଠା ମୁଠା ଧଳା ଫୁଲ ବିଛେଇ ପଡୁଥିଲା । ତା ତଳେ ଏକ କୂଅ ଥିଲା । ତାର ପ୍ରଶସ୍ତ ଚାନ୍ଦିନୀରେ ବସିଥିଲା ବେଳେ ସକାଳର ନରମ ଖରା ଆମ ମୁହଁରେ ପଡୁଥିଲା । ଥରେ ମୋର ଭୀଷଣ ଦେହ ଖରାପ ହୋଇଥିଲା । ଜ୍ୱର ୧୦୫ରୁ କମୁନଥିଲା । ଯାହା ଖାଇଲେ ବାନ୍ତି ହୋଇଯାଉଥିଲା । ମୁଣ୍ଡ ଭୀଷଣ ବିନ୍ଧୁଥିଲା । ବନଲତା ରାତି ଅନିଦ୍ରା ରହି ମୋତେ ଜଗିଥିଲା । ବାରମ୍ବାର ଟେମ୍ପରେଚର ନେବା, ଡାକ୍ତରଙ୍କ ପାଖକୁ ଯିବା ଅଥବା ମୋତେ ଧରି ଧରି ହସ୍‌ପିଟାଲ୍ ନେଇଯିବା, ପଥ୍ୟ ତିଆରି କରିବା ଭଳି ଅନେକ କାମ କରୁଥିଲା । ସେଦିନ ବୁଝିଥିଲି ବିପଦବେଳେ ପ୍ରକୃତ ବନ୍ଧୁତ୍ୱର ମୂଲ୍ୟ । ବିରକ୍ତି ନାହିଁ, ପର ଭାବ

ନାହିଁ, କ୍ଳାନ୍ତି ନାହିଁ । ତାର ଆନ୍ତରିକତା, ନିଷ୍ପାପର ସେବା ମୋତେ ବିହ୍ୱଳ କରି ପକାଇଥିଲା । ଭଲ ହେଲାପରେ କହିଥିଲି- ଏତେ ସେବା କଲ ! ଆରଜନ୍ମରେ ତମ ଅଗଣାରେ ଲଙ୍କାଗଛଟେ ହେଇ ସୁଝାଇବି । ସେ ମୋ କଥା ଶୁଣି କହିଥିଲା, ଏମିତି କ'ଣ କହୁଛ କବିତା ? ମୋର ଭାଗ୍ୟ ଯେ ତମର ସେବା କରି ପାରିଲି । ଏତେବଡ଼ ଲେଖିକା ପାଇଁ କିଛି କରିବା ତ ମୋର ସୌଭାଗ୍ୟ । ତା ଛଡା ବାନ୍ଧବୀଟେ ବାନ୍ଧବୀର ଦୁର୍ଦ୍ଦିନରେ କାମରେ ଲାଗିବନି ତ ଆଉ କେତେବେଳେ ଲାଗିବ ?

ଉଦଳା କଲେଜରୁ ରିଜାଇନ୍ କରି ଯେବେ ବିଦାୟ ନେଲି ବନଲତା ହିଁ ପ୍ରଥମେ କାନ୍ଦିବା ଆରମ୍ଭ କରିଥିଲା । ତାକୁ ସାନ୍ତ୍ୱନା ଦେବାକୁ ଯାଇ ସେଦିନ ମୋ ଆଖି ବି ବନ୍ୟା ପାଲଟି ଯାଇଥିଲା । ଅଧ୍ୟାପିକା ହେଲା ପରେ ବି ଆମେ ଯେ ଏ ବୟସରେ ଚାକିରୀ ଜୀବନର ବିଦାୟକୁ ନେଇ କାନ୍ଦିପାରୁ ଆଶ୍ଚର୍ଯ୍ୟ ହୋଇଥିଲି । ବନଲତାକୁ ସମ୍ଭାଳିବାକୁ ଅନେକ ସମୟ ଲାଗିଥିଲା । ମୋତେ ଜଣେ ଏତେ ଭଲ ପାଇପାରେ ? ଜୀବନରେ ଟିକେ ସ୍ନେହ, ମମତା ଖୋଜୁଥିବା ସ୍ନେହ କାଙ୍ଗାଳି ଝିଅଟି ସତେ କି ପରିପୂର୍ଣ୍ଣ ହୋଯାଇଥିଲା ସେଦିନ । ଶେଷଥର ପାଇଁ ଆମେ ସେ ହଷ୍ଟେଲ୍ ରୁମ୍‌ରେ ଏକାଠି ଚା କପ୍ ଉଠାଇଥିଲୁ ।

ରାଉରକେଲାରେ ପାଇଲି ବନଲତାର ବାହାଘର କାର୍ଡ । କେଉଁ ବାନ୍ଧବୀର ବାହାଘର ପାଇଁ ଏତେ ଦୂରରୁ ଆସି ଯୋଗ ଦେଇନାହିଁ । ତା ବାହାଘରରେ ହିଁ ଆସି ଯୋଗ ଦେଇଥିଲି ଆଉ ରାତି ଅନିଦ୍ରା ରହିଥିଲି । ଆଜି ବି ସେ ସମ୍ପର୍କ ଅତୁଟ । ବନଲତା ଲେଖେ ତମ ଭଳି ବାନ୍ଧବୀଟେ ପାଇ ମୁଁ ନିଜକୁ ଗର୍ବିତ ମନେ କରେ । ଜୀବନରେ ଯେତେବଡ଼ ପୋଷ୍ଟରେ ଥାଅ, ଯେତେ ନାଁ କର ମୋତେ କେବେ ଭୁଲିବ ନାହିଁ କବିତା । ତମେ ଖୁବ୍ ନାଁ କର । ବଡ଼ ହୁଅ ଏଇ ଟିକକ କାମନା ଛଡା ତମ ବନି ଆଉ କ'ଣ କରିପାରେ ? ଅଥଚ ସେ କେମିତି ବୁଝିବ ଯେ ତା ଭଳି ବାନ୍ଧବୀଟେ ପାଇ ମୁଁ ନିଜେ କେତେ ଧନ୍ୟ ହୋଇଯାଇଛି । ବନ୍ଧୁତ୍ୱର ଏଇ ନିବିଡ଼ତା ଭିତରେ ସେଥିପାଇଁ ତ ମୋର ମନେ ହୁଏ ଆଜି ବି ଏ ପୃଥିବୀରୁ ଭଲପାଇବା ହଜିଯାଇ ନାହିଁ । ବନଲତା, ପ୍ରତିମା ଭଳି ବାନ୍ଧବୀମାନେ ଆଜିବି ଜନ୍ମ ନେଇଛନ୍ତି ଭଲ ପାଇବା ବାଣ୍ଟିବା ପାଇଁ ।

ବାସ୍ତବିକ ମୋତେ କିଛି ଭଲପାଉଥିବା ମଣିଷ ରହିଛନ୍ତି ବୋଲି ତ ମୁଁ ବଞ୍ଚି ରହିଛି । ପାଠକର ପ୍ରଶଂସା, ପ୍ରଶ୍ନବାଚୀ, ଆଶୀର୍ବାଦ, ଶୁଭକାମନା ନେଇ ଅନେକ ଚିଠି ଆସେ । ସେ ଚିଠିର ପୃଥିବୀ ଭିତରେ ପାଦ ଦେଲା ମାତ୍ରେ ମୁଁ ଭାବ ବିହ୍ୱଳ ହୋଇ ଯାଏ । ଏତେ ଭଲ ପାଇବା ? ଭଲପାଇବାର ଅମୃତଧାରା କଣ କେବେ ଶୁଖିପାରେ ! ସେଥିପାଇଁ ତ ଏବେ ବି ଫୁଲ ଫୁଟେ, ଆମ୍ବ ବଉଳର ଗହଳ ଭିତରେ କୋଇଲି ଡାକେ ।

ମେଘ ଦେଖି ମୟୂର ନାଚେ, ନାରୀ ପୁରୁଷ ପ୍ରେମିକା ପ୍ରେମିକ ସାଜନ୍ତି । ବିନା ସ୍ନେହ, ପ୍ରେମ, ଭଲପାଇବାରେ ବଞ୍ଚିବ କେମିତି ମଣିଷ ? ସେଥିପାଇଁ ସୃଷ୍ଟିକର୍ତ୍ତାଙ୍କ ପାଖରେ ପ୍ରାର୍ଥନା କରିଛି, ତମ ସଂସାରରେ ଏଇ ପ୍ରେମ, ଭଲପାଇବା ଟିକକକୁ ଏମିତି ବଞ୍ଚାଇ ରଖିଥାଅ ପ୍ରଭୁ । ଆମଭଳି ସ୍ନେହ କାଙ୍ଗାଳ ମଣିଷମାନଙ୍କୁ ଏ ଅମୃତରୁ କେବେ ବଞ୍ଚିତ କରିବ ନାହିଁ । ଜୀବନରେ ଅନେକ କିଛି ହରାଇଥିବା ମଣିଷଙ୍କ ପାଇଁ ତମେ ଏଇ ସ୍ନେହ, ପ୍ରେମର ଅମୃତଟିକକ ସଞ୍ଚି ରଖିଥାଅ ।

## ବାର

ମୋ ଚାକିରି ଜୀବନ...

ପାଠ ପଢିବା ପାଇଁ ଯେମିତି ସଂଗ୍ରାମ କରିଛି ସେମିତି ଚାକିରି କରିବା ପାଇଁ ମଧ ମୋ ସଂଘର୍ଷ କିଛି କମ୍ ନୁହେଁ । ମୋର କର୍ମମୟ ଜୀବନ ସିଧା ନୁହେଁ । ଅନେକ ବାଙ୍କ ଘୁରିଲା ପରେ ସରକାରୀ କଲେଜ୍‌ର ଅଧାପିକାଟେ ହୋଇଛି । ଅଧାପିକାଟିଏ ହେବାର ସ୍ୱପ୍ନ ଥିଲା ପଢିଲାବେଳୁ । ବହୁ ବିଳମ୍ବରେ ମୁଁ ମୋ ଲକ୍ଷ୍ୟସ୍ଥଳରେ ପହଁଞ୍ଚିଛି । ମୋର ତ ଧାରଣା ହୋଇଯାଇଥିଲା ଯେ ମୋ ସ୍ୱପ୍ନ କେବେ ବି ପୂରଣ ହେବ ନାହିଁ ବୋଲି । ତେବେ ଭଗବାନଙ୍କ ଇଚ୍ଛାକୁ କିଏ ଟାଳିପାରିବ ? ସିଧା ଅଧାପିକାଟେ ହେଇଥିଲେ ବୋଧହୁଏ ମୋର ଅନୁଭୂତିର ସୀମା ସଙ୍କୁଚିତ ହୋଇଯାଇଥାନ୍ତା । ସେଥିପାଇଁ ପ୍ରଭୁଙ୍କର କେତେ କେତେ ବିଚିତ୍ର ଲୀଳାଖେଳ । ଈଶ୍ୱର ଯାହା କରନ୍ତି ପ୍ରାଣୀଙ୍କର ମଙ୍ଗଳ ପାଇଁ ନ୍ୟାୟରେ ମୋତେ ସ୍ୱୀକାର କରିବାକୁ ପଡିବ ଏହି ଅଙ୍କାବଙ୍କା ରାସ୍ତା ହିଁ ମୋର ସାରସ୍ୱତ ଜୀବନକୁ ଅର୍ଥପୂର୍ଣ୍ଣ କରି ଦେଇଛି । ପଢାସରିଲା ପରେ ଦୁଇ ତିନୋଟି ପ୍ରାଇଭେଟ୍ କଲେଜ୍ ପାଇଁ ପୋଷ୍ଟାଲ୍ ଅର୍ଡର କିଣି ଇଣ୍ଟରଭ୍ୟୁ ଦେଇଛି । ଭଲ କ୍ୟାରିୟର୍ ଥାଇ, ସାକ୍ଷାତ୍‌କାରରେ ଖୁବ୍ ଭଲ କରି ମଧ ସମସ୍ତେ ଚାହିଁଛନ୍ତି ଡୋନେସନ୍ । କେତେ ହଜାର ଦେଇପାରିବ ? ପୁଣି ନିଜ ପଇସାରୁ ଦରମା ପାଇବ ତିନି କି ଚାରି ଶହ । ଡୋନେସନ୍ ଦେବାର ସାମର୍ଥ୍ୟ ତ ନଥିଲା ମୋର । ତା ଛଡା ନିଜ ସ୍ୱାଭିମାନକୁ ବାଧୁଥିଲା । ଏଇୟାତ ଚାଲିଛି । ମୋଟା ଅଙ୍କର ଡୋନେସନ୍ ଦେଇପାରିଲେ ସ୍କୁଲ୍, କଲେଜ୍‌ରେ ଏଡ୍‌ମିସନ୍ ହେବା ଠାରୁ ଚାକିରି ପାଇବା ଯାଏଁ କିଛି ବାଧା ରହେ ନାହିଁ । ଗରିବ, ମେଧାବୀ ଛାତ୍ରଛାତ୍ରୀଙ୍କ ପାଇଁ ସୁଯୋଗ କମ୍ । ସାଧାରଣ ଘରର ପିଲାଟିଏ ବର୍ତ୍ତମାନ ସମୟରେ ମେଡିକାଲ୍ ପାଇବି ଅର୍ଥ ଅଭାବରୁ ପଢି ପାରିବ ନାହିଁ । ତାକୁ ପଛରେ ପକାଇ ପୁଞ୍ଜିପତି, ସମାଜରେ ପ୍ରତିଷ୍ଠିତ, ବୈଭବଶାଳୀ ପିତାଙ୍କର ଅଯୋଗ୍ୟ ସନ୍ତାନମାନଙ୍କୁ ଡାକ୍ତରି, ଇଞ୍ଜିନିୟରିଂ, ବଡ଼ ବଡ଼ କମ୍ପାନୀମାନଙ୍କର

ମନେ ଅଛି ଥରେ 'ନାରୀ' ପୃଷ୍ଠାରେ ଆମ ଆରର ପ୍ରସ୍ତୁତି ସମ୍ପର୍କରେ ବାହାରିଥିଲା ଯେ ଘରେ ତିଆରି କରି ସେ ଅଫିସ୍‌କୁ ଆଣି ବାଣ୍ଟିଥିଲେ । କିଛିକାମ ଥିଲେ ମାଡାମ୍‌ଙ୍କ କ୍ୱାର୍ଟସକୁ ଗଲେ ଦେବେନ୍ଦ୍ର ସାର ଏତେ ଖୁସିରେ ସ୍ୱାଗତ କରୁଥିଲେ ଯେ ମୁଁ ଅଭିଭୂତ ହୋଇ ଯାଉଥିଲି । ବୋଧହୁଏ ନିଜର ଝିଅ ନଥିବାରୁ ଝିଅମାନଙ୍କୁ ସେ ଖୁବ୍ ଆଦର କରୁଥିଲେ । ରାଉରକେଲାରେ ଅଧ୍ୟାପିକା ଥିଲାବେଳେ ହିଁ ତାଙ୍କର ହାର୍ଟ ଆଟାକ୍‌ରେ ମୃତ୍ୟୁ ହେବା ଶୁଣି ମୋ ଆଖିରେ ଲୁହ ଆସିଯାଇଥିଲା । ଭଲ ହୃଦୟଥିବା ମଣିଷମାନଙ୍କର ହାର୍ଟଆଟାକ୍ କାହିଁକି ହୁଏ କେଜାଣି !

× × × × ×

ଧରିତ୍ରୀରେ ଥିଲା ବେଳେ ବାନ୍ଧବୀ ବିଦ୍ୟୁତ୍‌ଙ୍କ ସମେତ ଆମେ କେତଜଣ ୟୁ.ପି.ଏସ୍.ସି ତରଫରୁ All India Radio ର Programme executive ଇଣ୍ଟରଭ୍ୟୁ ଦେବାକୁ ଦିଲ୍ଲୀ ଯାଇଥିଲୁ । ସେତେବେଳେ ଦିଲ୍ଲୀରେ ମୋର ଜଣେ ଭିଣୋଇ ସୁଦର୍ଶନ ବେହେରା ଥାନ୍ତି । ତାଙ୍କର ଘରେ ଆମେ ଚାରିଜଣ ରହିଲୁ । ଅନେକ ତ ୟୁ.ପି.ଏସ୍.ସି. ରେ ଆମେ ଆଇ.ଏ.ଏସ୍ ପାଇଁ ସାକ୍ଷାତ୍‌କାର ଦେବାକୁ ଆସିଛୁ ବୋଲି ଭାବି କଥାବାର୍ତ୍ତା ଆରମ୍ଭ କରିଦେଉଥିଲେ । କାରଣ ଉଭୟଙ୍କ ୱେଟିଂ ରୁମ୍ ଗୋଟାଏ ଥିଲା । ଭାଗ୍ୟରେ ଥିଲେ ଏଭଳି ଜାଗା ଦେଖିବାକୁ ମିଳେ । ଆମେ ଯେତିକି ଦିନ ରହିଥିଲୁ ବୁଲାବୁଲି କରିଥିଲୁ । ତାଜମହଲ ସମେତ ଆଗ୍ରାରେ ମୋଗଲ ସମୟର ଦେୱାନୀ ଇ-ଆମ୍-ଦେୱାନୀ ଇଖାସ୍ । ଶାହାଜାହାନଙ୍କ ଶେଷ ଜୀବନରେ ବନ୍ଦୀ କେଠୋରି ସମେତ ଆକବର, ହୁମାୟୁନ୍, ବାବରଙ୍କ ସମୟର ବିଭିନ୍ନ ପ୍ୟାଲେସ୍, ସାମାଧି ପୀଠସ୍ଥଳୀ ସମେତ ରାଜଘାଟ, ଗାନ୍ଧୀଙ୍କ ସମାଧିପୀଠ, ନେହେରୁଙ୍କ ସମାଧିପୀଠ ପ୍ରଭୃତି ବୁଲାବୁଲି କରିଥିଲୁ । ସେତେବେଳେ ଇନ୍ଦିରାଗାନ୍ଧୀଙ୍କ ସମାଧିପୀଠ ତିଆରି ଚାଲିଥାଏ । ତାଙ୍କର ସଫ୍‌ଦରଜଙ୍ଗ ନିବାସ, ଯେଉଁଠି ଗୁଳି କରାଯାଇଥିଲା ଓ ରକ୍ତ ପଡିଥିଲା ଯାହାକୁ କାଚ ଢାଙ୍କୁଣି ଭିତରେ ରଖାଯାଇଥିଲା ଦେଖିଥିଲୁ । ତାଙ୍କର ଶେଷ ଭାଷଣର ରେକର୍ଡ ଯାହା ସେ ଭୁବନେଶ୍ୱରର ପ୍ରଦର୍ଶନୀ ପଡିଆରେ (ଆଜିର ଇନ୍ଦିରାଗାନ୍ଧୀ ପାର୍କ) ଦେଇଥିଲେ ତାହା ସେଠି ବଜାଯାଉଥିଲା । କାଚଝରକା ଦେଇ ତାଙ୍କର ଡ୍ରଇଂ ରୁମ୍ ଓ ଅଫିସ୍ ରୁମ୍ ବୁଲି ଦେଖିଥିଲୁ । ପୁଣି ନେହେରୁଙ୍କ "ତ୍ରିମୂର୍ତ୍ତି ଭବନ" ବୁଲି ଦେଖିଥିଲୁ । ଗାନ୍ଧିଜୀଙ୍କ ସମ୍ପାଦକୀୟ 'ହରିଜନ' ପତ୍ରିକା ମଧ୍ୟ ଗାନ୍ଧୀ ଏମ୍ପୋରିୟମରେ ଦେଖିଥିଲୁ । ଗାନ୍ଧୀ, ନେହେରୁଙ୍କ ବିଭିନ୍ନ ଫଟୋଗ୍ରାଫ୍ ମଧ୍ୟ ଦେଖିବାର ବିଭିନ୍ନ ସୁଯୋଗ ମିଳିଥିଲା । ପୁରୁଣା ଦିଲ୍ଲୀ ସମେତ ନିଉଦିଲ୍ଲୀ ମଧ୍ୟ ଦେଖିଲୁ । ଚାନ୍ଦିନୀ ଚୌକରେ ସପିଙ୍ଗ୍ କରିବା ସହ ଲାଲ୍-କିଲ୍ଲା, ବିଭିନ୍ନ ଫୋର୍ଟମାନ ବୁଲିବା,

ଜେ.ଏନ୍.ୟୁ କ୍ୟାମ୍ପସ୍, କୁତବମୀନାର, ଇନ୍ଦିରାଗାନ୍ଧୀ ଇଣ୍ଟରନ୍ୟାସନାଲ୍ ଏରୋଡ୍ରୋମ୍, ଆପ୍ପୁଘର ଏମିତି କେତେକଣ ବୁଲାବୁଲି କରିଥିଲୁ । ତାପରେ ଟୁରିଷ୍ଟ ବସ୍‌ରେ ଯାଇଥିଲୁ ବୃନ୍ଦାବନ, ମଥୁରା ନଗରୀ । ବିର୍ଲା ମନ୍ଦିର ଓ ମଥୁରାର କୃଷ୍ଣ ସବୁଠୁ ଆକର୍ଷଣୀୟ ମନେ ହୋଇଥିଲା । ସେମିତି ପଦ୍ମ ପାଖୁଡା ଭଳି ବାହାନଇ ମନ୍ଦିର ଆକୃଷ୍ଟ କରିଥିଲା । ଆମ ଯିବା ଆସିବା, ଖାଇବା ରହିବାର ସମସ୍ତ ସୁବନ୍ଦୋବସ୍ତ କରି ଦେଇଥିଲେ ସୁଦର୍ଶନ ଭାଇ । ତାଙ୍କ କ୍ୱାଟରରେ ଥିବା ଗେଷ୍ଟ ରୁମ୍‌ରେ ରହିଥିଲୁ । ବୁଲି ବାହାରିଲା ବେଳକୁ ଟିଫିନ୍ ବକ୍ସ, ପାଣିବୋତଲ ରେଡି କରି ରାଧୁଦିଦି ଆମ ଫେରିବା ବାଟକୁ ଅନାଇ ରହୁଥିଲା । ଯେଉଁ ଟ୍ରେନ୍ ମୋତେ ସବୁବେଳେ ଆକୃଷ୍ଟ କରୁଥିଲା ସେହି ଟ୍ରେନ୍‌ରେ ଯାତ୍ରା କରିବା ମୋ ପାଇଁ ଖୁବ୍ ଆନନ୍ଦଦାୟକ ଥିଲା ।

ଇଣ୍ଟରଭ୍ୟୁରେ ଖୁବ୍ ଭଲ କରିଥିଲେ ମଧ୍ୟ କଟକର ଆକାଶବାଣୀର କେତେଜଣଙ୍କୁ ଡକାଯାଇ ନଥିବାରୁ ସେମାନେ ପିଟିସନ୍ ପକାଇଥିଲେ । ତେଣୁ ଏ ଇଣ୍ଟରଭ୍ୟୁ କେନ୍‌ସେଲ୍ ହୋଇଗଲା । ପରେ ଯେତେବେଳେ ଇଣ୍ଟରଭ୍ୟୁ କଲ୍ ପାଇଲି ମୁଁ ଉଦଳା କଲେଜ୍‌ରେ ଜୟେନ୍ କରିସାରିଥିଲି । ସୁଦର୍ଶନ ଭାଇଙ୍କର ବି ସେତେବେଳେ ଦିଲ୍ଲୀରୁ ନେପାଳକୁ ବଦଳି ହୋଇ ଯାଇଥିଲେ । ଆଉ ଗଲି ନାହିଁ ।

'ଧରିତ୍ରୀ' ଛାଡିବାକୁ ପଡିଲା ଯେତେବେଳେ ଆଇ.ସି.ଡି.ଏସ୍ ରେ ସୁପରଭାଇଜର ଚାକିରି ପାଇଲି । ମୋର ପୋଷ୍ଟିଂ ହୋଇଥିଲା ମୟୂରଭଞ୍ଜର ଠାକୁରମୁଣ୍ଡା ବ୍ଲକ୍‌ରେ । 'ଧରିତ୍ରୀ'ରୁ ରିଜାଇନ୍ କରି ଜୟେନ୍ କଲି ସରକାରୀ ଚାକିରିରେ । ଏଇଠି ହିଁ ମୋର ସାମ୍ବାଦିକ ଜୀବନର ପରିସମାପ୍ତି ଘଟିଲା । ତିନି ତିନିଟା ସମ୍ବାଦପତ୍ରର ମୁଖ୍ୟ ଡେସ୍କରେ ସହ-ସଂପାଦିକା ଭାବରେ କାର୍ଯ୍ୟ କରିବା ଓ ରିଜାଇନ୍ ଦେବା ଭିତରେ ପାଇଥିଲି ଅନେକ ତିକ୍ତ ମଧୁର ସ୍ମୃତିର ଅନୁଭୂତି । ତିନୋଟି ସମ୍ବାଦ ପତ୍ରରେ ତିନିପ୍ରକାରର ସମ୍ପାଦକ ଓ ଷ୍ଟାଫ୍‌ମାନଙ୍କ ସମ୍ପର୍କରେ ଆସିଛି । କେତେ କିସମର ମଣିଷଙ୍କୁ, ରୂପକୁ, ମିଜାସକୁ ପରଖିଛି । ମୋର ଜ୍ଞାନ, ଅନୁଭୂତି ପ୍ରସାରିତ ହୋଇଛି । ଅନେକ ଆର୍ଟିଷ୍ଟ, ଅଭିଜ୍ଞ ସାହିତ୍ୟିକ, ରଥୀମହାରଥୀଙ୍କ ସଂସ୍ପର୍ଶରେ ଆସିଛି । ସେମାନଙ୍କ ଚିନ୍ତାଧାରା, ଜୀବନର ଅଭିଜ୍ଞତା ସହ କିଛିଟା ପରିଚିତ ହୋଇଛି । ତେବେ ମୋ ନିଜ ଅଭିଜ୍ଞତାରୁ କହିବି ସେତେବେଳେ ସାମ୍ବାଦିକତା ବା ସହ-ସମ୍ପାଦକମାନଙ୍କର ଚାକିରୀର କୌଣସି ସ୍ଥାୟିତ୍ୱ ନଥିଲା । ସମ୍ପାଦକ ବା ମ୍ୟାନେଜିଂ ଡିରେକ୍ଟରଙ୍କ ହାତରେ ସେମାନେ ଥିଲେ ସତେକି ଗୋଟାଏ ଗୋଟାଏ ଖେଳଣା ମାତ୍ର । ଅଧିକାଂଶ ସହ ସମ୍ପାଦକଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇଥିବାରୁ ପରିଚାଳକ ତଥା ମୁଖ୍ୟ ସମ୍ପାଦକଙ୍କ ମର୍ଜିକୁ ନେଇ ଚଳିବାକୁ ପଡୁଥିଲା । ବାଧ ହୋଇ

ସ୍ୱପ୍ନଟେ ସାଇତି ଦିଅନ୍ତି । 'ଆର୍ଟିଷ୍ଟଟେ ହୁଅ' କି 'ଲେଖକଟିଏ ହେବା ଉଚିତ୍' ବୋଲି କୌଣସି ବାପା ମା ପୁଅ ଝିଅକୁ କହିବା ଶୁଣାଯାଏ ନାହିଁ । ଲେଖାଲେଖି ଏକ ସାଇଡ୍ କାମ । ତାହା ଜୀବିକା ହୋଇପାରନା । ଏବେ ଅବଶ୍ୟ ପାଠ ପଢା ସହ ବାପାମା-ପୁଅ ଝିଅକୁ ଚିତ୍ର କଳା, ନୃତ୍ୟ, ଗୀତ ଶିଖାଇବାକୁ କେତେ ପରିମାଣରେ ଆଗ୍ରହୀ ହେଲେଣି । ତେବେ ଏ ସବୁ ପଇସାବାଲାଙ୍କର ଏକ ସୌଖିନ ସଉକ । ଯା' ପଛରେ ସେମିତି କିଛି ସାଧନା ନଥାଏ କି ପ୍ରତିଭାର ଆବଶ୍ୟକତା ନାହିଁ । କେବଳ ଲକ୍ଷ୍ୟ ଥାଏ ଟେଲିଭିଜନ କି ଚଳଚିତ୍ରର ପର୍ଦ୍ଦା ଉପରେ ।

ଅନେକ ମୋତେ ପଚାରନ୍ତି ତମେ ତ ବିଭିନ୍ନ ପତ୍ର ପତ୍ରିକାର ଲେଖାଲେଖି କରୁଛ, ସମ୍ପାଦକମାନେ ବେଶ୍ କିଛି ଟଙ୍କା ଦେଉଥିବେ । ଏତେ ଟଙ୍କା କ'ଣ କରୁଛ ? ଯାହାର ଉତ୍ତର ସେହି ଲେଖକଟିକୁ କିମ୍ବା ସମ୍ପାଦକଙ୍କୁ ଜଣା । ଓଡିଶାରେ ବହି ଲେଖିଲେ ରୟାଲିଟି ବାବଦରେ କଣ ମିଳେ ବା ସମ୍ପାଦକମାନେ କେତେ ଟଙ୍କା ଦିଅନ୍ତି ତାହା ବି ସେହି ଲେଖକଙ୍କୁ ଜଣା । ବେଳେବେଳେ ସେଥିଲାଗି ଦୁଃଖ ଲାଗେ ଓଡିଶାରେ କାହିଁକି ଜନ୍ମ ନେଲି ବୋଲି । ଯାହାର ପ୍ରଚାର, ପ୍ରସାର, କ୍ଷମତା, ଚଞ୍ଚକତା କିମ୍ବା ପଛରେ କାହାରି ବଡ଼ ସୁପାରିଶ୍ ନାହିଁ ସେ ବହୁ ପଛରେ ରହିଯାଏ । କେବଳ ପାଠକଙ୍କ ସ୍ନେହ, ଶ୍ରଦ୍ଧା ଭିତରେ ବଞ୍ଚି ରହେ । ଆଜିକାଲି ସେଭଳି ନିଷ୍ଠାପର ପାଠକଙ୍କ ସଂଖ୍ୟା ବି କମି କମି ଯାଉଛି । ତାମିଲ୍, ମାଲାୟମ୍, ବଙ୍ଗଳା, କର୍ଣ୍ଣାଟକେ ସାହିତ୍ୟ କେତେ ଉନ୍ନତ ! ଲେଖକର ସମ୍ମାନ ସେଠି କିଛି କମ୍ ନୁହେଁ । ଆମମାନଙ୍କୁ ପରଶ୍ରୀକାତରତା ଏଭଳି ଭାବରେ ଗ୍ରାସ କରି ଚାଲିଛି ଯେ ଆମେ କାହାରି ଉନ୍ନତି ସହ୍ୟ କରି ପାରୁନାହୁଁ । ନିଜ ଜାତି ଭାଇଟିର ଉନ୍ନତିରେ ଈର୍ଷା ପରାୟଣ ହେଉଛୁ । ଜଣେ ଉଠିଲେ ଆଉ ଜଣେ ତାର ଗୋଡ ତଳକୁ ଟାଣୁଛି । ଜଗନ୍ନାଥର ଦେଶ କହି ବିଦେଶୀମାନେ ଯେଉଁଠି ମୁଣ୍ଡ ନୁଆଁନ୍ତି, ସେହି ଜଗନ୍ନାଥଙ୍କ ଛତ୍ରଛାୟା ତଳେ ରହି ଆମ ଭିତରେ ସଂକୀର୍ଣ୍ଣତା ବଢିଚାଲିଛି । କେବଳ ଭକ୍ତମାନଙ୍କୁ ଲୁଟିବା ହିଁ ସେବାୟତମାନଙ୍କର ଲକ୍ଷ୍ୟ ହୋଇ ପଡିଛି । ଜଗନ୍ନାଥଙ୍କୁ ଷ୍ଟିକର୍, ଲକେଟ୍‌ରୁ ଆରମ୍ଭ କରି ବିକିଭାଙ୍ଗି ଖାଇ ଚାଲିଛୁ । ସେଠି ନା ଭକ୍ତି ଅଛି ନା ତ୍ୟାଗ ? ଯେତେ ପ୍ରକାରେ, ବାହାନାରେ ତାଙ୍କୁ କେନ୍ଦ୍ର କରି ଗୀତଲେଖା ଯାଇପାରେ, ଆଲ୍‌ବମ୍, କ୍ୟାସେଟ ପ୍ରକାଶ କରାଯାଇ ବ୍ୟବସାୟ କରାଯାଇପାରେ ! ଖଜୁରି ଗଛ ତ ପାହାଚ ପାହାଚ ଆମେ କଣ କାହାକୁ ଶିକ୍ଷା ଦେବୁ, ଲେଖିବୁ ?

ସମ୍ବାଦ ଅଫିସ୍ ନୂଆପଲ୍ଲୀକୁ ଉଠିଗଲା ପରେ ବାଣୀ ବିହାର ଫାଟକ ସାମ୍ନା ରାସ୍ତାରେ ସମ୍ବାଦ ଗାଡିକୁ ଅପେକ୍ଷା କରିବାକୁ ପଡିଲା । ଖରାରେ ରାସ୍ତା କଡରେ ଠିଆ ହୋଇ

ଅପେକ୍ଷା କଲାବେଳେ ମୋର ମନେ ହେଉଥିଲା ମୁଁ ଏଠି କି ଅଜବ ଜୀବନଟେ ଜିଇଁ ଚାଲିଛି । ଯଦି ମୋର ଆକ୍ସିଡେଣ୍ଟ ହୋଇଯିବ ? ଶବ ପଡିରହିବ, ମୋତେ ଚିହ୍ନି ଘରକୁ ଖବର ଦେଇ ଆସିଲା ବେଳକୁ ଶବ ପଚି ସାରିଥିବ । ଏଭଳି ଜୀବନ ତ ଚାହିଁ ନଥିଲି ! ଲୋଡ଼ିଥିବା ଜୀବନ କ'ଣ କେବେ ମୋତେ ମିଳିବ ନାହିଁ? ଏମିତି କ'ଣ ଛତା ଧରି ସମ୍ବାଦ ଗାଡିକୁ ଅପେକ୍ଷା କରି ମୃତ୍ୟୁ ଆଶଙ୍କାରେ ଠିଆ ହୋଇଥିବି ? ଏହି ଭାବନାକୁ ନେଇ ଲେଖିଥିଲି ଗଳ୍ପ "ପରିଚିତ ସହର ଖୁବ୍ ଦୂରରେ ମୃତ୍ୟୁ ପାଇଁ ନିଜର ଅପେକ୍ଷା" ଯାହା ଇସ୍ତାହାରରେ ୧୯୮୫ କି ୮୬ ଏମିତି କୌଣସି ଏକ ପୂଜା ସଂଖ୍ୟାରେ ପ୍ରକାଶିତ ହୋଇ ବେଶ୍ ଚର୍ଚ୍ଚାର ପରିସରକୁ ଆସିଥିଲା । ନିଜ ଜୀବନର ନିଃସଙ୍ଗତା ଆଉ ପାଦେ ପାଦେ ମୃତ୍ୟୁ ଆଶଙ୍କା ସେତେବେଳେ ଅନେକ ସମୟରେ ମୋତେ ଭାରାକ୍ରାନ୍ତ କରି ପକାଉଥିଲା । ସେ ସମୟରେ ଏହି ଚେତନାକୁ ନେଇ ବେଶ୍ କେତୋଟି ଗଳ୍ପ ଲେଖିଥିଲି ।

ଘଟଣାକ୍ରମେ ସମ୍ବାଦ ଛାଡିଦିଏ । ତାର କିଛିଦିନ ପରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଡାକରାରେ ଧରିତ୍ରୀରେ ଯୋଗ ଦିଏ । ପୁଣି ଆଉ ଗୋଟେ ଜୀବନ ଆରମ୍ଭ ହୁଏ । ଜୀବିକା ଏକା କିନ୍ତୁ ପରିବେଶ, ବନ୍ଧୁକର୍ମୀ ସବୁ ଅଲଗା । ମୋର ବାନ୍ଧବୀ ବିଦ୍ୟୁତ୍‌ଲତା ଶିଶୁ ବିଭାଗ ସମ୍ଭାଳୁଥିଲା ବେଳେ ମୁଁ ନାରୀ ପୃଷ୍ଠାର ଦାୟିତ୍ୱ ନିଏ । ବନ୍ଧୁ ପ୍ରଦୀପ ଦାଶ (ଆଜିର ଗାଳ୍ପିକ ଏବଂ ପ୍ରଶାସକ) ଏବଂ ଭୀମ ପୃଷ୍ଟି (ଅଧ୍ୟାପକ, ଗାଳ୍ପିକ) ସେତେବେଳେ ଧରିତ୍ରୀରେ ସହ ସମ୍ପାଦକ ଥିଲେ । ବଞ୍ଚିବା ଲାଗି ଆମେ ସମସ୍ତେ ସଂଘର୍ଷ କଲା ଭିତରେ ବି ଏକ ସାହିତ୍ୟିକ ବାତାବରଣ ଗଢି ଉଠିଥିଲା । ସବୁ ଅବର୍ତ୍ତମାନର ସ୍ମୃତି ମଧୁର । ଆଜି ଆମେ କିଏ କେଉଁଠି । ଦେଖା ହେବାର ସୁଯୋଗ, ସୁବିଧା ନାହିଁ । ଅଥଚ ସେଦିନର କଥା ଲେଖିଲା ବେଳେ ମନେ ହେଉଛି ଆମେ ସମସ୍ତେ ଏକାଠି ସାମ୍ବାଦିକ ଭାବରେ କାମ କରୁଛୁ । ଜୀବନ ଜୀବିକା ନେଇ କିଏ କେତେ ଦୂରରେ ଛିଟିକି ପଡିଲୁଣି । ସେଇଠି ଧରିତ୍ରୀ ଅଫିସ୍ ଥିଲେ ହେଁ ସମୟ ବାହାର କରି ଯାଇ ହେଉ ନାହିଁ । ସମ୍ବାଦିକ ଜୀବନରୁ ମୁକୁଳି ବୟସ, ସାଂସାରିକ ତେଲ ଲୁଣ ଜୀବନ ଭିତରେ ଆମେ ଧୀରେ ଧୀରେ ଜୀବନର ଅପରାହ୍ନ ଆଡକୁ ମୁହାଁଇବାରେ ଲାଗିଲୁଣି । ସମୟ, ବୟସ କାହାକୁ କ'ଣ ଅପେକ୍ଷା କରିଛି ? ମଣିଷ ସମୟ ମାଡରେ କେବଳ ଆଗକୁ ଆଗକୁ ଠେଲି ହୋଇଯାଏ । ମୁଁ ବି ଆଜି ଅନେକ ଦୂରକୁ ଭାସିଆସି ଜୀବନର ସାରେଗାମାକୁ ଘୋଷି ହେଉଛି ଆଉ ସେଦିନ ଛାଡି ଆସିଥିବା ଜୀବନକୁ ସ୍ମୃତିପୃଷ୍ଠା ଭିତରେ ଅଣ୍ଡାଳି ହେଉଛି ।

ଧରିତ୍ରୀରେ ଥିଲାବେଳେ ସବୁଠୁ ଭଲ ଲାଗିଥିଲେ ଦେବେନ୍ଦ୍ର ଶତପଥୀ । ତାଙ୍କର ପିତୃ ସୁଲଭ ଆଦର, ମାର୍ଜିତ ବ୍ୟବହାର, ଆନ୍ତରିକତା ଏବେ ବି ଭୁଲି ପାରିନି ।

ମନେ ଅଛି ଥରେ 'ନାରୀ' ପୃଷ୍ଠାରେ ଆମ୍ବ ଆଚାରର ପ୍ରସ୍ତୁତି ସମ୍ପର୍କରେ ବାହାରିଥିଲା ଯେ ଘରେ ତିଆରି କରି ସେ ଅଫିସ୍‌କୁ ଆଣି ବାଣ୍ଟିଥିଲେ । କିଛିକାମ ଥିଲେ ମାଡାମ୍‌ଙ୍କ କ୍ୱାର୍ଟରକୁ ଗଲେ ଦେବେନ୍ଦ୍ର ସାର ଏତେ ଖୁସିରେ ସ୍ୱାଗତ କରୁଥିଲେ ଯେ ମୁଁ ଅଭିଭୂତ ହୋଇ ଯାଉଥିଲି । ବୋଧହୁଏ ନିଜର ଝିଅ ନଥିବାରୁ ଝିଅମାନଙ୍କୁ ସେ ଖୁବ୍ ଆଦର କରୁଥିଲେ । ରାଉରକେଲାରେ ଅଧ୍ୟାପିକା ଥିଲାବେଳେ ହିଁ ତାଙ୍କର ହାର୍ଟ ଆଟାକ୍‌ରେ ମୃତ୍ୟୁ ହେବା ଶୁଣି ମୋ ଆଖିରେ ଲୁହ ଆସିଯାଇଥିଲା । ଭଲ ହୃଦୟଥିବା ମଣିଷମାନଙ୍କର ହାର୍ଟଆଟାକ୍ କାହିଁକି ହୁଏ କେଜାଣି ।

× × × × ×

ଧରିତ୍ରୀରେ ଥିଲା ବେଳେ ବାନ୍ଧବୀ ବିଦ୍ୟୁତ୍‌ଙ୍କ ସମେତ ଆମେ କେତଜଣ ୟୁ.ପି.ଏସ୍.ସି ତରଫରୁ All India Radio ର Programme executive ଇଣ୍ଟରଭ୍ୟୁ ଦେବାକୁ ଦିଲ୍ଲୀ ଯାଇଥିଲୁ । ସେତେବେଳେ ଦିଲ୍ଲୀରେ ମୋର ଜଣେ ଭିଣୋଇ ସୁଦର୍ଶନ ବେହେରା ଥାନ୍ତି । ତାଙ୍କର ଘରେ ଆମେ ଚାରିଜଣ ରହିଲୁ । ଅନେକ ତ ୟୁ.ପି.ଏସ୍.ସି. ରେ ଆମେ ଆଇ.ଏ.ଏସ୍ ପାଇଁ ସାକ୍ଷାତ୍‌କାର ଦେବାକୁ ଆସିଛୁ ବୋଲି ଭାବି କଥାବାର୍ତ୍ତା ଆରମ୍ଭ କରିଦେଇଥିଲେ । କାରଣ ଉଭୟଙ୍କ ୱେଟିଂ ରୁମ୍ ଗୋଟାଏ ଥିଲା । ଭାଗ୍ୟରେ ଥିଲେ ଏଭଳି ଜାଗା ଦେଖିବାକୁ ମିଳେ । ଆମେ ଯେତିକି ଦିନ ରହିଥିଲୁ ବୁଲାବୁଲି କରିଥିଲୁ । ତାଜମହଲ ସମେତ ଆଗ୍ରାରେ ମୋଗଲ ସମୟର ଦେୱାନୀ ଇ-ଆମ୍-ଦେ-ୱାନୀ ଇଖାସ୍ । ଶାହାଜାହାନଙ୍କ ଶେଷ ଜୀବନରେ ବନ୍ଦୀ କଠୋରି ସମେତ ଆକ୍‌ବର, ହୁମାୟୁନ୍, ବାବରଙ୍କ ସମୟର ବିଭିନ୍ନ ପ୍ୟାଲେସ୍, ସାମାଧି ପୀଠସ୍ଥଳୀ ସମେତ ରାଜଘାଟ, ଗାନ୍ଧୀଙ୍କ ସମାଧିପୀଠ, ନେହେରୁଙ୍କ ସମାଧିପୀଠ ପ୍ରଭୃତି ବୁଲାବୁଲି କରିଥିଲୁ । ସେତେବେଳେ ଇନ୍ଦିରାଗାନ୍ଧୀଙ୍କ ସମାଧିପୀଠ ତିଆରି ଚାଲିଥାଏ । ତାଙ୍କର ସଫ୍‌ଦରଜଙ୍ଗ ନିବାସ, ଯେଉଁଠି ଗୁଳି କରାଯାଇଥିଲା ଓ ରକ୍ତ ପଡିଥିଲା ଯାହାକୁ କାଚ ଢାଙ୍କୁଣି ଭିତରେ ରଖାଯାଇଥିଲା ଦେଖିଥିଲୁ । ତାଙ୍କର ଶେଷ ଭାଷଣର ରେକର୍ଡ ଯାହା ସେ ଭୁବନେଶ୍ୱରର ପ୍ରଦର୍ଶନୀ ପଡିଆରେ (ଆଜିର ଇନ୍ଦିରାଗାନ୍ଧୀ ପାର୍କ) ଦେଇଥିଲେ ତାହା ସେଠି ବଜାଯାଉଥିଲା । କାଚଝରକା ଦେଇ ତାଙ୍କର ଡ୍ରଇଂ ରୁମ୍ ଓ ଅଫିସ୍ ରୁମ୍ ବୁଲି ଦେଖିଥିଲୁ । ପୁଣି ନେହେରୁଙ୍କ "ତ୍ରିମୂର୍ତ୍ତି ଭବନ" ବୁଲି ଦେଖିଥିଲୁ । ଗାନ୍ଧିଜୀଙ୍କ ସମ୍ପାଦକୀୟ 'ହରିଜନ' ପତ୍ରିକା ମଧ୍ୟ ଗାନ୍ଧୀ ଏମ୍ପୋରିୟମରେ ଦେଖିଥିଲୁ । ଗାନ୍ଧୀ, ନେହେରୁଙ୍କ ବିଭିନ୍ନ ଫଟୋଗ୍ରାଫ୍ ମଧ୍ୟ ଦେଖିବାର ବିଭିନ୍ନ ସୁଯୋଗ ମିଳିଥିଲା । ପୁରୁଣା ଦିଲ୍ଲୀ ସମେତ ନିଉଦିଲ୍ଲୀ ମଧ୍ୟ ଦେଖିଲୁ । ଚାନ୍ଦିନୀ ଚୌକରେ ସପିଙ୍ଗ୍ କରିବା ସହ ଲାଲ୍-କିଲ୍ଲା, ବିଭିନ୍ନ ଫୋର୍ଟମାନ ବୁଲିବା,

ଜେ.ଏନ୍.ୟୁ କ୍ୟାମ୍ପସ୍, କୁତବମୀନାର, ଇନ୍ଦିରାଗାନ୍ଧୀ ଇଣ୍ଟରନ୍ୟାସନାଲ୍ ଏରୋଡ୍ରୋମ୍, ଆଷ୍ଟଘର ଏମିତି କେତେକଣ ବୁଲାବୁଲି କରିଥିଲୁ। ତାପରେ ଟୁରିଷ୍ଟ ବସ୍‌ରେ ଯାଇଥିଲୁ ବୃନ୍ଦାବନ, ମଥୁରା ନଗରୀ । ବିର୍ଲା ମନ୍ଦିର ଓ ମଥୁରାର କୃଷ୍ଣ ସବୁଠୁ ଆକର୍ଷଣୀୟ ମନେ ହୋଇଥିଲା। ସେମିତି ପଦ୍ମ ପାଖୁଡା ଭଳି ବାହାନଇ ମନ୍ଦିର ଆକୃଷ୍ଟ କରିଥିଲା। ଆମ ଯିବା ଆସିବା, ଖାଇବା ରହିବାର ସମସ୍ତ ସୁବନ୍ଦୋବସ୍ତ କରି ଦେଇଥିଲେ ସୁଦର୍ଶନ ଭାଇ। ତାଙ୍କ କ୍ୱାଟରରେ ଥିବା ଗେଷ୍ଟ ରୁମ୍‌ରେ ରହିଥିଲୁ । ବୁଲି ବାହାରିଲା ବେଳକୁ ଟିଫିନ୍ ବକ୍ସ, ପାଣିବୋତଲ ରେଡି କରି ରାଧୁଦିଦି ଆମ ଫେରିବା ବାଟକୁ ଅନାଇ ରହୁଥିଲା। ଯେଉଁ ଟ୍ରେନ୍ ମୋତେ ସବୁବେଳେ ଆକୃଷ୍ଟ କରୁଥିଲା ସେହି ଟ୍ରେନ୍‌ରେ ଯାତ୍ରା କରିବା ମୋ ପାଇଁ ଖୁବ୍ ଆନନ୍ଦଦାୟକ ଥିଲା।

ଇଣ୍ଟରଭ୍ୟୁରେ ଖୁବ୍ ଭଲ କରିଥିଲେ ମଧ୍ୟ କଟକର ଆକାଶବାଣୀର କେତେଜଣଙ୍କୁ ଡକାଯାଇ ନଥିବାରୁ ସେମାନେ ପିଟିସନ୍ ପକାଇଥିଲେ। ତେଣୁ ଏ ଇଣ୍ଟରଭ୍ୟୁ କେନ୍‌ସେଲ୍ ହୋଇଗଲା। ପରେ ଯେତେବେଳେ ଇଣ୍ଟରଭ୍ୟୁ କଲ୍ ପାଇଲି ମୁଁ ଉଦଳା କଲେଜ୍‌ରେ ଜୟେନ୍ କରିସାରିଥିଲି। ସୁଦର୍ଶନ ଭାଇଙ୍କର ବି ସେତେବେଳେ ଦିଲ୍ଲୀରୁ ନେପାଳକୁ ବଦଳି ହୋଇ ଯାଇଥିଲେ। ଆଉ ଗଲି ନାହିଁ।

'ଧରିତ୍ରୀ' ଛାଡିବାକୁ ପଡିଲା ଯେତେବେଳେ ଆଇ.ସି.ଡି.ଏସ୍ ରେ ସୁପରଭାଇଜର ଚାକିରି ପାଇଲି। ମୋର ପୋଷ୍ଟିଂ ହୋଇଥିଲା ମୟୂରଭଞ୍ଜର ଠାକୁରମୁଣ୍ଡା ବ୍ଲକ୍‌ରେ। 'ଧରିତ୍ରୀ'ରୁ ରିଜାଇନ୍ କରି ଜୟେନ୍ କଲି ସରକାରୀ ଚାକିରିରେ। ଏଇଠି ହିଁ ମୋର ସାମ୍ବାଦିକ ଜୀବନର ପରିସମାପ୍ତି ଘଟିଲା। ତିନି ତିନିଟା ସମ୍ବାଦପତ୍ରର ମୁଖ୍ୟ ଡେସ୍କରେ ସହ-ସଂପାଦିକା ଭାବରେ କାର୍ଯ୍ୟ କରିବା ଓ ରିଜାଇନ୍ ଦେବା ଭିତରେ ପାଇଥିଲି ଅନେକ ତିକ୍ତ ମଧୁର ସ୍ମୃତିର ଅନୁଭୂତି। ତିନୋଟି ସମ୍ବାଦ ପତ୍ରରେ ତିନିପ୍ରକାରର ସମ୍ପାଦକ ଓ ଷ୍ଟାଫ୍‌ମାନଙ୍କ ସମ୍ପର୍କରେ ଆସିଛି। କେତେ କିସମର ମଣିଷଙ୍କୁ, ରୂପକୁ, ମିଜାଜକୁ ପରଖିଛି। ମୋର ଜ୍ଞାନ, ଅନୁଭୂତି ପ୍ରସାରିତ ହୋଇଛି। ଅନେକ ଆର୍ଟିଷ୍ଟ, ଅଭିଜ୍ଞ ସାହିତ୍ୟିକ, ରଥୀମହାରଥୀଙ୍କ ସଂସ୍ପର୍ଶରେ ଆସିଛି। ସେମାନଙ୍କ ଚିନ୍ତାଧାରା, ଜୀବନର ଅଭିଜ୍ଞତା ସହ କିଛିଟା ପରିଚିତ ହୋଇଛି। ତେବେ ମୋ ନିଜ ଅଭିଜ୍ଞତାରୁ କହିବି ସେତେବେଳେ ସାମ୍ବାଦିକତା ବା ସହ-ସମ୍ପାଦକମାନଙ୍କର ଚାକିରୀର କୌଣସି ସ୍ଥାୟିତ୍ୱ ନଥିଲା। ସମ୍ପାଦକ ବା ମ୍ୟାନେଜିଂ ଡିରେକ୍ଟରଙ୍କ ହାତରେ ସେମାନେ ଥିଲେ ସତେକି ଗୋଟାଏ ଗୋଟାଏ ଖେଳଣା ମାତ୍ର। ଅଧିକାଂଶ ସହ ସମ୍ପାଦକଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ହୋଇଥିବାରୁ ପରିଚାଳକ ତଥା ମୁଖ୍ୟ ସମ୍ପାଦକଙ୍କ ମର୍ଜିକୁ ନେଇ ଚଳିବାକୁ ପଡୁଥିଲା। ବାଧ୍ୟ ହୋଇ

ନିଜର ସ୍ୱାଧୀନତା, ସ୍ୱାଭିମାନକୁ ବିକ୍ରି କରାଯାଉଥିଲା । ଓଡିଶାରେ ସରକାରୀ ସ୍ୱୀକୃତିପ୍ରାପ୍ତ ଜର୍ଣ୍ଣାଲିଷ୍ଟମାନଙ୍କ ଛଡା ଅନ୍ୟ ସମସ୍ତ ଜର୍ଣ୍ଣାଲିଷ୍ଟ ମାନଙ୍କର ଅବସ୍ଥା ଥିଲା ଅତ୍ୟନ୍ତ ଶୋଚନୀୟ । ଖୁବ୍ କମ୍ ଦରମା ପାଉଥିଲେ । ଚାକିରୀର ଗ୍ୟାରେଣ୍ଟି କି ପେନ୍‌ସନ୍ ନଥିଲା । ଜଣେ ପୁରୁଖା ସାମ୍ବାଦିକଙ୍କୁ ଇଚ୍ଛାକଲେ ଏମ୍.ଡି. ବିନା କାରଣରେ ବାହାର କରିଦେଉଥିଲେ । ସେତେବେଳେ ସାମ୍ବାଦିକ ସଂଘ ମଧ୍ୟ ନଥିଲା । ୧୯୮୪ରୁ ୮୭ ଭିତରେ ଏ ଅବସ୍ଥା ଥିଲା । ସାମ୍ବାଦିକଟିଏ ଚାକିରି ହରାଇଲା ପରେ ତାର ପରିବାର କେମିତି ଚଳିବେ କେହି ଚିନ୍ତା କରୁ ନଥିଲେ । ମୁଁ ନିଜେ ଦେଖିଛି ଜଣେ ପୁରୁଣା କର୍ମଚାରୀ ଏକ ଦୈନିକ ଖବର କାଗଜରୁ ବହିଷ୍କୃତ ହେଲା ପରେ ଉକ୍ତ ସଂସ୍ଥା ସାମ୍ନାରେ ଅନଶନ ଆରମ୍ଭ କରିଦେଇଥିଲେ । ତାଙ୍କୁ ପୋଲିସ୍ ସାହାଯ୍ୟରେ ସେଠୁ ତଡି ଦିଆଗଲା । ତାଙ୍କ ସ୍ଥାନରେ ନୂଆ ଲୋକ ରଖାଗଲା । ଆନ୍ଦୋଳନରେ କୌଣସି ମୂଲ୍ୟ ରହିଲା ନାହିଁ । ତାଙ୍କ ପରିବାରର ଅବସ୍ଥା ତାପରେ କଣ ହେଲା କେଜାଣି । ସେଦିନ ମୋ ଅନ୍ତରାତ୍ମା ବିଦ୍ରୋହ କରି ଉଠିଥିଲା । 'ଜୋର ଯାର, ମୂଲକ ତାର' ନୀତି ତ କେଉଁ କାଳରୁ ଚାଲି ଆସିଛି । ଗରିବ ସଭିଙ୍କ ଶଳା ନ୍ୟାୟରେ ଆଗେ ବଳି ପଡେ । ସବୁଠି ବଡ଼ ବଡ଼ିଆମାନେ ଖସିଯାଆନ୍ତି । ତଳତଳିଆ, ଗରିବମାନେ ଯୂପକାଠିରେ ବେକ ଦେଖାନ୍ତି । ଅଥଚ ଏହି ସମ୍ପାଦକମାନେ ଜଣେ ଜଣେ ବଡ଼ ବଡ଼ ରାଜନୈତିକ ନେତା । ସଭାସମିତିରେ ଅନେକ ତ ଖଦଡ ପିନ୍ଧି ଦରିଦ୍ର ଜନତାଙ୍କୁ ନାରାୟଣ କହି ଭକ୍ତି ଗଦ୍ ଗଦ୍ ଚିତ୍ତରେ ନଇଁ ପଡନ୍ତି । ବିରାଡି ବୈଷ୍ଣବ ସାଜି ଯାହା କରିବା କଥା କରନ୍ତି । ପାଖରୁ ଏଭଳି ବ୍ୟକ୍ତିତ୍ୱମାନଙ୍କୁ ଦେଖି ଯେତିକି ଆଶ୍ଚର୍ଯ୍ୟ ହୋଇଛି ସେତିକି ସରଳ ଜନତା ଠକି ହୋଇ ଯାଉଥିବା ଦେଖି ଦୁଃଖ ପ୍ରକାଶ କରିଛି । ଯଦିଓ ମୁଁ ଜାଣେ ଏଇମାନେ ହିଁ ଆଜି ଚଳନ୍ତି ବିଷ୍ଣୁ । ଭଗବାନଙ୍କୁ ଯେତେ ମୋଟାରେ ଫୁଲହାର ପିନ୍ଧାଯାଉନଥିବ, ରାଜନୈତିକ ନେତମାନେ ସେତେ ମୋଟାର ହାର ପିନ୍ଧିବାର ସୌଭାଗ୍ୟ ପାଇଥାନ୍ତି । ସେଥିପାଇଁ ବୋଧହୁଏ ଲେଖାଯାଇଅଛି:-

"ଧର୍ମର ମଦ ପିଆଇ କରିଛ
ମଣିଷ ଜାତିକୁ ଚିରଦିନ ମସ୍‌ଗୁଲ"

ଧର୍ମର ମଦ ଆଜି ଅଫିମ ନିଶା ପାଲଟିଛି । ତାକୁ ରାଜନୀତିରେ ଆୟୁଧ କରାଯାଇଛି । କିନ୍ତୁ ରାଜନୀତି ସହିତ ସାଂପ୍ରଦାୟିକତାକୁ ଯୋଡାଯାଇ ଆଜି ସରଳ ଜନତାକୁ ବୁଦ୍ଧୁ ବନାଯାଇ ଭୋଟ ବ୍ୟାଙ୍କ୍ ଲୁଟ କରିବା ଭଳି ଦୁଃଖ ଦାୟକ ଘଟଣା ଆଉ କ'ଣ ହୋଇପାରେ ? ଏଠି ମୋର ଗାନ୍ଧିଜୀଙ୍କ କଥା ମନେ ପଡେ । ସେ କହିଥିଲେ, "My devotion to truth has drawn me in to field of politics, and I can

say without the slightest hesitation, Yet in all humility that those who say that religion has nothing to do with politics do not know what religion means."

ଅର୍ଥାତ୍ ସତ୍ୟ ପ୍ରତି ମୋର ଭକ୍ତି ମତେ ରାଜନୀତି କ୍ଷେତ୍ରକୁ ଟାଣି ଆଣିଛି । ଏବଂ ମୁଁ କୌଣସି ଦ୍ୱିଧା ନକରି ଅତି ବିନମ୍ର ଭାବେ କହିପାରେ ଯେ ଯେଉଁମାନେ ଧର୍ମର ରାଜନୀତି ସହିତ କୌଣସି ସମ୍ପର୍କ ନାହିଁ ବୋଲି କହି ବୁଲନ୍ତି ସେମାନେ ଧର୍ମ କଣ ଜାଣନ୍ତି ନାହିଁ ।

ଗାନ୍ଧିଜୀ ଏ ଯେଉଁ ଧର୍ମକୁ ଇଙ୍ଗିତ କରିଥିଲେ ତାହା ହିନ୍ଦୁ, ମୁସଲିମ୍ କି ଖ୍ରୀଷ୍ଟ ଧର୍ମ ନୁହେଁ । ଏହା ସନାତନ ଧର୍ମ । ଯାହା ଉପରେ ସମଗ୍ର ବିଶ୍ୱର ଧର୍ମ ରାଜନୀତି ଛିଡା ହୋଇଛି । ଯେଉଁ ଧର୍ମ ସମ୍ପର୍କରେ ଭାଷଣ ଦେଇ ସ୍ୱାମୀ ବିବେକାନନ୍ଦ ଚିକାଗୋର ସମସ୍ତ ଶ୍ରୋତାମଣ୍ଡଳୀଙ୍କୁ ସେଦିନ ସ୍ତବ୍ଧ କରି ଦେଇଥିଲେ ।

## ତେର

"ଛୋଟ ମୋର ଗାଆଁଟି
ଭୂଗୋଳ ପୋଥି ପତରେ ପଛେ
ନଥାଉ ତା'ର ନାଆଁଟି
ଛୋଟ ମୋର ଗାଆଁଟି...."

ସଚ୍ଚି ରାଉତରାୟଙ୍କ "ପଲ୍ଲୀଶ୍ରୀ" ପଢି ଏକ ସରଳ, ଶ୍ୟାମଳ ଗାଁର ସିଲ୍‌ହର୍ଟ ରୂପ ଦିନେ ମନେ ମନେ ଆଙ୍କିଥିଲି । ନନ୍ଦକିଶୋର ବଳ , ରାଧାମୋହନ ଗଡନାୟକଙ୍କ କବିତା ତଥା କବି ବିନୋଦ ନାୟକଙ୍କ "ଗ୍ରାମପଥ" କବିତା ମୋତେ ଗାଁ ପ୍ରତି ବାରମ୍ବାର ଆକୃଷ୍ଟ କରିଛି । ଗାଆଁ ସତେକି ମା ଡାକ ଭଳି ବଡ଼ ମମତା ଭରା ଶବ୍ଦଟାଏ, ମନ ମତାଣିଆ ଭାବଟାଏ ପୁଣି ମାଆର ସ୍ନେହର ପଣତଟାଏ । ପ୍ରକୃତରେ ଗାଁ ର ଏକ ନିଆରା, ନୈସର୍ଗିକ ଆକର୍ଷଣ, ରୂପ ରହିଛି । ଯଦିଓ ଆଧୁନିକ ସଭ୍ୟତା ଧୀରେ ଧୀରେ ଏହାର ମୌଳିକ ସ୍ୱାତନ୍ତ୍ର୍ୟକୁ ନଷ୍ଟ କରିବାକୁ ବସିଲାଣି ।

ହେଲେ ଗାଁ ସହିତ ମୋର ସେମିତି କିଛି ସମ୍ପର୍କ ନଥିଲା କି ନିଛକ ଗାଁକୁ ଦେଖିବା ରହିବାର ସୁଯୋଗ ନଥିଲା । ବାରିପଦାରେ ତ ଜନ୍ମ । ସେଇଠି ଶୈଶବ, ଯୌବନ କଟିଛି । ମାମୁଘର ବୋଲି କିଛି ନଥିଲା । ହେତୁ ହେଲା ଦିନରୁ ଦେଖିଛି ଆଈଙ୍କୁ ଆମ ଘରେ । ଶୁଣିଛି ପଳାତକ ମାମୁଁଙ୍କ କଥା ଓ ମୃତ ଅଜାଙ୍କ କଥା । ତେବେ ଆଇ.ସି.ଡି.ଏସ୍ ରେ

ଯୋଗ ଦେଲାପରେ ମୋତେ ଯେ ଏତେ ସବୁ ଗାଁ ଦେଖିବାକୁ ପଡିବ, ଗାଁରେ ରହିବାକୁ ପଡିବ ଏହା ମଧ ଥିଲା ସତେକି ବିଧି ନିର୍ଦ୍ଦେଶ । ପ୍ରାୟ ଦଶମାସ ପାଖାପାଖି ସେଠି ଚାକିରି କରିଥିଲି । ଠାକୁରମୁଣ୍ଡାରେ ଥିଲାବେଳେ ପ୍ରାୟ ପଚାଶରୁ ଉର୍ଦ୍ଧ୍ୱ ଗାଁ ଦେଖିବାର ସୁଯୋଗ ପାଇଲି । ଦେଖିଲି ମଧ ଦାରିଦ୍ର୍ୟ, ଅଜ୍ଞାନତା, ଅନ୍ଧବିଶ୍ୱାସ, ଅସ୍ୱାସ୍ଥ୍ୟକର ବାତାବରଣ, ଅର୍ଦ୍ଧଲଙ୍ଗଳା ମଣିଷ, ଜଙ୍ଗଲ, ପାଣି, ବିଜୁଳିର ଅଭାବ, ଗାଁ ଟାଉଟର, ଥାନା ଚୌକିଦାରଙ୍କ ଭାଉ, ଛୁଆଁ ଅଛୁଆଁ ଭେଦ..ଏମିତି କେତେକଣ ।

ଶିମିଳିପାଳର ପାଦଦେଶରେ ଥିବା ଠାକୁରମୁଣ୍ଡା ବ୍ଲକ୍‌ରେ ଜୟେନ୍ କରିବାକୁ ଗଲାବେଳେ ପୁଣି ଥରେ ନିଜକୁ ପ୍ରଶ୍ନ କରିଥିଲି ଏମିତି କେତେଦିନ ଚାଲିବ ? କେବେ ମୁଁ ମୋ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବି ? କେତେବେଳେ ପରିବର୍ତ୍ତିତ ପରିସ୍ଥିତି ସହ ଆଡଜଷ୍ଟ କରିବାକୁ ପଡିବ ? କେତେ ଅଭିଜ୍ଞତା ସାଉଁଟିବାକୁ ହେବ ? ଏ ଜଙ୍ଗଲ ଭିତରେ ସତରେ କଣ ଆରମ୍ଭ କରିପାରିବି ମୋର କର୍ମମୟ ଜୀବନ ? ଏହାପରେ ଫେର୍ କେଉଁଠି ପହଁଞ୍ଚିବି ? ନିଜ ଇଚ୍ଛା ମୁତାବକ ଅଧାପିକାଟିଏ କଣ କେବେ ହୋଇ ପାରିବିନି ? ଗୋଟିଏ ଛୋଟ ଘର, ଟେବୁଲ୍ ଉପରେ ଥୁଆ ହୋଇଥିବ କେତେ କିସମର ବହି । ର୍ୟାକ୍‌ରେ ନିଜ ଚଏସ୍‌ର କ୍ୟାସେଟ୍ । ଟେବୁଲ୍ ହିଁ ମୋର ସାଧନାର ପୃଥିବୀ ପାଲଟିଥିବ । ଲେଖାଲେଖି, ଗୀତଶୁଣା, ଗପସପ୍ ଆଉ ନିଜ ଭାବନାର ଦୁନିଆ, ଆବେଗର ପୃଥିବୀରେ ମୁଁ ହଜିଯାଉଥିବି । ହେଲେ ସେ ସ୍ୱପ୍ନର ସବୁଜ ଭୂଇଁ କାହିଁ ? କଣ ତା'ର ଠିକଣା ? ଏଇ ଜଙ୍ଗଲ ଭିତରେ ବାଘ, ଭାଲୁ, ହରିଣ ରାଜ୍ୟରେ କେମିତି କଟିବ ଦିନ ? ଘର ଛାଡି ଆତ୍ମୀୟ ସ୍ୱଜନଙ୍କୁ ଛାଡି ଏଇଠି ଶେଷ ହୋଇଯିବନିତ ଜୀବନ ? କେମିତି ରହିବି, କେଉଁଠି ରହିବି ବୋଲି ବାପା ମୁଣ୍ଡରେ ହାତ ଦେଇ ବସି ରହିଥିଲେ । ହେଲେ ଭଗବାନ ଯେ ମୋର ମଙ୍ଗଳ ପାଇଁ ଅନୁଭୂତିକୁ ବଢାଇବା ପାଇଁ ଏଠାକୁ ପଠାଇଥିଲେ ପରେ ମୁଁ ଉପଲବ୍ଧି କରିଥିଲି । ନହେଲେ କାହିଁ ଶିମିଳିପାଳର ଅଭୟାରଣ୍ୟ ତଳେ ଛୋଟ ଛୋଟ ଗାଁ ଦେଖିବାର ସୁଯୋଗ ମିଳିନଥାନ୍ତା କି ସେମାନଙ୍କର ଦାରିଦ୍ର୍ୟ ଅଜ୍ଞାନତା, ରୋଗ ସହ ପରିଚିତ ହେବାର ସୁଯୋଗ ନଥାନ୍ତା । ଏଭଳି ପୃଷ୍ଠଭୂମିକୁ ନେଇ ମୋର 'ଈପ୍‌ସିତ ସକାଳ' ଉପନ୍ୟାସ ବି ଲେଖିବା କେବେ ସମ୍ଭବପର ହୋଇନଥାନ୍ତା । ଜୀବନ ଯେ ଏତେ ବୈଚିତ୍ର୍ୟପୂର୍ଣ୍ଣ, ଏତେ ବିଡମ୍ୱିତ ହେଇପାରେ ଏଠାକୁ ଆସି ହିଁ ଜାଣିଲି । ପୁଣି ମୁଁ ଯେ ସବୁ ପରିସ୍ଥିତି ସହ ଆଡ୍‌ଜଷ୍ଟ କରିପାରେ ବିଶ୍ୱାସ ମଧ ଆସିଯାଇଥିଲା ।

ଠାକୁରମୁଣ୍ଡାରେ ଜୟେନ୍ କଲାପରେ ଚାଲିଲା ଘର ଖୋଜା । ମଫସଲ ଗାଁରେ ଘର ଭଲ ଥିଲେ ଇଲେକ୍ଟ୍ରିକ୍ ନଥାଏ । ଏସବୁ ଥିଲେ ପାଇଖାନା କି ଗାଧୁଆଘର ନଥାଏ ।

ପାଇଖାନା ବିନା ପୁଣି ପୋଖରୀରେ ଗାଧୋଇବା ବି ସମ୍ଭବପର ନଥିଲା । ତାହେଲେ କ'ଣ ଚାକିରି ଛାଡିବାକୁ ପଡିବ ? କିନ୍ତୁ ଭଗବାନଙ୍କ ଇଚ୍ଛା ଯେ ଅଲଗା । ମୋ ସହିତ ଜୟେନ୍ କରିଥିଲେ ମୋ ବାନ୍ଧବୀ ସାବିତ୍ରୀ କବିର ବଡ଼ ଭଉଣୀ ସ୍ୱାତୀ କବି । ତାଙ୍କ ଭାଇଙ୍କ ଶ୍ୱଶୁର ଘର ଥିଲା ଠାକୁରମୁଣ୍ଡା । ଜମିଦାର ଶ୍ରେଣୀର ଲୋକ । ପାଇଖାନା, ଗାଧୋଇବାର ସୁବିଧା ଥିଲା । ସ୍ୱାତୀନାନୀଙ୍କ ସହ ତାଙ୍କ ଭାଇଙ୍କ ଶ୍ୱଶୁର ଘରେ ପେଇଂଗେଷ୍ଟ ହିସାବରେ ରହିବା ସ୍ଥିର ହୋଇଗଲା । ଅଚିହ୍ନା ଜାଗାରେ ଆତ୍ମୀୟତାର ସମ୍ପର୍କ ସେଠି ମୋର ଗଢି ଉଠିଲା । ସେମାନଙ୍କୁ ମଉସା ମାଉସୀ ଡାକେ । ତାଙ୍କର ଗୋଟିଏ ଝିଅ ଯାହା ମୋ ସାଙ୍ଗର ଭାଇଙ୍କୁ ବାହା ହୋଇଥିଲେ ଓ ଗୋଟିଏ ପୁଅ । ତାଙ୍କର ତିନିଟି ଛୋଟ ଛୋଟ ଝିଅ । ସେମାନଙ୍କୁ ଭାଇ ଭାଉଜ କରି ସେ ଘରର ଏକ ସଦସ୍ୟ ପାଲଟିଯାଏ । ତାଙ୍କ ଘରଟି ଗାଁର ଶେଷ ମୁଣ୍ଡରେ ଥିଲା । ତାପରେ ବିସ୍ତୀର୍ଣ୍ଣ ଧାନବିଲ, ପୋଖରୀ । ତାକୁ ଲାଗି ରେଖାଙ୍କିତ ସବୁଜ ପାହାଡ । ବାକି ଅଂଶ ଶାଳ ଜଙ୍ଗଲ । ପ୍ରକୃତି ଫେର୍ ଏତେ ସବୁଜ ? ଏତେ ସୁନ୍ଦର, ମୁଁ ମୁଗ୍ଧ ହୋଇଯାଏ । ଦୂରରୁ ପାହାଡରୁ ଉଠୁଥିବା ଧୂଆଁ ଆଉ ଜଙ୍ଗଲ, ଉପରେ ନୀଳ ଆକାଶ ତଳେ ଉଡିଯାଉଥିବା ଧାଡି ଧାଡି ପକ୍ଷୀମାନଙ୍କୁ ସନ୍ଧ୍ୟାବେଳେ ଅନାଇରହେ । ଖୋଲା ପବନ ଆଉ ଧାନ ବିଲର ହିଡେ ହିଡେ ସ୍ୱାତୀନାନୀ ଓ ମୁଁ ଚାଲିଥାଉ । କେବେ କେବେ ତାଙ୍କର ସେ ବିରାଟ ପୋଖରିରେ ଜାଲ ପଡେ । ମାଛଧରା ଦେଖୁ । ପୁଣି ସେମାନେ ପରିବା ଚାଷ କରି ହାଟକୁ ମାର୍କେଟକୁ ନେଇଥାନ୍ତି । ଶଗଡ ପରିମାଣରେ ବାଇଗଣ, କବି, ଟମାଟୋ, ଭେଣ୍ଡି ପ୍ରଭୃତି ଅଗଣାରେ ତୋଳାଯାଇ ଗଦା ହୋଇଥାଏ । ବେପାରିମାନେ ଆସି ନେଇ ଯାଆନ୍ତି । ଦେଖିବାକୁ ଖୁସି ଲାଗେ ।

ଜୟେନ୍ କରିବାର ମାସେ ପରେ ଭୁବନେଶ୍ୱରରେ ଟ୍ରେନିଂ ପଡେ । ସେଇଠି ହିଁ ସ୍ୱାତୀନାନୀଙ୍କର ପାଗଳାମୀ କଥା ଜାଣେ । ତିନିମାସ ଟ୍ରେନିଂ ଭିତରେ ଗୋଟାଏ ମାସ ଥିଲା field work । ଆଉ ଦୁଇ ମାସ କ୍ଲାସ୍ ଏବଂ ପରୀକ୍ଷା । ଟ୍ରେନିଂ ସମୟରେ ମନସ୍ତତ୍ତ୍ୱ ଅଧ୍ୟାପକ ତଥା କବି ପ୍ରମୋଦ ମହାନ୍ତି ଆମର କ୍ଲାସ ନିଅନ୍ତି । ମୋ ନାଁ ଦେଖି ପଚାରିଲେ ଝଙ୍କାରରେ ଗପ ଲେଖୁଥିବା କବିତା ବାରିକ୍ ତୁମେ ନୁହେଁ ତ ? ଏ ଲାଇନ୍‌କୁ କେମିତି ଆସିଲ ? ସେତେବେଳେ ଗୋଟିଏ ଆକ୍ସିଡେଣ୍ଟରେ ତାଙ୍କ ଗୋଡ ଅକାମୀ ହୋଇଯାଇଥାଏ । ଆଶାବାଡି ସାହାଯ୍ୟରେ ସେ ଚଲାବୁଲା କରୁଥାନ୍ତି । ଥରେ ତାଙ୍କ ସହ ପାହାଚରୁ ଓହ୍ଲାଇଲା ବେଳେ କହିଥିଲି ସାର୍ ! କହିବେତ ଆପଣଙ୍କୁ ଓହ୍ଲାଇବାରେ ସାହାଯ୍ୟ କରିବି । ସେଦିନ ସେ ଅମାୟିକ ହସଟିଏ ହସି କହିଥିଲେ, କବିତା ! ମନେ ରଖିବ ଜୀବନରେ ଅତି ଆବଶ୍ୟକ ନହେଲେ କେବେ କାହାରି ସାହାଯ୍ୟ ନେବନାହିଁ ।

ମୁଁ କାହାରି ଦୟା, ସହାନୁଭୂତି ଚାହେଁନା ।  ସବୁ ସତ୍ତ୍ୱେ ଇଚ୍ଛା କରୁଛି ନିଜର ବୋଝ ନିଜେ ସମ୍ଭାଳିବାକୁ । ତାଙ୍କ କଥା ପ୍ରିଣ୍ଟ୍ କଲା ଭଳି ମୋ ମନରେ ଛାପି ଯାଇଥିଲା । "ଦେବୀପାଦ"ର କବି ପ୍ରମୋଦ ମହାନ୍ତିଙ୍କୁ ମନେ ମନେ ନମସ୍କାର କରିଥିଲି ଆଉ ଭାବିଥିଲି ପ୍ରତ୍ୟେକ ସଚେତନ ଶିଳ୍ପୀର ଆତ୍ମ ଅଭିମାନ ରହିବା ଦରକାର । ସ୍ୱାଭିମାନ ବିନା କଳାକାର ଯେ ଜୀଇଁ ପାରେନା । ସ୍ୱାଭିମାନ ନଥିବା ମଣିଷଟି କେବେ କଳାକାର ହୋଇ ନପାରେ । ୨୦୦୯ରେ ସାର୍ କେନ୍ଦ୍ର ସାହିତ୍ୟ ଏକାଡେମୀ ପାଇବା ଜାଣି ମୁଁ ଖୁବ୍ ଆନନ୍ଦିତ ହୋଇଥିଲି । ପ୍ରଚାର, ପ୍ରସାର, ବିଜ୍ଞାପନଠାରୁ ବହୁ ଦୂରରେ ରହିଥିବା ପ୍ରମୋଦ ସାରଙ୍କ ପ୍ରତିଭାକୁ ଯେ କେନ୍ଦ୍ର ସାହିତ୍ୟ ଏକାଡେମୀ ଉପଯୁକ୍ତ ସମ୍ମାନ ଦେଇଛି ଏହା ହିଁ ମୋତେ ଆଶ୍ୱାସନା ଦେଇଥିଲା । ୨୦୧୦ରେ କାଦମ୍ବିନୀର ପତ୍ରିକାମେଳାରେ ସାରଙ୍କ ସହ ଦେଖା ହେଲା । ସାର ସମ୍ପୂର୍ଣ୍ଣ ଭଲ ହୋଇ ଯାଇଥିଲେ । ସେମିତି ହସ ହସ- ଆତ୍ମୀୟ ବ୍ୟବହାର ।

ମୋର ମାସେ ଲାଗି ଖୋର୍ଦ୍ଧାସ୍ଥିତ ଆଡଖଣ୍ଡି ଗାଁରେ ଟ୍ରେନିଂ ପଡେ । ଫିଲ୍ଡ୍ ୱାର୍କରେ ପ୍ରତ୍ୟେକ ସୁପରଭାଇଜରଙ୍କୁ ବିଭିନ୍ନ ଗାଁରେ ଥିବା ଅଙ୍ଗନବାଡିର ଶିକ୍ଷୟିତ୍ରୀଙ୍କ ଘରେ ଛାଡି ଦିଆଯାଏ । ମୋତେ ଆଡଖଣ୍ଡି ଗାଁର ଅନ୍ତର୍ଯ୍ୟାମୀ ସାହୁଙ୍କ ଘରେ ରହିବାର ବ୍ୟବସ୍ଥା କରାଯାଇଥିଲା । ତାଙ୍କ ସ୍ତ୍ରୀ ଅଙ୍ଗନବାଡିର ଶିକ୍ଷୟିତ୍ରୀ । ଖୁବ୍ ଗରୀବ । ଗୋଟିଏ ମାତ୍ର ରୁମ୍ ଓ ଟିକେ ଅଗଣାରେ ଚାରିଜଣ ପିଲାଙ୍କ ସହ ରହନ୍ତି । ସେଠି କେମିତି ରହିବି ମୁଣ୍ଡ ଘୁରିଗଲା । ମାସେ ସମୟ ଯୁଗଟିଏ ଭଳି ମନେ ହେଲା । ସେମାନଙ୍କର ବ୍ୟବସାୟ ହେଲା ଠୁଙ୍ଗା ବନେଇ ବିକ୍ରି କରିବା । ଅଳ୍ପ କିଛି ଜମି ଅଛି । ଏଇଠି ଦେଖିଲି ଉତ୍କଟ ଦାରିଦ୍ର୍ୟ ଭିତରେ ସଢୁଥିବା ମଣିଷମାନଙ୍କୁ । ଖୋର୍ଦ୍ଧାଠାରୁ କେଇ କି.ମି. ଦୂରରେ ଗାଁ ଟି ଥିଲେହେଁ ଲୋକମାନେ ଏତେ ଅଜ୍ଞାନୀ, ଅନ୍ଧବିଶ୍ୱାସୀ, ସ୍ତ୍ରୀଲୋକମାନେ ଏତେ ପଛରେ ଜାଣି ବିସ୍ମିତ ହୋଇଥିଲି । ମୋ ରହଣି ଭିତରେ ଦେଖିଥିଲି ଗାଁର ପ୍ରାୟ ଅଧିକାଂଶ ଘରେ ବିଜୁଳି ନଥିଲା । ଡିବି ଆଲୁଅରେ ଚଳୁଥିଲେ ଲୋକେ । ପ୍ରାୟ ପାଠଶାଠ ପଢିନଥାନ୍ତି । ଚାଷ ଅଥବା କୌଳିକ ବୃତ୍ତି କରନ୍ତି । ସେଇଠି ଖୋର୍ଦ୍ଧା ଲୁଙ୍ଗୀ, ଗାମୁଛା, ଲୁଗା ବୁଣିବା ଦେଖିଲି । ବିଭିନ୍ନ ତନ୍ତ ବସିବା ଦେଖିଲି । ଦାରିଦ୍ର୍ୟ ସହିତ ଛୁଆଁ ଅଛୁଆଁ ଭେଦଭାବ, ଅଜ୍ଞାନତା, ଅନ୍ଧବିଶ୍ୱାସ ବି କିଛି କମ୍ ନଥିଲା । ଏହା ହିଁ ଯେମିତି ଥିଲା ଓଡିଶା ଗାଁ ମାନଙ୍କର ପ୍ରକୃତ ମାନଚିତ୍ର ।

ସନ୍ଧ୍ୟା ହେଉ ହେଉ ଲୋକେ ଖାଇପିଇ ଶୋଇ ପଡନ୍ତି । କିରୋସିନୀ ଅଭାବରୁ ବେଶି ରାତି ଯାଏ ଡେଙ୍ଗ ପିଲାମାନେ ପଢାପଢି କରିବା ସମ୍ଭବ ନଥିଲା । ସକାଳ ହେଉ

ହେଉ କେମିତି ଖଟିବା, ପେଟକୁ ଗଣ୍ଡାଏ ଖାଇବା ଓ ଗୁଲିଗପ କରି ପୁଣି ଆଉ ଏକ ସକାଳ ପାଇଁ ବାହାରିଯିବା ଏହା ହିଁ ଥିଲା ସେଠିକା ଜୀବନଧାରା । ଜଣକ ଘରେ ଟିଭି ଥିଲା ଯେ ଦେଖିବା ପାଇଁ ହାଟଭଳି ଭିଡ କରୁଥିଲେ ଲୋକେ । ସିନେମା କଣ ଜାଣନ୍ତି ନାହିଁ ପୁରୁଖା ଲୋକମାନେ । ଟି.ଭି. କେଉଁ ଭାଷା (ହିନ୍ଦୀ)କହୁଛି ବୋଲି ପଚରାଉଚୁରା ହୁଅନ୍ତି ବୁଢାବୁଢୀମାନେ । ହାତୀ, ବାଘ ବାହାରିଲେ ସେମାନେ ଟି.ଭି. ଭିତରେ କେମିତି ପଶିଛନ୍ତି ସେ କଥା ଭାବି ଆଶ୍ଚର୍ଯ୍ୟ ହୁଅନ୍ତି । ସ୍ତ୍ରୀଲୋକମାନେ ଅଧିକାଂଶ ବ୍ଲାଉଜ୍ ପିନ୍ଧି ଜାଣନ୍ତି ନାହିଁ । କିଛି ଅଛନ୍ତି ବ୍ଲାଉଜ୍ ଭିତରେ ବ୍ରା ପିନ୍ଧିବା କଥା ଦେଖି ବା ଜାଣି ସରମରେ ଜୁଡୁବୁଡୁ ହୋଇ ଯାଆନ୍ତି । ସେ ସବୁ କାହିଁକି ପିନ୍ଧାଯାଏ, କେମିତି କିଏ ବନାଏ, କେମିତି ମାପ କରି କିଣାଯାଏ ଓ ନ ପିନ୍ଧିଲେ କଣ ହେବ ବୋଲି ତାଙ୍କ ଭିତରେ ଅନେକ ପ୍ରଶ୍ନବାଚୀ ।

ଆମକୁ ଫ୍ୟାମିଲିପ୍ଲାନିଂ, ପ୍ରତିଷେଧକ ବ୍ୟବସ୍ଥା, ଗର୍ଭବତୀ ମହିଳା ଓ ଶିଶୁର ଯତ୍ନ ସମ୍ପର୍କରେ ଡାକ୍ତରମାନେ ପଢାଇ ସେଠି fieldରେ "ମହିଳା ସମିତି" ଗଢି ବୁଝାଇବା ପାଇଁ ପଠାଯାଇଥିଲା । ପରିବାର ନିୟନ୍ତ୍ରଣ ସହ ଶିଶୁର ଯତ୍ନ ମା କେମିତି ନେବ ସେ ସମ୍ପର୍କରେ ଆଡଖଣ୍ଡି ଗାଁର ସ୍ତ୍ରୀଲୋକମାନଙ୍କୁ ଅଙ୍ଗନବାଡି କେନ୍ଦ୍ରକୁ ଡକାଇ ବୁଝାଇଲା ବେଳେ ଗାଁ ଭୁଆସୁଣୀମାନେ ଟୁପୁରୁ ଟାପୁରୁ ହେଉଥିଲେ, ଏ ଦିଦି ତ ବାହାହେଇ ନାହିଁ ଏତେ କଥା ଜାଣିଲା କେମିତି ? ଏସବୁ ବୁଝାଇଲା ବେଳେ ତାଙ୍କୁ କେମିତି ସରମ ଆସୁନାହିଁ । ସେମାନେ ମୁହଁରେ ଲୁଗାଚାପି ମୁରୁକି ମୁରୁକି ହସୁଥିଲେ ।

ଏମାନଙ୍କର ଅଜ୍ଞାନତା ଦେଖି ଦୁଃଖ ଯେମିତି ଲାଗୁଥିଲା ସେମିତି ସରଳତା ମୋତେ ବିହ୍ୱଳିତ କରୁଥିଲା । ଏକ ବିଂଶ ଶତାବ୍ଦୀ ଆଡକୁ ଦ୍ରୁତ ଗତିରେ ଆମେ ଆଗେଇ ଚାଲିଥିବା ବେଳେ ଏମାନେ କେତେ ପଛରେ ଅଛନ୍ତି ! ଝିଅ ଜୀବନ ଅର୍ଥ ବୁଝନ୍ତି କେବଳ ପିଲା ଜନ୍ମ କରିବା ଓ ସ୍ୱାମୀକୁ ଭଲମନ୍ଦ ରାନ୍ଧି ଖୁଆଇବା, ଘରର ଯାବତୀୟ କାମ କରିବା । ଏହି ଭିତରେ ଶେଷ ହୋଇଯାଏ ଗୋଟେ ନାରୀର ଜୀବନ । ଏଠି ପାଠ ଲୋଡା ହୁଏନି ଲୋଡା ହୁଏ କେବଳ ଶାଠ ବା ଶଣ୍ଢୁଣା । ଚାକିରି କରିବା ବା କିଛି ରୋଜଗାର କରିବା ତ ସୁଦୂର ସ୍ୱପ୍ନ । ତେଣୁ ମୋ ଭଳି ଝିଅଟିଏ ପାଠ ଶାଠ ପଢି ଚାକିରୀ କରି ପୁଣି ଅବିବାହିତା ଅବସ୍ଥାରେ ଘରଦ୍ୱାର, ବାପମା ଛାଡି ଏକ ଅଜଣା ଗାଁରେ ଚିହ୍ନା ଜଣା ନଥିବା ଜଣକ ଘରେ ରହି ମହିଳାମାନଙ୍କୁ ସ୍କୁଲ୍ ଘରେ ଏକାଠି କରି ସେମାନଙ୍କ ବିବାହିତା ଜୀବନର ପରିବାର ନିୟନ୍ତ୍ରଣ କଥା ପିଲା ଜନ୍ମରେ ଅନ୍ତର ରଖିବା, ପିଲାର ଯତ୍ନ ନେବା କଥା କହିବା ନିଶ୍ଚିତ ଭାବରେ ସେମାନଙ୍କ ପାଇଁ ଆଶ୍ଚର୍ଯ୍ୟର କଥା ଥିଲା । ସେ ଗାଁରେ ପାଇଖାନା

କାହାରି ନଥିଲା । ତେଣୁ ପଡିଆରେ ମାସାଧିକ କାଳ ଝାଡା ବସିବା ମୋ ପାଇଁ ସବୁଠାରୁ କଷ୍ଟକର କାମ ଥିଲା । ବିଶେଷକରି ରାତିରେ ଡରିକି ମୁଁ କାଳେ ଝାଡା ଲାଗିବ ବୋଲି ଖାଉ ନଥିଲି । ଗାଧୋଇବା ପାଇଁ ଯଦିଓ ପାଖ କୂଅରୁ ପାଣି ବୋହିକି ଆଣି ଦେଉଥିଲେ, ନହେଲେ ପୋଖରୀକୁ ଯିବାକୁ ପଡୁଥାନ୍ତା ।

ଏହି ସମୟରେ ମୁଁ ମହିଳାମାନଙ୍କ ଉପରେ ଛଅ ସାତୋଟି ଫିଚର ଡାଏରୀରେ ଲେଖିଥିଲି ଯାହା ପରବର୍ତ୍ତୀ ସମୟରେ ପ୍ରଜାତନ୍ତ୍ର ସାପ୍ତାହିକୀରେ 'ନାରୀ-ପୃଷ୍ଠା'ରେ ପ୍ରକାଶ ପାଇଥିଲା । ସେଠି ମାସାଧିକ ରହଣିରେ ଜାଣିଛି ଦାରିଦ୍ର୍ୟ ସହିତ ଅଜ୍ଞାନତା, ଅନ୍ଧବିଶ୍ୱାସ ହିଁ ହୋଇଛି ସେମାନଙ୍କର ସବୁଠାରୁ ବଡ଼ ଶତ୍ରୁ । ଏବେବି ପିଲାଜନ୍ମକୁ ସେମାନେ ଭଗବାନଙ୍କର ଦାନ ବୋଲି ଗ୍ରହଣ କରିଥାନ୍ତି । ଅପରିଷ୍କାର ଶାମୁକା, ପୁରୁଣା ବ୍ଲେଡ୍‌ରେ ସଦ୍ୟଜାତ ଶିଶୁର ନାଭି କାଟନ୍ତି ଯାହାଦ୍ୱାରା ସେପ୍‌ଟିକ୍ ହୋଇ ପିଲା ଅକାଳ ମୃତ୍ୟୁବରଣ କରେ ଅଥବା ପିହୁଳା ଭଳି ରୋଗର ଶିକାର ହୋଇ ଥାଏ । ପୁଣି ପ୍ରସୂତି ମା'କୁ ଏକୋଇଶ ଦିନ ଧରି ସିଝା ତରକାରି ଖାଇବାକୁ ଦିଅନ୍ତି । ଅଧିକାଂଶ ଘରେ ଝିଅ ଯଦି ଚିଠି ଲେଖିବା ଜାଣିଲା କି ଟିକେ ପଢି ଜାଣିଲା ତେବେ ଢେର୍ ପାଠ ହୋଇଗଲା ବୋଲି ବିଶ୍ୱାସ କରନ୍ତି । ସେଭଳି ଝିଅ ସବୁଠାରୁ ପାଠୋଇ ଝିଅ ବୋଲି ଗଣାଯାଏ । ପୁଣି ଯେତେଶୀଘ୍ର ଝିଅକୁ ବାହାକରି ଦେଲେ ସେତେ ମଙ୍ଗଳ ବୋଲି ବାପା ମାଆ ଭାବନ୍ତି । ପୁଣି ପୁଅ ଘର ଯଦି ଜମି ବାଡି ଅଛି ତେବେ ଜୋଇଁ ଗଜମୂର୍ଖ ହେଲେ ବି କିଛି ଯାଏ ଆସେ ନାହିଁ । ପୁଅର ବୟସ ଯେତେ ହେଲେ ହେଁ ତା ବି ବିଚାରକୁ ନିଆଯାଏ ନାହିଁ । ବାପ ସମାନ ଲୋକଟି ନିଜ ସାଙ୍ଗର ଝିଅଟିକୁ ବାହା ହେବାରେ କିଛି ବାଧା ବିଘ୍ନ ନାହିଁ । ଗାଁରେ ଦିଓଳା ଯଦି ଖାଇବାର ଅଛି ତେବେ କାମକୁ ନଯାଇ ପୁରୁଷମାନେ ଖରାବେଳ ସାରା ତାସ୍ ଖେଳ, ମାଛଧରା, ଗଞ୍ଜେଇ ସେବନ, ବିଡି ଟଣା କିମ୍ବା ସଟ୍ଟା, ଜୁଆ ଭଳି ଖେଳରେ ମାତନ୍ତି । ସ୍ତ୍ରୀଲୋକମାନେ ନିଜ ଘର କରଣା ସହ ପୋଖରି ତୁଠରେ ବା ଏକାଠି ହେଲେ ପରଚର୍ଚ୍ଚାରେ ସମୟ କଟାଇବାରେ ବେଶ୍ ଆଗ୍ରହ ପ୍ରକାଶ କରନ୍ତି । ଏହିଭଳି ପରିବେଶରେ ହିଁ ସେମାନେ ଗଢି ଉଠିଥାନ୍ତି । ଅନ୍ୟ କିଛି ଚିନ୍ତା କରିବାର ସୁବିଧା ସୁଯୋଗ ନଥାଏ ।

ଦାରିଦ୍ର୍ୟ କେତେ ଉତ୍କଟ ହେଇପାରେ ତାର ଗୋଟାଏ ଉଦାହରଣ ଦିଆଯାଇପାରେ । ଏ ଗାଁରେ ମୁଁ ଦେଖିଛି ଜଣେ ବୁଢୀ ଲୋକ ଗାଧୋଇ ତାର ଏକମାତ୍ର ଲୁଗାକୁ ଭିଜାଇ ଗୋଟିଏ ପଟ ପିନ୍ଧି ଖରାରେ ଠିଆ ହୋଇ ଅନ୍ୟପଟଟା ଧରି ଶୁଖାଇବାର । ସେହି ଲୁଗାଟି ଚିରିଗଲେ ଆଉ ଅନ୍ୟଲୁଗା ତା ପାଖରେ ନାହିଁ ଦିହ ଘୋଡାଇବାକୁ । କେବଳ ଏ ବୁଢୀଟି ନୁହେଁ ଆମ ରାଜ୍ୟର ହଜାର ହଜାର ନାରୀ

ଏହିଭଳି ଭାବରେ ଜୀବନ ଜୀଅନ୍ତି । ଏହିଭଳି ସଂଗ୍ରାମ ଭିତରେ ସେମାନଙ୍କର ଜନ୍ମହୁଏ ଆଉ ଜୀବନର ଦୀପ ବି ଲିଭିଯାଏ । ମୁଁ ଆଗରୁ କହିଛି ମୋର ଟ୍ରେନିଂ ସମୟରେ ମୋତେ ଜଣେ ଠୁଙ୍ଗା ବିକ୍ରି କରୁଥିବା ବ୍ୟବସାୟୀଙ୍କ ଘରେ ରହିବାକୁ ପଡିଥିଲା । ତାଙ୍କର ଛୋଟ ଛୋଟ ଚାରୋଟି ପିଲା । ସକାଳ ନ ହେଉଣୁ ସେମାନେ ଉଠି ଡିବି ଜାଳି ଠୁଙ୍ଗା ତିଆରି କରିବାରେ ଲାଗିପଡୁଥିଲେ । ଯଦି ଅସାବଧାନତା ବଶତଃ ନିଆଁ ଲାଗିଯିବ ସମଗ୍ର ଗାଁଟା ଜଳିଯିବ । ସାଇର ସ୍ତ୍ରୀଲୋକମାନେ ଠୁଙ୍ଗା ତିଆରି କରି ତାଙ୍କ ଘରେ ଦେଇ ଯାଉଥିଲେ । ସେ ସାଇକେଲ୍‌ରେ ନଦି ଭୁବନେଶ୍ୱରରେ ବିକ୍ରି କରି ସନ୍ଧ୍ୟାବେଳକୁ ଫେରୁଥିଲେ ଓ ପଇସା ଯାହା ଦେବାର ଥିଲା ଦେଉଥିଲେ । ସେ ପଇସାରେ ସେମାନେ ପୁଣି କାଗଜ କିଣୁଥିଲେ । ଚ'ଗୁଣ୍ଡ, ଚିନି,ଚାଉଳ, ଲୁଣ, କିରୋସନି କିଣା ହେଉଥିଲା । ପୁରୁଣା କାଗଜ ପାଇବା ପାଇଁ ସହରକୁ ଯିବାକୁ ପଡୁଥିଲା । ତେଣୁ ପାଠ ପଢାଟି ସେଠି ଏକ ସୌଖୀନ କାମ ଥିଲା, ଜରୁରୀ ନଥିଲା । ଅସଲ କଥା ପେଟ ପୁରିଲେ ସିନା ପାଠ ପଢିବେ । ମୁଠାଏ ଖାଇବା ପାଇଁ ଜନ୍ମରୁ ସଂଘର୍ଷ କରିବାକୁ ପଡୁଥିଲା । ହାତକୁ ଟିକେ ପାଇଗଲେ ସମସ୍ତେ ଠୁଙ୍ଗା ତିଆରି କରି କରିବାରେ ଲାଗିପଡୁଥିଲେ । ଯେଉଁମାନେ ସ୍କୁଲ୍ ଯାଉଥିଲେ ସେମାନେ ବି ସ୍କୁଲ୍‌ରୁ ଫେରିଲା ପରେ ମା ବାପାଙ୍କୁ ଠୁଙ୍ଗା ତିଆରିରେ ସାହାଯ୍ୟ କରୁଥିଲେ । ବାକି ସମୟ ଗଛତଳେ ପଡିଥିବା ଶୁଖିଲା ପତର ଗୋଟାଉଥିଲେ ବଡ଼ ବଡ଼ ବସ୍ତା ଧରି । ପତର ହିଁ ଥିଲା ସେ ଅଞ୍ଚଳର ପ୍ରଧାନ ଜାଳେଣି । ଜାଳିଲା ପରେ ଘର ସାରା ଧୂଆଁ ଭର୍ତ୍ତି ହୋଇଯାଉଥିଲା । ଲୁଗାପଟା ଧୂଆଁଳିଆ ଗନ୍ଧାଉଥିଲା । ଖୁବ୍ ଶୀଘ୍ର ମଇଳା ହେଇଯାଉଥିଲା । ଘରଦ୍ୱାରରେ ଝୁଲ ଭର୍ତ୍ତି ହୋଇ ଯାଉଥିଲା । ବାରମାସୀ ଲହରାକାଶ, ଆଜ୍‌ମା ଲାଗି ରହୁଥିଲା । ଏକେତ ଭଲ କି ମୁଠାଏ ଖାଇବାର ନାହିଁ ପୁଣି ଲୁଗାପଟା ସଫା ପାଇଁ ସାବୁନ୍, ସର୍ଫ କିଣିବା ଲାଗି ସମ୍ବଳ ନାହିଁ । ଗଳା, ଫୁସ୍‌ଫୁସ୍ ରୋଗ ଆକ୍ରାନ୍ତ କଲେ ହେଁ ଚିକିତ୍ସା କରିବା ଲାଗି ସମ୍ବଳ ନାହିଁ । କାହାରି ଘରେ ପାଇଖାନା ନଥିବା କଥା ଆଗରୁ ଲେଖିଛି । ପଡିଆ କିମ୍ବା ବିଲରେ ସେମାନେ ଝାଡା ବସୁଥିଲେ । ସରକାରଙ୍କ ତରଫରୁ ଯେଉଁ ସେଫ୍‌ଟିଲାଟ୍ରିନ୍ କି ବରପାଲି ପାଇଖାନାମାନ ଯୋଗାଇ ଦିଆଯାଇଥିଲା ତାରି ଉପରେ ସେମାନେ ଉଇ ନଲାଗିବା ପାଇଁ ନଡାବିଡା, ଧାନବିଡା ରଖୁଥିଲେ । ଜଣେ ସ୍ତ୍ରୀ ଲୋକଙ୍କୁ ପଚାରିଥିଲି ତମେ ପାଇଖାନା ଥିବା ସତ୍ତ୍ୱେ ନ ବସାଇ ଝାଡା ଯାଉଛ କାହିଁକି ପଡିଆକୁ ? ସେ ମୁହଁଟାକୁ ବିକୃତ କରି କହିଥିଲେ- ଛି ଛି, ଗୋଟାଏ ବନ୍ଦ ଜାଗାରେ କେମିତି ବସିବ ଝାଡା ? ପୁଣି ପାଣି କେଉଁଠି ଆଣିବି ଢାଳିବାକୁ ?

ପୋଖରୀରୁ ଯାଇ ବାଲ୍‌ଟିରେ ବୋହି ଆଣିବ ?

ତାହାଲେ ପୋଖରି ହୁଡାରେ ବସିବ ନାହିଁ କାହିଁକି ? ପୁଣି ତମେ ଯେଉଁ ପାଇଖାନାରେ ବସିବ, ସେଠି ଦେଢଶୁର, ଭାଇବୋହୂ, ଶାଶୁଶ୍ୱଶୁର ସମସ୍ତେ ଯିବେ ? ଛି ଛି ଏ ସହରିଆ ବାବୁମାନେ କେମିତି ଚଳନ୍ତି କେଜାଣି । ଶୁଣିଛି କୁଆଡେ ସେମାନଙ୍କ ଘର ଭିତରେ ପାଇଖାନା । ଏ କେମିତି କଥା । ଘର ମାରା ହେବନି ? ଠାକୁର ଛୁଅନ୍ତା ହେବେନି ? ମୁଁ ଆଶ୍ଚର୍ଯ୍ୟ ହେଇଯାଇଥିଲି । ଛୁଆଁ ଛୁଇଁ ତାଙ୍କ ଭିତରେ ଏତେ ପ୍ରବଳ ଯେ ତା ଆଗରେ ସ୍ୱାସ୍ଥ୍ୟ ସଚେତନତା, ପରିଚ୍ଛନ୍ନତା କିଛି ମାନେ ରଖେ ନାହିଁ । ଆଜି ବି ଗାଁ ମଫସଲରେ ଏ ଚଳଣି ଅଛି । ଲୋକେ ପାଇଖାନା କ'ଣ ଜାଣି ନାହାନ୍ତି । ଯେଉଁମାନେ କିଛି ଜାଣିଛନ୍ତି ପାଣିରେ ସୁବିଧା ନଥିବାରୁ ବ୍ୟବହାର କରିପାରୁ ନାହାନ୍ତି ଆଉ ଅନେକ ଆବଦ୍ଧ ଜାଗାରେ ବସିବାଟାକୁ ଗ୍ରହଣ କରି ନେଇ ପାରୁ ନାହାନ୍ତି ।

ପୁଣି ଯେଉଁ ଆଡଖଣ୍ଡି ଗାଁରେ ମୁଁ ଥିଲି ସେଠି ଗୋଟାଏ ବଡ଼ ପୋଖରି ଥିଲା । ସମଗ୍ର ଗାଁରେ ଲୋକେ ସେଇଠି ଗାଧୁଆ ପାଧୁଆ, ପୋଖରି ପାଣି କରି ଧୁଆ ଧୋଇ ହୁଅନ୍ତି । ବାସନମଜା ଠାରୁ ଲୁଗା କଚା କଚି ସହ ଗାଈଗୋରୁଙ୍କୁ ମଧ ଗାଧୋଇ ଦିଅନ୍ତି । ପୁଣି ଖରାଦିନେ ସେ ପାଣି ଶୁଖି ମାଟିଆ ହୋଇଯାଏ । ଖରାଦିନେ ନଳକୂପ ସବୁ ଶୁଖିଯାଏ । ବାଧହୋଇ ସେହି ପାଣି ପିଇବାକୁ ପଡେ କିମ୍ବା ଆଠ ଦଶ କିଲୋମିଟର ଚାଲିଚାଲି ଯାଇ ମୁଣ୍ଡେଇ ପାଣି ସଂଗ୍ରହ କରିବାକୁ ପଡେ । ତେଣୁ ବେଳେ ବେଳେ ହଇଜା ମହାମରି ବ୍ୟାପେ । କାଛୁ, କୁଣ୍ଡିଆ ତ ବର୍ଷସାରା ଲାଗି ରହିଥାଏ । ତେଣୁ ଏଇ ମାସକ ରହଣି ମୋ ପାଇଁ ଥିଲା ଅତି କଷ୍ଟକର, ଅବର୍ଣ୍ଣନୀୟ । ତଥାପି ମୋର ଯେଉଁ ଅନୁଭୂତି ହେଇଥିଲା ତାହା ମୋ ପାଇଁ ପାଲଟି ଥିଲା ମାଇଲ୍ ଖୁଣ୍ଟ । ଗାଁ ବାଲାଙ୍କର ଆନ୍ତରିକତା, ସରଳତା, ଆତିଥେୟତା ମୋତେ ମୁଗ୍ଧ କରିଥିଲା । ପ୍ରଥମରୁ କଷ୍ଟକର ହୋଇଥିଲେ ହେଁ ମୁଁ ଆଡ୍‌ଜଷ୍ଟ କରି ସେମାନଙ୍କ ଜୀବନଧାରାକୁ ନେଇ କୋଡୋଟି ଗପ ଲେଖିଥିଲି । ସେତିକିବେଳେ ହିନ୍ଦୀ କବି ଜୟ ଶଙ୍କର ପ୍ରସାଦଙ୍କ କବିତାର କେତୋଟି ଧାଡି ମନେ ପକାଇଥିଲି:-

"ଯିସେ ତୁମ୍ ସମ୍‌ଝେ ହୋ ଅଭିଶାପ୍
ଜଗତ୍ କୀ ଜ୍ୱଲା କା ମୂଲ୍
ଈଶ୍‌କା ୱହା ରହସ୍ୟ ବରଦାନ୍
କଭି ମତ୍ ଯାଓ ଇସ୍‌ସେ ତୁମ୍ ଭୁଲ୍"

ମାସ ପୂରିଲା ଦିନ ଖୋର୍ଦ୍ଧାବ୍ଲକ୍‌ର ଆଇ.ସି.ଡି.ଏସ୍ ଗାଡି ଯାଇ ଆଣିବାକୁ ପହଞ୍ଚିଥିଲା । ଗାଁ ସାରା ବୁଢାବୁଢୀ, ଛୁଆପିଲା, ସ୍ତ୍ରୀ ପୁରୁଷ ରୁଣ୍ଡ ହୋଇ ଯାଇଥିଲେ ମୋତେ ବିଦାୟ ଦେବାକୁ । ଯେମିତି ତାଙ୍କ ଗାଁ ଝିଅଟି ଶାଶୁ ଘରକୁ ଯାଉଛି । କେତେଜଣଙ୍କ

ଆଖିରେ ଲୁହ ଡଳ ଡଳ କରୁଥିଲା । ମୁଁ ଯାହାଙ୍କ ଘରେ ଥିଲି ତାଙ୍କ ଘରର ସମସ୍ତେ ସେଦିନ କାନ୍ଦୁଥିଲେ । ମୁଁ ଯଥାସାଧ ସେମାନଙ୍କୁ ବୁଝାଇ, ପିଲାମାନଙ୍କ ହାତରେ କିଛି ଟଙ୍କା ବାଧ କରି ଗୁଞ୍ଜିଦେଇ ଗାଡିରେ ଉଠିଥିଲି । ମୋ ଆଖି ପତା ବି ଓଦା ହୋଇଯାଇଥିଲା । ସେମାନେ ହାତ ହଲାଉଥିଲେ । ଆମ ଗାଡି ଗାଁ ଦାଣ୍ଡରେ ଧୂଳି ଉଡାଇ ଅଦୃଶ୍ୟ ହୋଇ ଯାଉଥିଲା ବେଳେ ମୁଁ ବି ହାତ ହଲାଇ ମୋର ଶେଷ ବିଦାୟ ଜଣାଉଥିଲି ।

× × × × ×

ଟ୍ରେନିଂ ସାରି ମୁଁ ମୟୁରଭଞ୍ଜ ଠାକୁରମୁଣ୍ଡା ବ୍ଲକ୍‌ରେ ଯୋଗ ଦିଏ, ମୋ ଅଧୀନରେ ପ୍ରାୟ ୩୦ରୁ ୩୫ ଯାଏ ଗାଁ ସୁପରଭାଇଜ କରିବାର ଦାୟିତ୍ୱ । ଟ୍ରେନିଂ ସମୟର ଅଭିଜ୍ଞତା ଆଉ ବାସ୍ତବ ଗସ୍ତ ଅଭିଜ୍ଞତା ଭିତରେ ଯେ ଆକାଶ ପାତାଳ ପ୍ରଭେଦ ଖୁବ୍ ଶୀଘ୍ର ଜାଣିପାରେ । ଟ୍ରେନିଂର ଯାହା ଶିକ୍ଷା ଦିଆଯାଇଥିଲା ପ୍ରାକ୍ଟିକାଲ୍ କ୍ଷେତ୍ରରେ ସେମିତି କିଛି ମେଳ ନାହିଁ । କିଛିଟା ଯାହା ଇମ୍ୟୁନାଇଜେସନ୍ ବା ପ୍ରତିଷେଧକ ବ୍ୟବସ୍ଥାରେ ସଫଳତା ଦେଖିଲି । Unicef ଯେଉଁ ମକାଗୁଣ୍ଡ, ଗୁଡ, ରିଫାଇନ୍ ତେଲ, ଗହମ ପ୍ରଭୃତି ଗର୍ଭବତୀ ମହିଳା, ପିଲାମାନଙ୍କୁ ଟନ୍‌ଟନ୍ ସଂଖ୍ୟାରେ ପଠାଉଥିଲା ବାସ୍ତବରେ ତାର କାର୍ଯ୍ୟକାରିତା ନେଇ ପ୍ରଥମରୁ ମୋ ମନରେ ସନ୍ଦେହ ଉପୁଜିଲା । ତାର ସତୁରି ଭାଗ ବାଟମାରଣା ହୋଇଯାଉଥିଲା । ଅଧିକାଂଶ ଅଙ୍ଗନୱାଡିରେ ଶିକ୍ଷୟିତ୍ରୀମାନେ ଠିକ୍ ପରିମାଣରେ ରାନ୍ଧୁନଥିଲେ । ଯେତେପିଲା ଉପସ୍ଥିତ ନାହାନ୍ତି ତା'ର ଦ୍ୱିଗୁଣା ଖାତାପତ୍ରରେ ଉପସ୍ଥିତ ହେବାର ଦେଖିଲି । ସେମାନେ ଯେତେ ଖାଦ୍ୟ ଖାତାପତ୍ରରେ ବ୍ଲକ୍‌ରୁ ଇସ୍ୟୁ କରୁଛନ୍ତି କୁଆଡେ ସେତେ ପରିମାଣରେ ଦିଆଯାଏ ନାହିଁ । ବ୍ଲକ୍ ଅଧିକାରୀ, ସି.ଡି.ପି.ଓ ତଥା କିରାନିମାନଙ୍କର କମିଶନ ଅଛି । ତେଲଟିଣ, ମକାଗୁଣ୍ଡ, ଗହମ ପ୍ରଭୃତି ବାହାରେ ବିକ୍ରି ହେଉଛି । କେତେକ ଜାଗାରେ ବି.ଡି.ଓ, ସି.ଡି.ପି ଓ ସେମାନଙ୍କ ଗାଈ ଗୋରୁ ମାନଙ୍କୁ ଖୋଇବା ପାଇଁ ମକାଗୁଣ୍ଡ ବସ୍ତା ଘରକୁ ନେଇଯାଉଛନ୍ତି । ଯାହା ଦାୟିତ୍ୱରେ ଏ ସବୁ ଅଛି ସେମାନଙ୍କ ଘରେ ମକାଗୁଣ୍ଡ ପକୋଡି, ଛଣାଛଣି କରି ଆରାମ୍‌ରେ ଖାଉଛନ୍ତି ପୁଣି ଆତ୍ମୀୟ ସ୍ୱଜନମାନଙ୍କୁ ବାଣ୍ଟୁଛନ୍ତି, ବିକୁଛନ୍ତି । ସେମିତି ସ୍ଲେଟ୍, ବହି, ପୋଷାକର ଅବସ୍ଥା । ଯେଉଁ ଭିଟାମିନ୍ ଆଇରନ୍ ବଟିକା ପ୍ରଭୃତି ଗର୍ଭବତୀ ମହିଳାମାନଙ୍କୁ ମୁକ୍ତ ଦେବା ଲାଗି ଆସୁଛି ତା ଅବସ୍ଥା ବି ତଦ୍ରୂପ । କିନ୍ତୁ ଖାତାପତ୍ରରେ ସବୁ ଠିକ୍ ଠାକ୍ ଚାଲିଛି । ଖାତାରେ ପରିବାର ନିୟନ୍ତ୍ରଣ ଅସ୍ତ୍ରୋପ୍ରଚାର, ପୋଲିଓ ପ୍ରଭୃତିର ଚଢ଼ା ହିସାବ ଦେଖାଯାଏ । ପ୍ରସବ ପରେ ମା'କୁ ଯେଉଁ ଅନୁଦାନ ଟଙ୍କା ଦିଆଯାଏ ସେଥିରେ ବି ସ୍ୱାସ୍ଥ୍ୟକର୍ମୀ ମାନଙ୍କର କମିଶନି ରହିଛି । ମୋ ଅନୁଭୂତିରୁ

ଜାଣିଲି ୟୁନିସେଫ ଯେଉଁ ସ୍ୱପ୍ନ ନେଇ ମା' ଶିଶୁ କଲ୍ୟାଣ ପାଇଁ ଏତେସବୁ ଅନୁଦାନ ଦେଇଛି ବାସ୍ତବ କ୍ଷେତ୍ରରେ ତାର କାର୍ଯ୍ୟକାରୀତା ହେଉଛି ବହୁତ କମ୍ । ଉପରୁ ତଳ ଯାଏଁ ବାଟମାରଣା । ସହଜରେ ରୋଜଗାର କରିବା ପାଇଁ ଏହା ଏକ ସୁବିଧାଜନକ ଧନ୍ଦା । ତେଣୁ ଅଙ୍ଗନୱାଡ଼ିର ଶିକ୍ଷୟିତ୍ରୀ ପାଇଁ ସେମାନେ ସେମାନଙ୍କ ଅଧିକାରୀଙ୍କୁ ମୋଟା ଅଙ୍କର ହାତଗୁଞ୍ଜା ଦେଇ କେତେକ କ୍ଷେତ୍ରରେ ନିଯୁକ୍ତି ପାଇଥିବା କଥା ମଧ୍ୟ ମୁଁ ଶୁଣିବାକୁ ପାଇଲି । ତାର ତ ପୁଣି ସେମାନେ ଭରଣା କରିବେ । କେତେକ ସ୍ଥାନରେ ଅଙ୍ଗନୱାଡ଼ି କେନ୍ଦ୍ରର ଶିକ୍ଷୟିତ୍ରୀ ଓ ସେମାନଙ୍କ ସ୍ୱାମୀମାନେ ମୋତେ ଲାଞ୍ଚ ଯାଚିବା, କୁକୁଡ଼ା, ଚାଉଳ ପ୍ରଭୃତି ଯାଚିବା ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଏମିତି କୁଆଡେ ସମସ୍ତେ ନିଅନ୍ତି । କେତେକ କେନ୍ଦ୍ରରେ ଖାଦ୍ୟ ଠିକ୍ ପରିମାଣରେ ଦିଆଯାଉ ନଥିବାରୁ ଓ ଖାତା ପତ୍ରରେ ଥିବା ଷ୍ଟୋକ୍ ବାସ୍ତବରେ ଷ୍ଟୋକ୍ ପରିମାଣରେ ସନ୍ଦେହ ଜନ୍ମିବାରୁ ମୁଁ ଓଜନ କରାଇଥିଲି ଓ ସ୍ଥାନୀୟ ଲୋକଙ୍କୁ ପଚାରି ସତ୍ୟତା ଅନୁଧ୍ୟାନ କରି ଶିକ୍ଷୟିତ୍ରୀଙ୍କ ବିରୋଧରେ ଖାତାରେ ଲେଖି ଦେଇଥିଲି । ତେଣୁ ଖୁବ୍ ଶୀଘ୍ର କେତେଜଣଙ୍କର ଶତ୍ରୁ ହୋଇଯାଇଥିଲି । କିଛି କୁଜିନେତା, ଗାଁ ଟାଉଟରଙ୍କ ରୋଷ ଦୃଷ୍ଟିରେ ପଡିଗଲି । ବଣ ପାହାଡ ରାସ୍ତା ଅତିକ୍ରମ କରି ସୁପରଭାଇଜର ମାନେ ଗାଁ ଗାଁ ବୁଲିବା ପାଇଁ କୌଣସି ଗାଡି କି ମାଧ୍ୟମ ଯୋଗାଇ ଦିଆଯାଏ ନାହିଁ । ସେମାନଙ୍କ ସୁରକ୍ଷା ପାଇଁ ସରକାରଙ୍କ ଧ୍ୟାନ କି ଦୃଷ୍ଟି ନଥାଏ । ସେମାନେ କାହାର ସାଇକେଲ୍ ପଛରେ ଟୁର୍ କରନ୍ତି । ବଣ ଜଙ୍ଗଲ ଭିତରେ ଯାଉଥିବା ବେଳେ ଜୀବନ ଯେ ସଙ୍କଟପୂର୍ଣ୍ଣ ଏହା ଉପରେ ସରକାରଙ୍କର ମୁଣ୍ଡ ଖେଳାଇବାକୁ ବେଳ ନଥାଏ । ମୋର ତ ସାଇକେଲ୍‌ରେ ବସିବା ଅଭ୍ୟାସ ନଥିଲା । କିନ୍ତୁ ବାଧ୍ୟ ହୋଇ ବସିବାକୁ ପଡିଲା । ଯେଉଁ ପିଅନଟି ନବା ଆଣିବା କରୁଥିଲା ତାକୁ ମାସକୁ କିଛି ଟଙ୍କା ଦେଉଥିଲି । ସେ କହିଲା, ଦିଦି ! ଆପଣ ଯେମିତି ସତକଥା ଖାତାରେ ଲେଖି ଦେଇ ଆସୁଛନ୍ତି ସେଥିରେ ବହୁତ ବିପଦ ରହିଛି । ଜାଣନ୍ତିନି ଏ ବଣୁଆ ଲୋକଙ୍କ କଥା । କେତେବେଳେ କ'ଣ କରିବେ । ଆପଣ ଅବିବାହିତା, ଏକୁଟିଆ ଝିଅଟାଏ । ରାସ୍ତା ଘାଟରେ ଏକା ଏକା ଯାଉଛନ୍ତି । କେତେବେଳେ କ'ଣ ଘଟିବ । ଏମିତି ଥରେ ଜଣେ ସୁପରଭାଇଜରଙ୍କୁ ଟାଙ୍ଗିଆରେ ହାଣି ପକାଇଦେଲେ । କିଏ ମାରିଲା କିଛି ପତା ମିଳିଲା ନାହିଁ । ବିଚରା ଅସମୟରେ ଚାଲିଗଲା । ତା ଛଡା ଆପଣ କାଗଜରେ ତାଙ୍କ ବିରୋଧରେ ଲେଖିଦେଲେ ସେମାନେ ବି.ଡି.ଓ. କି ସି.ଡି.ପି.ଓଙ୍କୁ କୈଫତ୍ ଦେବେ ଯେ ଆପଣ ସେମାନଙ୍କୁ ମକାଗୁଣ୍ଡ ବସ୍ତା କି ତେଲଟିଣ ମାଗୁଥିଲେ । ନଦେବାରୁ ରାଗ ରଖି ଲେଖିଦେଲେ । । ଏଥିପାଇଁ ପ୍ରତ୍ୟେକ୍ଷ ସାକ୍ଷୀ ଦେବାକୁ ବି ଲୋକେ ବାହାରି ପଡିବେ । ଟଙ୍କା କ'ଣ ନକରେ ।

ଶେଷରେ ଆପଣ ସସ୍‌ପେଣ୍ଡ ହେବେ ।

ରାଜନୀତିର ଏଇ ନୂଆ ମନ୍ତ୍ରପାଠ ଶୁଣି ମୁଁ ବିସ୍ମିତ ହୋଇଥିଲି । ଏଭଳି ଅନୁଭୂତି ମୋର କେବେ ନଥିଲା । ଲାଞ୍ଚ ନେଲେ ଦୋଷ, ନହେଲେ ଦୋଷ । ଅନ୍ୟାୟ ବିରୋଧରେ ଲଢେଇ କଲେ ମାରି ଫିଙ୍ଗିଦେବେ କି ରାସ୍ତା ଘାଟରେ ଇଜ୍ଜତ ନେଇ ଛାଡିଦେବେ । ବିବେକର ଏ ଯେଉଁ ସଂଘର୍ଷ ମୋର ସେଠି ହୋଇଥିଲା, ତାହା ମୋ କୋମଳ ମନକୁ ଖୁବ୍ ଆଘାତ ଦେଇଥିଲା । କେତେ ଛୋଟ ଛୋଟ ପିଲା ଅଙ୍ଗନୱାଡିରେ ପଢନ୍ତି । କେତେ ଗରିବ ସେମାନେ । ପେଟକୁ ଭଲ କି ଖାଇବାକୁ ପାଆନ୍ତି ନାହିଁ । ଖାଇବା ଆକର୍ଷଣରେ ହିଁ ସେମାନେ ଆସନ୍ତି । ଅଥଚ ଏହି ପିଲାମାନଙ୍କର ଦାନା ପାଣିକୁ ଗାଈଗୋରୁ ମାନଙ୍କ ପାଇଁ ବୋହି ନିଆଯାଏ । ହାଟ ବଜାରରେ ବିକ୍ରି କରାଯାଏ । ଘରେ ଛଣାଛଣି କରି ଖିଆଯାଏ । ସେମାନଙ୍କୁ ଧର୍ମ ସହୁଛି କେମିତି ? ମୋ ଭଳି ଏକ ସାଧାରଣ, ନିରିହା ଝିଅ କଣ କରିବ ସେଠି ? କେବଳ ନିଜ ଜୀବନ ପାଇଁ ବିପଦକୁ ଟାଣି ଆଣିବା ସାର ହେବ । ଇଚ୍ଛା ହେଉଥାଏ ଚାକିରି ଛାଡି ଦିଅନ୍ତି । ଏ କି ଜୀବନ ମୋର ? କେଉଁଠି ଆସି ପହଞ୍ଚିଗଲି ? କ'ଣ ହେବାକୁ ଚାହିଁଥିଲି, କଣ ହେଇଗଲି ? ଏଇ ଅଚିହ୍ନା ବଣ ପାହାଡ ଭିତରେ ମାରି ଫିଙ୍ଗି ଦେଲେ କେହି ଜାଣି ପାରିବେ ନାହିଁ । ଘରଲୋକେ ଖୋଜିଲା ବେଳକୁ ଶିଆଳ, କୁକୁରର ଆହାର ହୋଇ ସାରିଥିବ । ଖୁବ୍ ଡର ମାଡିଥିଲା । ତା'ଛଡା ଯେଉଁ ପିଅନଟି ମୋତେ ନବା ଆଣିବା କରୁଛି ତାକୁ ବି ଯଦି ଏମାନେ ହାତ କରି ଦିଅନ୍ତି ? ଅର୍ଥ ଓ ଲୋଭ ତ ମଣିଷର ସ୍ୱଭାବ ନଷ୍ଟ କରେ । ଦୁର୍ଗମ ଅଞ୍ଚଳ ଭିତରେ କେତେବେଳେ କ'ଣ ଘଟିବ ଭାବି ଆଶଙ୍କିତ ହୃଦୟରେ ରହିବାକୁ ବାଧ ହେଲି ।

ସାଇକେଲ୍ ପଛରେ ବସିବା ଅଭ୍ୟାସ ନଥିବାରୁ ଥରେ କେମିତି କେଜାଣି ଚକ ଭିତରେ ଗୋଡ ପଶିଗଲା । ଧାର ଧାର ରକ୍ତ ନିଗିଡି ପଡିଲା । ଶାଢି ବି ଚିରିଗଲା । ଜଣେ ଗାଉଁଲି ମହିଳା ଗେଣ୍ଡୁଫୁଲ ଗଛର ପତ୍ର ଦଳି ତା'ର ରସ ମୋ କ୍ଷତ ସ୍ଥାନରେ ଲଗାଇଦେଲେ । ସଫା କନାଟିଏ ଆଣି ଗୋଡରେ ବାନ୍ଧିଦେଲେ । ସେତେବେଳେ ମନେ ହୋଇଥିଲା ଆପଣା ମଣିଷର ସଂଖ୍ୟା ଏବେ ବି ଏ ପୃଥିବୀରେ ଶେଷ ହୋଇଯାଇ ନାହିଁ । ଆଜି ବି ପରୋପକାରୀ ଲୋକ ଅଛନ୍ତି । ସହରରେ କ'ଣ ଏମିତି କେହି ସେବା କରିଥାନ୍ତା । ନା ଗରିବ ମଫସଲି ଲୋକଟିର ଗୋଡ କଟିଗଲେ କେହି ବାବୁ ମଲମ ଲଗାଇ ପଟି ବାନ୍ଧି ଦିଅନ୍ତେ ?

ଟ୍ରେନିଂ ପରେ ମୁଁ ସାତ ଆଠ ମାସ ଏ ଚାକିରିରେ ଥିଲି । ସେ ଭିତରେ ବହୁ ଗାଁ ବୁଲିଛି । ଶିମଳିପାଳର ପାଦଦେଶରେ କୋଡିଏ ପଚାଶଟି ପରିବାରକୁ ନେଇ ଗୋଟାଏ

ଗୋଟାଏ ଗାଁ । ଲୋକେ ପାଲୁଓ, କନ୍ଦା, ସାଗୁ, ଧାନଚାଷ, ଖଟାଭେଣ୍ଡି କରି ଜୀବନ ନିର୍ବାହ କରନ୍ତି । ଜଙ୍ଗଲରୁ ମହୁଲ ଗୋଟାଇବା ସମୟରେ ଭାଲୁ ଆକ୍ରମଣର ଶିକାର ହୁଅନ୍ତି । କଷାଫଳ, ଅଁଳା, ଝୁଣା, କାଠ ସଂଗ୍ରହ କରି ସହରରେ ବିକ୍ରି କରନ୍ତି । କେତେବେଳେ ହାତୀ ଆକ୍ରମଣ କି ଜଙ୍ଗଲି ଜନ୍ତୁ ଆକ୍ରମଣରେ ବି ଜୀବନ ଦିଅନ୍ତି । ମେଲେରିଆ, ପିଇବାପାଣିର ଉତ୍କଟ ଅଭାବ, ଅସ୍ୱାସ୍ଥ୍ୟକର ବାତାବରଣ, ଖାଦ୍ୟର ଅଭାବ, ବିନା ବିଜୁଳି ବିନା ସ୍ୱାକ୍ଷରରେ ଜୀବନ ସରିଯାଏ । ନିଜ ଜୀବନର କାହାଣୀ ଲେଖିବସିଲା ବେଳେ ଏବେ ବି ସେଦିନର ଅନୁଭୂତି, ଦୃଶ୍ୟ ଚଳଚ୍ଚିତ୍ର ଭଳି ଆଖି ସାମ୍ନାରେ ଏତେ ବର୍ଷ ପରେ ବି ନାଚି ଯାଉଛି । ଓଡିଶା ସତରେ କେତେ ଦରିଦ୍ର ! କେତେ ଅଜ୍ଞାନତା ଅଶିକ୍ଷା ରହିଛି ! ମୂଲିଆ ପୁଅ ମୂଲିଆ ହୋଇ ରହିବାକୁ ବାଧ୍ୟ ହୁଏ । ଜୀବନରେ କୌଣସି ନୂଆ ସମ୍ଭାବନା ନଥାଏ । ଯୌବନକୁ ଅକାଳ ବାର୍ଦ୍ଧକ୍ୟ କୋଳେଇ ନିଏ । ପେଟପାଇଁ ଦି'ଓଳା ଚିନ୍ତା । ଖଣ୍ଡିଏ ପିନ୍ଧିବା ଗଣ୍ଡାଏ ଖାଇବା ଭିତରେ ସାରା ଜୀବନ କଟିଯାଏ । ପୋକମାଛି ଭଳି ଝଡିପଡନ୍ତି । ଜନ୍ମରୁ ମରଣ ଯାଏଁ କେବଳ ଅଭାବ ଆଉ ସଂଗ୍ରାମ ।

ଗାଁ ସବୁ ବୁଲିବା ବେଳେ ଲକ୍ଷ୍ୟ କରିଛି ଲୋକେ ଜାଳେଣି ପାଇଁ ମୂଲ୍ୟବାନ୍ ଶିଶୁକାଠକୁ ଜଳାଇ ଦିଅନ୍ତି । ଟାଉଟର, କଣ୍ଟ୍ରାକ୍ଟର ମାନଙ୍କ ପ୍ରରୋଚନାରେ ପଇସା ଲୋଭରେ ନିରିହ ଆଦିବାସୀମାନେ ରାତିରେ ଜଙ୍ଗଲର ଗଛ କାଟି ଦିଅନ୍ତି । ପଟା ଆଣି ପହଞ୍ଚାଇ ଦିଅନ୍ତି । ଧନୀ, ଧନୀ ହେବାରେ ଲାଗିଥାଏ । ପେଟପାଟଣା ପାଇଁ ଗରିବ ଚିରଦିନ ସେହି ଅନ୍ଧାର ମୂଳକରେ ଅବହେଳିତ ହୋଇ ପଡିଥାଏ । ଚିକିତ୍ସା ପାଇଁ ପଇସା ନାହିଁ । ଡାକ୍ତର ଖାନାରେ ପହଞ୍ଚିବାର ଉପାୟ ନାହିଁ । ଠାକୁରମୁଣ୍ଡା ବ୍ଲକ୍‌ରେ ଅଳ୍ପ କେଇମାସ ରହିଥିଲେ ହେଁ ଅନେକ ସ୍ଥାନ ବୁଲି ଦେଖିଛି । ଅନେକ କଥା ଜାଣିବାକୁ ପାଇଛି । ମୋ ଜୀବନର ଏଇ ନଅ/ଦଶମାସ ଏକ ସ୍ମରଣୀୟ ସମୟ । ସେଠି ଅନତି ଦୂରରେ ବସୁଥିବା ହାଣ୍ଡିଆହାଟ ଦେଖିବାକୁ ଯାଇଛି । ହାଣ୍ଡିଆ କେମିତି ତିଆରି ହୁଏ । ଶାଳ ପତର ଠୋଲାରେ ବିକ୍ରି କରାଯାଏ । ତାକୁ କିଭଳି ବୁଟ ସିଝା ସହ ଖାଆନ୍ତି ଦେଖିଛି । ବର୍ଷାଦିନେ ଏ ଜାଗା ଚମତ୍କାର ଦିଶେ । ସତେକି ପ୍ରକୃତି ଲମ୍ବା ସବୁଜ ଶାଢିପିନ୍ଧି ଓହ୍ଲାଇ ଆସେ । ଶିମିଳିପାଳର ସବୁଜ ଜଙ୍ଗଲ, ସବୁଜ ପାହାଡ ଆଉ ଝରଣା ଦେଖି ଯେ କେହି ବିଭୋର ହୋଇଯିବ । ବିଭିନ୍ନ ପ୍ରକାର ଛତୁ ଓ ଫୁଲ ଫୁଟିବା ଦେଖିଲେ ଲୋଭ ଆସିବ । ସେମିତି ସୌନ୍ଦର୍ଯ୍ୟ ସହିତ ମିଶିଛି ଭୟଙ୍କର ବିପଦ । ବିଭିନ୍ନ ଜାତିର ବିଷଧର ସର୍ପଙ୍କର ଆର୍ବିଭାବ ମୁଁ ଥିବା ଅବସ୍ଥାରେ ଦେଖିଛି । ଖରାଦିନେ କି ବର୍ଷାଦିନେ ଚିତି, ତମ୍ପ, ନାଗ, ରଣା ପ୍ରଭୃତି ବିଷାକ୍ତ ସାପମାନେ ଅଗଣାରେ ପଡିଥିବା ଖଟ, ଚେୟାରରେ ଗୁଡେଇ ରହିଥାନ୍ତି

କିମ୍ବା କୁଣ୍ଡଳୀ ପକାଇ ଶୋଇଥାନ୍ତି । କିଏ ବେଙ୍ଗ ଗିଳୁଥାଏ ତ କିଏ ମୂଷା ଧରିଥାଏ । ଲୋକେ ଏମିତି ଅଭ୍ୟସ୍ତ ଯେ କିଛି ବି ପ୍ରଭାବ ପକାଏ ନାହିଁ ସେମାନଙ୍କ ଉପରେ । ଅଥଚ ଟିକିଏ ଅସାବଧାନ ହେଲେ ସେମାନଙ୍କ ଉପରେ ପାଦ ପଡିଯିବ ଏବଂ ସେମାନେ ଚ୍ଛେଟମାରି ଦେବେ ।

ସେମିତି ଜିପ୍‌ରେ ଗଲାବେଳେ ଦେଖିଛି ମାଇଲ୍-ମାଇଲ୍ ଧରି ମହୁଲଗଛ-ମହୁଲଫୁଲ । ଜଙ୍ଗଲ ମହୁଲ ଫୁଲ ବାସ୍ନାରେ ମହକୁଥାଏ । ତା ସହିତ ଅଁଳା, ବାହାଡା ଗଛ । ଶୀତଦିନେ ମହୁଲଗଛ ମୂଳରେ ମହୁଲ ଖାଇବା ପାଇଁ ମା ଭାଲୁ ତା ଛୁଆମାନଙ୍କୁ ଧରି ଆସିଥାଏ । ଏ ସମୟରେ ଲୋକେ ଭାଲୁ ହାବୁଡରେ ପଡିବା ମଧ୍ୟ ସାଧାରଣ କଥା । ଉଇହୁଙ୍କା ମାନଙ୍କରେ ଥିବା ଉଇ ଖାଇବା ପାଇଁ ମଧ୍ୟ ଭାଲୁ ଆସିଥାନ୍ତି । ସେମିତି ଧାନ ବିଲରେ ଯେତେବେଳେ ଧାନ ପାଚିଆସେ ହାତୀପଲ ପଶିଯାଆନ୍ତି । ହାତୀର ହୁଙ୍କାର ତ ଦୂରରୁ ଶୁଣାଯାଏ । ହାବୁଡରେ ପଡିଲେ ଦଳି ମାଂସ ପିଣ୍ଡୁଳାରେ ପରିଣତ କରିଦେବେ । ବହୁ ଘରଦ୍ୱାର ନଷ୍ଟ କରିବା ସହିତ ଜୀବନ ହାନି ଘଟେ । ଅଙ୍ଗନବାଡି କେନ୍ଦ୍ରମାନଙ୍କୁ ଗଲା ରାସ୍ତାରେ ଅନେକ ସମୟରେ ହରିଣ, ଠେକୁଆ, ମୟୂରଠାରୁ ଜଙ୍ଗଲର ମୁକ୍ତ ପଶୁ, ପକ୍ଷୀମାନେ ଅନେକ ପରିମାଣରେ ନିଆରା । ପୁଣି ବର୍ଷା ଦିନରେ ଯେତେବେଳେ ଗାଁ ମାନଙ୍କରେ ବିଲରେ ଧାନଗଛରା ରୁଆଯାଏ ନାରୀ ପୁରୁଷ ବିଭିନ୍ନ ରଙ୍ଗର ଲୁଗାପିନ୍ଧି ନଇଁ ପଡି ଧାନ ରୋଇବା ସହିତ ଉଚ୍ଛଳା ଗୀତର ଲହରିରେ ସ୍ଥାନଟିକୁ ସଂଗୀତମୟ କରିଦିଅନ୍ତି । ସେ ଦୃଶ୍ୟ, ସେ ମିଳିତ ଗୀତର ମୂର୍ଚ୍ଛନା ବି ମନରେ ଅପୂର୍ବ ମାଦକତା ଆଣିଦିଏ ।

ମୁଁ ଯାହାଙ୍କ ଘରେ ପେଇଂ ଗେଷ୍ଟ ଥିଲି ତାଙ୍କ ଘରଟି ଗାଁର ଶେଷ ମୁଣ୍ଡରେ । ତାପରେ ଖାଲି ସବୁଜ ଧାନ କିଆରି ଆଉ ବିସ୍ତୃତ ପାହାଡ । ଝରକା ଖୋଲିଦେଲେ କିମ୍ବା ବାହାରେ ଠିଆହେଲେ ମାଇଲ୍-ମାଇଲ୍ ଧାନବିଲ ଆଖିରେ ପଡେ । ତା ସହିତ ଧୂଆଁଳିଆ ଲମ୍ବି ଯାଇଥିବା ପାହାଡ । କେବେକେବେ ହିଡେ ହିଡେ ଚାଲି ଚାଲି ବହୁବାଟ ଚାଲିଯାଏ । କାନରେ ପଡେ ଧାନବିଲ ଭିତରେ ଥିବା ଆଦିବାସୀ ନାରୀ ପୁରୁଷଙ୍କର ବାଦୀଗୀତ । ମନରୁ ଫାନ୍ଦି ସେମାନେ ସାଙ୍ଗେ ସାଙ୍ଗେ ଶବ୍ଦକୁ ଶବ୍ଦରେ ଯୋଡି ଗୀତ କରି ଗାଇଦିଅନ୍ତି । ପ୍ରତ୍ୟେକେ ଯେମିତି ଜଣେ ଜଣେ ଆଶୁ କବି । ଥରେ ମୁଁ ଯାଇ ସେମାନଙ୍କ ଗୀତ ଶୁଣିବା ପାଇଁ ସେମାନଙ୍କ ପାଖରେ ଠିଆ ହେଲି ଯେ ମୋତେ ଦେଖି ଏକାଠି ଗାଇ ଉଠିଲେ ।

"କିଏ ଗୋ ବିଦେଶୀ, ଚପଲ ପିନ୍ଧି ଠିଆ ହୋଇଛ/ ଅଚିହ୍ନା ହୋଇ ବି ଟିକେ

ଚିହ୍ନା ଚିହ୍ନା ଲାଗୁଛ ।"

ସବୁଠୁ ଆଶ୍ଚର୍ଯ୍ୟ ହେଲି ସମସ୍ତେ ଏକାଠି କେମିତି ଏ ଦୁଇ ଧାଡି ବୋଲି ପକାଇଲେ । ଏମାନଙ୍କ ବଣମଲ୍ଲୀର ପ୍ରତିଭା କିନ୍ତୁ ବଣରେ ଫୁଟି ସେଇଠି ଝଡି ପଡେ । ଏଇଠି ଗରିବ ଆଦିବାସୀଙ୍କ ମେଳରେ ମୁଁ ଏତେ ନିବଡ ଭାବରେ ମିଶି ପାରିଥିଲି ଯେ ସେମାନଙ୍କ ଆତ୍ମୀୟତା, ସ୍ନେହ, ଶ୍ରଦ୍ଧା ଆଜିବି ଭୁଲିପାରୁନି । ଭୋରରୁ ଢେଙ୍କି ପାହାର, ଚୂଡାକୁଟା, ଉଚ୍ଛୁଳା ସଂଗୀତ ସହିତ ମୋତେ ପାଛୋଟି ନେବାର ଦୃଶ୍ୟ, ନାଲି ଗ,ଗ୍ଧଉଳିଆ ମୁଢି ଦେଇ ଆତିଥ୍ୟ ପୂରଣ କରିବା ଏମିତି କେତେଚକଣ ଆଦି ମୋ ହୃଦୟ ସିଲଟ୍‌ରେ ଅଲିଭା ସ୍ମୃତି ହୋଇ ଲେଖାଯାଇଛି । ସେଦିନ ମନେ ହୋଇଥିଲା ମଣିଷ ମଣିଷ ଭିତରେ ଆଜିବି ଭଲ ପାଇବା ଟିକକ ବଞ୍ଚି ରହିଛି । ଯନ୍ତ୍ର ସଭ୍ୟତା ସମ୍ପୂର୍ଣ୍ଣ ଭାବରେ ମଣିଷର ହୃଦୟକୁ ଯନ୍ତ୍ର କରି ଦେଇନାହିଁ । ତେଣୁ 'ସୁନା ସକାଳ' ଉପନ୍ୟାସ (ଯାହା ପରବର୍ତ୍ତୀ ସମୟରେ 'ଈପ୍‌ସିତ ସକାଳ' ନାମରେ ପ୍ରକାଶିତ)ରେ ଲେଖିଥିଲି, "ମଣିଷ ଜୀବନରୁ ସମ୍ପୂର୍ଣ୍ଣ ସକାଳଟିଏ ଏ ଯାଏଁ ହଜିଯାଇ ନାହିଁ । ଆଜିବି ମଣିଷ ଭିତରେ ପ୍ରେମ ଅଛି, ଶ୍ରଦ୍ଧା, ମାନବିକତା ବଞ୍ଚିଛି । ମହୁଲୀ ମଦ ପିଇ ସେ ମାତାଲ ହୁଏ । ମାଦଳର ତାଳେ ତାଳେ ଦଳଦଳ ହୋଇ ନାଚେ, ବଇଁଶୀ ଗୀତରେ ବାଉଳା ସାଜେ, ଶାଳବଣର ସବୁଜ ଜଙ୍ଗଲ ଭିତରେ ଜୀବନର ସନ୍ଧାନ କରେ । ଆଜି ବି ମଣିଷ ଜୀବନରୁ ଗୀତ ହଜିଯାଇ ନାହିଁ । ସପ୍ନ ସରି ନାହିଁ । ସବୁ ଯୁଗରେ ମଣିଷ ସକାଳଟିଏ ପାଇଁ ଅପେକ୍ଷା ରହିଛି ଆଉ ସେହି ସକାଳ ଗତାନୁଗତିକ ସକାଳ ଠାରୁ ଅଲଗା ଏକ ସୁନା ସକାଳ, ଯାହା ଈପ୍‌ସିତ ଆଉ ଅନନ୍ୟ । ଆଜି ବି ଗାଁ ଗହଳିରେ ସେଥିପାଇଁ ରଜଦୋଳିର ଗୀତ କୁଢେଇ ପଡେ । ବାହାଘର ପାଇଁ ଝିଅ କାନ୍ଦଣା ଗୀତ ମୁଖସ୍ତ କରେ । ଶଗଡରେ ବସି ଶାଶୁଘର ଯାଏ ।"

ଏଇଠି ଥିଲା ବେଳେ ସମଗ୍ର ଶିମିଳିପାଳ ଅଭୟାରଣ୍ୟ ଦେଖିବାର ସୁଯୋଗ ମିଳିଥିଲା । ଆମ ଆଇ.ସି.ଡି.ଏସ୍‌ର ଷ୍ଟାଫ୍‌ମାନେ ନୂଆବର୍ଷ (୧୯୮୮) ଦିନ ବଣଭୋଜି ଓ ବୁଲିବା ଲାଗି ଯୋଜନା କରିଥିଲୁ । କହିରଖେ, ଶିମିଳିପାଳ ମୟୂରଭଞ୍ଜର ଏକ ଆକର୍ଷଣୀୟ ପର୍ବତମାଳା । ଏଇଠି ଭାରତ ସରକାରଙ୍କ ଅଭୟାରଣ୍ୟ - ଟାଇଗର ପ୍ରୋଜେକ୍ଟ, କ୍ରକୋଡାଇଲ୍ ପ୍ରୋଜେକ୍ଟ ରହିଛି । ବିସ୍ତୃତ ଜଙ୍ଗଲ ସହିତ ହରିଣ, ବାଘ, ହେଟା, ଗଣ୍ଡା, ଭାଲୁ, ମୟୂର, ଠେକୁଆ, ହାତୀ ଏମିତି କେତେ କ'ଣ । ମୟୂରଭଞ୍ଜର ମହାରାଜାମାନଙ୍କ ଦ୍ୱାରା ପାହାଡ ଶୀର୍ଷରେ ବଙ୍ଗଳାମାନ ତିଆରି ହୋଇଛି । ବିଭିନ୍ନ ଆଡୁ ଟୁରିଷ୍ଟ୍‌ମାନେ ଏଠାକୁ ଆସନ୍ତି । ବିଶେଷ କରି ଖଇରି ବାଘ ଥିଲାବେଳେ ଶିମଳିପାଳର ଯଶୀପୁର ସାରା ଭାରତର ଆକର୍ଷଣୀୟ କେନ୍ଦ୍ର ବିନ୍ଦୁ ପାଲଟିଥିଲା । ଦେଶ ବିଦେଶରୁ ଲେଖକ,

ଦାର୍ଶନିକ, ଦର୍ଶକ, ଫଟୋଗ୍ରାଫର, ଚଳଚ୍ଚିତ୍ର ପ୍ରଯୋଜକମାନେ ଗଦେଇ ପଡୁଥିଲେ । ଖଇରି ଥିଲା ସବୁଠୁ ବଡ଼ ଆକର୍ଷଣ । ମଣିଷ ଭଳି ତା'ର ଆଚରଣ ଥିଲା । ମହାବଳ ବାଘୁଣୀଟେ ହୋଇଥିଲେ ହେଁ ସେ ଚୌଧୁରୀ ପରିବାରରେ ବିଲେଇ ଛୁଆଟେ ଭଳି ଚଳୁଥିଲା । ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିଲା ବେଳେ ଖଇରି ନଈ କୂଳରେ ଏଇ ବାଘୁଣୀ ଛୁଆଟି ମିଳିଥିଲା । ଶ୍ରୀମତୀ ଶତପଥୀ କୁଆଡେ ତା ନାଁ ଦେଇଥିଲେ ଖଇରି । ତାକୁ ଜଙ୍ଗଲରେ ନଛାଡି ସେତେବେଳେ ଥିବା ଫରେଷ୍ଟ ଅଫିସର ଚୌଧୁରୀ ଦମ୍ପତ୍ତି ତାକୁ ପିଲା ଭଳି ପାଳିଥିଲେ । ପରବର୍ତ୍ତୀ ସମୟରେ ସେ ବିରାଟ ମହାବଳ ବାଘୁଣୀରେ ପରିଣତ ହୋଇଥିଲା । ମଣିଷ ଗହଣରେ ବଢିଥିବାରୁ ତାର ଆଚରଣ ବଦଳି ଯାଇଥିଲା । ଶୁଣିଥିଲି ପାଗଳ କୁକୁର କାମୁଡିବାରୁ ସେ ପାଗଳି ହୋଇ ଯାଇଥିଲା ଓ ଶେଷରେ ଝିଅଭଳି ପାଳିଥିବା ଖଇରିକୁ ଚୌଧୁରୀ ଗୁଳି କରିବାକୁ ବାଧ ହୋଇଥିଲେ ଓ ତାର ମୃତ୍ୟୁ ପରେ ତାକୁ ଝୁରି ଚୌଧୁରି ବାବୁ ବି ବେଶିଦିନ ବଞ୍ଚି ନଥିଲେ । ଖଇରିକୁ ନେଇ ଦେଶ ବିଦେଶରୁ ଆସିଥିବା ପ୍ରଯୋଜକ ମାନେ କେତୋଟି ଡକୁମେଣ୍ଟାରୀ ଫିଲ୍ମ ତିଆରି କରିଥିଲେ । ଆଜି ସେ ଘର ଶୂନ୍‌ଶାନ୍, ଖଇରି ରହୁଥିବା ସ୍ଥାନ ତଥାପି ଦର୍ଶନୀୟ ।

ଶିମିଳିପାଳରେ ରହିଛି ଆକର୍ଷଣୀୟ ଜଳ ପ୍ରପାତ ଓ ବହୁ ସୁନ୍ଦର ପାହାଡ, ଜଙ୍ଗଲ । ଓଡିଶା ସରକାର ଯଦି ଯାତାୟତ, ହୋଟେଲ୍, ବଙ୍ଗଳା, ବିଜୁଳି, ପିଇବା ପାଣିର ବ୍ୟବସ୍ଥା କରିପାରନ୍ତେ ତାହାହେଲେ ଏହା ଭାରତର ଅନ୍ୟତମ ଆକର୍ଷଣୀୟ ପର୍ଯ୍ୟଟନ କେନ୍ଦ୍ରରେ ପରିଣତ ହୋଇପାରନ୍ତା । ଏଇଠି ଦେଖିଲି ଜରନ୍ଦା ଜଳପ୍ରପାତ । ପାହାଡ ଉପରୁ ଭୀଷଣ ଗର୍ଜନ କରି ତଳେ ବରଫ ଗୁଣ୍ଡଭଳି ଫେନିଳ ହୋଇ ଖସିପଡୁଛି । କି ଚମତ୍କାର ଦୃଶ୍ୟ । ଶିମଳିପାଳରୁ ବାହାରିଛି ବୁଢାବଳଙ୍ଗ ନଈ । ବୁଢାବଳଙ୍ଗ ନାଁରେ କୁଆଡେ ପାହାଡ ଉପରେ ଗାଁଟେ ଅଛି । ଗାଁ ନାଁରେ ନଈର ନାଁ ହୋଇଛି । ସୂତାଭଳି ଏହାର ଖିଅ ଆରମ୍ଭ ହୋଇଛି ।

ଚହଲାରେ ତ ସକାଳୁ ଖରାରେ ଦଳ ଦଳ ହୋଇ ହରିଣମାନେ ବୁଲିବାର ଦେଖିଲୁ । ଜଳପ୍ରପାତ ସହ ଅଛି ଡାକ ବଙ୍ଗଳା । ମୟୂରଭଞ୍ଜ ମହାରାଜା ଶିକାର କରିବାକୁ ଆସିଲା ବେଳେ ଏଇଠି କୁଆଡେ ରାତ୍ରି ଯାପନ କରୁଥିଲେ । ସେଠିକା ଜଗୁଆଳି କହିଲା ଥରେ ଛୁଆହାତୀଟେ କେମିତି କେଜାଣି ରୋଷେଇ ଶାଳରେ ଅଣ ଓସାରିଆ ଦ୍ୱାରରେ ପଶିଗଲା ଯେ ଆଉ ବାହାରି ପାରିଲା ନାହିଁ । ବିକଳ ଗର୍ଜନ କଲା । ତା ଡାକ ଶୁଣି ମା' ହାତୀ ସହ ପଲେ ହାତୀ ପଳେଇ ଆସିଲେ । ଏମାନେ ପ୍ରାଣ ବିକଳରେ ନିକଟରେ ଥିବା କ୍ରେନ୍ ଘର ଭିତରେ ଥିବା (ମାଟି ତଳେ ଘର, ଲୁହା ଦର୍ଜା) ପଶିଗଲେ । ତାପରେ ପଲେ

ହାତୀ ଡାକବଙ୍ଗଳା ଘରିପଟ ଘୁରିବୁଲିଲେ । ଛୁଆ ହାତୀ ଘର ଭିତରୁ ଡାକ ଦେଉଥାଏ । ହାତୀପଲ ବାହାରୁ ଗର୍ଜୁଥାନ୍ତି । ସେମାନଙ୍କ ହୁଙ୍କାରରେ ବନଭୂଇଁ ଥରି ଉଠୁଥାଏ । ତାପରେ ସେମାନେ ଶୁଣ୍ଢରେ ଦ୍ୱାର ଭାଙ୍ଗି ପକାଇଲେ ଓ ଛୁଆହାତୀକୁ ନେଇଗଲେ । ଆମେ ସେହି କ୍ରେନ୍ ଘରେ ପଶି ହାତୀ, ହେଟାବାଘଙ୍କୁ ବହୁ ସମୟ ଅପେକ୍ଷା କଲାପରେ ଦେଖିଲୁ । ରାସ୍ତାରେ ତ ବାରହା, କୁଟ୍ରା, ମୟୂର, ଭାଲୁ, ଗଣ୍ଡା ପ୍ରଭୃତିଙ୍କ ସହ ଭେଟ ହେଉଥାଏ । ସନ୍ଧ୍ୟା ଟିକେ ହେଲେ ଶହଶହ ମୟୂରଙ୍କ କେକାରବ ଓ ଚଢେଇଙ୍କ କିଚିରି ମିଚିରି ଶବ୍ଦରେ ଜଙ୍ଗଲ କମ୍ପିଉଠେ । ଆମେ ରାସ୍ତାସାରା ହାତୀଗୁହ ଦେଖିଥିଲୁ । ସେଠୁ ଧୂଆଁ ବାହାରୁଥାଏ ଓ ଇଙ୍ଗିତ ଦେଉଥାଏ ସଦ୍ୟ ସେମାନେ ଏଇ ବାଟରେ ଯାଇଛନ୍ତି କି ଆଖପାଖରେ କେଉଁଠି ଅଛନ୍ତି । ପୁଣି ଦେଖିବା ଭଳି ଜାଗାହେଲା ଜେନାବିଲ । ତାର ଜଳପ୍ରପାତ ସହ ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ମନୋରମ ।

ଶିମିଳିପାଳରେ ଭୟ, ଆତଙ୍କ ସହିତ କମନୀୟ, ରୋମାଞ୍ଚ ସୌନ୍ଦର୍ଯ୍ୟ ମିଶି ରହିଛି । ଏହାର ପାଦ ଦେଶରେ କେତୋଟି ବସ୍ତି ଗଢି ଉଠିଛି । ଏ ଜାଗାରେ ପ୍ରାୟ ଖଡିଆଳ ମାନେ ରହନ୍ତି । ଯେଉଁମାନେ ଲାଖ, ଝୁଣା, ପାଲୁଅ ବିକ୍ରିକରି ମୁଖ୍ୟତଃ ଜୀବନ ନିର୍ବାହ କରନ୍ତି । ଏଇଠି ଆମେ କେମିତି ଗଛରୁ ପାଲୁଅ ବାହାର କରି ପାଲୁଅ ପ୍ରସ୍ତୁତ କରନ୍ତି ଦେଖିଲୁ । ଏମାନେ ଅତି ଗରିବ । ମେଲେରିଆ ପ୍ରବଣ ଅଞ୍ଚଳ । ପିଇବା ପାଣି ନାହିଁ, ବିଜୁଳି ନାହିଁ, ସ୍କୁଲ୍ ନାହିଁ, ସମ୍ପୂର୍ଣ୍ଣ ନିରକ୍ଷର । ଅବଶ୍ୟ ଏବେ କିଛି ପରିବର୍ତ୍ତନ ହୋଇ ଥାଇପାରେ । ଆମେ ଗଲାବେଳେ ଜାଣିଲୁ ସେମାନେ ସମ୍ପୂର୍ଣ୍ଣ ନିରକ୍ଷର । ନୂଆ ହୋଇ କିଛି ଦୂରରେ ଅଙ୍ଗନବାଡି କେନ୍ଦ୍ରଟିଏ ଖୋଲିଥିଲା । ରୋଗ ବ୍ୟାଧି ପାଇଁ ଚିକିତ୍ସାର କିଛି ସୁବିଧା ନାହିଁ କି ସୁଯୋଗ ନାହିଁ । ତେବେ ଖଡିଆଳମାନେ ପ୍ରବଳ ଦୁଃସାହସୀ । ଦରକାର ହେଲେ ବାଘ ସହ ମଧ୍ୟ ଲଢେଇ କରିବେ । ଜଙ୍ଗଲରେ ଜନ୍ମ, ଜଙ୍ଗଲରେ ବଢିଛନ୍ତି ଯେତେବେଳେ ଦୁଃସାହସୀ ନହେବେ କିପରି ?

ଶିମିଳିପାଳ ଭିତରେ ଅଁଳା, କଷାଫଳ, ଘରୁକୋଳି ପ୍ରଭୃତି ଗଛ ଦେଖି ତ ମୁଁ ଚମକୃତ ହେଲି । ଠାଏଁ ଠାଏଁ କଦମ୍ବ, ପେସ୍ତା ବାଦାମ ଗଛ ବି ଦୃଷ୍ଟି ଗୋଚର ହେଲା । ଏତେ ପ୍ରାଚୁର୍ଯ୍ୟ ଜଙ୍ଗଲ ଭିତରେ ? ଫେରିଲାବେଳେ ଦନ୍ତାହତୀର କବଳରୁ ବର୍ତ୍ତିବା ଆମ ପାଇଁ ଏକ ସ୍ମରଣୀୟ ଘଟଣା ଥିଲା । ଆମେ ଶେଷ ପର୍ଯ୍ୟାୟରେ ଯାଇଥିଲୁ ମେଘାସନୀ ପର୍ବତମାଳା ଯାହା ଶିମିଳି ପାଳର ସର୍ବୋଚ୍ଚ ଶିଖର । ତା ଉପରେ ଅଛି ସରକାରଙ୍କ ୱାରଲେସ୍ ସେଣ୍ଟର (ଯାହାକୁ ୨୯.୩.୦୯ରେ ମାଓବାଦୀମାନେ ପୋଡି ନଷ୍ଟ କରିଦେବା କଥା ନିଉଜ୍‌ରୁ ଶୁଣିଲି) । ସେଠି ପ୍ରବଳ ଶୀତ । ଗଛ ଅଗ ଗୁଡିକ ପୋଡିଦେଲେ ଯେମିତି

ଦିଶେ ସେମିତି । ଆମ ସାଙ୍ଗରେ ଯାଇଥିଲେ ଜଣେ ଫରେଷ୍ଟ ଗାର୍ଡ ରାସ୍ତା ବତାଇବା ପାଇଁ ଗାଇଡ୍ ହୋଇ । ସେ କହିଲେ ରାତିରେ ବରଫ ପଡୁଛି ତ ତେଣୁ ଗଛ ଅଗ ସବୁ ଏମିତି ଦିଶୁଛି । ସମ୍ପୂର୍ଣ୍ଣ ଉପରୁ ଦିଶୁଛି ବାଲେଶ୍ୱର ଚାନ୍ଦିପୁର ସମୁଦ୍ର । ସେଠୁ ଫେରିଲା ବେଳେ ଦିପଟେ ଅଛି ତୀଖ ଜଙ୍ଗଲ ଓ ଉପରୁ ଗାଡି ଗଡିବା ପାଇଁ ଏକମାତ୍ର ଅଣଓସାରିଆ ରାସ୍ତା । ଉପରୁ ଗାଡି ଗଡୁଥିଲେ ତଳ ଗାଡି ପଛେଇଯିବ କିନ୍ତୁ ଉପର ଗାଡି ପଛେଇବା ସମ୍ଭବ ନୁହେଁ । ଟିକିଏ ଅସାବଧାନତା ହେଲେ ଗହ୍ୱର ଭିତରେ ଗାଡି ଡିଆସିଲି ଖୋଳ ଭଳି ଖସିପଡିବ ଯେ ଶବ ଉଦ୍ଧାର କରିବା ବି କାଠିକର ପାଠ ହେବ । ପାଦେ ପାଦେ ବିପଦ । ସେପଟେ ସନ୍ଧ୍ୟା ହୋଇ ଆସୁଥାଏ । ଜିପ୍ ପାହାଡର ସେହି ତୀଖ ରାସ୍ତାରୁ ତଳକୁ ଗଡୁଥାଏ । ଦେଖାହେଲା ତଳେ ରାସ୍ତା ଓଗାଳି ଠିଆ ହୋଇଛି ପ୍ରକାଣ୍ଡ ଦନ୍ତାହାତୀଟିଏ । ବଣୁଆ ମାଟିରେ ବୋଳି ହୋଇ କଳାହାତୀଟା ସମ୍ପୂର୍ଣ୍ଣ ମାଟିଆ ଦିଶୁଥାଏ । ସେ ଯଦି ଚାହିଁବ ତା ଦୁଇ ଦାନ୍ତରେ କଣ୍ଡେଇ ଭଳି ଜିପ୍‌ଟିକୁ ଟେକି ଦେବ କିମ୍ୱା ଗଡାଇଦେବ । ମୃତ୍ୟୁକୁ ସାମ୍ନାରେ ଦେଖି ସମସ୍ତେ ଆମେ ଥରି ଉଠିଲୁ । ଫରେଷ୍ଟ ଗାର୍ଡ ଜଣକ କହିଲେ ଗାଡି ଅଟକାଅ କିନ୍ତୁ ଷ୍ଟାର୍ଟ ବନ୍ଦ କରନାହିଁ । ପଛ ପଟୁ ଓହ୍ଲାଇ ନଙ୍ଗ ନଙ୍ଗ ବଡ଼ ବଡ଼ ପଥର ଆଣି ଚକତଳେ ଦିଆଗଲା, ଯେମିତି ଗାଡି ସ୍ଲିପ୍ କରିବ ନାହିଁ । ଲାଇଟ୍ ଜଳାଇ ରଖାଯାଇଥିଲା । ସେ ତାପରେ ବାହାର କଲେ ତାଙ୍କ ଥଳିରୁ ବିରାଟ ଶଙ୍ଖଟାଏ । କହିଲେ ଏଇଥିପାଇଁ ଆମେ ଶଙ୍ଖ ପାଖରେ ରଖିଥାଉ ଓ ବଜାଇବା ବି ଅଭ୍ୟାସ କରିଥାଉ ହାତୀକୁ ଘଉଡାଇବା ପାଇଁ । ତାପରେ ବାଜିଲା ଶଙ୍ଖ । କିଛି ସମୟ ପରେ ଦେଖାଗଲା ହାତୀଟା କ୍ରମଶଃ ପଛେଇ ପଛେଇ ଯାଇ ଜଙ୍ଗଲ ଭିତରେ ଅଦୃଶ୍ୟ ହୋଇଗଲା । ଆମେ ସବୁ ଇଷ୍ଟଦେବୀଙ୍କୁ ସ୍ମରଣ କରି ଆଖିବୁଜି ବସିଥାଉ । ତା ପଛରେ ଦୁଇ ତିନୋଟି ଛୁଆହାତୀବି ଚାଲିଗଲେ । ଭଗବାନଙ୍କୁ ଧନ୍ୟବାଦ ଦେଲୁ ଆମ ପୌତୃକ ପ୍ରାଣଟା ବଞ୍ଚିଗଲା ।

ସେଠୁ କିଛିବାଟ ଗଲାପରେ ପଡିଲା ଟାଇଗର ପ୍ରୋଜେକ୍ଟ । ଡ୍ରାଇଭର କହିଲା ଏଠୁ ଶୀଘ୍ର ପାରି ହେଇଯିବା । ବଡ଼ ଭୟଙ୍କର ସ୍ଥାନ । କେଉଁଠି ବାଘ ଲୁଚିଥିବ ଝାମ୍ପ ମାରିବ କିଛି କହିହେବ ନାହିଁ । ସନ୍ଧ୍ୟା ଆଗରୁ ଏ ଜାଗା ଆମର ପାରି ହେଇଯିବା ଉଚିତ୍ ଥିଲା । ଦୁର୍ଭାଗ୍ୟ ଏହି ଜାଗାରେ ଗାଡିର ଡାଇନାମା ଫେଲ୍ କଲା । ଆଲୁଅ ନଥିଲେ ଗାଡି ଆଗେଇବ କେମିତି ? ସରୁ ଜଙ୍ଗଲ ପାହାଡି ରାସ୍ତା । ଜିପ୍ କେଉଁଠି ବାଡେଇଯିବ ତ କଥା ସରିଲା । ଫରେଷ୍ଟଗାର୍ଡ କହିଲେ ଅତୀତର ବାଘ କେଉଁ ଏକ ଜିପ୍ ଉପରେ ଆକ୍ରମଣ କରି ଗାଡି ଭିତରୁ ମଣିଷ ଟାଣି ନେଇଥିଲା । ଆମେ ସମସ୍ତେ ପୁଣି ଭୟରେ

ଶିହରି ଉଠିଲୁ । ଭାଗ୍ୟ ଭଲ ସେ ଦିନଟି ଥିଲା ନୂଆବର୍ଷ । ଅନେକ ଗୁଡ଼ିଏ ଗାଡ଼ି ଜଙ୍ଗଲ ଭିତରକୁ ଆସିଥିଲା । ପାଖାପାଖି ହେଉ ସମସ୍ତେ ସନ୍ଧ୍ୟା ହେଇଯିବା ଯୋଗୁଁ ତର ତର ହେଇ ସେହି ଜାଗାକୁ ପାରିହେବା ପାଇଁ ଫେରୁଥିଲେ । ଆମ ପଛରେ ଆସୁଥାଏ ଏକ ଟ୍ରକ୍ । ଟ୍ରକ୍‌ରେ ଥାନ୍ତି ପିକ୍‌ନିକ୍ ପାର୍ଟି । ଆମ ଅବସ୍ଥା ଜାଣିଲା ପରେ ଆମର ଠିକ୍ ପଛେ ପଛେ ଚାଲିଲା ଟ୍ରକ୍ । ତା ଲାଇଟ୍‌ରେ ଧୀରେ ଧୀରେ ଆମେ ଜଙ୍ଗଲ ପାରି ହେଲୁ । ସମ୍ପୂର୍ଣ୍ଣ ଜଙ୍ଗଲ ଭିତରୁ ବାହାରି ଆସିଲା ପରେ ଯାଇ ଆମ ଦେହରେ ଜୀବନ ପଶିଲା । ଆମେ ହସି ସହ ଗପସପ ହେଲୁ । ଯଦି ବ୍ୟାଘ୍ର ପ୍ରକଣ୍ଠ ଏରିଆରେ ଗାଡ଼ିର ଚକ୍କା ପଙ୍କଚର୍ ହେଇଥାନ୍ତା କେମିତି ଓହ୍ଲାଇ ଚକ ଲଗାଯାଇଥାନ୍ତା । ବାଘ ଆସି ଯଦି ଝାମ୍ପି ନେଇଥାନ୍ତା ? ସେହି ଭୟଙ୍କର ଅବସ୍ଥା ଓ ଅନୁଭୂତି ଆଜି ବି ଲେଖିଲାବେଳେ ମୋତେ ଥରାଇ ଦେଉଛି । ତଥାପି ଏଭଳି ଆଡ୍‌ଭେଞ୍ଚରରେ ଆନନ୍ଦ ଅଛି । ଜୀବନରେ ସମସ୍ତେ ତ ଦିନେ ନା ଦିନେ ମରିବେ । ତେବେ ଏଭଳି ଚାଲେଞ୍ଜ ଯଦି କେବେ ଆସେ ତାକୁ ସାମ୍ନା କଲାବେଳେ ଭୟ ସହିତ ପ୍ରଚୁର ଆନନ୍ଦ, ଉତ୍କଣ୍ଠା ମିଳେ । ଜୀବନ ତ ଛୋଟିଆ, ଆଜି ଅଛି କାଲି ନଥିବ । ଆଜି ତେଲ, ସାବୁନ୍, ସେଣ୍ଟ, ମାଖୁଥିବା ଦେହଟି କାଲି ଶବ ପାଲଟିଯିବ । ତେଣୁ ମରଶରୀରକୁ ଭରସା କାହିଁ ? ସେଥିପାଇଁ ବୋଧହୁଏ କାଳନ୍ଦୀ ଚରଣ ଲେଖିଥିଲେ :-

> "ଆରେ ମରଣର ଦାସ
> କହ କେତେଜଣ ମରିଥିଲେ ଏଥି
> ଗଢ଼ିବାକୁ ଇତିହାସ ।"

ମରଣଶୀଳ ମଣିଷ କିନ୍ତୁ ଅମର ହୋଇପାରେ । ଏହି ଅମରତ୍ୱ ଆସେ ତା ପାଇଁ ନୂଆ ଇତିହାସ ସୃଷ୍ଟି କରି । ପ୍ରତିଭା, ବ୍ୟକ୍ତିତ୍ୱ, କଳାର ବଳରେ ମଣିଷ ଜାତି ନୂଆ ଇତିହାସ ସୃଷ୍ଟି କରି ଚାଲିଛି । ଚାଲିଥିବ ମଧ୍ୟ । Yes life is a challenge, accept it.

ଆଗରୁ କହିଛି ଠାକୁରମୁଣ୍ଡାରେ ଥିଲାବେଳେ ନାରୀ ନିର୍ଯ୍ୟାତନା, ଦାରିଦ୍ର୍ୟ, ଅଜ୍ଞାନତା, ଅଭାବ ପ୍ରଭୃତିକୁ ନେଇ ମୁଁ ପ୍ରଜାତନ୍ତ୍ର ସାପ୍ତାହିକୀରେ କେତେଗୁଡ଼ିଏ ଫିଚର ଲେଖିଥିଲି । ଏହାକୁ କେନ୍ଦ୍ରକରି ମୋ ଜୀବନର ଏକ ବଡ଼ ଘଟଣା ଘଟୁ ଘଟୁ ଅଟକିଗଲା । ନଚେତ୍ କଣ ଯେ ହେଇଥାନ୍ତା କେଜାଣି । ବେଳେବେଳେ ସେହି ଭୟଙ୍କର ଘଟଣା ମନେ ପଡ଼ିଗଲେ ରାତିରେ ନିଦ ଆସେନା । ଜୀବନର କେଉଁ ମୋଡ଼ରେ ପରିସ୍ଥିତି ମୋତେ ପହଁଞ୍ଚାଇ ଦେଇଥାନ୍ତା । କହି ହୁଅନ୍ତା ନାହିଁ । ମୋ ବାନ୍ଧବୀ ସ୍ମିତା ଦାସ ଭଳି ମୁଁ ଆଜି ହୁଏତ ଥାନ୍ତି କଲିକତାର ସୋନାଗାଛି କି ଭୁବନେଶ୍ୱରର ମାଳୀ ସାହିରେ ।

ମୋର ଏଇ ଆଦିବାସୀ ଜୀବନକୁ ନେଇ ପ୍ରକାଶ ପାଉଥିବା ଫିଚର ଗୁଡିକ ପଢି ସେତେବେଳେ ବେଶ୍ କେତେଜଣ ପାଠକ ଚିଠି ଲେଖୁଥିଲେ । ସମସ୍ତଙ୍କୁ ତ ଉତ୍ତର ଦେଇ ହୁଏନି । ତଥାପି ଯେଉଁ ଚିଠି କେତୋଟି ମୋତେ ଭଲ ଲାଗେ ମନକୁ ଛୁଏଁ ମୁଁ ଉତ୍ତର ଫେରାଏ । ଏହିଭଳି ଜଣେ ଅଜିତ୍ ମହାପାତ୍ର ନାଁରେ ପାଠକଙ୍କର ଚିଠି ଆସି ପହଞ୍ଚେ ଠାକୁରମୁଣ୍ଡା ବ୍ଲକ୍ ଠିକଣାରେ । ସେ ଜଣେ ଆଇ.ଏ.ଏସ୍ ଏବେ ଦିଲ୍ଲୀରେ କ୍ରାଇମ୍ ବ୍ରାଞ୍ଚରେ ଅଛନ୍ତି ବୋଲି ନିଜର ପରିଚୟ ଦେଇ ଲେଖିଥିଲେ । ଗୁରୁତର ଆକ୍ସିଡେଣ୍ଟ ଯୋଗୁଁ କଟକରେ ଅଛନ୍ତି ବୋଲି ଜଣାନ୍ତି । କଟକରେ ଥିଲାବେଳେ ହିଁ ବିଭିନ୍ନ ପତ୍ରପତ୍ରିକାରୁ ମୋ ଲେଖାମାନ ପଢିବାର ସୁଯୋଗ ପାଆନ୍ତି । ମୋ ଲେଖା ଏ ଭିତରେ ତାଙ୍କୁ ଏତେ ଆକୃଷ୍ଟ କରିଛି ଯେ ସେ ମୋର ଭକ୍ତ ପାଲଟି ଯାଇଛନ୍ତି । ତାଙ୍କ ଚିଠିର ଭାଷା, ଶୈଳୀ ମୋତେ ଭଲ ଲାଗେ । ମୁଁ ବି ସଂକ୍ଷିପ୍ତରେ ପୋଷ୍ଟକାର୍ଡଟିରେ ଉତ୍ତର ଫେରାଏ । କିନ୍ତୁ ଆଶ୍ଚର୍ଯ୍ୟ ହେଲି ତାପରେ ତାଙ୍କଠାରୁ ପ୍ରତିଦିନ ଖଣ୍ଡିଏ ଲେଖାଁଏ ଚିଠି ପାଇ । ସେ ପ୍ରତିଦିନ ବୋଧହୁଏ ଖଣ୍ଡିଏ ଲେଖାଁ ଚିଠି ଲେଖି ଡ୍ରପ୍ କରୁଥିଲେ । ଯାହାଦ୍ୱାରା ଠାକୁରମୁଣ୍ଡାରେ ମୁଁ ପ୍ରତିଦିନ ଗୋଟିଏ ଚିଠି ପାଉଥିଲି ଯେଉଁଥିରେ ଅଜିତ୍ ମହାପାତ୍ର ଧାରାବାହିକ ଭାବରେ ନିଜ ଜୀବନୀ ଲେଖି ଜଣାଇବା ଆରମ୍ଭ କରି ଦେଇଥିଲେ । ତାଙ୍କର ଜୀବନ କାହାଣୀ ହେଲା ସେ ପୁରୀର ଜଣେ ବିରାଟ ବଡ଼ ଲୋକର ଏକମାତ୍ର ପୁଅ । ଜଷ୍ଟିସ୍ ଲିଙ୍ଗରାଜ ରଥଙ୍କ ନାତି । କଲେଜ ଜୀବନରେ ତପସ୍ୱିନୀ ନାମକ ଝିଅକୁ ଭଲ ପାଇ ବସିଥିଲେ । ସେ ପରବର୍ତ୍ତୀ ସମୟରେ ମନସ୍ତତ୍ତ୍ୱର ଅଧ୍ୟାପିକା । ଆଇ.ଏ.ଏସ୍ ପାଇଲା ପରେ ଅନେକ ପ୍ରଲୋଭନ ଆସିଥିଲେ ହେଁ ସେ ତାକୁ ହିଁ ବାହା ହୋଇଥିଲେ । ଛଅମାସ କଟିଯାଇଥିଲା । ଦିନେ ସେମାନେ ଓଡିଶା ଆସି କୋରାପୁଟ୍‌ର ଏକ ପାହାଡୀ ଜାଗା ବୁଲି ବାହାରିଲେ । ତାଙ୍କ ଫିଆଟ୍ ଗାଡିରେ ନଯାଇ ସେମାନେ ମଟର ସାଇକେଲ୍‌ରେ ଗଲେ । ଖୁସିରେ ମନ ଉଡୁଥିଲା । କିନ୍ତୁ ହାୟ ! ପାହାଡ ଉପରେ ଆକ୍ସିଡେଣ୍ଟ ହେଲା । ତପୁ ଖସିପଡିଲା ୧୦୦ଫୁଟ୍ ତଳକୁ । ସେଇଠି ସେ ଶେଷ ହୋଇଗଲା । ସେତେବେଳେ ପାଞ୍ଚମାସର ପ୍ରେଗ୍‌ନାଣ୍ଟ ଥିଲା । ଏ ମହାଶୟଙ୍କର ବି ଗୋଡହାତ ଭାଙ୍ଗିଥିଲା । ସେ ଦୁଇମାସ ଚିକିତ୍ସିତ ହେଲାପରେ ଏବେ ସମୟ କଟାଇବା ଲାଗି ବା ଛମାସ ଅନ୍ତତଃ ସମ୍ପୂର୍ଣ୍ଣ ସୁସ୍ଥ ହେବା ପାଇଁ ଲାଗୁ ଥିବାରୁ ଓଡିଶାରେ ରହିବାକୁ ବାଧ୍ୟ । କିନ୍ତୁ ଯେଉଁଘରେ ତାଙ୍କ ପ୍ରିୟା ତପସ୍ୱୀର ସ୍ମୃତି, ଯାହା ଜିନିଷ ଅଛି ସବୁଥିରେ ତା ସ୍ପର୍ଶ ଲାଗି ରହିଛି । ସେଠି ରହିବା ସମ୍ଭବପର ନୁହେଁ । ତେଣୁ ସେ ଏକ ହୋଟେଲ୍‌ରେ ରହୁଛନ୍ତି । ସମୟ କଟାଇବା ଲାଗି ବିଭିନ୍ନ ପତ୍ରପତ୍ରିକା ପଢିଲା ବେଳେ ମୋତେ ସେ ଆବିଷ୍କାର କରିଛନ୍ତି ।

ମୁଁ ବୁଝିପାରିଲି ନାହିଁ ମୋତେ ସେ କାହିଁକି ତାଙ୍କ ଜୀବନକାହାଣୀ ଲେଖି ପଠାଇଛନ୍ତି । କ'ଣ ଉଦ୍ଦେଶ୍ୟ ? ନା ତାଙ୍କ ସମ୍ପର୍କରେ ଗପଟିଏ ଲେଖିବି ବୋଲି ସେ ଚାହୁଁଛନ୍ତି ? ତାଙ୍କର ଦୁଃଖର କାହାଣୀ ଯାହା ମନରେ ବି ଦୟା ଜାଗ୍ରତ କରିବ । ତେଣୁ ତାଙ୍କର ଛଅ ସାତଟି ଲଗାତାର ଚିଠିରେ ଜୀବନ କାହାଣୀ ପଢିସାରିଲା ପରେ ସହାନୁଭୂତି, ସାନ୍ତ୍ୱନା ଦେବାଲାଗି ଚିଠିଟିଏ ଲେଖିଥିଲି । ଧୈର୍ଯ୍ୟ ଧରିବାକୁ ନିଜକୁ ସମ୍ଭାଳି ଭଗବାନଙ୍କ ହାତରେ ସମ୍ପୂର୍ଣ୍ଣ ସମର୍ପି ଦେବାକୁ ପରାମର୍ଶ ଦେଇଥିଲି । କିନ୍ତୁ ଚମକାଇ ଦେଇ ଚିଠି ଆସିଲା, "ଆପଣଙ୍କୁ ଯଦି ମୁଁ ବିବାହ ପ୍ରସ୍ତାବ ଦିଏ । ମନା କରୁନ୍ତୁନି । ଆପଣଙ୍କର ଲେଖା ପଢି ମୋର ମନ ହେଲା ଆପଣ ହିଁ ତପସ୍ୱୀର ସ୍ଥାନ ପୂରଣ କରିପାରିବେ ।"

ମୁଁ ଉତ୍ତର ଦେଲି ନାହିଁ । କି ଆଶ୍ଚର୍ଯ୍ୟ । ଦେଖା ନାହିଁ, ଚିହ୍ନା ନାହିଁ ଏକାବେଳକେ ସିଧାସଳଖ ବିବାହ ପ୍ରସ୍ତାବ । ପୁଣି ଆସିଲା ଚିଠି, "ଆପଣ ମୋ ଚିଠିର ଉତ୍ତର ନଦେଇ ନୀରବ ରହିଗଲେ କାହିଁକି ? ପ୍ଲିଜ୍, ଆପଣଙ୍କ ଗୋଡ ତଳେ ଆଣ୍ଠୁପାତି ମୁଁ ଆପଣଙ୍କୁ ମାଗୁଛି । ଭିଖାରିର ଭିକ୍ଷାଥାଳକୁ ଖାଲି ହାତରେ ଫେରାଇ ଦିଅନ୍ତୁ ନାହିଁ । ମୋର ଧନ ସମ୍ପତ୍ତି କିଛି ଲୋଡା ନାହିଁ । ପିନ୍ଧାଲୁଗା ଖଣ୍ଡିଏ ଯାହା ପିନ୍ଧି ଆସିବେ । ମୋ ଜୀବନରେ ପୁଣି ଫୁଲ ଫୁଟିବ । ମୋତେ ଆପଣ ନବଜନ୍ମ ଦେବେ । କୁହନ୍ତୁ, କ'ଣ କମି ମୋର ? ଆପଣ କିନ୍ତୁ ଚାକିରି କରି ପାରିବେନି ମୋ ପାଖେ ପାଖେ ରହିବେ ଛାଇ ଭଳି ।"

ଏ କି ପାଗଳାମି ? ଭାବି ପାରିଲି ନାହିଁ କିଛି । ଚିନ୍ତା କରିବାର ସମୟ ମାଗିଲି । ପୁଣି ଆସିଲା ଚିଠି, "ଶୁଣିଥିଲି ଲେଖିକାମାନେ କୋମଳ ହୃଦୟ । ମୋ କ୍ଷେତ୍ରରେ ଏତେ ନିଷ୍ଠୁର ? ମୁଁ ରାଣୀ ଭଳି ରଖିବି । କିଛିରେ କମ୍ କରିବିନି । କିଣା ଚାକର ଭଳି ରହିବି । ଲେଖାଲେଖି ସବୁଥିରେ ସୁବିଧା ସୁଯୋଗ ଦେବି । ଆଉ ଗୋଟାଏ କଥା ଏକଥା ଘରେ ବି କହାକୁ କହିବେ ନାହିଁ । ସବୁ ଠିକ୍ ଠାକ୍ ହେଲାପରେ ଘରେ ଯାଇ ଚମକାଇଦେବା ।"

ପ୍ରଥମରୁ ମୋର ସନ୍ଦେହ ବୋଲି କିଛି ଆସିନଥିଲା ଓ ଜଣେ ପାଠକର ଦୁଃଖଦ ଜୀବନ କାହାଣୀ ବୋଲି ହାଲକା ଭାବେ ଗ୍ରହଣ କରି ନେଇ ଥିଲି । କିନ୍ତୁ ବିବାହ ପ୍ରସ୍ତାବ ଦେବା ଓ ଘରେ କାହାକୁ ଜଣାଇବାକୁ ମନାକରିବା ପ୍ରଭୃତି କେମିତି କେଜାଣି ମୋ ମନରେ ଟିକେ ସନ୍ଦେହ ଜାତ କଲା । କ'ଣ ମନେ ହେଲା କେଜାଣି ଯେଉଁ ଠିକଣାରେ ଚିଠି ଆସୁଥିଲା ଓ ନିଜ ସମ୍ପର୍କରେ ଯାହା ବି ବର୍ଣ୍ଣନା ଥିଲା ବିଶେଷକରି ଲିଙ୍ଗରାଜ ରଥଙ୍କ ନାତି କି ନା ଏମିତି ଜାଣିବା ପାଇଁ ମୁଁ ଦିଲ୍ଲୀ ଓ ପୁରୀରେ ଥିବା ଆତ୍ମୀୟ ଗୁରୁଜନ ରାଜକିଶୋର ରାୟଙ୍କୁ ଜଣାଇ ଚିଠି ଲେଖିଲି । ଆଜିଭଳି ମୋବାଇଲ୍ ଚଳଣି ତ ନଥିଲା । ଦିଲ୍ଲୀରେ କ୍ରାଇମବ୍ରାଞ୍ଚରେ ଅଜିତ୍ ମହାପାତ୍ର ନାଁରେ ଜଣେ ଓଡିଆ ଆଇ.ଏ.ଏସ୍ ସମ୍ପର୍କରେ ବୁଝିବା

ପାଇଁ ସବୁକଥା ଜଣାଇଲି ମୋର ଜଣେ ଭିଣୋଇଙ୍କୁ। ସତରେ ଏହା ହିଁ ଥିଲା ମୋର ଦୂରଦୃଷ୍ଟି ତଥା ବିଜ୍ଞତାର ପରିଚୟ ।

ଦୁଇତିନି ଦିନ ପରେ ଅଜିତ୍ ମହାପାତ୍ର ଲେଖିଲେ, ମୁଁ ମୋ ମା' ଭଉଣୀକୁ ସବୁକଥା ତମ ସମ୍ପର୍କରେ କହିଛି । ଏଇ ଚାରିପାଞ୍ଚଦିନ ଭିତରେ ସେମାନେ ଗାଡି ଧରି ଠାକୁରମୁଣ୍ଡା ଯିବେ, ତମେ ତାଙ୍କ ସହ ବାରିପଦା ଆସିବ । ସେଠୁ ତମଘରୁ ସମସ୍ତଙ୍କୁ ଧରି ପୁରୀ ଯିବା । ପୁରୀରେ ଓ କୋର୍ଟରେ ବିବାହ ହେବ, ଇତ୍ୟାଦି ଇତ୍ୟାଦି ।

ମୋତେ ଭୀଷଣ ଭୟ ଲାଗିଲା । ଏ କେମିତି କଥା ? ମୁଁ ତ ସ୍ୱୀକୃତି ଦେଇନାହିଁ ? ନିଜ ଇଚ୍ଛାରେ ଏତେ ଦୂର ଆଗେଇଯିବାର ଅର୍ଥ ତ କିଛି ବୁଝିହେଲାନି । ପୁଣି ଏତେ ତରତର ହେବା କଣ ଦରକାର ? ସମ୍ପୂର୍ଣ୍ଣ ସୁସ୍ଥ ହୋଇନି ଯିଏ, ପୁଣି ସ୍ତ୍ରୀର ମୃତ୍ୟୁର ଶୋକ ନ ଲିଭୁଣୁ ବିବାହ ? ଏ କେମିତି ସ୍ତ୍ରୀ ପ୍ରତି ଭଲ ପାଇବା ? ପୁରୁଷମାନେ ଏତେ ଶୀଘ୍ର କ'ଣ ଭୁଲିଯାଆନ୍ତି ? କାଲି ମୋର ଯଦି କିଛି ହୋଇଯିବ ତେବେ ଆଉ ଥରେ କାଳବିଳମ୍ୱ ନକରି ବିବାହ ? ପୁରୁଷ ହାତରେ ନାରୀ କଣ କେବଳ ଖେଳଣା ? ପୁଣି ମୋତେ ଦେଖାନାହିଁ କି ଜଣା ନାହିଁ । ଚିଠି ମାଧମରେ ଜଣେ ଏତେବାଟ ଅଗେଇଯିବ ? ତାହେଲେ ଆକ୍ସିଡେଣ୍ଟରେ ଲୋକଟାର ଗୋଡହାତ କଟିଯାଇନିତ ? ଧନ ବଳରେ ସେବାକରିଣୀ ଭାବରେ ଖଟାଇବାକୁ ସେ ମୋତେ ଆଦର୍ଶ ସୃଷ୍ଟିକରି କିଣିବାକୁ ଚାହୁଁନିତ ? ଏମିତି ବିଭିନ୍ନ ପ୍ରଶ୍ନ ମୋ ମନରେ ଉଠିଲା ।

ତା ପରଦିନ ଯେଉଁ ଚିଠି ଆସିଲା । ତାହା ମୋର ସନ୍ଦେହକୁ ଆହୁରି ଘନ କରିଦେଲା । ଲେଖାଥିଲା, "ହୋଟେଲରୁ ମୋର ସବୁ ଜିନିଷ ଚୋରି ହୋଇ ଯାଇଛି । ଆଟାଚି, ପର୍ସ ଏପରିକି ସାର୍ଟପ୍ୟାଣ୍ଟ ମଧ୍ୟ । କ୍ରାଇମ୍‌ବ୍ରାଞ୍ଚର ଲୋକ ଭାବି ନକ୍ସଲମାନେ ଆକ୍ରମଣ କରିଛନ୍ତି । । ମୋ ଆଟାଚିରେ ପଇଁତିରିଶ ହଜାର ଟଙ୍କା ଥିଲା । ରକ୍ଷା ପୈତୃକ ପ୍ରାଣଟା ନେଇ ନାହାନ୍ତି । ପ୍ଲିଜ୍ ଏ ପରିସ୍ଥିତିରେ ଘରେ କ'ଣ କହିବି ଚିନ୍ତା କରିନପାରି ତମକୁ ଲେଖିଲି । ତମେତ ମୋର ଅତି ଆପଣାର । ଏ ଚିଠି ପାଇଲା ମାତ୍ରେ ଦୁଇହଜାର ଟଙ୍କା ତୁରନ୍ତ T.M.O କରିଦେବ । ମୁଁ ତା'ର ଚାରିଗୁଣା ଫେରାଇଦେବି ପ୍ଲିଜ୍ ! ରାଣୀ ମୋର ! କିଛି ଭାବିବ ନାହିଁ । ତମେ ହିଁ ଏଇନା ମୋର ଏକାନ୍ତ ଆପଣାର । ଆସନ୍ତା ମଙ୍ଗଳବାର ଦିନ ସବୁ ଠିକ୍ ଠାକ୍ କରି ମା'ଙ୍କୁ ନେଇ ମୁଁ ଯିବି । ଏ ଚିଠିକୁ ଅନ୍ତତଃ ଜରୁରୀ ବୋଲି ମନେ କରିବ ।"

କଣ ଘଟିଯାଉଛି ଓ ପ୍ରସଙ୍ଗ କେଉଁ ଆଡେ ଯାଉଛି ମୁଁ ଭାବି ପାରିଲି ନାହିଁ । ତେବେ ଏତିକି ଚିନ୍ତା କଲି ଯାହାକୁ ଦେଖିନାହିଁ, ଜାଣିନାହିଁ ତାକୁ ବିଶ୍ୱାସ କରିବା କେତେ

ଦୂର ଉଚିତ୍ ? ପୁଣି ଯେ ଲକ୍ଷପତିର ପୁଅ, ଯାହାକୁ ବିବାହ କରିବାକୁ ଇଚ୍ଛା କରୁଛ ତାକୁ ଫେର୍ ଦୁଇ ହଜାର ଟଙ୍କା ମାଗିବ ? ତା ସମ୍ମାନ, ସ୍ୱାଭିମାନରେ ଆଞ୍ଚ୍ ଆସିବ ନାହିଁ ? ଲୋକଟା ମୋତେ ଇମୋଶନାଲ୍ ବ୍ଲାକ୍‌ମେଲ୍ କରୁନାହିଁ ତ ? ଆଜିକାଲିତ ଖବର କାଗଜରେ ଏଭଳି ଘଟଣା ଅନେକ ବାହାରୁଛି । କେଉଁଠି ବାହା ହେବାର ଲୋଭ ଦେଖାଇ ନେଇ ବିକ୍ରି କରିଦେଉଛନ୍ତି ତ କେଉଁଠି ଧର୍ଷଣ କରାଯାଉଛି । କେଉଁଠି ନକଲି ବାପା ମା, ଭାଉଣୀ ସାଜି ବାହା ହେଇ ମୋଟା ଅଙ୍କର ଯୌତୁକ ନେଇ ବର ଫେରାର ହୋଇଯାଉଛି । ସେହି ଦଲାଲଙ୍କ ଭିତରୁ ଏ ଲୋକଟା ଜଣେ ନୁହେଁ ତ ? ମୁଁ ଟଙ୍କା ତ ପଠାଇଲିନି । ଆଦୌ କୌଣସି ଉତ୍ତର ମଧ ଦେଲି ନାହିଁ । ତା'ପରଦିନ ଟେଲିଗ୍ରାମ୍‌ଟେ ପାଇଲି ଯେମିତି ହେଉ ଯୋଗାଡ କରି ଟଙ୍କା ପଠାଇବାକୁ । ମୁଁ ମୋର ଆତ୍ମୀୟଙ୍କୁ ଲେଖିଥିବା ପତ୍ରର ଉତ୍ତର ଅପେକ୍ଷାରେ ଥିଲି । ତଥାପି ଭୟ ହେଲା ଲୋକଟା ଯଦି ସତରେ ନକଲି ମା' ଭଉଣୀଙ୍କୁ ନେଇ ଗାଡି ଧରି ପହଞ୍ଚିଯାଏ ଓ ଏଠାରେ ହାଙ୍ଗାମା ସୃଷ୍ଟି କରେ ? ଏଠିତ ମୋର ନିଜର ବୋଲି କେହି ନାହାନ୍ତି । ଜବରଦସ୍ତ କେଉଁଠାକୁ ଯଦି ନେଇଯାଏ ? ଏହିଭଳି ବିଭିନ୍ନ ଆଶଙ୍କାରେ ଦୁଇତିନିଦିନ ଛୁଟିନେଇ ଭୁବନେଶ୍ୱର ଚାଲିଗଲି । ସେଠୁ ଯୋଗାଯୋଗ କରି ଜାଣିଲି ଏଭଳି ନାମରେ କେହି ନାହାନ୍ତି ବା ଯେଉଁ ହୋଟେଲ୍ କଥା ଲେଖାଯାଇଥିଲା ସେଠି କେହି ବି ଅଜିତ୍ ମହାପାତ୍ର ନାଁରେ ଆଇ.ଏ.ଏସ୍ ନାହାନ୍ତି । ସେଠୁ ଫେରିଆସି ଚିଠି ପାଇଲି ରାଜକିଶୋର ରାୟଙ୍କ ଠାରୁ ଲିଙ୍ଗରାଜ ରଥଙ୍କର ଏମିତି କେହି ନାତି ନାହାନ୍ତି କି ଦିଲ୍ଲୀରେ ଏମିତି କେହି ଆଇଏଏସ୍ ନାହାନ୍ତି । ସବୁ ମିଛ । ହେବ ତ ତୁରନ୍ତ ସ୍ଥାନୀୟ ଥାନାରେ ଏକ ଏତେଲା ଦେଇଦେ ।"

ଓଃ ! ତାହାହେଲେ ଟଙ୍କା ମାରିନେବା କିମ୍ବା ମୋତେ ପ୍ରଲୋଭନ ଦେଖାଇ କେଉଁଠି ବିକ୍ରି କରି ଦେବାର କିଛି ଯୋଜନା ଥିଲା ! ଭଗବାନ୍ କେମିତି ମୁଣ୍ଡରେ ବୁଦ୍ଧି ଦେଲେ କେଜାଣି । ଏମିତିତ ମୋତେ ଘରେ ବୋକୀ ବୋଲି କହନ୍ତି । ତେବେ ଯେଉଁ ଠିକଣାରେ ଟଙ୍କା ପାଠାଇବା ଲାଗି ଆସିଥିଲା ସେ ଠିକଣାରେ ପୋଷ୍ଟକାର୍ଡଟେ ପକାଇ ଲେଖିଥିଲି, ନକଲି ଅଜିତ୍ ମହାପାତ୍ର ! ତମର ସମସ୍ତ ଚାଲାକ୍ ଧରାପଡି ଯାଇଛି । ମୁଁ ଇଚ୍ଛା କରିଥିଲେ ତମର ଏ ଠିକଣାରେ ଟଙ୍କା ବଦଳରେ ପୋଲିସ୍ ପଠାଇ ଧରାପଗଡ କରିପାରିଥାନ୍ତି । କିନ୍ତୁ ଏହା କଲି ନାହିଁ ଏଇଥିପାଇଁ ଯେ ତମେ ମୋ ଭଳି ଲେଖିକାର ଅନୁଭୂତି ବଢାଇ ଦେଇଛି । ଠକାଇ ଝିଅମାନଙ୍କୁ କେମିତି ବିକ୍ରି କରାଯାଏ ଏ ସମ୍ପର୍କରେ ମୋତେ ପ୍ରେରଣା ଯୋଗାଇଛ । ସେଇଥିପାଇଁ ଧନ୍ୟବାଦ । ମୋ ପାଖରୁ ଅଭିଶାପଟେ ନିଅ, ତମର ଏ ଚାଲବାଜିର ନିଶ୍ଚେ ପର୍ଦ୍ଦାଫାଶ୍ ହେବ । ଜୀବନରେ କେବେ ଶାନ୍ତି, ସୁଖ ପାଇବ ନାହିଁ ।

କୌଣସି ଝିଅଙ୍କୁ ଧୋକ୍କା ଦେବା ଆଗରୁ ନିଜର ମା ଭଉଣୀ କଥା ଚିନ୍ତା କରିବ । ଅବଶ୍ୟ ଯଦି ଜାରଜ ହୋଇଥାଅ ତ ତମ ଭିତରେ ଅନୁତାପ ଆସିବନି ।"

ତା'ର ମାସେ କି ଦିମାସ ପରେ ଖବର କାଗଜରେ ପ୍ରକାଶ ପାଇଥିଲା ଅଜିତ୍ ମହାପାତ୍ର ନାମକ ନକଲି ଆଇ.ଏ.ଏସ୍ କୁ ପୁରୀରୁ ଗିରଫ କରିବା କଥା । ଯିଏକି ବହୁ ଝିଅଙ୍କୁ ଆଇ.ଏ.ଏସ୍. ଶିଳ୍ପପତି, ପୋଲିସ୍ ଅଫିସର, ହୋଟେଲ୍ ମ୍ୟାନେଜର୍ କହି ବିବାହର ପ୍ରଲୋଭନ ଦେଖାଇ ଠକାଇଛି, କିଛି ଝିଅଙ୍କର ଜୀବନ ମଧ୍ୟ ନଷ୍ଟ କରିଛି ।

ସେଦିନ ଭଗବାନଙ୍କୁ ମନେ ମନେ ଶତ ଧନ୍ୟବାଦ ଜଣାଇଥିଲି ସେ ମୋତେ ରକ୍ଷା କରି ଦେଇଛନ୍ତି ବୋଲି । ଲୋକଟାର ଦୁଇହଜାର ଟଙ୍କା ପାଇଁ ଲୋଭ ଥିଲା କି ସେହି ଟଙ୍କାରେ ଗାଡି ଭଡା କରି ଆସି ଆଉ କ'ଣ କରିବାର ଯୋଜନା କରିଥିଲା ଓ ସେଥିପାଇଁ ଜଣେ ଲେଖିକାକୁ ସେ କାହିଁକି ଥୋପ କରିଥିଲା ତାହା ତାକୁ ହିଁ ଜଣା ।

ତେବେ ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ "ସମ୍ପର୍କ" ଉପନ୍ୟାସ ଲେଖିଲି (ଓଡିଶା ବୁକ୍‌ଷ୍ଟୋର, କଟକ ପ୍ରକାଶକ) ସେଥିରେ ଏହି Chapter ଟି ଯୋଡିଛି । ଯାହା ମୋର ଅଙ୍ଗେନିଭା ଘଟଣା । କିଛିଟା ରୋମାଞ୍ଚକର ମଧ୍ୟ । ତାପରେ ଲେଖିଥିଲି 'ଶାନ୍ତି ନିକେତନରୁ ସୋନାଗାଛି" ଗଳ୍ପ । ଜାଣେନା ସେ ଅଜିତ୍ ମହାପାତ୍ର ଏବେ ଜେଲ୍‌ର ନକଲି କୋଠରିରେ ନା ଜେଲ୍‌ରୁ ବାହାରି ନୂଆ ନୂଆ ଶିକାରର ସନ୍ଧାନରେ । ମୋର ଭଉଣୀମାନଙ୍କୁ ଅନୁରୋଧ କେବେ କାହାର ମଧୁର କଥାରେ କି କ୍ଷଣିକ ଭାବପ୍ରବଣତାରେ ଭାସିଯିବେ ନାହିଁ । ଏ ସଂସାର ବଡ଼ ବିଚିତ୍ର । ସବୁଠାରୁ ଅବିଶ୍ୱାସୀ ହେଲା ମଣିଷ । 'ସସେମୀରା' ଗଳ୍ପରେ ଭାଲୁଟି ଠିକ୍ କହିଥିଲା ଦୁଇ ଗୋଡିଆ ମଣିଷକୁ କେବେ ବିଶ୍ୱାସ କରିବ ନାହିଁ । ତେଣୁ କେବେ କାହାର ପ୍ରଲୋଭନରେ ଭାସିଯିବ ନାହିଁ । ବିନା ମତଲବରେ ସାହାଯ୍ୟ କରିବା ଲୋକ ଆସ୍ତେ ଆସ୍ତେ ବିରଳ ହୋଇଯାଉଛନ୍ତି । ନାରୀକୁ ଟିକିଏ ଟିକିଏ କଥାରେ ବଦ୍‌ନାମ୍ କରିଦେବା ତ ପୁରୁଷର ପ୍ରକୃତି । ସେ ମାଜିମୁଜି ହେଲେ ପିତଳ ମାଠିଆ ଭଳି ଚକ୍‌ଚକ୍ । କଳଙ୍କ ଲାଗେ କିନ୍ତୁ ନିରୀହା ନାରୀ ଦେହରେ । ସମାଜ ତା ପଛରେ ପଡିଯାଏ । ଏତେ ବଦ୍‌ନାମ୍ କରେ ଯେ ତାର ବଞ୍ଚିବା ଦୁର୍ବିସହ ହୋଇଯାଏ । ତେଣୁ ତ କୁହାଯାଇଛି "ଆଲୋସଖୀ, ଆପଣା ମହତ ଆପେ ରଖି ।"

ବେଳେବେଳେ ଏ ଘଟଣାଟି କେବେ ସ୍ୱପ୍ନରେ ମନେ ପଡିଗଲେ ମୁଁ ଶିହରି ଉଠେ । ଯଦି ସେମାନଙ୍କ ଯୋଜନା ସଫଳ ହୋଇଥାନ୍ତା ? କ'ଣ ହୋଇଥାନ୍ତା ମୋ ଅବସ୍ଥା ? ସମୟ କେଉଁ ମୋଡରେ ମୋତେ ଠିଆ କରାଦେଇଥାନ୍ତା । ନା ଜୀବନର ଛକରେ ଠିଆହୋଇ ମୁଁ ମୁକୁଳିବାର ରାସ୍ତା ଅଣ୍ଡାଳୁଥାନ୍ତି ? ସତରେ ମଣିଷ ପାଇଁ ଯଦି

ମୃତ୍ୟୁ ନଥାନ୍ତା କଣ କରନ୍ତା ସେ ? ଏତେ ଛୋଟ ଜୀବନରେ ଏତେ ଲୋଭ, ପ୍ରତାରଣା, ଅର୍ଥଲାଳସା, ହତ୍ୟା, ବର୍ବରତାର ବିଭୀଷିକା ?

ଏହାପରେ ମୁଁ ସିଲେକ୍ସନ୍ ବୋର୍ଡ ତରଫରୁ ଓଡିଆ ଅଧ୍ୟାପିକା ଭାବରେ ଉଦଳା କଲେଜରେ ନିଯୁକ୍ତି ପାଇଲି । ଆଇସିଡିଏସ୍‌ରୁ ରିଜାଇନ୍ ଦେଇ ଚାଲିଆସିଲି ତୁରନ୍ତ । ଅଧ୍ୟାପିକା ହେବାଟା ହିଁ ପ୍ରଥମରୁ ମୋର ସ୍ୱପ୍ନ ଥିଲା । ତା ପାଖରେ ପହଞ୍ଚିବା ପାଇଁ ସାମ୍ବାଦିକତା, ଆଇ.ସି.ଡିଏସ୍ ସୁପର ଭାଇଜର ଏମିତି ଅଙ୍କାବଙ୍କା ରାସ୍ତା ତଥା ଗୁଡାଏ ଅନୁଭୂତିକୁ ସାଉଁଟିବାକୁ ପଡିଲା । ଅବଶ୍ୟ ଏହା ଭଗବାନଙ୍କର ପରୀକ୍ଷା ଥିଲା । ଯାହା ମୋର ବୟସ ତୁଳନାରେ ମୋତେ ଅଧିକ ଅଭିଜ୍ଞ କରିଦେଇଥିଲା । ନଚେତ୍ ଖବରକାଗଜ, ସମ୍ବାଦ, ଧରିତ୍ରୀର ସାମ୍ବାଦିକ ଜୀବନ ଓ ସୁଦୂର ଶିମିଳିପାଳ ଜଙ୍ଗଲ, ମେଘାସନୀ, ବ୍ୟାଘ୍ର ପ୍ରକଳ୍ପ ପାଖରେ ରୋମାଞ୍ଚକର ଅନୁଭୂତି, କୁଜିନେତାଙ୍କ ଟାଉଟରି, ଦାରିଦ୍ର୍ୟ, ଅଜ୍ଞାନତା ଓ ଖଟିଖିଆ ମଣିଷର ଦିନରାତି ବଞ୍ଚିରହିବାର ସଂଗ୍ରାମ ସମ୍ପର୍କରେ ଜାଣିବା କେବଳ ଏକ ଅପହଞ୍ଚ ସ୍ୱପ୍ନ ଭୂଇଁ ହୋଇ ରହିଯାଇଥାନ୍ତା । ଯାହାହେଉ ଠାକୁରମୁଣ୍ଡାକୁ ଗୁଡ୍‌ବାୟ କରି ଗୁଡାଏ ରୋମାଞ୍ଚକ ଅନୁଭୂତିକୁ ମୋ ଜୀବନ ଆଟାଚିରେ ଭର୍ତ୍ତିକରି ବସ୍‌ରେ ଉଠିଲି ୧୯୮୮ ମସିହା ଅକ୍ଟୋବର ଷୋଳ କି ସତର ତାରିଖରେ । ସେହି ଯେ ଆସିଲି ଆଉ କେବେ ଯାଇ ପାରିନାହିଁ । ତଥାପି ସେଦିନ ସବୁ ସ୍ମୃତିରେ ସାଇତା ହୋଇ ରହିଛି । ମୋର ପେଇଂଗେଷ୍ଟ ଜୀବନ, ଶାଳବଣର ଜଙ୍ଗଲ, ଭାଲୁର ମହୁଲ ଗଛତଳେ ମହୁଲ ଖିଆ, ହାଣ୍ଡିଆହାଟ, ସାଇକେଲ୍ ପଛରେ ବସି ଶାଢୀ ଚିରିଯାଇ ରକ୍ତ ଝର୍ ଝର୍ ବହିବା, ପାହାଡୀ ଝରଣାକୁ ଗଛଗଣ୍ଡି ପଡିଥିବା ରାସ୍ତାରେ ହାମୁଡେଇ ହାମୁଡେଇ ପାରିହେବା, ପାହାଡର ପାଦ ଦେଶରେ ଥିବା ମିଟୁଆଣୀ, ଚମ୍ପାଝର, ଘୋଡାବିନ୍ଧା, କାନ୍ଦୁଆଣୀ, ଦିଗଧର, ମଣ୍ଡଳଝର ଏମିତି ଛୋଟ ଛୋଟ ଗାଁ ଆଉ ଓ ସେଠିକାର ଛୋଟ ଛୋଟ ପିଲାମାନଙ୍କର ମିଠା ସ୍ୱରରେ ପ୍ରାର୍ଥନା ବୋଲା ଏମିତି କେତେକଣ । କିଏ ତଳେ ପ୍ରଣାମ କରିବାକୁ ଯାଇ ଓଲଟି ପଡେ ତ କାହାର ଚିରା ପ୍ୟାଣ୍ଟ ଭିତରୁ ପିଚ୍‌ଫାଳେ ଦିଶୁଥାଏ । ମନେପଡେ ମକାଗୁଣ୍ଡ ବସ୍ତା, ତେଲଟିଣ ଖୋଲାଖୋଲି ଗାଁ ହାଟରେ ବିକ୍ରି ହେବା କଥା, ମେଘାସନୀରୁ ଫେରୁଥିବା ବେଳେ ବିରାଟ ଦନ୍ତାହାତୀର ରାସ୍ତା ଓଗାଳି ଠିଆ ହେବା ଓ ଶଙ୍ଖ ଫୁଙ୍କି ଘଉଡାଇବା ଏମିତି କେତେକଣ । ଆଉ ବି ମନେପଡେ ଠାକୁର ମୁଣ୍ଡାରୁ ମୋର ବିଦାୟ ସମୟର ଦୃଶ୍ୟ । ଗାଁର କିଛି ଆସିଛନ୍ତି ବିଦାୟ ଦେବାକୁ । ଭୋର-ବେଳା-ଜିନିଷପତ୍ର ନଦି ମୁଁ ବସ୍‌ରେ ଉଠିବି । "ଆଉ କେବେ ଆସିବେ ଦିଦି ? ଆମକୁ ଭୁଲିବେ ନହିଁ ।" କିଏ ସକସକ କାନ୍ଦି ପକାଉଛି । ଏତେ ଆପଣାପଣ ? ଏତେ ମାୟା ।

ଜୀବନସାରା ଅନୁଭୂତି ସହ ମୁଁ ମାୟା ବି ଗୋଟାଇ ଚାଲିଛି ।

ବସ୍ ଷ୍ଟାର୍ଟ ଦେଉଛି । ସେମାନେ ହାତ ହଲାଉଛନ୍ତି । ଫେର୍କା ଦେଇ ମୁଁ ବି ହାତ ହଲାଉଛି । ସକାଳ ଫିଟି ଫିଟି ଆସୁଛି । ସାରା ଜଙ୍ଗଲରେ ପକ୍ଷୀମାନଙ୍କର କିଚିରିମିଚିରି କୋଳାହଳ । ଧୂଆଁଳିଆ ପାହାଡ ଓ ରମ୍ୟବନ । ତାରି ଭିତରେ କେଉଁଠି ଧୂମ୍ରସାବ୍ଜା ତାଳେ ତାଳେ ଭଙ୍ଗାଗଳାର ଗୀତ ତ କେଉଁଠି କାଠଗଣ୍ଡିରେ ନିଆଁ ଧରାଇ ଦଳେ ବସିଛନ୍ତି ନାଲି ଚା'ର ଅପେକ୍ଷାରେ । ସାରା ଜଙ୍ଗଲ ସବୁଜ ଶାଢୀଟେ ଗୁଡାଇ ହୋଇ ମୋତେ କୃଷ୍ଣଚୂଡାର ଫୁଲ ବିଛେଇ ବିଦାୟ ଦେଉଛି । କେଉଁଠି କିଏ ବଇଁଶୀର ବାଉଳା ସ୍ୱର ଛୁଟାଇଛି । ଆହା କେଡେ ଖୋଲା ମେଲା ସୁନ୍ଦର ଜୀବନ ! କେତେ ନିର୍ମଳ ଆଉ କଅଁଳ ଛନଛନ ।

ସବୁ ଜିନିଷର ଅବର୍ତ୍ତମାନରେ ଏତେ ମୂଲ୍ୟ ବଢିଯାଏ ସ୍ମୃତିର ? ସତରେ "ଅତୀତ ଏମିତି ଏକ ଫୁଲଟିଏ। ଯେତେ ବାସିହୁଏ ସେତେ ବାସୁଥାଏ ।"

## ଚଉଦ

W.B. Yeatsଙ୍କ ସାମାଧି ଉପର ପଥର ଉପରେ ତାଙ୍କ ଇଚ୍ଛାନୁସାରେ ଲେଖା ଯାଇଛି :-

"Here lies one

Whose name was write on water"

"ଅର୍ଥାତ୍ ଏଠି ଜଣେ ଅନନ୍ତ ନିଦ୍ରାରେ ଶୋଇଛନ୍ତି ଯାହାଙ୍କ ନାଁ ପାଣିରେ ଲେଖାଯାଇଛି" । ହେଲେ ୟେଟସ୍ କ'ଣ ଜାଣିଥିଲେ ତାଙ୍କ ନାମ ପାଣି ଉପରେ ନୁହେଁ ତାଙ୍କ ଅଜସ୍ର ପାଠକଙ୍କ ହୃଦୟରେ ଗଭୀର ଭାବରେ ଲେଖା ହୋଇ ରହିବ ବୋଲି ?

ଏକଥା ଲେଖିବାର ଅର୍ଥ ହେଲା ପାଠକର ହୃଦୟରେ ସ୍ଥାନ ପାଇବାଟା ହିଁ ଜଣେ ଲେଖକ କି କଳାକାର ପାଇଁ ସବୁଠାରୁ ବଡ଼ ପୁରସ୍କାର ଯାହା ତୁଳନାରେ ଏକାଡେମୀ ପୁରସ୍କାର ତୁଚ୍ଛ । ପୁଣି ଲେଖକର ସୃଷ୍ଟିକୁ ସାଇତି ରଖିବା, ତା ପାଇଁ ପାଠାଗାରଟିଏ ସୁଦୂର ମଫସଲ ଜାଗାରେ ଦଶପଇସା ମାଗି ମାଗି କରିବା ତାହା ମଧ୍ୟ ଏକ ମହାନ୍ କର୍ମ । ଏ କର୍ମ ପାଇଁ ବି ପାଣିରେ ଲେଖାଯାଏ ନାହିଁ । ଲେଖାଯାଏ ଗୋଟି ଗୋଟି ହୋଇ ସେହି ହୃଦୟ ସିଲଟରେ । ସେହିଭଳି ଏକ ବ୍ୟକ୍ତିତ୍ୱ, ନିଆରା ମଣିଷ କଣାଅଜା ଅର୍ଥାତ୍ ଦାଶରଥି ପଟ୍ଟନାୟକ ଯେ ଥିଲେ ନିଃସଙ୍ଗ ପଦାତିକ । ଅନେକେ ତାଙ୍କୁ ଖୁଣ୍ଟା ତଡା ରଜା ବୋଲି କହୁଥିଲେ ।

ବଞ୍ଚିଥିଲା ବେଳେ ସେ ଭ୍ରମଣକାରୀର ଝୁଲା ଧରି ପ୍ରାୟ ପ୍ରତ୍ୟେକ ସାନବଡ଼ ବୟୋଜ୍ୟେଷ୍ଠ କନିଷ୍ଠ ଲେଖକଙ୍କ ପାଖରେ ପହଞ୍ଚି ଯାଉଥିଲେ । ଯେଉଁଠି ଯାହା ପଢ଼ିଲେ କରଣୀ ଅକ୍ଷରରେ ପୋଷ୍ଟକାର୍ଡଟେ ଡ୍ରପ୍ କରୁଥିଲେ । ଦିନକୁ କେତେଖଣ୍ଡି ଚିଠି ସେ ଥୁରୁ ଥୁରୁ ବୁଢ଼ାବୟସରେ ଲେଖୁଥିଲେ କେଜାଣି ? ଆଖିକୁ ଭଲକି ନଦିଶିଲେ ହେଁ ଜବକାଚ ସାହାଯ୍ୟରେ ଗୋଟି ଗୋଟି ଧାଡି ସେ ପଢ଼ୁଥିଲେ । ଖୋର୍ଦ୍ଧା ଗାମୁଛାଟେ ଥିଲା ପରିଧାନ, ଖୋଲା ଦେହ ପୁଣି ମୁଣ୍ଡରେ ସେହି ଖୋର୍ଦ୍ଧା ଗାମୁଛାର ଠେକାଟିଏ । ହାତରେ ଠେଙ୍ଗାଟିଏ । ବହି ପତ୍ରପତ୍ରିକା ସଂଗ୍ରହ କରିବା ପାଇଁ ପାଗଳ ମଣିଷଟାଏ । ତାଙ୍କୁ ନଜାଣିଥିବା ଲୋକ ଭିଖାରି ଭାବି ବି ତଡି ଦେଇଛନ୍ତି । ମାନ ନାହିଁକି ଅଭିମାନ ନାହିଁ । ସ୍ନେହ, ଶ୍ରଦ୍ଧା ଛଳଛଳ ବହୁଥାଏ ନିରନ୍ତର । ଆଶୀର୍ବାଦ କରନ୍ତି, କଲ୍ୟାଣ କରନ୍ତି । ଓଡିଶାର ଅନେକ ଲେଖକ ଲେଖିକା ତାଙ୍କୁ ଭେଟିଥିବେ ନିଶ୍ଚେ । କିମ୍ବା ସେ ନିଜେ ଘର ଠିକଣା ଖୋଜି ଖୋଜି ପହଞ୍ଚି ଯାଇଥିବେ । ମୋର ସୌଭାଗ୍ୟ ତାଙ୍କ ସଂସ୍ପର୍ଶରେ ଆସିବା, ତାଙ୍କ କରଣୀ ଅକ୍ଷରର ବହୁ ଚିଠିପାଇବା, ତାଙ୍କ ବହୁ ରଚିତ ବାଞ୍ଛାନିଧି ପାଠାଗାରକୁ ଦର୍ଶନ କରିବା ।

ପାଠାଗାର ଆନ୍ଦୋଳନ ଅବିସ୍ମରଣୀୟ ପ୍ରତିଭା କଣାଅଜା ଦାଶରଥି ପଟ୍ଟନାୟକ । ଗୋଟିଏ ଆଖି ସତରେ ତାଙ୍କର କଣା । ଏ ଯୁଗର ଗାନ୍ଧୀ ସେ । ମହାତ୍ମାଗାନ୍ଧୀ ସିନା ଦେଶକୁ ସ୍ୱାଧୀନ କରିବା ପାଇଁ ଦାନ ଗ୍ରହଣ କରୁଥିଲେ, ଲୁଗା ପତେଇ ଦେଉଥିଲେ । ଏ ମାହାତ୍ମା ବି ଗାନ୍ଧୀ ଆଦର୍ଶରେ ମାଗୁଥିଲେ ପୁରୁଣା ପତ୍ରପତ୍ରିକା, ପୁରୁଣା ଦୁର୍ଲଭ ପୁସ୍ତକ, ପୋଥି, ପୁରୁଣା ପଇସା ପ୍ରଭୃତି । ଦଶପଇସା ଭିତରେ ତାଙ୍କର ଭିକ୍ଷା ସୀମିତ ଥିଲା ।

ଦାଶିଆ ଅଜା ନାଁରେ ସେ ସାରା ଓଡିଶାରେ ପରିଚିତ ଥିଲେ । ହାତରେ ପୁରୁଷେ ଉଚ୍ଚର ବାଉଁଶ ଠେଙ୍ଗାଟାଏ ଥାଏ । କାନ୍ଧରେ ଢାଉ ରଙ୍ଗରେ ଗୋଟି ଝୁଲା । ସେଥିରେ ଥିବ ଖାତାଟିଏ, ବହି କେଇ ଖଣ୍ଡ, କଲମ, ପେନ୍‌ସିଲ୍ ଓ ଗୋଟାଏ କାଚଲେନ୍ସ । ଚାରିକୋଡି ବୟସକୁ ମୁଣ୍ଡରେ ନଦି ଲମ୍ବା ଲମ୍ବା ପାହୁଣ୍ଡ ପକାଇ ସେ ଓଡିଶା ସାରା ଘୁରି ବୁଲୁଥିଲେ । ଏହି ସାରସ୍ୱତ ଭିକାରି ଜଣକ ଓଡିଶା ସାରା ବହି, ପତ୍ରପତ୍ରିକା, ତାଳପତ୍ର, ପୋଥି, ପୁରାତନ ମୁଦ୍ରା ପ୍ରଭୃତି ଭିକ ମାଗୁଥିଲେ ।

ଜୀବନସାରା ସେ ଢେର କାମ କରିଛନ୍ତି । ସରକାରୀ ଚାକିରିଠାରୁ ସମାଜ ସେବା ପର୍ଯ୍ୟନ୍ତ, ହଳିଆ ମୂଲିଆଠାରୁ ଆରମ୍ଭ କରି ରୋଷେୟା, ଅର୍ଦ୍ଦଳୀ, କନେଷ୍ଟବଳ, ସ୍କୁଲ୍ ଶିକ୍ଷକ, ମୋହରିର, ଫରେଷ୍ଟଗାର୍ଡ, ସର୍ଭେ ଟ୍ରେନିଂ ସ୍କୁଲ୍ ପରିଚାଳକ, ରେଭିନ୍ୟୁ ଇନ୍ସପେକ୍ଟର, ସନ୍ଥ ବିନୋବାଙ୍କ ଭୂଦାନ ଆନ୍ଦୋଳନର ସକ୍ରିୟ କର୍ମୀ ଓ ଶେଷରେ ନିଜ

ଉଦ୍ୟମରେ ପ୍ରତିଷ୍ଠିତ ବାଞ୍ଛାନିଧି ପାଠାଗାର, ଅରବିନ୍ଦ ସଂଗ୍ରହାଳୟ ଓ ଯଦୁମଣି ସାହିତ୍ୟ ସଂସଦ ।

ପିତା ବାଞ୍ଛାନିଧିଙ୍କ ନଅଟି ସନ୍ତାନ ମଧ୍ୟରୁ ଦାଶରଥି ଥିଲେ ବଡ଼ପୁଅ । ଜମିବାଡି ବେଶୀ ନଥିଲା । ପ୍ରଥମଶ୍ରେଣୀ ପର୍ଯ୍ୟନ୍ତ ପାଠପଢି ବହିପତ୍ରରେ ଡୋର ବାନ୍ଧିଥିଲେ । ପନ୍ଦର ବର୍ଷ ବୟସରେ ଜଣେ ଫରେଷ୍ଟଗାର୍ଡଙ୍କ ଘରେ ଆଠମାସ ଧରି ରୋଷେୟା ସାଜିଥିଲେ ଚାକିରି ପାଇବା ଲାଳସାରେ ୧୯୨୯ରେ ନୟାଗଡ ଷ୍ଟେଟ୍‌ରେ ପୋଲିସ୍ କନେଷ୍ଟବଳ ଚାକିରୀ କରିଥିଲେ । ୧୯୩୨ରେ ବରଦ ଷ୍ଟେଟ୍‌ରେ ଯୋଗେଦେଲେ ପ୍ରାଥମିକ ଶିକ୍ଷକ ଭାବରେ । ୧୯୩୭ରେ ଛାଡିଦେଲେ । ୧୯୩୯ରେ ରଣପୁର ଷ୍ଟେଟ୍‌ରେ ନାକା ମୋହରିର ଓ ଫରେଷ୍ଟଗାର୍ଡ ଚାକିରିରେ ଯୋଗଦେଲେ । ୧୯୪୬ ପର୍ଯ୍ୟନ୍ତ ଚାକିରି କଲାପରେ ଯୁବକ ଦାଶରଥିଙ୍କ ମନରୁ ଚାକିରି ନିଶା ଓହ୍ଲାଇଗଲା । ତେବେ ପାଠ ପଢିବାର ଝୁଙ୍କ ମନରୁ ଯାଇନଥାଏ । ପାଖଆଖ ମଠ, ସ୍କୁଲ୍, ଲାଇବ୍ରେରି ମାନଙ୍କରୁ ପୋଥି, ପୁରାଣଶାସ୍ତ୍ର ଓ ଅନ୍ୟାନ୍ୟ ବହି ଆଣି ପଢୁଥାନ୍ତି । ଏତିକିବେଳେ ତାଙ୍କ ମନରେ ପାଠାଗାରଟିଏ ସ୍ଥାପନ କରିବାର ନିଶା ପୂରାଇ ଦେଲେ ନୂଆ ଗାଁ ଅପର ପ୍ରାଇମେରୀ ସ୍କୁଲ୍‌ର ହେଡ୍‌ମାଷ୍ଟର ଲୋକନାଥ ତ୍ରିପାଠୀ । ଦିନେ ଖରାବେଳେ ତ୍ରିପାଠୀ ମହାଶୟ ତାଙ୍କ ଘରେ ପହଞ୍ଚି ତାଙ୍କ ପାଖରେ ଥିବା ଭାଗବତର ଏକାଦଶ ସ୍କନ୍ଧ, ଗୁରୁବାର ମାଣବସା ବହି, ଜହ୍ନିଓଷା, ଖୁଦୁରୁକୁଣୀ ଓଷା ପ୍ରଭୃତି ବହିଟ୍ରଙ୍କରେ ଧରି କହିଥିଲେ, "ବୁଝିଲୁ ଦାଶରଥି, ତୋ ପାଠାଗାରର ଶୁଭାରମ୍ଭ ହୋଇଗଲା ।" ବାସ୍ , ଚାଷବାସ, ପରିବାର, ସ୍ତ୍ରୀ, ପିଲା ଛାଡି ହୁଣ୍ଡା ଦାଶରଥି ମାତିଲେ ପାଠାଗାର ଗଠନରେ । ବହି ମଗା ଚାଲିଲା, କିଣା ଚାଲିଲା, ରକ୍ଷଣାବେକ୍ଷଣା ପ୍ରତି ଦୃଷ୍ଟି ଦିଆଗଲା । ନିଜର ଚକ୍ଷୁ ଚିକିତ୍ସା ପାଇଁ ମାଗାଯଚା ପଇସାକୁ ଲାଇବ୍ରେରୀରେ ଖର୍ଚ୍ଚ କରିଦେଲେ । ଏପରିକି ନିଜ ଝିଅ ବାହାଘର ଲାଗି ଜିନିଷ କିଣିବାକୁ ଟଙ୍କା ଧରି ନୟାଗଡ ଯାଇଥିବା ଦାଶରଥି ବାହାଘର ଲୁଗାପଟା ନ କିଣି ବୋଝେ ବହି କିଣି ଫେରିଥିଲେ । ସେ ଥିଲେ ଓଡିଶାର ପାଠାଗାର ଆନ୍ଦୋଳନର ପ୍ରବାଦ ପୁରୁଷ । ଉପଯୁକ୍ତ ଶିକ୍ଷା ଓ ତାଲିମ୍ ପ୍ରାପ୍ତ ଗ୍ରନ୍ଥାଗାରିକମାନେ ଯାହା କରି ପାରିନାହାନ୍ତି ତାହା ସେ ଦେଖାଇ ତଥା କରିଯାଇଛନ୍ତି । ନୟାଗଡ ଜିଲ୍ଲାର ଉଦୟପୁର ଗାଁରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ କ୍ଷୁଦ୍ର ଅନୁଷ୍ଠାନଟି ପରବର୍ତ୍ତୀ କାଳରେ ଏକ ମହାନ୍ ଦ୍ରୁମରେ ପରିଣତ ହୋଇ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରି ପାରିଛି । ତାଙ୍କର ପ୍ରତିଷ୍ଠା ଓ ସାଧନାର ଫଳ ସ୍ୱରୂପ ଓଡିଶାର ନୟାଗଡ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀ ଉଦୟପୁରରେ ସ୍ଥାପିତ ବାଞ୍ଛାନିଧି ପାଠାଗାର, ଅରବିନ୍ଦ ସଂଗ୍ରହାଳୟ ଓ ଯଦୁମଣି ସାହିତ୍ୟ ପରିଷସଦ ନାମରେ ତିନଟି ଅନୁଷ୍ଠାନ ଗଢି ଉଠିଛି ଓ ଏ

ଗ୍ରାମଟି ସାରା ଓଡିଶାରେ ସାରସ୍ୱତ ତୀର୍ଥ ଭାବରେ ପରିଣତ ହୋଇ ପାରିଛି । ଓଡିଆ ଭାଷା, ସାହିତ୍ୟ ଓ ଜାତିକୁ ତାଙ୍କର ଏହି ମହାନ୍ ଦାନ ଚିରଦିନ ପାଇଁ ଓଡିଆ ସାହିତ୍ୟ ଓ ସଂସ୍କୃତି ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିଥିବ ।

ତାଙ୍କ ସମ୍ପର୍କରେ କିଛିଟା ସୂଚନା ଦିଆଯାଇପାରେ । ଦାଶରଥି ପଟ୍ଟନାୟକ ୧୯୫୯ ମସିହାରେ ନିଜ ଗ୍ରାମରେ ତାଙ୍କ ପିତାଙ୍କ ନାମନୁସାରେ ବାଞ୍ଛାନିଧି ପାଠାଗାର ନାମରେ ଏକ ଛୋଟ ଧରଣର ଲାଇବ୍ରେରିର ଶୁଭାରମ୍ଭ କରିଥିଲେ । ଏହି କ୍ଷୁଦ୍ର ବୀଜଟି ଦିନେ ମହାଦ୍ରୁମରେ ପରିଣତ ହୋଇପାରିଥିଲା । ତାଙ୍କର ଅକ୍ଲାନ୍ତ ପରିଶ୍ରମ, ନିଷ୍ଠା ଓ ସାଧନା ବଳରେ । ୧୯୫୯ ମସିହାରେ ସେ ସମ୍ପୂର୍ଣ୍ଣଭାବେ ଗୃହକର୍ମ ତ୍ୟାଗ କରି ଏହି ପାଠାଗାରକୁ ଆଦର୍ଶ ଓ ପୂର୍ଣ୍ଣାଙ୍ଗ ପାଠାଗାରରେ ପରିଣତ କରିବା ନିମନ୍ତେ ଓଡିଶାର ଗାଁ ଓ ସହରମାନଙ୍କୁ ପରିଭ୍ରମଣ ଆରମ୍ଭ କରିଥିଲେ । ଓଡିଶାର ଲବ୍ଧ ପ୍ରତିଷ୍ଠିତ ଲେଖକ, ସାହିତ୍ୟିକ, ପ୍ରକାଶକ, ସମ୍ପାଦକ ଓ ପ୍ରତିଭା ସମ୍ପନ୍ନ ବ୍ୟକ୍ତିମାନଙ୍କୁ ସାକ୍ଷାତ୍ କରି ତାଙ୍କ ପ୍ରତିଷ୍ଠିତ ପାଠାଗାର ଓ ସଂଗ୍ରହଶାଳାରେ ଅଭିବୃଦ୍ଧି ନିମନ୍ତେ ପୁସ୍ତକ, ପତ୍ରପତ୍ରିକା, ପାଣ୍ଡୁଲିପି ଓ ବିଭିନ୍ନ ଦୁର୍ଲଭ ଦ୍ରବ୍ୟ ସହ ଅର୍ଥ ସଂଗ୍ରହ କରିବା ଥିଲା ତାଙ୍କର ଏହି ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ । ନିଜଭାଷା, ସାହିତ୍ୟ ଓ କଳାର ଉନ୍ନତି ତଥା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନ ଗୁଡିକର ବିକାଶ ନିମିତ୍ତ ସେ ଏକ ସନ୍ନ୍ୟାସୀ ବା ତାଙ୍କ ନିଜ ଭାଷାରେ ଜଣେ ମହା ଭିକାରି ସାଜିଥିଲେ । ଏଥିପାଇଁ ସାରା ରାଜ୍ୟ ଘୁରି ବୁଲିଥିଲେ । ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ସେ ଦୀର୍ଘ ୪୦ ବର୍ଷ ଧରି ଏହି କୃଚ୍ଛ୍ର ସାଧନାରେ ବ୍ରତୀ ହୋଇଥିଲେ । ସେ କହୁଥିଲେ ମୁଁ ହେଉଛି ସବୁଠାରୁ ବଡ଼ ଭିକାରି । ମୋର ଭିକ୍ଷାର ପରିମାଣ ମାତ୍ର ୧୦ ପଇସା, ବହି ପତ୍ରପତ୍ରିକା, ତାଳପତ୍ର ପୋଥି ଓ ପୁରାତନ ଦ୍ରବ୍ୟ ।"

ବର୍ତ୍ତମାନ ବାଞ୍ଛାନିଧି ପାଠାଗାରେ ପ୍ରାୟ ୪୦ ହଜାର ପୁସ୍ତକ, ୬୫ ହଜାର ପୁରାତନ ପତ୍ରପତ୍ରିକା, ୩୮ଟି ଭାଷାର ଅଭିଧାନ ଗ୍ରନ୍ଥ, ୩ ହଜାର ବିରଳ, ଦୁଷ୍ପ୍ରାପ୍ୟ ପୁସ୍ତକ ଗଚ୍ଛିତ ଅଛି । ଅରବିନ୍ଦ ସଂଗ୍ରହାଳୟରେ ପ୍ରାୟ ୫ ହଜାର ତାଳପତ୍ର ପୋଥି ସମେତ ଦେଶ ବିଦେଶର ବହୁ ପ୍ରାଚୀନ ସ୍ୱର୍ଣ୍ଣ ଓ ରୌପ୍ୟମୁଦ୍ରା, ପୁରାତନ ଯୁଗର ଅସ୍ତ୍ରଶସ୍ତ୍ର, ଶିଳ୍ପ ସାମଗ୍ରୀ, ବିଭିନ୍ନ ପୁରାତନ ଅଳଙ୍କାର, ସଙ୍ଗୀତ ଯନ୍ତ୍ରପାତି, ମୂଲ୍ୟବାନ ପଟଚିତ୍ର, ଡାକଟିକଟ ଓ ଅନେକ ବିରଳ ଦୁଷ୍ପ୍ରାପ୍ୟ ସାମଗ୍ରୀ ସ୍ଥାନ ଲାଭ କରିଛି । ସେ ୧୯୭୫ ମସିହାରେ ନୟାଗଡର ବିଶିଷ୍ଟ ଓଡିଆ ହାସ୍ୟରସ କବି ଯଦୁମଣି ମହାପାତ୍ରଙ୍କ ନାମରେ 'ଯଦୁମଣି ସାହିତ୍ୟ ସଂସଦ' ନାମକ ଏକ ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ ।

ସଂକ୍ଷେପରେ ଏହା ହିଁ ହେଉଛି ଦାଶିଆ ଅଜାଙ୍କର ପ୍ରତିଷ୍ଠିତ ସାରସ୍ୱତ ଅନୁଷ୍ଠାନର ବିବରଣୀ ।

ମୋ ଲେଖା ପଢ଼ି ସେ କେବଳ ଚିଠି ଲେଖୁନଥିଲେ ହଠାତ୍ ଖୋଜି ଖୋଜି ଚାରିପଦା ପହଞ୍ଚି ଯାଇଥିଲେ । ସେତେବେଳେ ମୁଁ ସମ୍ବାଦରେ ଜୟେନ କରିସାରିଥାଏ । ସେଠୁ ସେ ପହଞ୍ଚିଥିଲେ ସମ୍ବାଦରେ । ତାଙ୍କୁ ମୁଁ କେବେ ଦେଖିନଥିଲି କି ସେତେବେଳେ ତାଙ୍କ ସମ୍ପର୍କରେ ଏତେଟା ଜାଣିନଥିଲି । ତାଙ୍କର ଉଦ୍ୟମ, ନିଷ୍ଠା ଓ ପାଠାଗାର ସମ୍ପର୍କରେ ଶୁଣି ଉତ୍ସାହିତ ହୋଇ ଉଠିଥିଲି । ତେବେ ସବୁଠାରୁ ସୌଭାଗ୍ୟର କଥା ହେଲା ନୟାଗଡ ଜିଲ୍ଲା ଯାଇ ତାଙ୍କ ପାଠାଗାର ଦେଖିବାର ସୌଭାଗ୍ୟ ଲାଭ କରିବା ।

ସେତେବେଳେ ଗାଳ୍ପିକା, କବୟିତ୍ରୀ ବନଜଦେବୀ ଥାନ୍ତି ଖୋର୍ଦ୍ଧାରେ । ତାଙ୍କ ସାନଝିଅ ମୋ ତଳ ବ୍ୟାଚ୍‌ରେ ପଢୁଥାଏ । ତା ସହିତ ଯାଇଥାଏ ବନଜ ଅପାଙ୍କ ଘରକୁ । ପହଞ୍ଚିଲା ପରେ ଜାଣିଲି ସେମାନେ ବାହାରିଛନ୍ତି ଉଦୟପୁରରେ ବାଞ୍ଛାନିଧି ପାଠାଗାରର ବାର୍ଷିକୋତ୍ସବକୁ । ଏହା ଥିଲା ମୋ ପାଇଁ ଏକ ଅଚାନକ ସୁଯୋଗ । ତାଙ୍କ ସହିତ ଚାଲିଲି ନୟାଗଡକୁ । ଛକରେ ପହଞ୍ଚିଲା ପରେ ସେଠୁ ଗାଁକୁ ପାଛୋଟିନେବା ପାଇଁ ସ୍ୱେଚ୍ଛାସେବୀ ଯୁବକମାନେ ଅପେକ୍ଷା କରିଥିଲେ । ବିରାଟ ଆୟୋଜନ । କବିତା ପାଠୋତ୍ସବ ଚାଲିଥାଏ । ଦାଶିଆ ଅଜା ଖୁସିରେ ଧାଇଁ ଆସି ଆମକୁ ତାଙ୍କ ପାଠାଗାର ବୁଲାଇ ବୁଲାଇ ଦେଖାଉଥିଲେ । ତିନିତିନିଟା ସଂଗ୍ରାହଳୟ ଦେଖି ଓ ସେ ସବୁର ସଂରକ୍ଷଣ ଓ ଭବିଷ୍ୟତ ପାଇଁ ତାଙ୍କର ଚିନ୍ତା ଶୁଣି ବ୍ୟଥିତ ହୋଇଥିଲି । ସରକାରୀ ଅନୁଦାନ କିଛି ଏ ଯାଏଁ ପହଁଞ୍ଚି ପାରିଲା ନାହିଁ । କେତେଥର ସେ ଧାଇଁଛନ୍ତି । ସରକାରଙ୍କ ଦ୍ୱାରସ୍ଥ ହୋଇଛନ୍ତି । ସେହି ଗୋଟିଏ ଉତ୍ତର ସରକାରଙ୍କୁ ପାଠାଗାରଟି ଦାନ କରିଦିଅ । ପୋଷ ପୋଷ ରକ୍ତ ଦେଇ ଯେଉଁ ଶିଶୁକୁ ବଢ଼ାଇ ସେ ଯୁବକ କରିଛନ୍ତି ତାକୁ ସେ କେମିତି ସରକାରୀ ଛୁଆ କରି ନିଜଠାରୁ ଅନ୍ତର କରିଦେବେ ? ଛଳ ଛଳ ହୋଇ ଉଠୁଥିଲା ତାଙ୍କର ଆଖି । ତାଙ୍କର ଉଦ୍ୟମ, ନିଷ୍ଠା ଆମକୁ ଚମତ୍କୃତ କରିଥିଲା । ସେଦିନ ଓଡିଶାର ବହୁ ସାହିତ୍ୟରଥି ଏକତ୍ରିତ ହୋଇଥିଲେ ଉଦୟପୁରର ସେହି ପବିତ୍ରସ୍ଥଳୀରେ । ବାଚସ୍ପତି ଶରତ କର ଆସିଥାନ୍ତି । ସାହିତ୍ୟିକଙ୍କ ତୀର୍ଥ ଭୂଇଁରେ ପରିଣତ ହୋଇ ଯାଇଥାଏ ସେହି ଧୂଳିଧୂସରିତ ଅଖ୍ୟାତ ଗାଁଟି । ମୁଁ ତ କେବେ ବି ଭାବିନଥିଲି ପାଠାଗାରଟିକୁ ମୋର ଏଭଳି ଦେଖିବାର ସୌଭାଗ୍ୟ ହେବ ବୋଲି ।

ତାପରେ ବିଭିନ୍ନ ସଭାସମିତିରେ ଦାଶିଆ ଅଜାଙ୍କ ସହ ଦେଖାହୋଇଛି । ମୁଣ୍ଡରେ ଠେକାବାନ୍ଧି ପାକୁଆ ପାଟିରେ ହସୁଥାନ୍ତି । ସେ ଦୃଶ୍ୟ ଆଜିବି ମୋ ଆଖିରେ ସ୍ଥିର ଛବି

ହୋଇ ରହିଯାଇଛି । ନୂଆଗାଁକୁ ରାସ୍ତା ଅତ୍ୟନ୍ତ ଖରାପ ହୋଇଥିଲେ ହେଁ ପ୍ରତିଦିନ ସେଠି ପହଞ୍ଚନ୍ତି ଦଶକୋଡିଏ ଜଣ ଛାତ୍ର, ଅଧ୍ୟାପକ, ଗବେଷକ ଓ ଲେଖକ । ସମସ୍ତଙ୍କ ଚର୍ଚ୍ଚା ସେ କରନ୍ତି ।

ଏହି ମହାନ୍ ସାଧକଙ୍କର ମୃତ୍ୟୁ ୧୯୯୭ ମସିହା ସେପ୍ଟେମ୍ବର ୧୨ ତାରିଖରେ ଏକ ଅପ୍ରତ୍ୟାଶିତ ରହସ୍ୟାବୃତ୍ତ ପରିସ୍ଥିତିରେ ହୋଇଥିଲା । ସେତେବେଳେ ମୁଁ ଜଏନ୍ କରିଥାଏ ପଞ୍ଚାୟତ କଲେଜ ବରଗଡରେ । ହାତଗୋଡ ବନ୍ଧା ହୋଇ କୂଅରେ ପଡିବା କଥାଟା ରହସ୍ୟ ହୋଇ ରହିଗଲା ସବୁଦିନ ପାଇଁ । କେତେଦିନ ବା ସେ ବଞ୍ଚିଥାନ୍ତେ ? ଗାନ୍ଧିଜୀଙ୍କ ଭଳି ତାଙ୍କ ମୃତ୍ୟୁ ବି ଥିଲା ଅଚାନକ ଆଉ ଓଡିଶାର ସାରସ୍ୱତ ସାଧକମାନଙ୍କୁ ସ୍ତବ୍ଧ କରିଦେଲା ଭଳି ଖବର । ଜୀବିତାବସ୍ଥାରେ ତାଙ୍କ ଦ୍ୱାରା ଲେଖାଯାଇଥିଲା-

"କେହି ନ ଜାଣିବେ, କେହି ନ ଦେଖିବେ<br>
ନ କାନ୍ଦିବେ ଥରେ କେହି<br>
ଚାଲିଯିବି ଏକା ଏତିକି ମାଗୁଣି<br>
ତୁମ ନାମ ଗାଇ ଗାଇ..."

ଏହା ଯଥାର୍ଥରେ ପ୍ରତିବାଦିତ ହୋଇଛି ତାଙ୍କ ଜୀବନରେ । ହେଲେ ତାଙ୍କ ମର ଶରୀରଟି ସିନା ମାଟିରେ ମିଶିଗଲା କିନ୍ତୁ ଓଡିଶାର ପାଠାଗାର ଆନ୍ଦୋଳନର ପ୍ରବାଦ ପୁରୁଷ ନୟାଗଡର ଉଦୟପୁରର ଦାଶରଥି ପଟ୍ଟନାୟକ ବା ଦାଶିଆ ଅଜାଙ୍କର ମୃତ୍ୟୁ କାହିଁ ?

ଆମର ଦୁର୍ଭାଗ୍ୟ ଯେ ତାଙ୍କୁ ଅସ୍ୱାଭାବିକ ଭାବରେ ହରାଇ ବସିଛୁ ଓ ତାଙ୍କର ରହସ୍ୟଜନକ ମୃତ୍ୟୁର ସତ୍ୟ ଏ ପର୍ଯ୍ୟନ୍ତ ଉଦ୍‌ଘାଟନ କରିପାରିନାହୁଁ ।

× × × × ×

ମୋର ଆଉ ଜଣେ ପ୍ରତିଭାଶାଳୀ କବିଙ୍କ ସହିତ ପରିଚୟ ହୁଏ । ସେ କେବଳ କବି ନୁହନ୍ତି, ଜଣେ ସଂଗଠକ, ସମ୍ପାଦକ, ଅନୁବାଦକ । ଓଡିଆ ସାହିତ୍ୟର ତଥା ବାଲେଶ୍ୱରର ଜଣେ କିମ୍ବଦନ୍ତୀ ପୁରୁଷ ।

ବାଲେଶ୍ୱରର ମାଟି ହେଲା ଓଡିଆ ଗଳ୍ପ, ଆତ୍ମଜୀବନୀର ଏନ୍ତୁଡିଶାଳ, ଉପନ୍ୟାସର ଷଠୀଘର ଆଉ ଆଧୁନିକ କବିତାର ସୂତ୍ରଧର । ଏ ମାଟି ଫକୀରମୋହନ ରାଧାନାଥଙ୍କ ମାଟି । ପୁଣି ପରବର୍ତ୍ତୀ ସମୟରେ ମନୋଜ ଦାସ, ମନ୍ମଥ ଦାସଙ୍କ ସମେତ ବହୁ କୃତି ସନ୍ତାନଙ୍କ ଜନ୍ମଭୂଇଁ । ଆଧୁନିକ ଓଡିଆ ସାହିତ୍ୟର କୋଣାର୍କ ଏଠି ଗଢା ହୋଇଥିଲା । ଭାଷା ଆନ୍ଦୋଳନ ହେଉ କି ସମ୍ବାଦ ବାହିକା ଭଳି ପତ୍ରିକା ହେଉ, ୧୮୯୮ର ପ୍ରଥମ ଓଡିଆ ଗଳ୍ପ ରେବତୀ ହେଉ କି ଫକୀର ମୋହନଙ୍କ ଆତ୍ମଜୀବନ ଚରିତ ହେଉ ସମସ୍ତେ

ବାଲେଶ୍ୱରକୁ ସ୍ମରଣ କରିଥାନ୍ତି । ସେହି ମାଟିର ଅନ୍ୟତମ ସନ୍ତାନ ହେଲେ କବି ବ୍ରଜନାଥ ରଥ । ପଞ୍ଚାବନ ବର୍ଷରୁ ଊର୍ଦ୍ଧ୍ୱ ହେଲା ଯିଏ ମା' ସରସ୍ୱତୀଙ୍କର ବନ୍ଦନା କରି ଆସୁଛନ୍ତି । ଜ୍ଞାନ, ଗରିମା, ସମ୍ମାନ ତାଙ୍କ ପ୍ରତିଭା ତଥା ବ୍ୟକ୍ତିତ୍ୱକୁ ବଡ଼ିମାରେ ପରିଣତ କରାଯାଇ ନାହିଁ । ନିରୁତା କବିତାର ସେବାରେ, ଯୁବ ସାହିତ୍ୟକମାନଙ୍କର ପ୍ରେରଣାର ଉତ୍ସ ସାଜିବାରେ କେବେଠୁ କେନ୍ଦ୍ରବିନ୍ଦୁ ପାଲଟି ସାରିଛନ୍ତି । ୧୯୩୬ ମସିହା, ଜାନୁୟାରୀ ୧୨ ତାରିଖରେ ସେ ବାଲେଶ୍ୱର ମାଟିରେ ସୁନହଟ ଗାଁରେ କୁଆଁରାବ ଦେଇଥିଲେ । ବାଲେଶ୍ୱରର ଏହି ଏହି ଅଖ୍ୟାତ ଗାଁ 'ସୁନହଟ' ଆଜି ତାଙ୍କ ଯୋଗୁଁ ସାରା ଓଡିଶାରେ ବିଖ୍ୟାତ । ୧୯୪୭ରୁ ଆରମ୍ଭ ହୋଇଥିଲା ଓଡିଆ କାବ୍ୟଧାରାକୁ ସମୃଦ୍ଧ କରିବା ପାଇଁ ତାଙ୍କର ନିଷ୍ଠାପର ଉଦ୍ୟମ । ଓଡିଶାର କୌଣସି ଅଞ୍ଚଳରୁ ହେଉ କି ଓଡିଶା ବାହାରୁ ହେଉ ସାହିତ୍ୟ ପ୍ରେମୀ, ସାହିତ୍ୟିକମାନେ ଯଦି ବାଲେଶ୍ୱର ଆସନ୍ତି ତେବେ କବି ବ୍ରଜନାଥ ରଥଙ୍କୁ ଦେଖା ନକରି ଫେରିଯିବାଟା ବୋଧହୁଏ ବିରଳ କୁହାଯିବ । ଜଗନ୍ନାଥ ଦେଶରୁ ଆସିଛୁ କହିଲେ ଯେମିତି ଓଡିଆ ବାହାର ଲୋକେ ସମ୍ମାନ ଦିଅନ୍ତି ଓ ଜଗନ୍ନାଥଙ୍କ ସମ୍ପର୍କରେ ପଚାରନ୍ତି, ସେମିତି ବାଲେଶ୍ୱରରୁ ଆସିଛି କହିଲେ ସାରସ୍ୱତ ସାଧକ, ପାଠକମାନେ କବି ବ୍ରଜନାଥ ରଥଙ୍କ କଥା ପଚାରନ୍ତି । ଅର୍ଥାତ୍ ଜୀବନକାଳ ଭିତରେ ସେ ଏକ ଚଳନ୍ତି 'କିମ୍ବଦନ୍ତୀ'ରେ ପରିଣତ ହୋଇ ଯାଇଛନ୍ତି । କବିତାକୁ ନେଇ ତାଙ୍କର ସାଧନା ଅସରନ୍ତି ଯାହା ଗବେଷଣାର ଅପେକ୍ଷା ରଖେ । ତାଙ୍କର ଦିବ୍ୟ ସୁନ୍ଦର ଚେହେରା, ଖଦଡ ପଞ୍ଜାବୀ କି ଧଳାସାର୍ଟ ସହିତ ଫିନ୍ ଫିନ୍ ଧୋତି ପରିଧାନରେ ନିରୁତା ଓଡିଆତ୍ୱ ବାରି ହୋଇଯାଏ । ପ୍ରତିଭା ସହିତ ବ୍ୟକ୍ତିତ୍ୱ ମିଶିଗଲେ କୁହାଯିବ 'ଅପୂର୍ବ' । ଓଡିଆ ପତ୍ର ପତ୍ରିକା ଇତିହାସ ତଥା ଓଡିଆ ସାହିତ୍ୟର ଇତିହାସର ସେ ଜଣେ ଏନ୍‌ସାଇକ୍ଲୋପେଡିଆ । ଅତୀତରେ ତାଙ୍କର ଯେଉଁ ବିଶ୍ୱଶ୍ରୀ ପ୍ରେସ୍ ଥିଲା ସେଠି କେଉଁ ସାହିତ୍ୟିକ, ସମ୍ପାଦକର ପାଦ ନପଡିଛି । ସମ୍ପାଦନା, ପ୍ରକାଶନ ସାହିତ ସାହିତ୍ୟ ଆଲୋଚନା ହିଁ ହୋଇଛି ମୁଖ୍ୟ । ବନ୍ଧୁ ସ୍ମରଣିକାର ସମ୍ପାଦନାର ଦାୟିତ୍ୱ ସେ ତୁଲାଇଛନ୍ତି । ବିଶେଷକରି ଯୁବ ଗାଳ୍ପିକ କହ୍ନେଇଲାଲ୍ ଦାସଙ୍କ ମୃତ୍ୟୁ ପରେ "କହ୍ନେଇନାମା" ନାମରେ ଯେଉଁ ସ୍ମରଣିକା ପ୍ରକାଶ ପାଇଥିଲା ତାହା ବ୍ରଜନାଥ ରଥଙ୍କ ସମ୍ପାଦନା, ଅକ୍ଳାନ୍ତ ଉଦ୍ୟମରେ ହିଁ ସମ୍ଭବ ହୋଇ ପାରିଥିଲା । ବାଲେଶ୍ୱର ସୁନହଟ ଗାଁରେ ବସି ଏହି ପ୍ରଚାର ବିମୁଖ କବି, ଅନୁବାଦକ, ସମ୍ପାଦକ, ସାରସ୍ୱତ ସାଧକ ଜଣକ ଆଜି ନିଜ ସୁଗନ୍ଧରେ ଓଡିଆ ତଥା ଓଡିଆ ବାହାରେ ସୁପରିଚିତ । ସାଧନା ଯେ କେବେ ବ୍ୟର୍ଥ ହୁଏ ନାହିଁ ଏକଥା ସେ ଦେଖାଇ ପାରିଛନ୍ତି ନିଜ ଜୀବନରେ ।

ତାଙ୍କ ସହ ମୋର ପ୍ରଥମ ଦେଖା ହୁଏ କଟକରେ, ଫ୍ରେଣ୍ଡସ୍ ପବ୍ଲିଶର୍ସରେ

୧୯୯୩ରେ, ସେତେବେଳେ ପ୍ରକାଶକ ସହଦେବ ପ୍ରଧାନ ମୋର ଗଳ୍ପ ସଂକଳନ 'ଭିନ୍ନ ସହର" (୧୯୮୭) ଛାପି ସାରିଥାନ୍ତି । ମୋର ଉପନ୍ୟାସ ସମ୍ପର୍କ (୧୯୯୦) ଓଡିଶା ବୁକ୍‌ଷ୍ଟୋର-କଟକ ଛାପିଥାଏ । ମୁଁ ରାଉରକେଲା ସରକାରୀ କଲେଜରେ ଅଧ୍ୟାପିକା ଭାବରେ ଯୋଗ ଦେଇଥାଏ । ରାଉରକେଲାରୁ ଯାଇଥାଏ କଟକ । ସହଦେବ ବାବୁ ଚିହ୍ନାଇଦେଲେ ଇଏ କବିତା ବାରିକ୍ । ତାଙ୍କର ଭିନ୍ନ ସହର ଗଳ୍ପ ସଂକଳନଟେ ଛାପିଛୁ ଆଉ ଇଏ ହେଲେ କବି ବ୍ରଜନାଥ ରଥ । ତାଙ୍କ ନାଁ ଶୁଣି ମୁଁ ଯେମିତି ଆନନ୍ଦରେ ଗଦ୍‌ଗଦ୍ ହୋଇ ପଡିଲି ସେମିତି ସେ ମୋ ନାଁ ଶୁଣି ସଙ୍ଗେ ସଙ୍ଗେ ପଚାରିଲେ ତମେ 'ସମ୍ପର୍କ' ଉପନ୍ୟାସ ଲେଖିଛ ନା ? ଗୋବିନ୍ଦ ଚରଣ ପାତ୍ର ସେ ବହିଟା ମୋତେ ଦେଇ କହିଥିଲେ ତମ ଆଡର ଝିଅଟିଏ ଏ ଉପନ୍ୟାସଟି ଲେଖିଛି । ଅତି ଆଗ୍ରହରେ କଟକରୁ ବାଲେଶ୍ୱର ଫେରିବା ରାସ୍ତାରେ ଆମ ପଟର ଝିଅ କ'ଣ ଲେଖିଛି ବୋଲି ଉପନ୍ୟାସଟି ପଢିଲି । ତମ ହାତରେ ଉପନ୍ୟାସ ବେଶ୍ ଉତୁରିବ । ବାସ୍ ସେହି ପ୍ରଥମ ଦେଖା । ତାଙ୍କର ହସ ହସ ମୁହଁ, ଆଶୀର୍ବାଦ, ପ୍ରେରଣା ସୂଚକ କଥାବାର୍ତ୍ତା ମୋ ମନ ଭରି ଦେଇଥିଲା । ନୂଆପିଢୀର ଲେଖକ/ ଲେଖିକା ତାଙ୍କ ପୂର୍ବଜ ପ୍ରତିଷ୍ଠିତ ମାନଙ୍କ ଠାରୁ ଏହାହିଁ ତ ଚାହାନ୍ତି ।

ତାଙ୍କ ସହ ପୁଣି ଦେଖାହେଲା କଟକର ବିଷୁବ ଆସରରେ ପ୍ରଜାତନ୍ତ୍ର ଅଫିସ୍‌ରେ ୧୯୯୭ ମସିହାରେ । ସେ ଥର ସେ ବିଷୁବ ପୁରସ୍କାର ପାଇଥାନ୍ତି । ବିଷୁବ ପୁରସ୍କାର ପ୍ରଦାନ କରିବାକୁ ଆସିଥାନ୍ତି ବିଖ୍ୟାତ ଉର୍ଦ୍ଦୁ ସାହିତ୍ୟିକ ହୋସେନୁର ରହମାନ୍ । ମୋ ଉପରେ ଦୃଷ୍ଟି ପଡିବାରୁ ମୁଁ ନମସ୍କାର କଲି । ସେହି ହସ ହସ ଭଙ୍ଗୀ, ଆଶୀର୍ବାଦ ସୂଚକ କଥା, ଲେଖାଲେଖି କ'ଣ କରୁଛ ସମ୍ପର୍କରେ ଜିଜ୍ଞାସା । ଏହାପରେ ଅନେକଥର ଦେଖାହୋଇଛି । ମୁଁ ଯେ ଦିନେ ବାଲେଶ୍ୱରର ସ୍ଥାୟୀ ବାସିନ୍ଦା ହେବି ଏକଥା କେବେ ଭାବିନଥିଲି । ଆମର ରେମୁଣାପାଖ ତେନ୍ତୁଳା ଠାକୁରାଣୀ ପଛପଟେ ଘର ତୋଳା ଚାଲିଥାଏ । ଚନ୍ଦ୍ରଭାଗା ପୁସ୍ତକ ମେଳାରେ ଦେଖା ହେଲା କବି, ସଂପାଦିକା ସୈରିନ୍ଧ୍ରୀ ସାହୁଙ୍କ ସହ । ସାଗରିକା ପୁଣି ଥରେ ବାହାରିବ ଓ ମାସିକ ପତ୍ରିକା ଭାବରେ ବାହାରିବ ବୋଲି କହିଲେ ଓ ତାର ପ୍ରଥମ ସଂଖ୍ୟା ପାଇଁ ଗପଟିଏ ମାଗିଲେ । ୨୦୦୬, ଜାନୁୟାରୀ ମାସରେ 'ସାଗରିକା'ର ପ୍ରଥମ ସଂଖ୍ୟା ନୂଆ କଳେବର ନେଇ ସଂପାଦିକଙ୍କ ଘରର ଉପର ଛାତରେ ଉନ୍ମୋଚନ ହେଲା ସନ୍ଧ୍ୟାରେ । ଉନ୍ମୋଚନ କଲେ କବି ବ୍ରଜନାଥ ରଥ । ବାଲେଶ୍ୱର ତଥା ଆଖପାଖର ବନ୍ଧୁ ସାହିତ୍ୟିକ ଯୋଗ ଦେଇଥାନ୍ତି । ସେଠି ସାଗରିକାର ପୃଷ୍ଠଭୂମି ସମ୍ପର୍କରେ ଆଲୋଚନା କରୁ କରୁ ବ୍ରଜବାବୁ କହିଲେ, "ଶୁଣି ଖୁସି

ହେବ ଯେ ବାଲେଶ୍ୱର ସାହିତ୍ୟକ ମାନଙ୍କର ଆଉ ଏକ ସଂଖ୍ୟା ବୃଦ୍ଧି ପାଇଛି । ଗାଳ୍ପିକ କବିତା ବାରିକ ସ୍ଥାୟୀ ବାସିନ୍ଦା ଭାବରେ ବାଲେଶ୍ୱରରେ ପଦାର୍ପଣ କରିଛନ୍ତି । ତାଙ୍କୁ ମୁଁ ହାର୍ଦ୍ଦିକ ସ୍ୱାଗତ ଜଣାଉଛି ଓ ଏ ପରିପ୍ରେକ୍ଷୀରେ ଦୁଇପଦ କହିବାକୁ ଅନୁରୋଧ କରୁଛି । ମୁଁ ଆଶ୍ଚର୍ଯ୍ୟ ଓ ଅଭିଭୂତ ହୋଇଯାଇଥିଲି ସେଦିନ ।

ଏହାପରେ 'ସୁବର୍ଣ୍ଣଶ୍ରୀ', 'ପରିଚୟ'ର ଉନ୍ମୋଚନ ଠାରୁ 'ସାଗରିକା', 'ଯୁଗଶ୍ରୀ ଯୁଗନାରୀ'ର ବାର୍ଷିକ ଉତ୍ସବରେ, ଅଥବା 'ଶାନ୍ତିକାନନ'ରେ ଫକୀରମୋହନଙ୍କ ଜୟନ୍ତୀରେ ବିଭିନ୍ନ ସମୟରେ ଦେଖା ହୋଇଛି । ତାଙ୍କ ଜୀବନସାରା ଗଚ୍ଛିତ ପୁସ୍ତକ ସବୁକୁ ନେଇ ସେ ସୁନହଟରେ ନିଜ ଘରେ 'ବିଶ୍ୱତାରା' ପାଠାଗାର କରିଛନ୍ତ । ଓଡିଶା ସାହିତ୍ୟ ପାଇଁ ଏହା ଆଉ ଏକ ନିଆରା ଗବେଷଣା କେନ୍ଦ୍ର । ଯଦିଓ ସେତେବେଳେ ଭବାନୀପାଟଣାରେ ପୋଷ୍ଟିଂ ହୋଇଥିବାରୁ ମୁଁ ତାଙ୍କର ପାଠାଗାର ଉନ୍ମୋଚନ ଦିବସରେ ଯାଇପାରିଲି ନାହିଁ । କହିବା ବାହୁଲ୍ୟ ଏକ ନିଆରା ବ୍ୟକ୍ତିତ୍ୱର ଅଧିକାରୀ ସେ, ମୋର ପ୍ରେରଣା । ଫକୀର ମୋହନ ସାହିତ୍ୟ ପରିଷଦର ବାର୍ଷିକ ଉତ୍ସବରେ (୨୦୦୬ରେ ବୋଧହୁଏ) ଡ. ଦୀନନାଥ ପାଠୀ, ଶାନ୍ତନୁ ଆଚାର୍ଯ୍ୟ ବାଲେଶ୍ୱର ଆସିଥିଲା ବେଳେ ଶାନ୍ତିକାନନରେ ସେ ମୋତେ ଗଦ୍ ଗଦ୍ ହୋଇ ଯେମିତି ମୋର ପରିଚୟ ତାଙ୍କ ସହିତ କରାଇ ଦେଇଥିଲେ ତାହା ଭୁଲିବାର ନୁହେଁ । ରୋକ୍‌ଠକ୍ ତଥା ଅପ୍ରିୟ ସତ୍ୟ କଥା କହି ପାରନ୍ତି ବୋଲି ସେ କେତେକଙ୍କ ଅପ୍ରିୟ ହୋଇଛନ୍ତି ତଥାପି ସତ କହିବାକୁ କିଆଁ ଡରିବି ନ୍ୟାୟରେ ସେ ସତ୍ୟର ପିଛା ଛାଡି ନାହାନ୍ତି । ୭୫ ବର୍ଷର ଯୁବକ ସେ । ତାରୁଣ୍ୟରେ ସଦା ଚଞ୍ଚଳ । ଏମିତି ଜଣେ ବ୍ୟକ୍ତିତ୍ୱଙ୍କର ଆଶୀର୍ବାଦ, କଲ୍ୟାଣ ପାଇ ମୁଁ ଧନ୍ୟ ହୋଇ ଯାଇଛି ।

୨୦୧୦ ପୂଜା ସଂଖ୍ୟା 'ଅପୂର୍ବା'ରେ ମୋର ଏକ କ୍ଷୁଦ୍ର ଉପନ୍ୟାସ 'ପୃଷା' ପ୍ରକାଶ ପାଇଥିଲା । 'ପୃଷା' ଲେଖିସାରିଲା ପରେ ତାର ପ୍ରଥମ ପାଠକ ହେଇ କିଛି ପ୍ରତିକିୟା ପ୍ରକାଶ କରି ଲେଖିବାକୁ ମୁଁ ତାଙ୍କୁ ଅନୁରୋଧ କରିଥିଲି । ଜଣେ ଏଡେବଡ଼ ପ୍ରତିଷ୍ଠିତ କବି ଯେ ହଁ କରିବେ ଏ ଆଶା ମୋର ଥିଲା । କାରଣ କବିତା ଲେଖିବା ସହିତ ସେ ଜଣେ ମୁଗ୍ଧ ପାଠକ । ବହୁ ପୁରାତନ, ନୂତନ ଲେଖକ ଲେଖିକାଙ୍କ ଲେଖା ପଢିବାରେ ତାଙ୍କର ଆଗ୍ରହ ଓ ରୁଚି ରହିଛି । ମୋର 'ପୃଷା' ଉପନ୍ୟାସଟିର ପାଣ୍ଡୁଲିପିଟି ନିଜର ଚେକ୍‌ଅପ୍ କରିବା ପାଇଁ ମୁମ୍ବାଇ ଯିବାବେଳେ ସାଙ୍ଗରେ ନେଇ ଯାଇଥିଲେ । ଟ୍ରେନ୍‌ରେ ସେ ପଢିଥିଲେ ଓ ଆସିଲାବେଳେ ଲେଖିବାକୁ ତା ଉପରେ ଭୁଲିନଥିଲେ । 'ଅପୂର୍ବା' ପୂଜାସଂଖ୍ୟା ପାଇଁ ସେ ଭୁବନେଶ୍ୱର ଗଲାପରେ ସଂପାଦକଙ୍କୁ ହାତାହାତି ଦେଇଥିଲେ ।

ପୂଜାସଂଖ୍ୟା ପ୍ରକାଶ ପାଇଲା ପରେ ତାଙ୍କର ଅଭିମତ ପଢି ମୁଁ ଉତ୍‌ଫୁଲ୍ଲିତ ହୋଇ ଉଠିଥିଲି । ପ୍ରତ୍ୟେକ ଧାଡି ପଢିବା ସହିତ ସେ ଉପନ୍ୟାସଟିର ସନ୍ନିବେଶିତ ଚରିତ୍ରମାନଙ୍କ ଉପରେ ମଧ୍ୟ ଆଲୋଚନା କରିଥିଲେ । ମୋର 'ପୃଷ୍ଠା'ରେ ଥିବା ଧାଡି କେତୋଟି ଉଦ୍ଧୃତି କରି ତାହା ଜୀବନ୍ତ, ମର୍ମରିତ, ରସସିକ୍ତ ବୋଲି ଉଲ୍ଲେଖ କରିଥିଲେ । ସେ ଧାଡି କେତୋଟି ହେଲା, "କାହାଣୀ ଆଉ କେଉଠୁ ଆସେ କି ? ଜୀବନର ଘଟଣା ତ ଗଳ୍ପ, ଉପନ୍ୟାସ, ନାଟକର ରୂପ ନେଇଥାଏ । ସ୍ରଷ୍ଟା ସେଇ ବାସ୍ତବ ଘଟଣାକୁ କଳ୍ପନାର ରଙ୍ଗ ଦେଇ ସାହିତ୍ୟର ପୃଷ୍ଠାରେ ରୂପାୟିତ କରିଦିଏ । ତାହାକୁ ପଢି ଘଟଣାର ସାମଞ୍ଜସ୍ୟ ନିଜ ଜୀବନରେ ଦେଖି ପାଠକ ଚମକି ପଡେ, ଲୁହଢାଳେ କିମ୍ୱା ତା ଭିତରେ ଏକାତ୍ମ ହୋଇଯାଏ । ଜୀବନ ତ ଏମିତି, ଯାହାର ପୃଷ୍ଠାରେ ଅନେକ କଥନିକା, ତାକୁ କାଗଜ ପୃଷ୍ଠାରେ ଉତାରି ପାରିଲେ ହେଲା ।"

'ପୃଷ୍ଠା' ସମ୍ପର୍କରେ ନିଜସ୍ୱ ମତ ତାଙ୍କର ଥିଲା 'ଆଜି କିଛି କିଛି ଲେଖକ-ଲେଖିକା ସାମାଜିକ ସଙ୍କଟ ଓ ଜୀବନର ନାନା ସମସ୍ୟାକୁ ଆଖି ବୁଜିଦେଇ ଯେଉଁଭଳି ୬୧୫କୁ ପ୍ରାଧାନ୍ୟ ଦେଇ Hot Literature (ଗରମ ସାହିତ୍ୟ) ସୃଷ୍ଟି କରି ବାହାବା ନେଉଛନ୍ତି, କବିତା ବାରିକ ଅନ୍ତତଃ ତା' ଠାରୁ ଦୂରରେ । ତାଙ୍କ କଲମ ଅଧିକ ଶକ୍ତିଶାଳୀ ଓ ସର୍ଜନଶୀଳ ହେଉ, ଏହା କାମନା କରୁଛି- ବ୍ରଜନାଥ ରଥ ।

ପ୍ରକୃତରେ ବ୍ରଜବାବୁଙ୍କ ବ୍ୟକ୍ତିତ୍ୱ ଆଉ ଆଶୀର୍ବାଦ ମୋ ପାଇଁ ଶହେ ଏକାଡେମୀ ପୁରସ୍କାର ଠାରୁ ଗୁରୁତ୍ୱପୂର୍ଣ୍ଣ ନିଶ୍ଚୟ । 'ଅପୂର୍ବା' ପୂଜା ସଂଖ୍ୟାଟି ତାଙ୍କ ଠିକଣାରେ ଆସିଥିବା ହେତୁ ଯାଇଥିଲି ଆଣିବାକୁ ତାଙ୍କ ବଂଶଶ୍ରୀ ପ୍ରେସ୍‌କୁ । ସେ ତାଙ୍କ ସ୍ୱହସ୍ତରେ ଲିଖିତ ତାଙ୍କର ଅଭିନନ୍ଦନିକା ଗ୍ରନ୍ଥ "ମହାଜୀବନର କବି ବ୍ରଜନାଥ ଜୀବନାଲୋକ" ମୋତେ ଉପହାର ଦେଇ ଧନ୍ୟ କରିଦେଇଥିଲେ । ଏହା ସ୍ମୃତି ଅନୁଭୂତିକୁ ନେଇ ପ୍ରଥମ ଭାଗ ସାତଶହ ଦୁଇପୃଷ୍ଠା ସମ୍ୱଳିତ । ଖୁବ୍ ଶୀଘ୍ର ତାଙ୍କ ସାରସ୍ୱତ ସୃଷ୍ଟିକୁ ନେଇ ଦ୍ୱିତୀୟ ଭାଗ ପ୍ରକାଶ ପାଇବ ବୋଲି କବି ସୂଚନା ଦେଇଥିଲେ । ଓଡିଶାର ବହୁ ପ୍ରତିଷ୍ଠିତ ଲେଖକ ଲେଖିକା (୧୫୦ ଜଣ) ତାଙ୍କର ଏହି ପ୍ରଥମ ଭାଗରେ ସ୍ମୃତି ଅନୁଭୂତିକୁ ନିଚ୍ଛକ ଭାବରେ ପ୍ରକାଶ କରିଛନ୍ତି । ସବୁଠୁ ବଡ଼ କଥା ହେଲା ୭୫ ବର୍ଷ ବୟସରେ ଉପନୀତ ହୋଇ ବହୁ ପୁରସ୍କାର, ସମ୍ମାନରେ ମଣ୍ଡିତ କବି ବ୍ରଜନାଥ ରଥଙ୍କୁ ଦେଖିଲେ ମନେ ହୋଇଛି କେଉଁ ଶାନ୍ତ ପଲ୍ଲୀର ମହକ ଦେଉଥିବା ଶୁଭ୍ର ମଲ୍ଲୀଟିଏ ଯାହା ମୋତେ ମୁଗ୍ଧ, ବାସ୍ନାମୟ କରିବା ସହିତ ଦେଇଛି ପ୍ରେରଣା, ଦେଇଛି କଲ୍ୟାଣ ।

## ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ଆଗରୁ କହିଛି "ମୋ ଦୃଷ୍ଟିରେ ନାରୀ" ଦୈନିକ ସମ୍ବାଦପତ୍ର "ଧରିତ୍ରୀ"ରେ ଧାରାବାହିକ ନାରୀ ପୃଷ୍ଠାରେ ପ୍ରକାଶ ପାଉଥିଲା । ତାହାର ଏକ ସଂକଳନ କରି 'ଲାର୍କବୁକ୍ସ'କୁ ଦେଇଥିଲି ଯାହାର 'ମୁଖବନ୍ଧ' ଲେଖିଥିଲେ ପଦ୍ମଶ୍ରୀ ସଚ୍ଚିରାଉତ୍ରାୟ ଓ ଏହା ୧୯୯୭ ମସିହାରେ ପ୍ରକାଶ ପାଇଥିଲା । ଏହି 'ମୁଖବନ୍ଧ' ଲେଖିବା ପାଇଁ ମୁଁ ତାଙ୍କ ସହ ଯୋଗାଯୋଗ କରିଥିଲି ଓ ସେଥିପାଇଁ ମୋତେ କଟକସ୍ଥିତ ତାଙ୍କର ମିସନ ରୋଡ୍‌ରେ ଥିବା ଘରକୁ ଯିବାକୁ ପଡିଥିଲା ।

ଏତେ ବଡ଼ ବିଖ୍ୟାତ କବି କେମିତି ଭେଟିବି, କେମିତି ଭାବରେ ସେ ମୋତେ ଗ୍ରହଣ କରିବେ ଏହିଭଳି ବିଭିନ୍ନ ଦ୍ୱନ୍ଦ୍ୱ ନେଇ ଘର ଖୋଜି ଖୋଜି ପହଞ୍ଚିଥିଲି । ଫାଟକ ଖୋଲି ପଶିଲାବେଳେ ମଧ୍ୟ ସଙ୍କୋଚ ଆଶଙ୍କାରେ ବୁଡି ଯାଉଥିଲି । କିନ୍ତୁ ସେ ଯେତେବେଳେ ମୋତେ ଅତି ଆଦରରେ ପାଛୋଟି ନେଇ ତାଙ୍କ ଡ୍ରଇଂରୁମ୍‌ରେ ବସାଇଲେ, ମୋର ସଙ୍କୋଚ ଆଶଙ୍କା କିଛିଟା ଭାଙ୍ଗିଯାଇଥିଲା । ତାଙ୍କୁ ସେତେବେଳେ ଭଲ ଦିଶୁନଥିଲା । ଆଖିରେ ମୋଟା କାଚର ଚଷମା, ହାତ ଥରୁଥିଲା । ତଥାପି କଥାବାର୍ତ୍ତା ଥିଲା ସ୍ପଷ୍ଟ । ସେ କହିଲେ ତମେ ତ ନାରୀ ସମସ୍ୟା ନେଇ ବହିଟେ ଲେଖିଛ । ସେଠି ମୋ ଭଳି ଜଣେ କବିଙ୍କୁ 'ମୁଖବନ୍ଧ' ଲେଖାଇବା ପାଇଁ ଚିନ୍ତାକଲ କାହିଁକି ? ମୁଁ କହିଲି ଆପଣ ହିଁ ତ ପ୍ରଥମ ଆଧୁନିକ କବି ଯିଏ ନାରୀ ସମସ୍ୟାକୁ ନେଇ ଅଳକା ସାନ୍ୟାଲ, ପ୍ରତିମା ନାୟକ ଭଳି କବିତା ଓଡିଆ ପାଠକଙ୍କୁ ଉପହାର ଦେଇଥିଲେ । ସେ କବିତା ପ୍ରଥମ ଥର ପାଇଁ ନିମ୍ନମଧ୍ୟବିତ୍ତ ନାରୀର ଦୁଃଖଦ, ଅସହାୟତାର ଚିତ୍ର ତୋଳି ଧରିଥିଲା । ସେହି କବି ହିଁ ମୋର ଏହି ନାରୀ ସମସ୍ୟା ନେଇ ଲେଖାଯାଇଥିବା ପ୍ରବନ୍ଧ ସଂକଳନର ମୁଖବନ୍ଧ ଲେଖିବା ପାଇଁ ସବୁଠାରୁ ଯୋଗ୍ୟ ବ୍ୟକ୍ତିତ୍ୱ । ଆପଣଙ୍କ ପାଖକୁ ଆସିବିନି ତ ଆଉ କାହା ପାଖକୁ ଯାଇ ଲେଖାଇବି ? ପାଠକେ ସଚ୍ଚିରାଉତରାୟଙ୍କର ସେହି କାଳଜୟୀ କବିତାର କେତୋଟି ପଂକ୍ତି ଏଠାରେ ଉଲ୍ଲେଖ ନକରି ରହିପାରୁ ନାହିଁ । ଯଦିଓ ଜୀବନାନନ୍ଦ ଦାସଙ୍କର ପ୍ରଭାବ ତାଙ୍କ ଉପରେ ଅନେକ ପରିମାଣରେ ପଡିଥିଲା ବୋଲି ମତ ପ୍ରକାଶ ପାଏ ତେବେ ସଚ୍ଚି ରାଉତରାୟଙ୍କର ଏ କବିତାର ପ୍ରଭାବ ଆମ ଓଡିଆ ସାହିତ୍ୟ ଓ ପାଠକ ପାଇଁ ଆଜି ବି କିଛି କମ୍ ନୁହେଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ନୂଆଖାଲିରେ ଧର୍ଷିତା ହୋଇଥିବା ନାରୀ, ନିମ୍ନମଧ୍ୟବିତ୍ତ ପରିବାରର ଅବିବାହିତା ଚାକିରିଜୀବୀ ଝିଅର ବେଦନାକୁ ସେ ପ୍ରଥମଥର ଆମ କବିତାରେ ତୋଳି ଧରିଥିଲେ । ଆସନ୍ତୁ ମନେ ପକାଇବା

ତାଙ୍କର ସେହି କବିତାର କେତୋଟି ଧାଡି...

"ପ୍ରଥମେ ତୁମକୁ ଯେବେ ଦେଖିଲି ଅଳକାସାନ୍ୟାଲ / ବିଦେହର ରାଜପୁରେ, ଲକ୍ଷସ୍ୱର୍ଣ୍ଣ ହରିଣର ଛାଲ / ଛାଇଥିଲା ପୃଥିବୀରେ ଫଗୁଣର ଆଶ୍ଚର୍ଯ୍ୟ ଗୋଧୂଳି

× × × × ×

"ସେଦିନୁ ତୁମକୁ ଖୋଜେ ସମୟର ନିରୋଳା ସୈକତେ / କଳିଙ୍ଗ କଟିକ ଦୂରେ ଅଳେଇଚ ଦ୍ୱୀପର ବନ୍ଦରେ / ଆଜି କିନ୍ତୁ ଦେଖା ହେଲା ସମୟର ଡେଙ୍ଗ ଚୋରାବାଲି / ତୁମକୁ ଲୁଚାଇଥିଲା ଶ୍ମଶାନିତ, ଭଙ୍ଗା ନୂଆଖାଲି...."

(ଅଳକା ସାନ୍ୟାଲ-ପାଣ୍ଡୁଲିପି)

ପୁଣି ସେ ଲେଖିଥିଲେ ତାଙ୍କର ଅନ୍ୟତମ ବିଖ୍ୟାତ କବିତା 'ପ୍ରତିମା ନାୟକ'। ତାଙ୍କ ଆଗରେ ମୁଁ କୋଟୋଟି ଧାଡି ଆବୃତ୍ତି କରିଥିଲି:-

"ଜାପାନୀ କାଗଜଫୁଲ ପରି ଦେହେ ବୟସର ଧୂଳି, /
ପଚାରିଲି, 'ଭଲ ଅଛ'? କଣ୍ଠେ ମୋର ବିବର୍ଣ୍ଣ ଗୋଧୂଳି × × ×
ସ୍ୱପ୍ନ ଆଉ ବାସ୍ତବର ମୁହାଣ ସେପାରେ
ଦୁହେଁ ଆମେ ହୋଇଥିଲୁ ଠିଆ
ଆମପଛେ ଶୋଇଥିଲା ଦୀର୍ଘ ଦୁଇ ବର୍ଷର ଦୁନିଆ

× × × ×

ଭାଜିଗଲା ବାହାଘର ଦର୍ଶନରେ ପଢୁଥିଲା ଏମ୍.ଏ. / କେଜାଣିବା ପଡିଥିବ ଜୀବନରେ ଥରେ ଅଧେ ପ୍ରେମେ / ପ୍ରତିମାନାୟକ ହସେ, ଓଠେ ତାର ସ୍ୱପ୍ନର ଆଭାସ, / ମୁହଁରେ ଖାକୀର ହସ, ଆଖିରେ ତାର ରାତି ଇସାରା / ଦୁଇପାଖେ ଦ୍ରୁତବନ, ଗତିବାନ୍ ନକ୍ଷତ୍ରର ଧାରା।"

× × × ×

କବି ରାଉତରାୟ ସତେକି କେଉଁ ଅତୀତ ଭିତରେ ହଜି ଯାଇଥିଲେ। ସୁଦୂର ଅତୀତରୁ ଫେରିଆସି କହିଲେ ମୋର ତ ହାତ ଥରୁଛି, ଆଖିକୁ ଭଲ ଦିଶୁନାହିଁ। ତମେ କଣ ଲେଖିଛ ପଢାଅ । ମୁଁ ମୁଖବନ୍ଧ ଡାକିଦେବି ଓ ହସ୍ତଖତ କରିଦେବି। ମୋର ପଢିବା ଭିତରେ ତାଙ୍କ ସହଧର୍ମୀଣୀ ପାଚିଲା ଅମୃତଭଣ୍ଡା ଓ ପୋଦିନାପତ୍ରର ସର୍ବତ ଆଣି କିଛି ସମୟ ବସିଥିଲେ। ତାଙ୍କର ଉଜ୍ଜ୍ୱଳ ଚେହେରା ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିତ୍ୱ ବାରି ହୋଇ ପଡୁଥିଲା। ଶୁଣିଥିଲି ୧୯୪୫ ମସିହାରେ ଆନ୍ଧ୍ରର ନୂଜ୍‌ଚିଡ୍ ରାଜବଂଶୀୟ ଗୋଲାପଲ୍ଲୀ

ରାଜାଙ୍କର କନିଷ୍ଠା କନ୍ୟା ସହିତ କବି ସଚ୍ଚି ରାଉତରାୟଙ୍କର ବିବାହ ହୋଇଥିଲା । ସେହି ରାଜକନ୍ୟାଙ୍କର ପ୍ରତ୍ୟେକ୍ଷ ଦର୍ଶନ କରି ନିଜକୁ ଧନ୍ୟ ମନେକଲି ।

କବି ରାଉତରାୟ ୧୯୪୨ରୁ ୧୯୬୨ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୦ବର୍ଷ କେଶୋରାମ କଟନ୍ ମିଲ୍‌ସରେ ଉଚ୍ଚପଦସ୍ଥ କର୍ମଚାରୀ ଭାବେ କାର୍ଯ୍ୟ କରିଥିଲେ । ଏହା କଲିକତାରେ ଅବସ୍ଥିତ ଥିଲା । ଏଇଠାରେ ସେ ଓଡିଆମାନଙ୍କ ଉପରେ ହେଉଥିବା ଶୋଷଣ, ଅତ୍ୟାଚର ପ୍ରତ୍ୟକ୍ଷ କରିଥିଲେ । ଏହା ତାଙ୍କ କବି ପ୍ରାଣକୁ ବ୍ୟଥିତ କରିଥିଲା । ଯାହା ତାଙ୍କୁ ଜଣେ ନବୀନ କ୍ରାନ୍ତିକାରୀ ଶିଳ୍ପୀ ଓ ବୈପ୍ଳବିକ ଚିନ୍ତାଧାରାର ଭିତ୍ତି ପକାଇବାକୁ ସାହାଯ୍ୟ କରିଥିଲେ । ତାଙ୍କ କବିତା ସେଥିପାଇଁ ସଂଘର୍ଷରତ, ଦାରିଦ୍ର୍ୟ ପୀଡିତ ମଣିଷର ଲହୁଲୁହରେ ରକ୍ତାକ୍ତ । ସେଥିପାଇଁ ତ ସେ ଲେଖିଛନ୍ତି:-

"ମୁଁ ସଚ୍ଚିରାଉତ୍‌ରା
ନୁହେଁ ଟାଗୋର ବା ଶେଲୀ
ମୁଁ ଏଇ ମାଟିର ଧରା,
ଆଉ ଆକାଶର କବି

× × ×

ତୁମେ ମୋର ଛପା ବହି ଯେତେବେଳେ ଛୁଅଁ
ଛୁଅଁ ନୂଆ ମଣିଷର ଛାତି ।"

(ରାଜଜେମା (ଭୂଦେବୀଙ୍କୁ) 'ପାଣ୍ଡୁଲିପି'ରେ ସଂକଳିତ)

ମୋ କାର୍ଯ୍ୟ ପାଇଁ ଏହାପରେ କେତେଥର କଟକ ଯାଇଛି । କବି ଓ କବିପତ୍ନୀ (ରାଜକନ୍ୟା) ଙ୍କ ସହିତ ଦୁଃଖ ସୁଖ ହୋଇଛି । ମିଶନ୍‌ରୋଡରେ କବି କେମିତି ନିଃସଙ୍ଗ, ସଭାସମିତିରେ ସଭାସତିତ୍ୱ କରିବାକୁ ହିଁ କେତେଜଣ ସାହିତ୍ୟ ଅନୁରାଗୀ ସେମାନଙ୍କ ବିଶେଷ ଅନୁଷ୍ଠାନିକ କାର୍ଯ୍ୟରେ ମନେ ପକାନ୍ତି ବୋଲି କହି ଦୁଃଖ ପ୍ରକାଶ କରନ୍ତି । ଜଣେ ଏତେବଡ଼ କବି, ଜ୍ଞାନପୀଠ ବିଜେତା, ପଦ୍ମଶ୍ରୀ ଉପାଧିରେ ଭୂଷିତ ବ୍ୟକ୍ତିତ୍ୱଙ୍କର ଦୁଃଖ, ନିଃସଙ୍ଗତା, ବ୍ୟାକୁଳତା ଯେତେଥର ଯାଇଛି ସାମ୍ନା କରିଛି । ମୋ ବହି 'ମୋ ଦୃଷ୍ଟିରେ ନାରୀ' (ଲାର୍କ ବୁକ୍‌ସ) ପ୍ରକାଶ ପାଇଲା ପରେ ପୁଣି ତାହା ଦେବା ପାଇଁ କଟକ ଯାଇଛି । ସାହିତ୍ୟକୁ ନେଇ ଦୁଃଖସୁଖ, ତାଙ୍କର କ୍ଷୋଭ ପ୍ରଭୃତି ସେ ମୁକ୍ତ ଭାବରେ ପ୍ରକାଶ କରିଛନ୍ତି । କଲିକତାରେ ଥିଲାବେଳେ ଝୋଟକଳରେ କାମ କରୁଥିବା ଓଡିଆ ଶ୍ରମିକଙ୍କ ଉପରେ ହେଉଥିବା ଅତ୍ୟାଚାର ତଥା 'ବାଜିରାଉତ' କବିତା ଲେଖିବାର ସେହି ଅଶ୍ଳୀଳ ଅନୁଭୂତି ସେ ବର୍ଣ୍ଣନା କରିଛନ୍ତି । 'ବାଜିରାଉତ୍' The Boat Boy ନାଁରେ

ଇଂରାଜୀରେ ଅନୁବାଦିତ ହୋଇଛି । ଏତେ ଛୋଟ ପିଲାର ବୀରତ୍ୱ ତ୍ୟାଗ ତାଙ୍କୁ ଅଶ୍ରୁବିଗଳିତ କରି ଦେଇଛି । କଥା ପ୍ରସଙ୍ଗରେ ତାଙ୍କୁ କହିଛି, ଆପଣ ଆପଣଙ୍କର ଜୀବନୀ ଲେଖନ୍ତେ ନାହିଁ ? ସେ କହିଲେ ମୁଁ ତ ଲେଖିବି ବୋଲି ଚିନ୍ତା କରିଛି । ତମେ କଟକକୁ ବଦଳି ହୋଇ ଆସନ୍ତ ହେଲେ । ମୁଁ ଡାକନ୍ତି ତମେ ଲେଖନ୍ତ । ଯଦି ଲେଖିବା ପାଇଁ କେହି ମିଳି ଯାଆନ୍ତି ତ ମୁଁ ଆତ୍ମଜୀବନୀ ଲେଖନ୍ତି । ପରବର୍ତ୍ତୀ ସମୟରେ 'ଉତ୍ତରକକ୍ଷ' ଧାରାବାହିକ ଭାବରେ 'ଅମୃତାୟନ'ରେ ପ୍ରକାଶ ପାଇଥିଲା । ବୋଧହୁଏ ଲେଖିବାର ମାଧ୍ୟମ ସେ ପାଇଯାଇଥିଲେ ।

ରାଉରକେଲାରେ ତାଙ୍କର ପୁଅ ରହୁଥିଲେ । ଯେତେବେଳେ କବି ସେଠାକୁ ଆସୁଥିଲେ ମୋତେ ଚିଠି ଲେଖି ଆଗରୁ ଦେଖା କରିବାକୁ ଜଣାଉଥିଲେ । ତାଙ୍କ ପୁଅଙ୍କ କ୍ୱାର୍ଟରକୁ ଦୁଇତିନିଥର ଯାଇଛି । ହିନ୍ଦିରେ ତାଙ୍କ ଗଳ୍ପଗୁଡିକ କେମିତି ଅନୁବାଦ ହେବ ଓ ସରକାରୀ ମହାବିଦ୍ୟାଳୟରେ କିଏ ହିନ୍ଦୀ ବିଭାଗରେ ଅଛନ୍ତି ସେ ପଚାରି ବୁଝୁଥିଲେ । ସବୁଠାରୁ ଦୁଃଖର ବିଷୟ ଥିଲା ଏତେବଡ଼ ଜ୍ଞାନୀପୀଠ ବିଜେତା, ପଦ୍ମଶ୍ରୀ ଉପାଧିରେ ଭୂଷିତ ବ୍ୟକ୍ତିତ୍ୱ ନିଜେ ନିଜର ସୃଷ୍ଟିର ଅନୁବାଦ ପାଇଁ ଅନୁବାଦକ ଖୋଜି ବୁଲୁଥିଲେ । ଏହା ହିଁ ତ ଆମ ସାହିତ୍ୟରେ ଲେଖୁଥିବା ଲେଖକର ଭାଗ୍ୟର ବିଡମ୍ବନା । ଅନ୍ୟ ରାଜ୍ୟରେ ହୋଇଥିଲେ ତାଙ୍କ ଲେଖା ଅନୁବାଦ କରିବା ପାଇଁ ଅନୁବାଦକଙ୍କ ଧାଡି ଲାଗିଥାନ୍ତା । ଆମ ଅନୁବାଦକମାନେ ହିନ୍ଦୀ, ବଙ୍ଗଳାରୁ ଓଡିଆରେ ଅନୁବାଦ କରିବା ପାଇଁ ଯେମିତି ବ୍ୟାକୁଳତା ପ୍ରକାଶ କରନ୍ତି ସେମିତି ଆମ ଓଡିଆର କ୍ଲାସିକ୍, ଯୁଗଧର୍ମୀ, ଚର୍ଚ୍ଚିତ ଲେଖାସବୁ କିଭଳି ଅନ୍ୟଭାଷାରେ ଅନୁବାଦ ହେବ ତାହାର ଚେଷ୍ଟା କରନ୍ତି ନାହିଁ । ଯାହାବି ଆଜି ଅନ୍ୟ ଭାଷାରେ ଅନୁବାଦ ହେଇଛି ତାହା ମୁଖ୍ୟତଃ ସେହି ଲେଖକଙ୍କ ବ୍ୟକ୍ତିଗତ ଉଦ୍ୟମରେ । ବିଶେଷକରି ଉଚ୍ଚ ପ୍ରଶାସନରେ ନିଯୁକ୍ତ ବିଭିନ୍ନ ଲେଖକମାନଙ୍କର ଲେଖା ଏଥିରେ ସାମିଲ୍ ହୋଇଥାଏ । କିଛି ଅର୍ଥ ଖର୍ଚ୍ଚ କରି ନିଜେ ଛପାଇ ଏ କାମଟି କରିଥାନ୍ତି । ଅର୍ଥ ନଦେବା କିମ୍ବା ଉଚ୍ଚ ପଦପଦବୀରେ ଆସୀନ ହୋଇ ନଥିବା ଏ ରାଜ୍ୟର ଲେଖକର ଭାଗ୍ୟ ହେଲା ପଥର ତଳେ । ପଥରରେ ଚାପି ହୋଇଥିବା ଭାଗ୍ୟ କ'ଣ ସହଜେ ବଦଳିପାରେ ? ପଦ୍ମଶ୍ରୀ ସଚ୍ଚିରାଉତରାୟଙ୍କ କ୍ଷେତ୍ରରେ ଯଦି ଏହା ଘଟିଥାଏ ତାହେଲେ ଆମ ଭଳି ଦାମାଶାମା ଭଳି ଲେଖକ ଲେଖିକାଙ୍କ ଲେଖାର ଅନୁବାଦ କଥାକୁ ପଚାରେ କିଏ ? ଗୁଣ ଚିହ୍ନେ ନ୍ୟାୟରେ ଓଡିଶାରେ କେବେ ପ୍ରକୃତ ଲେଖକର, କଳାକାରର ସାଧନାର ମୂଲ୍ୟାଙ୍କନ ହେବ ତାହା ଭଗବାନଙ୍କୁ ବି ଜଣାଥିବ କି ନାହିଁ ବୋଲି ମୋର ସନ୍ଦେହ ହୁଏ ।

## ଗାଳ୍ପିକ, ପ୍ରାବନ୍ଧିକ ବସନ୍ତ ଶତପଥୀ

ମୟୂରଭଞ୍ଜର ସାହିତ୍ୟକୁ ନେଇ ଗବେଷଣା କରିବା ଅବସରରେ ତାଙ୍କୁ ମୁଁ ଦେଖା କରିଥିଲି ବାରିପଦାସ୍ଥିତ ତାଙ୍କ ନିଜ ଘରେ । ସେତେବେଳେ ସେ ବାଲେଶ୍ୱର ସହଦେବଖୁଣ୍ଟା ଛାଡି ଚାକିରିରୁ ଅବସର ନେଇ ଅତ୍ୟନ୍ତ ନିଃସଙ୍ଗ ଭାବରେ ବାରିପଦାରେ ଜୀବନଯାପନ କରୁଥିଲେ । ପାଖରେ ଥିଲା ଜଣେ ସ୍ତ୍ରୀ ଲୋକ ଯିଏ କି ବସନ୍ତ ଶତ୍‌ପଥୀଙ୍କୁ ଅଜା ବୋଲି ସମ୍ବୋଧନ କରୁଥିଲା । ସେ ତାଙ୍କ ପାଇଁ ରନ୍ଧାବଢା କରିଦେବା ସହିତ ଘରଦ୍ୱାର, ଦେହପାର ଯତ୍ନ ନେଉଥିଲା । ଏହା ସହିତ ଆଉ ଜଣେ ମଧ୍ୟ ତାଙ୍କର ସେ ବାର୍ଦ୍ଧକ୍ୟ, ଏକୁଟିଆ ଜୀବନର ସାଥୀ ଥିଲା । ଯଦିଓ ସେ ମଣିଷ ନୁହେଁ ଏକ ପଶୁ । କଳାରଙ୍ଗର କୁକୁର ଯାହାକୁ ସେ ଅନେକ ସମୟରେ ସଦ୍ୟ ଲେଖିଥିବା ଗଳ୍ପ ପଢି ଶୁଣାଉଥିଲେ । ବସନ୍ତ ଶତ୍‌ପଥୀଙ୍କ କହିବାନୁସାରେ ପଶୁ ହେଲେ କ'ଣ ହେଲା ସେ ତାଙ୍କ ଗଳ୍ପର ଭାଷା ବୁଝେ, କାନ ଡେରି ମଧ୍ୟ ଶୁଣେ । ତାଙ୍କର ଚା ପିଆ ବେଳକୁ ସେ ମଧ୍ୟ ସକାଳ ସଞ୍ଜରେ ତା ପ୍ଲେଟ୍‌ରେ ଚା ବିସ୍କୁଟ୍ ଖାଏ । ମଣିଷଠାରୁ ଏଇ ପଶୁଟି ଅତ୍ୟନ୍ତ ବିଶ୍ୱସ୍ତ । ପୁଅଝିଅ ସମସ୍ତେ ଦୂରରେ । ସ୍ତ୍ରୀ ତ କେବେଠାରୁ ସ୍ୱର୍ଗବାସୀ । ପୁଣି ସାନ ପୁଅର ଅକାଳମୃତ୍ୟୁ । ଏହି ବୁଢା ବୟସରେ ବି ସେ ଥିଲେ ଚଳଚଞ୍ଚଳ ଆଉ ତାଙ୍କ ସ୍ମରଣଶକ୍ତି ଥିଲା ଅତ୍ୟନ୍ତ ପ୍ରଖର । ଲେଖାଲେଖିକୁ ମାଧ୍ୟମ କରି ସେ ଜୀଉଁଥିଲେ । ଏକୁଟିଆ ଜୀବନ, ବାର୍ଦ୍ଧକ୍ୟ ଭିତରେ ବି ସେ ଥିଲେ କର୍ମଦକ୍ଷ, ଓଡିଶା ସାହିତ୍ୟ ସାଧନାରେ ବ୍ରତୀ ।

ମୟୂରଭଞ୍ଜ ମହାରାଜାଙ୍କ ଉଦ୍ୟମରେ ପ୍ରକାଶ ପାଉଥିବା 'ଭଞ୍ଜପ୍ରଭା'ର ବସନ୍ତ ଶତପଥୀ ଥିଲେ ସମ୍ପାଦକ । ତେଣୁ ପୁରୁଣା 'ଭଞ୍ଜପ୍ରଭା' ର ଗୋଟ ଦୁଇଟା କପି ପାଇବା ପାଇଁ ଓ କିଛି ତଥ୍ୟ ସଂଗ୍ରହ କରିବା ପାଇଁ ତାଙ୍କର ବାଘଡାରୋଡ୍ ବସାରେ ମୁଁ ଯାଇ ପହଞ୍ଚିଥିଲି । ଜଗନ୍ନାଥଙ୍କ ଚିତ୍ରଥିବା ଲୁହାର ବିରାଟ ଗେଟ୍ । ବଗିଚା ମଝିରେ ରାସ୍ତା । ମୋ ନାଁ ସହିତ ସେ ପୂର୍ବରୁ ପରିଚିତ ଥିଲେ । ଦେଖି ବେଶ୍ ଖୁସି ହେଲେ । ପୁଣି ଆହୁରି ଖୁସି ହେଲେ ଯେତେବେଳେ ସେ ଜାଣିଲେ "ଓଡିଆ ସାହିତ୍ୟକୁ ମୟୂରଭଞ୍ଜର ଦାନ" ଶୀର୍ଷକରେ ଗବେଷଣା କରିବା କଥା । ଗବେଷଣାର ସୂତ୍ର ଧରି ତାଙ୍କ ଘରକୁ ବହୁବାର ଯାଇଛି । ତାଙ୍କର ବାୟୋଡାଟା ସହ କୃତିକୃତିତ୍ୱ ସଂଗ୍ରହ କରିଛି । କେବେ କେବେ ସଦ୍ୟ ଲେଖାଯାଇଥିବା ଗଳ୍ପ ଡାଏରୀ ଖୋଲି ସେ ପଢାନ୍ତି । ଚା' ବିସ୍କୁଟ୍ ଆସେ । ତାଙ୍କ ପ୍ରିୟ ପୋଷା କୁକୁର (ନାଁ ଠିକ୍ କି ମନେ ପଡୁନାହିଁ ଯେତେଦୂର ସମ୍ଭବ ବବି) ମଧ୍ୟ ତା ପ୍ଲେଟ୍‌ରେ ଚା' ବିସ୍କୁଟ୍ ଖାଇ ପରମ ଆନନ୍ଦରେ ଗୋଡ ପାଖରେ ଶୋଇ ଘୁମେଇ ଘୁମେଇ ତାଙ୍କ ଗପ ଶୁଣେ ।

'ଅଯିଛେଲାଟା'ରୁ ଆରମ୍ଭ କରି ଗୋଟିଏ ଆଲୁ, ଚାଉଳ, କାଉ ପ୍ରଭୃତିକୁ ନେଇ ମୟୂରଭଞ୍ଜିଆ ଭାଷା ପ୍ରୟୋଗ କରି ସେ କିଭଳି ତାଙ୍କ ଅନୁଭୂତି ଭରା ଗଳ୍ପ ସବୁ ଲେଖିଛନ୍ତି ତାହା ବଖାଣି ବସନ୍ତି । ମୁଁ ଯେତେବେଳେ ରାଉରକେଲାରେ ଥାଏ । ଯେତେବେଳେ ବାରିପଦା ଆସେ ତାଙ୍କ ଘରକୁ ସମୟ କରି ଯାଏ । ଥରେ ସେ 'କୋଦାଳକୁ' ନେଇ ଗପଟିଏ ଲେଖିଥାନ୍ତି । ଅତି ଆଗ୍ରହରେ ପଢ଼ି ଶୁଣାଉଥାନ୍ତି । 'କୋଦାଳ' ପଛରେ ରହିଥିବା ସତ୍ୟ କାହାଣୀଟି ସେ ଯେତେବେଳେ ବଖାଣିଲେ ଶେଷ ଆଡକୁ ତାଙ୍କ କଣ୍ଠ ରୁନ୍ଧି ହୋଇଗଲା । ଆଜିବି ସେ ଦିନର ଦୃଶ୍ୟ ମୋ ଆଖିରେ ନାଚି ଯାଉଛି । ମୁଁ ତ ଥିଲି ନୀରବ ଶ୍ରୋତା । ସେ ଥିଲେ ପ୍ରଗଲ୍‌ଭ ବକ୍ତା । ନିଜ ଭିତରର ଦୁଃଖ, କ୍ଷୋଭକୁ ବାଣ୍ଟିବା ପାଇଁ ସତେ କି ସେ ଅନେକ ଦିନପରେ ଏକ ମାଧ୍ୟମ ପାଇ ଯାଇଛନ୍ତି । ସେଥିପାଇଁ କଥାରେ ବାଟୁଳି ବାଜୁ ନଥିଲା । ନିଜ ଅନ୍ତରର କୋହ, କ୍ଷୋଭ କି ବେଦନାକୁ ବାଣ୍ଟିବା ପାଇଁ ବି ଶ୍ରୋତାଟିଏ ଲୋଡା । ଆଜିର କର୍ମଚଞ୍ଚଳ, ବ୍ୟସ୍ତବ୍ୟସ୍ତ ଅର୍ଥ ସର୍ବସ୍ୱ ମଣିଷ ପାଖରେ ସମୟ କାହିଁ ଯେ କାହା ଦୁଃଖ ଶୁଣିବା ପାଇଁ ସେ ଟିକେ ଅଟକିବ, ଦଣ୍ଡେ ଠିଆହେବ ? ମଣିଷ ତ ଖାଲି ଧାଉଁଛି ଆଗକୁ ଆଗକୁ । ହିସାବୀ ସ୍ୱାର୍ଥସର୍ବସ୍ୱ ମଣିଷ ପାଖରେ କାହାରି ଭାବନା, ବ୍ୟଥାର ସ୍ଥାନ ନାହିଁ ।

"କୋଦାଳ" ଗଳ୍ପରେ ଶେଷ ଆଡକୁ କୋଦାଳଟି ହଜି ଯାଇଛି । ପ୍ରକୃତରେ ପାଖ ପଡୋଶୀ ଜଣେ ଗଛ ଲଗାଇବେ କହି ମାଗିନେଇ ଆଉ ଫେରାଇଲେ ନାହିଁ । ହଜିଗଲା କହି ହାଲ୍‌କାରେ 'ସରି' ବୋଲି କହିଦେଲେ । ବସନ୍ତ ଶତପଥୀ କହିଲେ, ମୋତେ ଯେମିତି ହେଲେ "କୋଦାଳ'ଟା ଫେରାନ୍ତୁ । ସେ କହିଲେ ମୁଁ ତେବେ ନୂଆ କୋଦାଳଟେ କହିବେ ତ କିଣିଦେବି । ଇଯେ କହିଲେ ମୋର ସେଇ କୋଦାଳଟା ହିଁ ଦରକାର । ପଡୋଶୀ କଞ୍ଜୁସ୍ ବୁଢା, ଭଙ୍ଗା ପୁରୁଣା ଦଦରା କୋଦାଳଟା ପାଇଁ କେମିତି ପାଟି କରୁଛି ବୋଲି କୁଆଡେ ବ୍ୟଙ୍ଗ କରିଥିଲେ ।

ପ୍ରକୃତରେ କୋଦାଳଟା ନୂଆ ନଥିଲା । ପୁରୁଣା ଓ ତା'ର ଗୋଟାଏ କୋଣ ଖାଇଯାଇଥିଲା । ଗୋଦାବରୀଶ ମହାପାତ୍ରଙ୍କ "ଗୋଟିଏ ଚମୁଚ୍" ଗଳ୍ପ ପଛରେ ଯେମିତି ଏକ ବ୍ୟଥାଭରା- କରୁଣ କାହାଣୀ ଯୋଡି ରହିଥିଲା ସେମିତି ଏହି କୋଦାଳ ପଛରେ ବସନ୍ତ ଶତପଥୀଙ୍କ ଜୀବନର ମଧ୍ୟ ଏକ କରୁଣ- ବିୟୋଗାତ୍ମକ କାହାଣୀ ଲୁଚି ରହିଥିଲା । ତାଙ୍କ ମତରେ ଏହି କୋଦାଳରେ ମାଟି ଉଠାଯାଇ ତାଙ୍କ ସ୍ତ୍ରୀଙ୍କ ମୃତ୍ୟୁବେଳେ କୁଆଡେ ଦିଆଯାଇଥିଲା । ପୁଣି ତାଙ୍କର ସାନ ପୁଅ ଯେତେବେଳେ ପୋଖରୀରେ ବୁଡି ମୃତ୍ୟୁବରଣ କଲା ସେତେବେଳେ ମଧ୍ୟ ସେହି କୋଦାଳରେ ମାଟି ହଣାଯାଇ ତାକୁ ପୋତା ଯାଇଥିଲା ।

ସେ ଏହାକୁ ଅତି ଯତ୍ନରେ ସାଇତି ରଖିଥିଲେ ଏଇଥିପାଇଁ ଯେ ସେ ଯେତେବେଳେ ଏ ସଂସାରରୁ ବିଦାୟ ନେବେ ତାଙ୍କ କିୟାକର୍ମରେ ଏହି କୋଦାଳରେ ମାଟି ହଣାଯାଇ ଲଗାଯିବ । ଅବଶୋଷର କଥା ପଡୋଶୀଜଣଙ୍କର ଅତ୍ୟନ୍ତ ଅବହେଳା, ହେୟଜ୍ଞାନ ଯୋଗୁଁ ବୋଧହୁଏ ତାହା କବାଡିବାଲା ପାଖକୁ ଚାଲିଗଲା । ତେଣୁ ଗୋଟିଏ ପୁରୁଣା, ଭଙ୍ଗା ଲୁହାଖଣ୍ଡକ ପାଇଁ ବିକଳ ଓ ଜିଦ୍ ରଖୁଥିବା ପଡୋଶୀକୁ ସେ 'କଞ୍ଜୁସ୍‌ବୁଢା' ବୋଲି ସମ୍ବୋଧନ କରିଥିଲେ । ତା ପଛରେ ଥିବା ଭାବନା, କାହାଣୀକୁ ସେ ଜାଣନ୍ତେ ବା କେମିତି ? ଜାଣିବାକୁ ବି ପଚାରିବାକୁ ଚେଷ୍ଟା ମଧ ନାହାନ୍ତି । ଭଙ୍ଗା କୋଦାଳ ସହିତ ଯୋଡା ହୋଇଥିବା ଜଣକର ଭଙ୍ଗା ଜୀବନର ଦଦରା କାହାଣୀ ସହିତ ପରିଚିତ ହେବା ଲାଗି ତାଙ୍କର ଆଗ୍ରହ କି ଜିଜ୍ଞାସା ନଥିଲା । ବସନ୍ତବାବୁ କେମିତି ବା କହିପାରିଥାନ୍ତେ ସେ କୋଦାଳ ସହିତ କେମିତି ବନ୍ଧାଯାଇଛି ତାଙ୍କ ଅତୀତ ?

ସେଦିନ ମୋ ମନ ବିଷାଦ ଆଉ କାରୁଣ୍ୟର ଭରିଯାଇଥିଲା । ମନେ ହୋଇଥିଲା ପ୍ରତ୍ୟେକ ମଣିଷ ସତେକି ଗୋଟାଏ ଗୋଟାଏ ଅପଢା ଗ୍ରନ୍ଥ । ମଣିଷ ମଣିଷକୁ କେବେ ବୁଝିବା ପାଇଁ ପ୍ରୟାସ କରିବ ? କେବେ ଜଣକର ଦୁଃଖ, ବେଦନାକୁ ନିଜର ବୋଲି ଭାବି ଆପଣାଇ ନେବ ? କେବେ ସେ ସମୟ ଆସିବ ଆଉ ସତରେ କଣ ସେ ଆସିବ ? ହାତ ବଢାଇ କହିବ ମୁଁ ତମର ଦରଦୀ ବନ୍ଧୁ ! ସକଳ ବ୍ୟଥା, ଦୁଃଖ, ଅସହାୟତାକୁ ମୋତେ ବାଢିଦିଅ । ଆସ ଆମେ ଦୁଃଖରେ, ସୁଖରେ ମିତ ବସିବା ।

ବାର୍ଦ୍ଧକ୍ୟ ଜୀବନର ନିଃସଙ୍ଗତା, ଅସହାୟତା ସହିତ ମୁଁ ତାଙ୍କୁ ଦେଖି ହିଁ ଅନୁଭବ କରିଥିଲି । ମନେ ହୋଇଥିଲା ପୁଅ ଝିଅ, ବୋହୂ, ନାତିନାତୁଣୀ ସବୁକିଛି ଗୋଟାଏ ମାୟା । ବୁଢା ଗଛକୁ ଛାଡି ପକ୍ଷୀ ଉଡିଗଲା ଭଳି ଏମାନେ ସମସ୍ତେ ଡେଣା ଗଜୁରିଲେ ଉଡିଯାଆନ୍ତି । କେବଳ ରହିଯାଆନ୍ତି ବାର୍ଦ୍ଧକ୍ୟରେ ସଢୁଥିବା ବାପା ମାଆ । ପାଖରେ କେବଳ ନିଜର ହଜିଲା ଅତୀତ ।

## ପନ୍ଦର

## ମୋର ଡି.ଲିଟ୍ ଗବେଷଣା ଭିତରେ ଗୀତିକବି ଓ ସୁରର ସଂସାର

ଆଧୁନିକ ଓଡିଆ କ୍ଷୁଦ୍ର ଗଳ୍ପ ଉପରେ ଗବେଷଣା କରି ପି.ଏଚ୍.ଡି. ପାଇଲି ୧୯୮୮ ମସିହାରେ । ସେତେବେଳେ ମୁଁ ଥାଏ ଉଦଳା କଲେଜ୍‌ରେ । ଭୁବନେଶ୍ୱର ଆସିଥିବା ବେଳେ ବାସୁସାର୍ (ଡ଼ ଡକ୍ଟର ବାସୁଦେବ ସାହୁ) କହିଲେ ତୁ ହେଲୁ ମୟୂରଭଞ୍ଜର

ଝିଅ । ବାରିପଦାରେ ମୋର ପ୍ରଥମ ଚାକିରି । ସେଠିକା କଳା, ସାହିତ୍ୟ, ସଂସ୍କୃତି ଖୁବ୍ ବିଶାଳ ଆଉ ସମୃଦ୍ଧ । ତେଣୁ ମୟୂରଭଞ୍ଜ ସାହିତ୍ୟ ଉପରେ ଡି.ଲିଟ୍ କର । ମୁଁ କଣ ପାରିବି ? ଆଶଙ୍କାଭରା ହୃଦୟରେ କହିଥିଲି । ଆପଣ ଏମିତି ଗୋଟ ବିଷୟ ଦିଅନ୍ତୁ ଯାହାର ବହି ସବୁ ଲାଇବ୍ରେରିରେ ମିଳିବ ଓ ପଢି ମୁଁ ଡି.ଲିଟ୍ କରିବି । ସେ ହସିଥିଲେ । ଗବେଷଣା କେବଳ ଡିଗ୍ରୀ ସର୍ବସ୍ୱ ହେଇଯାଉଥିବାରୁ ସେଠି ଗବେଷଣା ମନୋବୃତ୍ତି ରହୁ ନାହିଁ । କ୍ଷେତ୍ର ଗବେଷଣା ବା field study ନଥିବାରୁ ଜ୍ଞାନ ସବୁ ପାଠାଗାର ଭିତରେ ସୀମିତ । ବାଡି ବାଇଗଣ ଓ ପୋଥି ବାଇଗଣରେ କ'ଣ ଫରକ ନାହିଁ ।

ବାସ୍ ସେଇଠୁ ତାଙ୍କ ପ୍ରେରଣାରେ ରେଜିଷ୍ଟ୍ରେସନ୍ କଲି "ଓଡିଆ ସାହିତ୍ୟକୁ ମୟୂରଭଞ୍ଜର ଦାନ" ଶୀର୍ଷକରେ ବାସୁସାରଙ୍କ ତତ୍ତ୍ୱାବଧାନରେ । ଇଏ ୧୯୯୦ ମସିହା କଥା । ସେତେବେଳେ ପି.ଏସ୍.ସି ପାଇ ମୁଁ ସରକାରୀ ମହାବିଦ୍ୟାଳୟ ରାଉରକେଲାରେ ଯୋଗ ଦେଇଥାଏ । ମୟୂରଭଞ୍ଜର ବହୁଦୂରକୁ ଚାଲିଯାଇ ଥିବାରୁ ବିଶେଷ କାମ କିଛି କରିପାରିଲି ନାହିଁ । ତାପରେ ବାହାଘର, ପୁତ୍ର ସନ୍ତାନର ଜନନୀ ଆଉ ସାଂସାରିକ ଜଞ୍ଜାଳ, ସମସ୍ୟା ଭିତରେ ଏ କାମ ପଡିରହିଲା । ୧୯୯୬ କି ୯୭ ପାଖାପାଖି ବାସୁସାରଙ୍କ ସହ ଦେଖାହେଲା ରାଉରକେଲାରେ । କୌଣସି ଏକ ସେମିନାରକୁ ସେ ଆସିଥାନ୍ତି । କହିଲେ ତୁ ଆଉ କିଛି କଲୁ ନାହିଁ । ବହୁତ ଆଶା ରଖିଥିଲି ମୟୂରଭଞ୍ଜର ଝିଅ ମୟୂରଭଞ୍ଜ ପାଇଁ କିଛି କରିବ । ମୁଁ କହିଲି ସାର୍- Topicଟା ବଦଳାଇ ଦେଲେ ହୁଅନ୍ତା ନାହିଁ । ମୟୂରଭଞ୍ଜ ଉପରେ ଗବେଷଣା କରିବି ଅଥଚ ତାଠୁ ଦୂରରେ ରହିବି । କେମିତି ହେବ ? ସେ କହିଲେ ନାଁ, ବଦଳାଇ ହେବ ନାହିଁ । କରିବୁ ତ ମୟୂରଭଞ୍ଜର ସାହିତ୍ୟ ଉପରେ । ତାପରେ ମୁଁ ଧ୍ୟାନ ଦେଲି ମୋ କାମରେ । ଗ୍ରୀଷ୍ମଛୁଟି, ପୂଜାଛୁଟି ଭିତରେ ଗଲେ ସଂଗ୍ରହ କରିବାରେ ଲାଗିପଡିଲି ମୟୂରଭଞ୍ଜର ପତ୍ରପତ୍ରିକା, ସାହିତ୍ୟ ଓ ସାହିତ୍ୟିକଙ୍କ ସମ୍ପର୍କରେ । ଏ ସମୟରେ ମୋର ସୌଭାଗ୍ୟ ଯେ ବହୁ ପ୍ରଥିତ ଯଶା ଲେଖକ, ସାହିତ୍ୟିକଙ୍କ ସହ ଦେଖା ସାକ୍ଷାତ୍ ହେଲା । ଯେଉଁମାନଙ୍କର ପ୍ରତିଭା ମୋତେ ମୁଗ୍ଧ କରିଥିଲା କିନ୍ତୁ ଦେଖାହେବା କିମ୍ବା ଚିହ୍ନାହେବା ସମ୍ଭବ ନଥିଲା । ସେମାନଙ୍କ ସମ୍ପର୍କରେ ସ୍ମୃତିଚାରଣ କରିବା ସହିତ ସେମାନଙ୍କର ପ୍ରେରଣା, ଆଶୀର୍ବାଦ ସମ୍ପର୍କରେ ଦିପଦ ନକହିଲେ ବୋଧହୁଏ ମୁଁ ଅପରାଧୀ ହେବି । ବିଶେଷକରି ଗୀତକବି ଗୁରୁକୃଷ୍ଣ ଗୋସ୍ୱାମୀ, ନିମାଇଁ ମହାନ୍ତି, ରାଧାକୃଷ୍ଣ ଭଞ୍ଜ, ଦିଲ୍ଲୀପ ଦାସ, ସଂଗ୍ରାମ ମହାନ୍ତି ଟୁରିବାବୁ (ଲକ୍ଷ୍ମୀନାରାୟଣ ଦାସ), ନାଟ୍ୟକାର ଆନନ୍ଦ ଶଙ୍କର ଦାସଙ୍କୁ ଏ କ୍ଷେତ୍ରରେ ସ୍ମରଣ କରାଯାଇପାରେ ।

## ଗୀତିକାର ଗୁରୁକୃଷ୍ଣ ଗୋସ୍ୱାମୀ (୧୯୩୪)

ଓଡିଆ ଚଳଚ୍ଚିତ୍ର ଓ ଆକାଶବାଣୀର ପ୍ରଖ୍ୟାତ ଗୀତିକାର ଗୁରୁକୃଷ୍ଣ ଗୋସ୍ୱାମୀଙ୍କୁ କିଏ ବା ନଜାଣେ ? ସେ ବାରିପଦା ମାଟିର ଏକ ସବୁଜ ଚିରନ୍ତନ ଫସଲ । ଆଜିକାଲି ଭଳି ଶସ୍ତା, ଦୋ-ଅର୍ଥୀ ଗୀତ ସେତେବେଳେ ଲେଖାଯାଉନଥିଲା । ଶବ୍ଦର ଏକ କ୍ଲାସିକ୍ ବା ଚିରନ୍ତନ ମୂଲ୍ୟବୋଧ ଥିଲା । ତା ସହିତ ଥିଲା ଲାଳିତ୍ୟ । ଗୁରୁକୃଷ୍ଣ ଗୋସ୍ୱାମୀ ତାଙ୍କର ଶବ୍ଦର ପସରା ନେଇ ସଂଗୀତ ପ୍ରେମୀଙ୍କ ହୃଦୟରେ ଆସ୍ଥାନ ଜମାଇ ଆସିଛନ୍ତି ବହୁ ବର୍ଷ ହେଲା । ତାଙ୍କର 'ଗପ ହେଲେ ବି ସତ' ଚଳଚ୍ଚିତ୍ରରେ ଲେଖିଥିବା ଗୀତ ଆଜିବି ବାଉଳା କରେ ମୋତେ-

"ସାଥୀରେ.....
ମୁଁ ଯେ ଜାଣେନା କାହା ବାଟ ରହିଛି ଚାହିଁ
ମୋର ଏମିତି କେହି ନାହିଁ ଆସିବା ପାଇଁ
ଆକାଶରେ ନାହିଁ ଜହ୍ନ ନାହିଁ ତ ସୂରୁଜ
ତଥାପି ପକାଏ କିଏ ଆଲୁଅର ମୁରୁଜ..."

ଗୁରୁକୃଷ୍ଣ ଗୋସ୍ୱାମୀ ମା' ଚଳଚ୍ଚିତ୍ରରେ ପ୍ରଥମେ ଗୀତ ଲେଖିଥିଲେ । ଗୀତଟି ଥିଲା:-

"ମୁଁ ଯେ ଭାସେ ସପନେ
ତାରା ଭରା ଗଗନେ.....× × ×"

ପ୍ରଖ୍ୟାତ ଚଳଚ୍ଚିତ୍ର 'ଅରୁନ୍ଧତୀ' (୧୯୫୦ ଦଶକ)ର କାହାଣୀ ଓ ସମସ୍ତ ଗୀତ ସେ ଲେଖିଥିଲେ । ମହମ୍ମଦ ରଫି ଓ ଲତା ମଙ୍ଗେସ୍କର ତାଙ୍କ ଗୀତ ଗାଇଛନ୍ତି । ଅରୁନ୍ଧତୀର ଗୀତ:-

"ତୁମକୁ ପାରୁନିତ ଭୁଲି
ମୁହଁରେ ହସ ଆଉ ଛାତିରେ ଦରଦ
ରଖି ମୁଁ ଯାଉଛି ତ ଚାଲି...."× × ×
ସେତେବେଳେ ତାହା ଖୁବ୍ ମନକୁ ଛୁଇଁଥିଲା ।

"ସୂର୍ଯ୍ୟମଖୀ" ଚଳଚ୍ଚିତ୍ରରେ ଗୁରୁକୃଷ୍ଣଙ୍କ ଗୀତକୁ ଲତା ମଙ୍ଗେସକର ଗାଇଥିଲେ । ଗୀତଟି ହେଲା:- "ସେଇ ଚୁନାଚୁନା ତାରାଫୁଲେ
କିଏ ଜୋଛନାରେ ଗଲା ହାଏ ହଜି.."

ସେମିତି ମାନ୍ନା ଦେ ବୋଲିଥିଲେ:-

"ବନ୍ଧୁରେ...
ଦୁନିଆରେ ସମୟର ନଈ ବହିଯାଏ ରେ
ଏ କୂଳ ଭାଙ୍ଗି ସେ ଆରକୂଳ ଗଢିଦିଏ
ଦୁଇକୂଳ କେବେ ଖାଇଯାଏ
ସମୟର ନଈ ବହିଯାଏ....."

ସେହି ପ୍ରଖ୍ୟାତ ଗୁରୁକୃଷ୍ଣ ଗୋସ୍ୱାମୀଙ୍କୁ ଭେଟିଥିଲି ତାଙ୍କ କଟକ ଘରେ । "ଓଡ଼ିଆ ଗୀତି କବିତାକୁ ମୟୂରଭଞ୍ଜର ଦାନ" ମୋର ଗୋଟିଏ ପରିଚ୍ଛେଦ ଥିଲା ଗବେଷଣା ପ୍ରସଙ୍ଗରେ ବାରିପଦାର ଝିଅ ପୁଣି ମୟୂରଭଞ୍ଜର ସାହିତ୍ୟକୁ ନେଇ ଡିଲିଟ୍ କରୁଛି ଶୁଣି ସେ ଖୁବ୍ ଉତ୍ସାହିତ ହୋଇ ପଡିଥିଲେ । ଜୀବନାନନ୍ଦ ପାଣି, ଜିତେନ୍ଦ୍ର ପଟ୍ଟନାୟକ, ଶିବବ୍ରତ ଦାସ, ଧୀରେନ୍ଦ୍ର ପଟ୍ଟନାୟକ, ନିମାଇଁ ମହାନ୍ତି, ଅତିଶ କୁମାର ମଜୁମଦାର, ରାଧାକଷ୍ଣ ଭଞ୍ଜ ପ୍ରଭୃତି ବାରିପଦିଆଙ୍କ କଥା ପଡିଲା । ସେ ଖୁବ୍ ଆଗ୍ରହର ସହିତ ତାଙ୍କ ଗୀତିକାର ଜୀବନର କଥା ବଖାଣି ବସିଥିଲେ । ଅତୀତରେ ଗାୟିକା ଆରତୀ ଗୋସ୍ୱାମୀ ଯେ ତାଙ୍କ ସ୍ତ୍ରୀ ମୋତେ ଜଣାନଥିଲା । ଉଭୟ ସ୍ୱାମୀ-ସ୍ତ୍ରୀ ମୋତେ ଆତ୍ମୀୟତାରେ ବାନ୍ଧି ପକାଇଥିଲେ । ସେଦିନ ବାରିପଦିଆ ହୋଇଥିବାରୁ ପ୍ରଥମ କରି ଗର୍ବ ଅନୁଭବ କରି ଥିଲି । ନହେଲେ ବାହାରେ ଆମ ଭାଷା କେନେ, କିସ, ଖାଇତେ, ଯାଇତେ, ଝୁଲ, ପୁଲିସ୍, ଗୁଡ ପ୍ରଭୃତି ଉଚ୍ଚାରଣକୁ ନେଇ ସାଙ୍ଗମାନେ ଥଟ୍ଟାକଲେ ମୁଁ ସଙ୍କୁଚିତ ହୋଇପଡେ । ବାରିପଦା ଯେ ଏକ କଳା, ସଂସ୍କୃତିରେ ସମୃଦ୍ଧ ସ୍ଥାନ ଓ ବହୁ କଳାକାର, ସାହିତ୍ୟକ, ଗବେଷକ, ଐତିହାସିକଙ୍କର ଜନ୍ମଭୂଇଁ ସେହିଦିନ ହିଁ ମୋର ହୃଦୟଙ୍ଗମ ହେଲା । ସେତେବେଳେ ଓଡିଶା ସାହିତ୍ୟ ଏକାଡେମୀ ଗୀତି କବିତାକୁ ପୁରସ୍କାର ନଦେବା, ଗୀତିକବିଙ୍କୁ ସମ୍ମାନିତ ନ କରିବା କଥା ଗୁରୁକୃଷ୍ଣ ଗୋସ୍ୱାମୀ କ୍ଷୋଭର ସହିତ କହୁଥିଲେ । ସେମାନେ ଏକ ଏକାଡେମୀ ଖୋଲିଛନ୍ତି ଓ ଗୀତିକବିତାର ସଙ୍କଳନ ସବୁ ପ୍ରକାଶିତ କରୁଛନ୍ତି ବୋଲି କେତୋଟି ବହି ଦେଖାଇଲେ । କିଛି ମୟୂରଭଞ୍ଜିଆ ଗୀତିକବିଙ୍କ ଠିକଣା ଜଣାଇଲେ ଯେଉଁ ମାନଙ୍କ ସମ୍ପର୍କରେ ମୁଁ ନିହାତି ଅଜ୍ଞ ଥିଲି । ମୟୂରଭଞ୍ଜର ବିଖ୍ୟାତ ଗାୟିକା ସ୍ୱରୂପା ଚକ୍ରବର୍ତ୍ତୀଙ୍କ ଠିକଣା ଦେବା ସହିତ ତାଙ୍କ ଫୋନ୍ ଲଗାଇ ମୋତେ ଯୋଗାଯୋଗ ମଧ୍ୟ କରାଇ ଦେଲେ । କଥା ପ୍ରସଙ୍ଗରେ ସେ କେମିତି ଟିକିଏ ଟିକିଏ କଥାରେ ରାଗି ଯାଆନ୍ତି ସେ କଥା ମଧ୍ୟ ସୂଚନା ଦେବାକୁ ଭୁଲିନଥିଲେ । ଏ ଭିତରେ ଚା, ବିସ୍କୁଟ୍, ମିଠା ମଧ୍ୟ ପହଞ୍ଚିସାରିଥିଲା । ଆମ ଗପ ଭିତରେ ତାଙ୍କ ଝିଅ ମଧ୍ୟ ଆସି ଯୋଗ ଦେଇଥିଲା । ତାଙ୍କ ସମ୍ପର୍କରେ ଡାଏରୀରେ ଟିପି ସାରିଲା ପରେ ସେ କେଉଁଠିକି ଯିବି ପଚାରିଥିଲେ । ମୁଁ

ବିଜୟିନୀ ଦାସଙ୍କ 'ଜୀବନରଙ୍ଗ' ଭବନରେ ଓହ୍ଲାଇଛି ଜାଣି ସ୍କୁଟର ବାହାର କରିଥିଲେ ଛାଡି ଦେବାକୁ । ମୋ ବାପା ରବୀନ୍ଦ୍ରନାଥ ବାରିକଙ୍କୁ ସେ ଭଲ ଭାବରେ ଜାଣନ୍ତି ଓ ମୋ ମଝିଆଁ କକା ତାଙ୍କ ସାଙ୍ଗ ବୋଲି ମଧ କହିଥିଲେ ।

ଏତେବଡ଼ ମହାନ୍ ଗୀତିକାର ତଥା ସ୍ୱାଭିମାନୀ ଗୁରୁକୃଷ୍ଣ ଗୋସ୍ୱାମୀଙ୍କ ସ୍କୁଟର ପଛରେ ବସି ପହଞ୍ଚିଥିଲି ଷ୍ଟୋନିରତ୍, ଜୀବନରଙ୍ଗ ଭବନର ଫାଟକ ପାଖରେ । ସେ ଆଶୀର୍ବାଦ କରି ଏ କାମ ସଫଳତାର ସହିତ ସମ୍ପୂର୍ଣ୍ଣ ହେଉ କହି ସ୍କୁଟର ଘୁରାଇ ଚାଲିଯାଉଥିଲା ବେଳେ ତାଙ୍କର ସେହି ଅରୁନ୍ଧତୀର ଗୀତର ଧାଡିଟି ମୁଁ ମନେ ପକାଇ ଥିଲି:-

"ତୁମକୁ ପାରୁନି ତ ଭୁଲି
ମୁହଁର ହସ ଆଉ ଛାତିରେ ଦରଦ
ରଖି ମୁଁ ଯାଉଛି ତ ଚାଲି...."

## ରାଧାକୃଷ୍ଣ ଭଞ୍ଜ

ଗାୟକ, ସଂଗୀତ ନିର୍ଦ୍ଦେଶକ ରାଧାକୃଷ୍ଣ ଭଞ୍ଜ ନିନି ବାବୁ ନାଁରେ ବାରିପଦିଆଙ୍କ ପାଖରେ ଅଧିକ ପରିଚିତ ଥିଲେ । ତାଙ୍କ ସହିତ ମୋର ସ୍କୁଲ୍ ଜୀବନରୁ ଭେଟ ଯେତେବେଳେ ସେ ବାରିପଦାର ନେହେରୁ ଯୁବକେନ୍ଦ୍ର ସହିତ ସମ୍ପୃକ୍ତ ଥିଲେ । ସ୍କୁଲ୍‌ରୁ ଆମେ ସବୁ ଯାଉଥିଲୁ ସଂଗୀତ ପ୍ରତିଯୋଗିତାରେ । ସେତେବେଳେ ତାଙ୍କର ହାରମୋନିୟମ ସହିତ ସୁଲଳିତ ଗୀତ ଆମ ପାଇଁ ଥିଲା ବିସ୍ମୟ । ମୋ ବାପା ରବୀନ୍ଦ୍ରନାଥ ଥିଲେ ସେତେବେଳେ ସେବାସଂଘ ହଲ୍‌ରେ ହେଉଥିବା ଅନ୍ନପୂର୍ଣ୍ଣା ବି ଗ୍ରୁପ୍‌ର ନାଟକର ଜଣେ କଳାକାର । ନିନିବାବୁଙ୍କ ସହିତ ତାଙ୍କର ଭଲ ପରିଚୟ ଥିଲା । କେତେବେଳେ ସାଇକେଲ୍, କେତେବେଳେ ଲୁନାରେ ଯିବାଟା କଲେଜ୍ ଯିବା ରାସ୍ତାରେ ମୁଁ ବହୁତ ଥର ଦେଖିଛି । ତେବେ 'ଅଭିମାନ' ଚଳଚ୍ଚିତ୍ରରେ ସରୋଜ ପଟ୍ଟନାୟକଙ୍କ ସହିତ ସଂଗୀତ ନିର୍ଦ୍ଦେଶନା ଦେଲା ପରେ ହିଁ ତାଙ୍କର ଖ୍ୟାତି ବଢିଗଲା ।

ରାଧାକୃଷ୍ଣ ଭଞ୍ଜଙ୍କର ସଂଗୀତ ଜ୍ଞାନ ଥିଲା ଅସାଧାରଣ, ଯାହା ତାହା ଗୀତକୁ ସେ ଆଦୌ ସୁର କରୁନଥିଲେ ଗୀତିକାର ଯେତେବଡ଼ ଆର୍ଟିଷ୍ଟ ହେଉ ପଛେ । ଶବ୍ଦ ବଖାଣରେ ସେ ଥିଲେ ବଡ଼ ଚୁଜି । ଏପରିକି ଗୀତର ସାହିତ୍ୟ ଓ ଶବ୍ଦ ଉପରେ ସେ ଏତେ ଜୋର ଦେଉଥିଲେ ଯେ ସୁର କରୁ କରୁ ଯଦି କୌଣସି ଶବ୍ଦ ଭାଙ୍ଗିଯାଉଥିଲା ସେ ଖୁବ୍ ବିରକ୍ତ ହେଉଥିଲେ । ଏପରିକି ସେ ବିଖ୍ୟାତ ସଂଗୀତକାର, ଗାୟକ ଅକ୍ଷୟମହାନ୍ତିଙ୍କୁ ଫୋନ୍

କରି କହିଥିଲେ:-

"ବାଲିଘର ଭାଙ୍ଗି କେଉଁ ଏକ ସଙ୍ଗୀ

ମୋ ଆଖି (କୁବୁଜି) ଧରିଲା..."

କିରେ 'କୁବୁଜି' କ'ଣ ? "ଅର୍ଥାତ୍ ଆଖିକୁ ବୁଜି ଧରିଲା ଏମିତି ହେବ 'କୁବୁଜି' ନୁହେଁ ।

ଅଭିମାନର କନ୍ୟା ବିବାହ ବେଳେ ଉପେନ୍ଦ୍ରଭଞ୍ଜଙ୍କ ଛାନ୍ଦ

"ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ

ବିଭୁଷଣ କରି କନ୍ୟାକୁ ଆଣ"....

ନିଜେ ସ୍ୱର ଦେଇ ଗାଇଥିଲେ । ତାଙ୍କ ମତ ଥିଲା ସୁର କଲାବେଳେ କ'ଣ ସୁରକୁ ନ ଭାଙ୍ଗି ସୁର କରିହେବନି ? ସେହିପରି ଜିତେନ୍ଦ୍ର ପଟ୍ଟନାୟକଙ୍କ ଗୀତକୁ ଅଭିମାନ ଚଳଚ୍ଚିତ୍ରରେ ସରୋଜ ପଟ୍ଟନାୟକଙ୍କ ସହିତ ମିଶି ଚମତ୍କାର ରୂପ ଦେଇଥିଲେ ଯାହା ବେଶ୍ ଶ୍ରୋତାଙ୍କ ହୃଦୟକୁ ଛୁଇଁଥିଲା । ଗୀତଟି ହେଲା :- "ଚୁପିଚୁପି ଗୋରୀ କାନେ କହିଯାଏ ମହୁରୀ..." । ଜିତେନ୍ଦ୍ର ପଟ୍ଟନାକଙ୍କ ସଂଗୀତକୁ ନିଜେ ରାଧାକୃଷ୍ଣ ଭଞ୍ଜ ଗାଇଥିଲେ । ଏହା ତାଙ୍କର ଗାଇଥିବା ଅନ୍ୟତମ ପ୍ରିୟଗୀତ ଥିଲା । ଗୀତଟି ହେଲା:-

"ଆଜି ପୁଣି ସେହି ଶ୍ରାବଣରେ

ଅନେକ ମେଘର ଆୟୋଜନ

ଭାରି ଏକାଲାଗେ ମୋତେ

ତୁମ ସାଥେ ଦେଖା ଟିକେ ପ୍ରୟୋଜନ"

ମୟୂରଭଞ୍ଜର ବିଖ୍ୟାତ ଛଉନୃତ୍ୟରେ ଝୁମ୍ର ସଂଗୀତକୁ ଖଞ୍ଜି ରାଧାକୃଷ୍ଣ ଭଞ୍ଜ ଏକ ଇତିହାସ ସୃଷ୍ଟି କରିଥିଲେ । ସେହି ବିଖ୍ୟାତ ରାଧାକୃଷ୍ଣ ଭଞ୍ଜଙ୍କ ପାଖକୁ ଗବେଷଣା ପାଇଁ ନେଇଯାଇଥିଲେ ମୋତେ ନିମାଇଁ ମହାନ୍ତି, ବାରିପଦାର ଅନ୍ୟତମ ଆଧୁନିକ ଗୀତିକାର । କହିବା ବାହୁଲ୍ୟ ଗୀତିକାର ଜୀବନାନନ୍ଦ ପାଣିଙ୍କ ସହିତ ପ୍ରାରମ୍ଭରେ ରାଧାକୃଷ୍ଣ ଭଞ୍ଜଙ୍କର ଯେମିତି ଯୋଡି ହୋଇ ନାଁ କରିଥିଲା ସେମିତି ତାଙ୍କର ଜୀବନର ସାୟଂକାଳରେ ଗୀତିକାର ନିମାଇଁ ମହାନ୍ତିଙ୍କ ସହିତ ଯୋଡି ଖୁବ୍ ଘନିଷ୍ଠ ଥିଲା । ତାଙ୍କ ରୁଚି ମୁତାବକ ଶବ୍ଦରେ ଗୀତ ଉତାରି ପାରୁଥିଲେ ନିମାଇଁ ମହାନ୍ତି । ତାଙ୍କର 'ଶୀତ'କୁ ନେଇ ଗୀତ କିମ୍ୱା "ଅଧାଖୋଲା ଝରକାକୁ ପୂରା ଖୋଲିଦିଅ" ଗୀତକୁ ସେ ଖୁବ୍ ପ୍ରଶଂସା କରୁଥିଲେ ମୋ ଆଗରେ । ଗବେଷଣାରେ ଲେଖିବି କ'ଣ ତାଙ୍କ ଘରେ ହିଁ ଗୋଟାଏ ଗୀତ ଆସର ଆରମ୍ଭ ହୋଇ ଯାଇଥିଲା । ନିମାଇଁ ମହାନ୍ତି ଗୀତ କବିତା ସବୁ କହିଯାଉଥାନ୍ତି ଓ ନିନିବାବୁ ତାଙ୍କୁ

ପଦେ ପଦେ ଗାଇଦେଉଥାନ୍ତି । ମୋର ମନେ ହେଉଥିଲା ସତରେ ସଂଗୀତ କେବେ ବୟସ୍କ ହୁଏନା । ଗୀତର ଛନ୍ଦ, ମର୍ମର ସୁରମାନେ ଯେତେବେଳେ ହୃଦୟରେ ସ୍ଥାନ ଦଖଲ କରି ନିଅନ୍ତି, ସେତେବେଳେ ଛାତିର ଦରଜା ଆପେ ଆପେ ଖୋଲିଯାଏ । ସେ ଗୀତ ଚିରନ୍ତନ, ସର୍ବଦା ଶ୍ରୋତାକୁ ଆନମନା କରିଛି, ମତୁଆଲା କରିଛି । ନିଦରୁ ଉଠାଇଛି ତ କେବେ ନିଦରେ ଶୋଇ ପକାଇଛି । ହାୟ, ଆଜି ଓଡିଆ ଗୀତର ସେ ଭାଷା, ଛନ୍ଦ, ଲାଳିତ୍ୟ, ସୁର କାହିଁ ? ଆଇଟମ୍ ଗୀତ ଓ ନୃତ୍ୟ ଭିତରେ ହଜିଯାଇଛି ହୃଦୟର ସ୍ୱର । ଦେହଜ, ରୂପଜ ଦ୍ୱିଅକ୍ଷରିବୋଧ ଶବ୍ଦ ସହିତ ଶ୍ରୁତିକଟୁ ଗୀତ ହୃଦୟର ଦର୍ଜା ବୁଜି ଦେଉଛି । ଝୁମିଲା ଝୁମିଲା ରାତି, ଯୌବନ, ମାଦକତା ଭିତରେ ସଂଗୀତ ତା ଆତ୍ମା ହରାଇଛି ।

ଗୀତ ତ ମଣିଷର ମନ ଇତିହାସର ପୃଷ୍ଠାଟିଏ । ଲାଳିତ୍ୟ, ମଧୁର ସ୍ପନ୍ଦନର ଉଚ୍ଛ୍ୱାସଟିଏ । ନଈପରି ଛଳଛଳ ତ ବଂଶୀ ପରି ସୁରେଲି । ତାକୁ କାମନା, ବାସନା, ଉଦ୍ଦୀପନା ଭିତରେ ନଘଇଲେ ଦେହ ଜଳିବ ସିନା ହେଲେ ସେ ନିଆଁର ଉତ୍ତାପ ତ ଫୁତ୍ କରି ଲିଭିଯିବ । ଆଜି ଯେଉଁ ଗୀତ ଚମକ ସୃଷ୍ଟି କରୁଛି ସେ ଗୀତ କାଲି ନଥିବ । ଏହା ହିଁ ହେଉଛି ଏବେ ଓଡିଆ ଚଳଚ୍ଚିତ୍ରରେ ଗୀତର ଅବସ୍ଥା ।

ବହୁଥର ରାଧାକୃଷ୍ଣ ଭଞ୍ଜଙ୍କ ଘରକୁ ଯାଇଛି । ଓଡିଆ ସଂଗୀତ ଦୁନିଆ ସମ୍ପର୍କରେ ମୋର ଜ୍ଞାନ ବଡ଼ ସୀମିତ ଥିଲା । ତାଙ୍କ ସଂସ୍ପର୍ଶରେ ଆସି ଅତୀତ ଓଡିଆ ଚଳଚ୍ଚିତ୍ର ଏବଂ ଗୀତିକବି, ଗୀତିକବିତା, ସୁରସଂସାର ସହିତ ପରିଚିତ ହୋଇଥିଲି । ବିଶେଷକରି ଅରୁନ୍ଧତୀ, ସୂର୍ଯ୍ୟମୁଖୀ, ଶ୍ରୀଲୋକନାଥ, ଲକ୍ଷ୍ମୀ, ଅମଡାବାଟ, କନକଲତା, ଜୀବନସାଥୀ, କିଏ କାହାର ପ୍ରଭୃତି ଚଳଚ୍ଚିତ୍ର, ଗୀତିକାର, ସଂଗୀତନିର୍ଦ୍ଦେଶକ, ଗାୟକଗାୟିକାଙ୍କ ପ୍ରଭୃତି ସମ୍ପର୍କରେ ଅନେକ ତଥ୍ୟ ଜାଣିବାକୁ ପାଇଲି । ଆଲୋଚନା ଭିତରେ ନିନି ମଉସା (ରାଧାକୃଷ୍ଣ ଭଞ୍ଜ) ପଦେ ପଦେ ଗୀତ ତାଙ୍କ ସୁରେଲି ସ୍ୱରରେ ହାରମୋନିୟମ୍ ବଜାଇ ଗାଇଥିଲେ । ମୋର ମନେ ହୋଇଥିଲା କେତେ ପ୍ରାଣୋଚ୍ଛଳ ସତରେ ସଂଗୀତର ଦୁନିଆ ! ସେ ସଂଗୀତରେ ଯିଏ ମଜ୍ଜିଛି, ହଜିଛି ସେ ହିଁ ଜାଣେ ଜୀବନର ରସ, ଜୀବନକୁ ଭଲ ପାଇବାର ମାଧୁରିମା । ଜୀବନକୁ ମଜେଇ, ଖେଳେଇ ବଞ୍ଚିବାର କାରିଗରି ।

ପୁଣି ଶୁଣିଲି ଏକ ଦୁଃଖଦ, ଭାଙ୍ଗି ପଡିଲା ଭଳି ସମ୍ବାଦ । ରାଧାକୃଷ୍ଣ ଭଞ୍ଜଙ୍କୁ କ୍ୟାନ୍ସର ହୋଇଯାଇଛି । ସେ ଚିକିତ୍ସା ପାଇଁ ବାହାରକୁ ଚାଲିଯାଇଛନ୍ତି । ତାଙ୍କର ଚିକିତ୍ସା ଲାଗି ମୟୂରଭଞ୍ଜର ସିନେ କଳାକାର , ଅଭିନେତା ଉତ୍ତମ ମହାନ୍ତିଙ୍କ ଉଦ୍ୟମ୍ରେ ବାରିପଦାରେ ସଂଗୀତ କାର୍ଯ୍ୟକ୍ରମ ଅନୁଷ୍ଠିତ କରି ଓଡିଶାର ବିଶିଷ୍ଟ ଅଭିନେତା ଅଭିନେତ୍ରୀଙ୍କ ବିରାଟ ସମାହାର ସମ୍ଭବ ହୋଇପାରିଥିଲା । ଯାହା ଚନ୍ଦା, ଟିକଟ ବିକ୍ରିରୁ ଅର୍ଥ ମିଳିଥିଲା

ତାଙ୍କ ଚିକିତ୍ସାର ବ୍ୟୟ ପାଇଁ ପଠାଯାଇଥିଲା । ସେ ଫେରି ଆସିଛନ୍ତି ଶୁଣି ଯାଇଥିଲି । ସେ ସୁନ୍ଦର ଗୋରା ତକ୍ ତକ୍ ଚେହେରା ଝାଉଁଳି ପଡିଥିଲା । ସେ ଶୋଇ ରହିଥିଲେ । ସଂଗୀତର ଘରେ କେମିତି ମୃତ୍ୟୁର ଘୁଙ୍ଗୁର ! ଡାକ୍ତରମାନେ ତାଙ୍କୁ ନିରାଶ କରି ଫେରାଇ ଦେଇଥିଲେ । ସେ ଅପେକ୍ଷା କରିଥିଲେ ସେହି ମହାଯାତ୍ରାକୁ ।

ମୋତେ ଦେଖି ଶୁଖିଲା ହସଟିଏ ହସିଥିଲେ । କହିଥିଲେ, ମୋ ସମ୍ପର୍କରେ ଭଲ କରି ଲେଖିବୁ ମାଆ । ମୁଁ ତ ପଢିବାକୁ ନଥିବିରେ । ଲେଖିବୁ ମୟୂରଭଞ୍ଜର ଛଉନୃତ୍ୟ ସହିତ ମୁଁ ହିଁ ସର୍ବପ୍ରଥମେ ଝୁମର ସଂଗୀତ ଯୋଡି ତାକୁ ଗୋଟେ ନୂଆରୂପ ଦେଇଥିଲି । ଆମ ଉପରେ କେହି କେବେ ଗବେଷଣା କରିବ ନାହିଁ । ତୋ ଗବେଷଣା ଭିତରେ କିଛିଟା ଲେଖିଦେବୁ ।

ପ୍ରଣାମ କରି ଫେରି ଆସିଲି । କେତେ ବ୍ୟାକୁଳତା ନିଜ ସଂଗୀତ ଓ ପ୍ରତିଭାକୁ ନେଇ! ଅଥଚ କେତେ ସେ ପ୍ରଚାରିତ, ପ୍ରସାରିତ ହୋଇଛନ୍ତି ? ଓଡିଶାର ଅନେକ କଳାକାରଙ୍କ ଜୀବନର ଭାଗ୍ୟ ଏମିତି ପଥର ତଳେ । ମୁଁ ଜାଣିଥିଲି ଏଇଟା ମୋର ତାଙ୍କ ସହ ଶେଷ ସାକ୍ଷାତ । ଏ ପ୍ରତିଭାଙ୍କୁ ଆଉ କେବେ ଭେଟି ପାରିବିନି । ମୋ ଆଖି ଛଳଛଳ ହୋଇ ଉଠିଥିଲା ।

ତାର କେଇ ମାସ ପରେ ଶୁଣିଥିଲି ସେ ଚାଲିଗଲେ ।

## ଗୀତିକବି ନିମାଇଁ ମହାନ୍ତି

ମୟୂରଭଞ୍ଜର ଅନ୍ୟତମ ପ୍ରତିଷ୍ଠିତ ଗୀତି କବି ହେଲେ ନିମାଇଁ ମହାନ୍ତି । ବାରିପଦା ସହରରେ ୧୯୫୩ ମସିହା ଅଗଷ୍ଟ ୧୦ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ଗୀତକବିତାର ସେ ଜଣେ ସଫଳ ସ୍ରଷ୍ଟା ତଥା ଆକାଶବାଣୀ, ଦୂରଦର୍ଶନ, ଓଡିଆ ଚଳଚ୍ଚିତ୍ରର ସ୍ୱୀକୃତ କବି । ୧୯୯୩-୯୪ ଏବଂ ୨୦୦୧ ମସିହାରେ ସିନେକ୍ରିଟକ ଆସୋସିଏସନ୍ ଓ ଚଳଚ୍ଚିତ୍ର ଜଗତ ତରଫରୁ ଶ୍ରେଷ୍ଠ ଗୀତିକବି ଭାବରେ ସମ୍ମାନିତ । ତାଙ୍କ ଗୀତିକବିତା ସଂକଳନଟିର ନାଁ ହେଲା "ଦୂର ଅପହୁଞ୍ଚ ଗାଆଁ (୧୯୯୬) ଏବଂ ମହମହ ଆଧୁନିକ କବିତା ସଂକଳନର ନାଁ "ମହମହ ଅନ୍ଧାର" (୨୦୦୧) ।

ମୟୂରଭଞ୍ଜ ସାହିତ୍ୟକୁ ନେଇ ଗବେଷଣା କରିବା ପରିପ୍ରେକ୍ଷୀରେ ମୋର ତାଙ୍କ ସହ ପ୍ରତ୍ୟକ୍ଷ ପରିଚୟ ହେଲା ଯଦିଓ ସେ ମୋ ବାପା, ପରିବାର ତଥା ଭିଣୋଇ ନରସିଂହ ବାରିକଙ୍କୁ ଜାଣିଥିଲେ । ସେତେବେଳେ ରାଧାକୃଷ୍ଣ ଭଞ୍ଜ ଜୀବିତ ଥିଲେ । ଉଭୟ ଗୁରୁ ଓ ଶିଷ୍ୟଙ୍କ ସାନ୍ନିଧ ପାଇ ମୁଁ ଧନ୍ୟ ମନେକରିଥିଲି । ଗୀତ ଓ ସ୍ୱରର ମିଳନରେ ମୋ ଆଖି,

କାନ, ଆତ୍ମା ମଧ୍ୟ ଧନ୍ୟ ହୋଇ ଯାଇଥିଲା । ନିମାଇଙ୍କ ଅଧାଖୋଲା ଝରକାକୁ ପୂରା ଖୋଲିଦିଅ କବିତାଟିକୁ ସୁର କରି ରାଧାକୃଷ୍ଣ ଭଞ୍ଜ ତାଙ୍କର ମଧୁର ଗଳାରେ ଗାଉଥିଲେ ହାରମୋନିୟମ୍‌ରେ ସୁର କରି । କବିତାର ନାଁ ଥିଲା "ଝରକା" । ତା'ର କେତୋଟି ଧାଡ଼ି ହେଲା:

"ଅଧାଖୋଲା ଝରକାକୁ ପୂରା ଖୋଲିଦିଅ
ଝରକାରେ ଝରି ଆସୁ ଜହ୍ନର ଆଲୁଅ ।
ମୋ ଖାତାରେ ଅଧାଲେଖା କବିତାର ଭିଡ଼
ମୋ ବଗିଚା ସାରା ଖାଲି ଅଧାଫୁଟା କଢ଼
ଶବ୍ଦକୁ ଫୁଲ ହୋଇ ଫୁଟିବାକୁ ଦିଅ
ଅଧାଖୋଲା ହୃଦୟକୁ ପୂରା ଖୋଲିଦିଅ..."

ନିମାଇଙ୍କ ଗୀତକବିତା ଉଭୟ ମନ ଓ ଛାତିକୁ ଛୁଇଁ ଯାଏ । ଆବେଗରେ ଭରି ଉଠେ ଶ୍ରୋତାର ପ୍ରାଣ । ତାଙ୍କ ଲେଖା ସତେ ଯେମିତି ଆପେ ଆପେ ସ୍ୱର ଡାକିଆଣେ । ରାଧାକୃଷ୍ଣ ଭଞ୍ଜଙ୍କ କଣ୍ଠରେ ନିମାଇଙ୍କ ନିମ୍ନୋକ୍ତ ଗୀତି- କବିତାଟି ବହୁବାର ଭୁବନେଶ୍ୱର ଦୂରଦର୍ଶନ ଦ୍ୱାରା ପ୍ରଚାରିତ ହୋଇଛି ।

"ଶୀତଆସେ ଗୀତ ଲେଖେ କାଚ ଝରକାରେ
ଟୋପା ଟୋପା ଶିଶିରର ରୂପେଲି କାଳିରେ
ଶୀତ ଆସି ଛିଡ଼ା ହୁଏ ଆଜି ମୋ ଦୁଆରେ
କେମିତି ଅଛ ହେ ବନ୍ଧୁ ମୋତେ ସେ ପଚାରେ ।"

୧୯୫୦ ବେଳକୁ ଜୀବନାନନ୍ଦ ପାଣି ଓଡ଼ିଆ ଗୀତି କବିତାରେ ଯେଉଁ ନୂତନ ଧାରା ଆଣିଥିଲେ ଏହି ଧାରାକୁ ଆହୁରି ସତେଜ ଓ ସ୍ୱଚ୍ଛନ୍ଦ କରିଛନ୍ତି ନିମାଇଁ ମହାନ୍ତି । ସେ ହେଉଛନ୍ତି ଜୀବନାନନ୍ଦ ପାଣି, ଜିତେନ୍ ପଟ୍ଟନାୟକ, ଶିବବ୍ରତ ଦାସଙ୍କ ପରି ସେହି ପରମ୍ପରା ଏକ ଉଚ୍ଚ ଶାଖାର ଫୁଲ ।

ମୁଁ ଯେତେଥର ଯାଇଛି ଗୁରୁ ଶିଷ୍ୟଙ୍କର ସୁର ସ୍ୱରର ମିଳନ ଦେଖିଛି । ମୟୂରଭଞ୍ଜର ଗୀତିକବିଙ୍କ ଠାରୁ ଛଉ ନୃତ୍ୟ, ଝୁମର, ଓଡ଼ିଆ ଚଳଚ୍ଚିତ୍ର ସମ୍ପର୍କରେ ବିଭିନ୍ନ ଆଲୋଚନା ହୋଇଛି । ମୟୂରଭଞ୍ଜର ତବଲା ବାଦକ, ବଂଶୀବାଦକ ତଥା ଫଟୋଗ୍ରାଫରଙ୍କ କଥା ମଧ୍ୟ ପଡ଼ିଛି । ଜୀବନାନନ୍ଦଙ୍କର ମୃତ୍ୟୁ ପରେ ନିମାଁଇ ଓ ରାଧାକୃଷ୍ଣ ଭଞ୍ଜଙ୍କ ଯୋଡ଼ି ଓଡ଼ିଆ ଚଳଚ୍ଚିତ୍ର ସଙ୍ଗୀତ ଜଗତକୁ ଯେ ବହୁଳ ଭାବରେ ସମୃଦ୍ଧ କରିଛନ୍ତି ଏ କଥା ସ୍ୱୀକାର କରିବାକୁ ପଡ଼ିବ ।

ଗୀତିକାର ଜୀବନାନନ୍ଦ ପାଣିଙ୍କ ସ୍ୱର୍ଗବାସରେ  ରାଧାକୃଷ୍ଣ ଭଞ୍ଜଙ୍କ ଯୋଡି ଭାଙ୍ଗି ଯାଇଥିଲା ।  ତାଙ୍କ ସ୍ଥାନକୁ ପୂରଣ କରିବା ପାଇଁ ଆସିଥିଲେ ଗୀତିକାର ନିମାଁଇ ମହାନ୍ତି । ଏ ଯୋଡି ବେଶ୍ କିଛିବର୍ଷ ଓଡିଆ ଚଳଚ୍ଚିତ୍ର ଓ ସୁର ସଂସାର  ଦୁନିଆକୁ ସରଗମ୍ କରି ରଖିଥିଲା  । ତେବେ ଏ ଯୋଡିକୁ ବି ଗ୍ରହଣ ଲାଗିଗଲା ।  ଏଥର ପାଳିଥିଲା ସଂଗୀତକାର, ଗାୟକ ରାଧାକୃଷ୍ଣ ଭଞ୍ଜଙ୍କର ।  ଭୟଙ୍କର କ୍ୟାନ୍‌ସର ଜୀବାଣୁ କେଉଁଠି ଥିଲା କେଜାଣି ତାଙ୍କର ସ୍ୱର ଓ ଶରୀରକୁ  ସବୁଦିନ ପାଇଁ ନିଜର କରିଦେଲା ।  ପୁଣି ଯୋଡି ଭାଙ୍ଗିଗଲା । ଏଥର କିନ୍ତୁ ଆଉ ଯୋଡି ଯୋଡି ହୋଇ ପାରିଲା ନାହିଁ ।  ଶବ୍ଦର ଗୀତିମାଳାକୁ ଧରି  ଏକା ରହିଗଲେ ଗୀତିକାର ନିମାଇଁ ମହାନ୍ତି ।

ଏସବୁ ଆଜି ଲେଖିଲା ବେଳେ ଏବେ ବି ମୋ ଆଖିରେ ନାଚି ଯାଉଛି ଦୁହିଁଙ୍କ ସହିତ ଯେଉଁ ଦିନ ପ୍ରଥମେ ମୋର ଦେଖାହୋଇଥିଲା ଓ ମୁଁ ନିଜକୁ ଧନ୍ୟ ମନେକରିଥିଲି । କେତେଶୀଘ୍ର ସମୟ ବଦଳିଗଲା ।  ସମୟର ଆହ୍ୱାନରେ କିଏ  କେଉଁଠି ଭାସିଯାଏ, ଲାଖିଯାଏ  ।  ଆଜିର ଫୁଲ ଫୁଟୁଥିବା ଜୀବନ କାଲି ଯେ ନ ଝଡି ପଡିବ ଏ କଥାରେ କ’ଣ କିଛି ଗ୍ୟାରେଣ୍ଟି ଅଛି ?

## ଗୀତିକାର ଦିଲୀପ ଦାଶ

ଗୀତିକାର ଦିଲୀପ ଦାଶଙ୍କ ଜନ୍ମ ବାରିପଦାରେ ୧୭.୮.୧୯୫୨ ରେ । ପୁସ୍ତକ ବ୍ୟବସାୟକୁ ପେଷା ଓ କଳା, ସାହିତ୍ୟ, ସଂସ୍କୃତିକୁ ନିଶାକରି ସେ ଜୀବନ ଅତିବାହିତ କରିଛନ୍ତି । ୧୯୬୯ରେ ତାଙ୍କ କଲମରୁ ପ୍ରଥମ ଗୀତି କବିତା ।‘ଶ୍ରାବଣୀ’ ଜନ୍ମ ନେଲା  । ତାର କୋଟୋଟି ଧାଡି ହେଲା:-

“ଶ୍ରାବଣରେ ଭିଜି ଭିଜି ଓଦା ପଣତରେ
ତୁମେ ଯଦି ଆସ କେବେ ଆମ ବଗିଚାରେ
ତୁମକୁ ମୁଁ ରୂପ ଦିଏ ଖେୟାଲି ମନରେ
ତୁମେ ବି ମେନକା ସାଜ ମୋ କବିତାରେ...”

ତାପରେ ସେ ଅନେକ ନାଟ୍ୟାନୁଷ୍ଠାନ, ସାଂସ୍କୃତିକ ଅନୁଷ୍ଠାନ, ସ୍କୁଲ୍, କଲେଜର ବାର୍ଷିକ ଉତ୍ସବ ପାଇଁ ଗୀତ ଲେଖିଥିଲେ ।   ବାରିପଦାର ‘ଜୟଶ୍ରୀ’ ପ୍ରଡକ୍ସନ୍ ଦ୍ୱାରା ପ୍ରଯୋଜିତ ଓଡିଆ ଚଳଚ୍ଚିତ୍ର “ଫୁଲଚନ୍ଦନ” ପାଇଁ ଗୀତ ଲେଖନ୍ତି ।  ଗୀତଟି ହେଲା:- “ଏଇ ଯେ ବନଲତା ପାହାଡ, ଆହାରେ ଦିଶେ କେଡେ ସୁନ୍ଦର...” ଅକ୍ଷୟ ମହାନ୍ତିଙ୍କ ସ୍ୱର ଓ ଅଭିନେତା ଉତ୍ତମ ମହାନ୍ତିଙ୍କ  ଅଭିନୟରେ ଗୀତଟି ସାରା ଓଡିଶାରେ ଖେଳାଇ

ପଡେ । ସେହିଦିନ ଠାରୁ ସେ ବହୁ ଚଳଚ୍ଚିତ୍ରରେ ଗୀତ ଲେଖିଛନ୍ତି । ଅଭିଳାଷ, ହାକିମ୍ ବାବୁ, ଗୋପରେ ବଢୁଛି କଳା କହ୍ନେଇ, ପୁଅ ମୋର ଭୋଳାଶଙ୍କର, ପଙ୍କପଦ୍ମ ଏମିତି ଚଳଚ୍ଚିତ୍ରରେ ସେ ସଂଗୀତ ରଚନା କରିଛନ୍ତି । ଅକ୍ଷୟମହାନ୍ତି, ହେମଲତା, ଉଷାମଙ୍ଗେସ୍କର, ଉଦିତ୍ ନାରାୟଣ, ସ୍ୱପ୍ନା ମୁଖାର୍ଜୀ, ତୃପ୍ତିଦାସ, ଶେଖର ଘୋଷ, କବିତା କୃଷ୍ଣମୂର୍ତ୍ତି, ମହମ୍ମଦ ଅଜିଜ୍‌ଙ୍କ ଭଳି ବିଶିଷ୍ଟ ଗାୟକ ମାନଙ୍କ କଣ୍ଠରେ ଦିଲୀପ୍‌ଙ୍କ ସଂଗୀତ ସବୁ ଝଙ୍କାର ସୃଷ୍ଟି କରିଛି ।

କଳା ସଂସ୍କୃତିକୁ ନିଶା କରି, ବ୍ୟବସାୟକୁ ପେଷାକରି ଉଭୟ ଲକ୍ଷ୍ମୀ , ସରସ୍ୱତୀଙ୍କୁ ମନେଇ ପାରିଥିବା ଦିଲୀପ୍ ଦାଶଙ୍କ ସାଧନା ଓ କୃତିକୁ ଜାଣିବା ପାଇଁ ଓ ମୋ ଗବେଷଣାରେ ସ୍ଥାନ ଦେବାପାଇଁ ଯାଇଥିଲି ବାରିପଦାରେ ଥିବା ତାଙ୍କ ପୁସ୍ତକ ଭଣ୍ଡାରକୁ । ମୋର ଦୁର୍ଭାଗ୍ୟ ସେ ଅନୁପସ୍ଥିତ ଥିଲେ । ତେବେ ଚିଠି ଓ ଠିକଣାଟେ ଲେଖି ଛାଡି ଦେଇଆସିଥିଲି । କିଛିଦିନ ପରେ ତାଙ୍କର ବାୟଡାଟା, ଫଟୋ ସହ ସମସ୍ତ ବିବରଣୀ ପହଞ୍ଚିଥିଲା ବରଗଡର ପଞ୍ଚାୟତ କଲେଜ୍‌ରେ । ଯଦିଓ କଲେଜ୍‌ରେ ମୁଁ ଯେତେବେଳେ ପଢୁଥିଲି ବାରିପଦାରେ, ଦୂରରୁ ତାଙ୍କୁ ଦେଖିଛି । ହେଲେ ପରିଚୟ ହେଇ ନାହିଁ । ସେତେବେଳେ ସେ ଜଣେ ଗୀତିକାର ବୋଲି ଜାଣିନଥିଲି । ଗବେଷଣା କରିବା ଯୋଗୁଁ ମୟୂରଭଞ୍ଜର କଳାକାରଙ୍କୁ ଖୋଜି ବାହାର କରିବା ମୋର ଧର୍ମ ପାଲଟି ଯାଇଥିଲା । ୨୦୦୪ ମସିହାରେ ମୁଁ ଡି.ଲିଟ୍ ପାଇଲି ଉତ୍କଳ ବିଶ୍ୱବିଦ୍ୟାଳୟରୁ । ତାପରେ ଦୁଇତିନିଥର ଯାଇଛି ହେଲେ ଦେଖା ମିଳିନି । ତେବେ ଚିଠିରେ କୃତଜ୍ଞତା ଜଣାଇଛି ଓ ଭାବିଛି ଗ୍ରୀଷ୍ମଛୁଟିରେ ବାରିପଦା ଗଲେ ନିଶ୍ଚେ କେବେ ନା କେବେ ଦେଖାହେବ । ହେଲେ ମୋ ମିଷ୍ଟରଙ୍କ ବାଲେଶ୍ୱର ଓ ମୋର ଭବାନୀପାଟଣା ବଦଳି ହେବା ଭିତରେ ଆଉ ତାହା ସମ୍ଭବ ହୋଇ ପାରିଲା ନାହିଁ । କିନ୍ତୁ ୨୦୦୯ମସିହାରେ ଖରାଛୁଟିରେ ଟିଭିରେ ନ୍ୟୁଜ୍‌ଟି ଶୁଣି ମୁଁ ଦୁଃଖରେ ଭାଙ୍ଗିପଡିଥିଲି । ହୃଦ୍‌କ୍ରିୟା ବନ୍ଦ ଯୋଗୁଁ ଗୀତିକାର ଦିଲୀପ ଦାଶଙ୍କର ମୃତ୍ୟୁ ଘଟିବାର ଦାରୁଣ ସମ୍ବାଦ ସେଦିନ ମୋ ଭଳି କେତେକେତେ ସଂଗୀତପ୍ରେମୀଙ୍କୁ ଦୁଃଖିତ କରିଥିଲା । ଅବଶୋଷେ ରହିଗଲା ପ୍ରତ୍ୟକ୍ଷ ଭାବରେ ଆମର ସାକ୍ଷାତ ହୋଇ ପାରିଲା ନାହିଁ ।

ସତରେ ଜୀବନ କେଡେ ଅନିଶ୍ଚିତ । ପାଣି ଫୋଟକା ସହିତ ଜୀବନକୁ ଯିଏ ପ୍ରଥମେ ତୁଳନା କରିଥିଲେ ସେ ନିଶ୍ଚେ ଜଣେ ବଡ଼ ଦାର୍ଶନିକ ଥିଲେ ।

ଦିଲୀପ୍ ଦାଶ ୧୯୭୧ ମସିହାରେ ନବବର୍ଷର ଶୁଭେଚ୍ଛା ପତ୍ରରେ ଇଂରାଜୀ ବଦଳ ଓଡିଆରେ ଗୀତ ରଚନା କରି ନିଜେ ଛାପି ବିକ୍ରୟ କରିଥିଲେ । ଓଡିଆରେ ଗ୍ରୀଟିଙ୍ଗସ୍ ଛାପି ଗୀତ ଲେଖିବାରେ ସେ ପ୍ରଥମ ବୋଲି ଦାବି କରୁଥିଲେ । ଯାହା ପରବର୍ତ୍ତୀ ବର୍ଷରେ ଏକ

ଧାରାରେ ପରିଣତ ହୋଇ ଯାଇଥିଲା । ଓଡିଆ ଭାଷା ଓ ସଂସ୍କୃତି ପ୍ରତି ତାଙ୍କର ଯେ ଗଭୀର ମମତା ଥିଲା ଏଥିରୁ ଉପଲବ୍ଧ ହୁଏ । ନବବର୍ଷ କାର୍ଡରେ ଲେଖିଥିବା କବିତାର କେତୋଟି ଧାଡି ହେଲା:-

"ମମତା ସମତା ଆଣୁ, ଦୃଢ ହେଉ ଆମ ଏ ବନ୍ଧନ / ନବବର୍ଷ ଶୁଭବର୍ଷ ହେଉ, ଚଲାପଥ ସୁବାସିତ ହେଉ / ପଥେ ପଥେ ଭରି ଉଠୁ ଫୁଲ ଚନ୍ଦନ..." ।

## ସଂଗ୍ରାମ ମହାନ୍ତି

ବାରିପଦାରେ ଏହି ପ୍ରତିଭାବାନ୍ ଗୀତକାର ଯଦି କଟକ କି ଭୁବନେଶ୍ୱରରେ ରହୁଥାନ୍ତେ ନିଶ୍ଚେ ତାଙ୍କ ଭାଗ୍ୟ ବଦଳିଯାଇଥାନ୍ତା ।

୧୯୮୦-୮୧ରେ ବାରିପଦାରେ ଗୋଟିଏ ଓଡିଆ ଚଳଚ୍ଚିତ୍ର ପ୍ରଯୋଜିତ ହେଲା । ନାଁ ଥିଲା 'ଫୁଲ ଚନ୍ଦନ' ଯେଉଁଥିରେ ପ୍ରଥମ ଥର ପାଇଁ ବ୍ରେକ ପାଇଥିଲେ ଅଭିନେତ୍ରୀ ଅପରାଜିତା । ବାରିପଦାର ବିଖ୍ୟାତ ନାଟ୍ୟକାର ଆନନ୍ଦ ଶଙ୍କର ଦାସଙ୍କ ବହି ବଟକୃଷ୍ଣ ନାୟକଙ୍କ ରାଜଶ୍ରୀ ପ୍ରଡକ୍ସନ୍‌ଙ୍କ ଦ୍ୱାରା ପ୍ରଯୋଜିତ ଛବି ଯାହାର ନିର୍ଦ୍ଦେଶକ ଥିଲେ ୰ମହମ୍ମଦ ମହସିନ୍ । ସଂଗୀତରେ ସରୋଜ୍ ପଟ୍ଟନାୟକ । ସେହି ଚଳଚ୍ଚିତ୍ରରେ ପ୍ରଥମେ ଗୀତ ଲେଖି ରାତାରାତି ବିଖ୍ୟାତ ହୋଇଗଲେ ସଂଗ୍ରାମ ମହାନ୍ତି । ଓଡିଶାର ଗଳିକନ୍ଦିରେ ତାଙ୍କ ଗୀତ ଗୁଣୁ ଗୁଣୁ କରି ମୁଗ୍ଧଶ୍ରୋତା ଗାଇ ଚାଲିଲେ-

"କହନା ଏ ଫୁଲ କହନା
କହିଦେ ନକରି ବାହାନା
ମୋ ମନ ନୀଳ କଇଁ
ଯାହାର ବାଟ ଚାହିଁ
ରାତିକୁ ଦିଏ ପାହି
ଆଖିକୁ ନିଦ ନାହିଁ
ଆସିବ କେବେ କହନା..."

ପୁଣି ସରୋଜ ପଟ୍ଟନାୟକଙ୍କ ସଂଗୀତ ନିର୍ଦ୍ଦେଶନାରେ ଆସିଲା ଚଳଚ୍ଚିତ୍ର 'ଅଭିଳାଷ' ସାଧୁମେହେର ତାର ନିର୍ଦ୍ଦେଶକ । ଗୀତ ଲେଖିଥିଲେ ବାରିପଦାର ଦିଲୀପ୍ ଦାଶ ଓ ସଂଗ୍ରାମ ମହାନ୍ତି । ତାର ଏକ ସିଚୁଏସନ୍ ଥିଲା- ରକ୍ତିମ ଆଭାରେ ଉଦ୍‌ଭାସିତ ଉଦାସୀ ଅପରାହ୍ନ । ଗୋଧୂଳି ନଇଁ ଆସିଛି, ପଶ୍ଚିମ ଦିଗନ୍ତରେ ରକ୍ତର ବର୍ଣ୍ଣାଳୀ । ହୀରୋ ହୀରୋଇନ୍ ପାର୍କରେ

ପହଞ୍ଚି ରୋମାଣ୍ଟିକ୍ ଗୀତ ଗାଉଥିବେ । ଏହି ଦିଗକୁ ଲକ୍ଷ୍ୟ କରି ସଂଗ୍ରାମ ମହାନ୍ତି ଲେଖିଲେ:-

"ଏଇ ଝୁମା ଝୁମା ଗୋଲାପି ବେଳାରେ
ସାଥେ ଆମେ ସ୍ମୃତି ନେଇ
ଆହୁରି ନିଜର ହୋଇ
ହଜିଯିବା ଆପଣା ଭିତରେ
ହୋ... ଏଇ ଝୁମା ଝୁମା ଗୋଲାପି ବେଳାରେ...
ମୁଁ ଯୋଗୀ ତ ତୁମେ ସୁର,
ପ୍ରିୟତମ ମୋର
ତଟିନୀ ମୁଁ ତୁମେ ମୋ ସାଗର
ଫଗୁଣର ଫଗୁଭିଜା
ବଗିଚାରେ ମୋର
ସୁରଭି ମୁଁ ତୁମେ ତ ସମୀର
କଇଁ ମୁଁ ତୁମେ ଜହ୍ନ
ମୁଁ ଆଖି ତୁମେ ସ୍ୱପ୍ନ
ଚିରନ୍ତନ ଆମେ ଦୁନିଆରେ
ଏଇ ଝୁମା ଝୁମା ଗୋଲାପି ବେଳାରେ..."

ତା ଆଗରୁ ସଜଫୁଲରେ ଆକାଶବାଣୀ କଟକ କେନ୍ଦ୍ରରୁ ଧନଞ୍ଜୟ ଶତପଥୀଙ୍କ କଣ୍ଠରେ ତାଙ୍କର ପ୍ରଥମ ଗୀତ ବାଜି ସାରିଥିଲା । ଗୀତଟି ଥିଲା:-

"ଆମେ ଦୁଇଜଣ ଏକ ଫଗୁଣର
ଦୁଇଟି ଅଲଗା କଳି
ତୁମେ ଫୁଟ ଯେବେ ବାସ ମହକାଇ
ମୁଁ ଯାଏ ନିରବେ ଜଳି..."

ତାଙ୍କ ଘର ଆମ ଘର ଭଞ୍ଜପୁରର ଗୋଟିଏ ଗଳିରେ । ଚେକ୍ ଗେଟ୍‌କୁ ଲାଗିକି ସଂଗ୍ରାମ ସାର୍‌ଙ୍କ ଘର । ଆମ ଘର ଠାକୁରାଣୀ ସାହି ଛକରେ ଅନତି ଦୂରରେ । ଗୀତିକବିଙ୍କ ଉପରେ ଲେଖିଲାବେଳେ ସଂଗ୍ରାମ ସାରଙ୍କ ଠାରୁ ତଥ୍ୟ ନ ଆଣିଲେ ମୋ ଲେଖା ଅସଂପୂର୍ଣ୍ଣ ରହିଯିବ । ତାଙ୍କୁ ଯୋଗାଯୋଗ କରି ତାଙ୍କ ସମ୍ପର୍କରେ ତଥ୍ୟ, ଫଟୋ ପ୍ରଭୃତି ସଂଗ୍ରହ କଲି ।

# ନାଟ୍ୟକାର ଆନନ୍ଦ ଶଙ୍କର ଦାସ

ବାରିପଦା ନିବାସୀ ତଥା ଓଡିଶାର ସ୍ୱନାମଧନ୍ୟ ନାଟ୍ୟକାର ଆନନ୍ଦଶଙ୍କର ଦାସ ଥିଲେ ମୋ ବାପାଙ୍କର ବହୁ ପରିଚିତ ବନ୍ଧୁ ଯଦିଓ ସେ ବାପାଙ୍କ ଠାରୁ ବୟସରେ ସାନ ଥିଲେ । ମୋର ଡି.ଲିଟ୍ ପାଇଁ ମୁଁ ତାଙ୍କ ପାଖରେ ପହଞ୍ଚିଥିଲି । ସେତେବେଳକୁ ବାପା ସ୍ୱର୍ଗବାସୀ ହୋଇସାରିଥିଲେ । ବାପାଙ୍କ ନାଁ ଶୁଣି ଓ ମୁଁ ତାଙ୍କ ଝିଅ ବୋଲି ଜାଣି ଆନନ୍ଦ ମଉସା ଖୁସିରେ ଗଦ୍ ଗଦ୍ ହୋଇ ଉଠିଥିଲେ । ଏକଦା ବାପା ବି ଥିଲେ ଅର୍ଣ୍ଣପୂର୍ଣ୍ଣା ବି ଗ୍ରୁପ୍ ଆନୁକୂଲ୍ୟରେ ବାରିପଦା ସେବା ସଂଘରେ ହେଉଥିବା ନାଟକର ଅଭିନେତା । ସେହି କଥାରେ ସେ ସ୍ମୃତି ରୋମନ୍ଥନ କରି ମୁଁ ଯେ ତାଙ୍କର ଯୋଗ୍ୟ ଦାୟାଦ ଓ ମୟୂରଭଞ୍ଜ ଝିଅ ହିସାବରେ 'ଓଡିଆ ସାହିତ୍ୟକୁ ମୟୂରଭଞ୍ଜର' ଦାନ ଭଳି ଏକ ବିଷୟ ନେଇ ଗବେଷଣା କରୁଛି ସେଥିପାଇଁ ସେ ଅଶେଷ କଲ୍ୟାଣ ଓ ଆଶୀର୍ବାଦ ବର୍ଷା କରିଥିଲେ । ନାଟ୍ୟକାର ଆନନ୍ଦ ଶଙ୍କରଙ୍କ ଜନ୍ମ ୧୯୨୯ ମାର୍ଚ୍ଚ ୨ ତାରିଖରେ ବାରିପଦାରେ । ସ୍କୁଲ୍ ଜୀବନରେ ଅଭିନୟ କରିବା ସହିତ "ଏକଲବ୍ୟ", "ପଞ୍ଚୁ ପାଣ୍ଡବ" ଆଦି ନାଟକମାନ ଲେଖିଥିଲେ । ତାପରେ ସେ ଜୀବନସାରା କେବଳ ନାଟକ ହିଁ ଲେଖିଛନ୍ତି । ତାଙ୍କର ପ୍ରଥମ ପ୍ରକାଶିତ ଓ ମଞ୍ଚସ୍ଥ ନାଟକ ହେଲା 'ସମାଧି' ଯାହା ୧୯୪୭ରେ ସେ ଲେଖିଥିଲେ । 'ରୂପଶ୍ରୀ' ଥିଏଟର ଦ୍ୱାରା ମଞ୍ଚସ୍ଥ ହୋଇଥିଲା । ତାଙ୍କର ପ୍ରକାଶିତ ନାଟକର ସଂଖ୍ୟା ହେଲା ପଚିଶରୁ ଊର୍ଦ୍ଧ୍ୱ । ଏସବୁ ନାଟକ ଭିତରେ ଉଲ୍ଲେଖନୀୟ ନାଟକ ହେଲା- 'ସମାଧି', 'ଯୌତୁକ', 'ଚନ୍ଦ୍ରଭାନୁ', ଲୁହାଶିକୁଳି, ଚକାଭଉଁରୀ, 'ଭାନୁମତୀର ଖେଳ', କପଟପାଶ, ଫୁଲଶଯ୍ୟା, ଫୁଲଚନ୍ଦନ, କଉଡି ଖେଳ, ବୁଲୁ ଓସ୍ତାଦ୍, ମଣିକାଞ୍ଚନ, ପରଦେଶୀ ଚଢେଇ ପ୍ରଭୃତି ।

ଆନନ୍ଦଶଙ୍କର ମୂଳତଃ ଜଣେ ପରମ୍ପରା ବାଦୀ ନାଟ୍ୟକାର । କାଳିଚରଣ ପଟ୍ଟନାୟକଙ୍କ ନାଟକର ଛାପ ତାଙ୍କଠାରେ ଦେଖାଯାଇଥାଏ । ତାଙ୍କ ନାଟକଗୁଡିକ ଚିତ୍ତ ବିନୋଦନ ସହିତ ସାମଜିକ ଶିକ୍ଷାର ଗୁରୁତ୍ୱ ବହନ କରିଥାଏ । ସାମାଜିକ ଜୀବନର ବହୁ ଜଟିଳ ସମସ୍ୟାକୁ ନେଇ ସେ ତାଙ୍କ ନାଟକର କାହାଣୀ କରିଥାନ୍ତି । ସେ ନିଜେ କହନ୍ତି ମୁଁ ଯେତେବେଳେ ଲେଖେ ସେତେବେଳେ ମୁଁ ମନେରଖେ ଯେ ମୁଁ କେବଳ ଦର୍ଶକ ବା ଜନସାଧାରଣଙ୍କ ପାଇଁ ହିଁ ଲେଖୁଛି । ଦର୍ଶକଙ୍କ ମନଛୁଆଁ ନହେଲେ କିଛି ଲାଭ ନାହିଁ । ଲେଖିବା ବେଳେ ମୁଁ ନିଜେ ଚରିତ୍ର ଭିତରେ ହଜିଯାଏ ।"

ତାଙ୍କ ନାଟକ ଭିତରୁ ତିନିଗୋଟି ନାଟକ ଓଡିଆ ଚଳଚ୍ଚିତ୍ରରେ ରୂପାନ୍ତରିତ ହୋଇଛି । ସେଗୁଡିକ ହେଲା 'ଅଭିମାନ', 'ଫୁଲଚନ୍ଦନ' ଏବଂ 'ପରଦେଶୀ ଚଢେଇ' । ଏହା ଛଡା ସେ 'ମାନିନୀ' ଚଳଚ୍ଚିତ୍ରର ଥିଲେ ସଂଳାପ ଲେଖକ । ସେ ଓଡିଶା ସାହିତ୍ୟ

ଏକଡେମୀ ସମେତ ବିଭିନ୍ନ ପୁରସ୍କାର, ସମ୍ମାନରେ ସମ୍ମାନିତ ହୋଇଛନ୍ତି । ମୋ ଗବେଷଣା ସଂକ୍ରାନ୍ତରେ ଓ ଗବେଷଣା ପରେ ମୁଁ ଯେତେବେଳେ ବାରିପଦା ଯାଇଚି ତାଙ୍କ ଘରକୁ ଯାଇଛି । ରୋଗାକ୍ରାନ୍ତ ଅବସ୍ଥାରେ ବି ମୁଁ ଆସିଛି ଶୁଣି ସେ ବିଛଣାରୁ ଉଠି ଆସନ୍ତି । ଶେଷ ସମୟରେ ତାଙ୍କ କାନକୁ ସେତେଟା ଭଲ ଶୁଭୁନଥିଲା । ବାର୍ଦ୍ଧକ୍ୟ ଯୋଗୁଁ ଭଲ ଦିଶୁନଥିଲା । ତେବେ ତାଙ୍କର ସ୍ମରଣ ଶକ୍ତି ବେଶ୍ ପ୍ରଖର ଥିଲା । ମୋତେ କହୁଥିଲେ ବାରିପଦାରେ ମୁଁ ବୁଢ଼ା ପଡି ରହିଛି । ସେମିତି କେହି ବିଶେଷ ଦେଖା କରିବାକୁ ଆସନ୍ତି ନାହିଁ । ତୁ ମାଆ ଯେତେବେଳେ ବାରିପଦା ଆସୁଥିବୁ ଏ ବୁଢ଼ାକୁ ଟିକେ ଦେଖା କରି ଯାଉଥିବୁ । ସେତେବେଳେ ମୁଁ ଥାଏ ପଞ୍ଚାୟତ କଲେଜ୍ ବରଗଡ୍‌ରେ । ଖରାଛୁଟି କି ପୂଜାଛୁଟିରେ ଯେତେବେଳେ ଆସେ ତାଙ୍କ ପାଖକୁ ଯାଏ । ଦୁଃଖସୁଖ ଆଶୀର୍ବାଦ ଭିତରେ ମୁଁ ତାଙ୍କୁ ମୋ ବାପାଙ୍କ ରୂପରେ ଦେଖେ । ଏତେ ସ୍ନେହ, ଏତେ ଆଶୀର୍ବାଦ ତାଙ୍କଠାରୁ ପାଇଛି ଯେ ନିଜକୁ ଧନ୍ୟ ମନେ କରିଛି ।

ଝଙ୍କାର ପୁରସ୍କାର ପାଇବା ଅବସରରେ ପ୍ରଜାତନ୍ତ୍ର ଅଫିସ୍‌ରେ ଦେଖା ହୋଇଛି । ସେ ନାଟକ ପାଇଁ ହିଁ ପାଇଥାନ୍ତି । ମୁଁ ଯାଇଥାଏ ଦର୍ଶକ ହେବାକୁ । ତାଙ୍କ ଦୃଷ୍ଟି ମୋ ଉପରେ ପଡିଲା ମାତ୍ରେ ଉଚ୍ଛ୍ୱସିତ ହୋଇ ମୋତେ ଡାକ ପକାଇଲେ । ସେହି ପ୍ରଜାତନ୍ତ୍ର ପରିସରରେ ଗ୍ରୁପ୍ ଫଟୋ ଉଠାଗଲା । ଆମ ପାଖରେ ଆସି ଠିଆହେଲେ ଫଟୋ ଉଠାଇବା ପାଇଁ ଅଭିନେତା ଅକ୍ଷୟ ମହାନ୍ତି (କାଶ୍ୟପ) । ଏବେବି ଆଲ୍‌ବମ୍‌ରେ ସାଇତା ହୋଇ ରହିଛି ।

ଡି.ଲିଟ୍ ପାଇଲା ପରେ ଯେତେବେଳେ ଯାଇଥିଲି ସେ କହିଲେ ଏଡ଼େବଡ଼ କାମଟା କଲ ଏବେ ବହିଟା ଛାପିଦିଅ । ମୁଁ କହିଲି ହଁ, ପ୍ରାଚୀ ପ୍ରକାଶନ ନେଇଛି । ଖୁବ୍ ଶୀଘ୍ର ପ୍ରକାଶ ପାଇବ । ତା ପରବର୍ଷ ଗଲାବେଳକୁ ପଚାରିଥିଲେ ବହି କାମ କେତେଦୂର ଗଲା ? ମୁଁ କ'ଣ ବଞ୍ଚି ଥାଉଥାଉ ତାକୁ ଦେଖିପାରିବି ? ପ୍ରାଚୀ ପ୍ରକାଶନ ପାଞ୍ଚବର୍ଷ ପକାଇଦେଲା । ଶେଷରେ ମୟୂରଭଞ୍ଜ ଉପରେ ଏହି ବହି ଛାପିଲେ ମୋର କି ଲାଭ ହେବ କହି ଟାଳଟୁଳ ନୀତି ଧରିଲା ଅଥଚ ବରଗଡର ପୁସ୍ତକମେଳା ପଡିଥିଲା ବେଳେ ମୋ ଘରକୁ ଯାଇ ବିଭୂ ତ୍ରିପାଠୀ ସେ ପାଣ୍ଡୁଲିପିଟାକୁ ନେଇ ଆସିଥିଲେ । ଡି.ଟି.ପି. କାମବି ଆଗେଇ ଥିଲା । ପ୍ରଥମ ପ୍ରୁଫ୍‌ବି ଦେଖି ମୁଁ ଫେରାଇଥିଲି । ରୟାଲଟି ଦେବାର ତ ପ୍ରଶ୍ନ ନଥିଲା । ପଚିଶ ଖଣ୍ଡ ବହି ଦେବେ ବୋଲି କହିଥିଲେ । ସେ ପ୍ରକାଶନ ସଂସ୍ଥା ଟଙ୍କା ଚାହୁଁଥିଲା କି କ'ଣ ଶେଷରେ ତାଙ୍କ ଯୁକ୍ତି ଆଉ ତାଙ୍କ ବ୍ୟବହାର ମୋତେ ଭଲ ଲାଗିଲାନି । ପାଞ୍ଚବର୍ଷ ପଡିଲା ପରେ ପାଣ୍ଡୁଲିପିଟି ଫେରାଇ ଆଣିଲି । ଏମିତି ଫ୍ରେଣ୍ଡ୍‌ସ ପବ୍ଲିସର୍ସ ପାଖରେ

ନଥ / ଦଶ ବର୍ଷ ପଡିରହିଲା ପରେ ପାଣ୍ଡୁଲିପିଟି ଫେରାଇ ଆଣିଥିଲି ଯାହା ଆଗରୁ କହି ସାରିଛି ।

ଓଡିଶାରେ ଏହା ହିଁ ଲେଖକମାନଙ୍କର ଭାଗ୍ୟ । ଅବଶ୍ୟ ଉଚ୍ଚ ପଦପଦବୀ, କ୍ଷମତାରେ ଥିବା ଲେଖକମାନଙ୍କର ଭାଗ୍ୟ ଆମ ଭଳି ନୁହେଁ । ସମାଜରେ ସାମାଜିକ ପ୍ରତିଷ୍ଠା, କ୍ଷମତା, ଅର୍ଥ, ପ୍ରତିପତ୍ତି ତଥା କେତେକ ସ୍ଥାନରେ ଜାତିକୁ ନେଇ ଲେଖକର ବିଚାର, ଆଦର କରାଯିବାର ବି ନଜିର ଅଛି ।

ମୋର ଅବଶୋଷ ଯେ ବହିଟା ବାହାରି ପାରିଲା ନାହିଁ ନାଟ୍ୟକାର ଆନନ୍ଦ ଶଙ୍କରଙ୍କ ଜୀବନକାଳରେ ।

## ଟୁରି ବାବୁ

ମୟୂରଭଞ୍ଜ ସାହିତ୍ୟ ଓ ସଂସ୍କୃତିକୁ ଗବେଷଣା କରିବା ଅବସରରେ ମୋତେ ଯିଏ ସବୁଠାରୁ ଅଧିକ ତଥ୍ୟ, ବିଭିନ୍ନ ଫଟୋଗ୍ରାଫ, ସୂଚନା ଯୋଗାଇ ଦେଇଥିଲେ ସେ ହେଲେ ଟୁରିବାବୁ । ତାଙ୍କ ଭଲ ନାମ ଲକ୍ଷ୍ମୀ ନାରାୟଣ ଦାସ କହିଲେ କେହି ଜାଣିବେ ନାହିଁ । କିନ୍ତୁ ବାରିପଦାରେ ରିକ୍ସାବାଲାଙ୍କ ଠାରୁ ଆରମ୍ଭ କରି ସଂସ୍କୃତି ସମ୍ପନ୍ନ ଯେ କୌଣସି ବ୍ୟକ୍ତିତ୍ୱକୁ ଟୁରିବାବୁଙ୍କ ବସା ପଚାରିଲେ ସେମାନେ ସଙ୍ଗେ ସଙ୍ଗେ ବତାଇ ଦେବେ କିମ୍ବା ପହଞ୍ଚାଇ ଦେବେ । ମୟୂରଭଞ୍ଜରେ ଛଉ ବିଶାରଦ, ପ୍ରଚାରକ ଭାବରେ ସେ ପରିଚିତ । ଏହାଛଡା ମୟୂରଭଞ୍ଜର ଐତିହାସିକ, ସାହିତ୍ୟକ ଅଥବା ସଂସ୍କୃତିକୁ ନେଇ ଯେ କୌଣସି ଜିଜ୍ଞାସା ଯଦି ମନରେ ଉଠେ ତାର ସମାଧାନର ସୂତ୍ରଧର ହେଲେ ଟୁରିବାବୁ । ନିଜ ଜନ୍ମମାଟିର କଳା, ସଂସ୍କୃତିର ସଂରକ୍ଷଣ, ପ୍ରଚାର ନିମନ୍ତେ ଏମିତି ଉତ୍ସର୍ଗୀକୃତ ଆତ୍ମା ମୁଁ ଦେଖିନାହିଁ । ବିନା ସ୍ୱାର୍ଥରେ ଗବେଷକ, ଛଉ ନୃତ୍ୟ ଉପରେ ତଥ୍ୟ, ଫଟୋ ଆବଶ୍ୟକ କରୁଥିବା ଛାତ୍ରଛାତ୍ରୀଙ୍କୁ ସେ ନିଜ ଖର୍ଚ୍ଚରେ ଫଟୋ ଧୋଇ, ଜେରକ୍ସ କରି ସାହାଯ୍ୟ କରିଥାନ୍ତି । ନିଜର ଆର୍ଥିକ ଅବସ୍ଥା ଭଲ ନଥିଲେ ବି ସେ ନିଜେ ଖର୍ଚ୍ଚ କରି ଯିଏ ଯାହା ଚାହାନ୍ତି ତାହା ଯୋଗାଇଥାନ୍ତି । ସାହାଯ୍ୟ କରିବାକୁ ହିଁ ସେ ଭଲ ପାଆନ୍ତି । ସେଥିରେ ତାଙ୍କ ତୃପ୍ତି । ଏପରିକି ବିଦେଶରୁ ଆସି ପହଞ୍ଚିଥିବା ଗବେଷକମାନେ ବାରିପଦାରେ ପହଁଞ୍ଚି ପ୍ରଥମେ ଖୋଜିଥାନ୍ତି ଟୁରିବାବୁଙ୍କୁ । ସର୍ବଦା ଧଳା ସାର୍ଟ ପ୍ୟାଣ୍ଟ ପିନ୍ଧା ପତଳା, ରୁଗ୍ଣ ମଣିଷଟି ହେଲେ ଟୁରିବାବୁ । ଅତ୍ୟନ୍ତ ସାଦାସିଧା, ଅମାୟିକ, ମେଳାପି ଆଉ ଅତ୍ୟନ୍ତ ଭଦ୍ର । ମୟୂରଭଞ୍ଜ ସଂସ୍କୃତିକୁ ନେଇ ସେ ବଞ୍ଚନ୍ତି, ସଂସ୍କୃତିକୁ ଦିନରାତି ଗୋଟାଉଥାନ୍ତି । ଛଉନୃତ୍ୟ ପାଇଁ ଏବଂ ଛଉ ପ୍ରତିଷ୍ଠାନ ସହ ସମ୍ପୃକ୍ତ ଥିବାରୁ ଭାରତବର୍ଷର

ବିଭିନ୍ନ ସ୍ଥାନ ବୁଲୁଥାନ୍ତି । ବିଦେଶକୁ ମଧ୍ୟ ଯାଇଥାନ୍ତି ।

ନିଜ ପାରିବାରିକ ଜୀବନର ବିଭିନ୍ନ ବିପର୍ଯ୍ୟୟ ସତ୍ତ୍ୱେ ସେ ନିଜ ନିଶାରୁ ଓହରି ନାହାନ୍ତି । ବାର୍ଦ୍ଧକ୍ୟ ତାଙ୍କ ମନ ବଳ ପାଖରେ ହାର ମାନିଛି । ହାଡଭଙ୍ଗା ଶୀତରେ ବି ଯେତେ ରାତି ହେଲେ ମଧ୍ୟ ସାହିତ୍ୟ ସଂସ୍କୃତିର ସଭାସମିତିକୁ ଯିବାକୁ ସେ ଛାଡନ୍ତି ନାହିଁ । ଅଣ୍ଟାବଥା, ଦେହର ପୀଡା, ବାର୍ଦ୍ଧକ୍ୟ ଜନିତ ବିଭିନ୍ନ ରୋଗ ବୈରାଗ ସତ୍ତ୍ୱେ ସେ ତାଙ୍କ ସାଧନାରୁ ବିରତ ହୋଇ ନାହାନ୍ତି । ସେ ସତେକି ମୟୂରଭଞ୍ଜ ଛଉର ଏକ ଜୀବନ୍ତ ଏନ୍‌ସାଇକ୍ଲିପେଡିଆ ।

ଟୁରିବାବୁଙ୍କ ଜନ୍ମ ୧୯୩୪ ମସିହାରେ ବାରିପଦାରେ । ବାରିପଦା ସହରର କେ.ଏମ୍.ବି ଏମ୍ ସିନେମାହଲ୍ ନିକଟରେ ତାଙ୍କ ଘର । ସେ ଘର ସତେକି ସ୍ୱାଗତମ୍ ମୁଦ୍ରାରେ ଆଗନ୍ତୁକଙ୍କୁ ଅନାଇ ରହିଥାଏ । ଗବେଷକଙ୍କ ଠାରୁ ସାମ୍ବାଦିକଭ୍ଙ୍କ ଯାଏଁ ସାହିତ୍ୟିକଙ୍କ ଠାରୁ ଆରମ୍ଭ କରି କେତେବେଳେ ପ୍ରାମାଣିକ ଚିତ୍ରର ନିର୍ଦ୍ଦେଶକ ଯାଏଁ ସେଠି ଭିଡ ଜମାନ୍ତି । ସେହି ଭିଡ ଭିତରେ ସେ ଅତି ଆଗ୍ରହରେ ଅମାୟିକ ଭଙ୍ଗୀରେ ଗଦାଗଦା ଫଟୋଚିତ୍ର, ପୁରୁଣା ରେକର୍ଡ ମାନଙ୍କର ପସରା ମେଲାଇ ବସିଥାନ୍ତି । ଦେଖାଇବାରେ ଯେମିତି ଆଗ୍ରହ ସେମିତି କହିବା ମନମୁଗ୍ଧକର । ସତେକି ମୟୂରଭଞ୍ଜର ଇତିହାସଟା ତାଙ୍କ ମୁହଁରେ । ବିଶେଷକରି ମୟୂରଭଞ୍ଜର ବିଶ୍ୱବିଖ୍ୟାତ ଛଉନୃତ୍ୟର ଇତିହାସ, ସ୍ୱରୂପ ଓ ଏହା ସହିତ ଜଡିତ ସମସ୍ତ ବିବରଣୀ, ବିଭିନ୍ନ ଫଟୋ ତାଙ୍କ ପାଖରେ ଆମୂଳଚୂଳ ଗଚ୍ଛିତ ରହିଛି ।

ମୋ ଗାଇଡ୍ ପ୍ରଫେସର ବାସୁ ସାର୍ ଓ କେତେକ ପରାମର୍ଶ ଦାତା ପ୍ରଥମରୁ କହି ଥିଲେ ତମ ଗବେଷଣା ପାଇଁ ସମସ୍ତ ତଥ୍ୟ, ସାହାଯ୍ୟ ପାଇବାକୁ ହେଲେ ଦେଖାକର ଟୁରିବାବୁଙ୍କ ସହିତ । ସେଥିପାଇଁ ଯେତେବେଳେ ତାଙ୍କ ପାଖରେ ପହଞ୍ଚିଥିଲି ସେ ମୋ ବାପାଙ୍କ ସମେତ କଳାମାନଙ୍କର ବିବରଣୀ ଦେଇ ମୋତେ ଚମକାଇ ଦେଲେ । ବାପା ଯେ ବାରିପଦାରେ ଏତେ ପରିଚିତ ଓ କଳା, ଅଭିନୟ କ୍ଷେତ୍ରରେ ଗୋଟେ ପରିଚିତ ନାଁ, ଏ କଥା ମୋତେ ଜଣା ନଥିଲା । ମୋ ଗବେଷଣା ପାଇଁ ଟୁରିବାବୁ ଅନେକ ତଥ୍ୟ ଫଟୋ ପ୍ରଭୃତି ଯୋଗାଇ ଦେଇଛନ୍ତି । ଏପରିକି ବିଭିନ୍ନ ତଥ୍ୟ ଜେରକ୍ସ କରି ରେଜେଷ୍ଟ୍ରି ଡାକ ଯୋଗେ ବରଗଡକୁ ପଠାଇଛନ୍ତି । ମୟୂରଭଞ୍ଜର କଳାକାର, ସାହିତିକମାନଙ୍କର ବିବରଣୀ, ମହାରାଜାମାନଙ୍କର ସମୟ ଓ ଇତିହାସ ତଥା ବିଭିନ୍ନ ମହାରାଜା ମାନଙ୍କର ତୈଳଚିତ୍ରର ଫଟୋ, ମୟୂରଭଞ୍ଜର ଭୌଗଳିକ ଅବସ୍ଥିତି, ମାନଚିତ୍ର ପ୍ରଭୃତି ମୋତେ ଦେବାରେ କାର୍ପଣ୍ୟ କରି ନାହାନ୍ତି । ତାଙ୍କ ସାହାଯ୍ୟ ବିନା ମୋ ଗବେଷଣା ସମ୍ପୂର୍ଣ୍ଣ

ହୋଇପାରନ୍ତା ନାହିଁ ।

ମୟୂରଭଞ୍ଜର ଛଉ ଓ ପୁରାତନ ସଂସ୍କୃତିକୁ ସାଇତିବାର ନିଶା ହିଁ ତାଙ୍କୁ ଜୀବନ୍ତ କିମ୍ବଦନ୍ତୀ ପୁରୁଷରେ ପରିଣତ କରିଦେଇଛି । ଏଠିକାର ମାହାରାଜାମାନେ ଛଉର ପ୍ରଚାର, ପ୍ରସାରଣ ପାଇଁ ଦିନେ ଯାହା କରୁଥିଲେ ଟୁରିବାବୁ ତାହା ହିଁ କରିଛନ୍ତି । ଫରକ୍ ଏତିକି ତାଙ୍କ ମୁଣ୍ଡରେ ରାଜମୁକୁଟ ନାହିଁ କ ରାଜ ଗାଦି, ରାଜପ୍ରାସାଦ ନାହିଁ । ତେବେ ଅଛି ସେହି ଏକା ପରି ନିଶା - ନିଷ୍ଠା । ମୋ ଜାଣତରେ ସେ ଜଣେ ନୀରବ ସାଧକ । ନିଜର ପ୍ରଚାର କି ନାଁ କମାଇବା, ନିଜର ଡିଣ୍ଡିମ ପିଟିବାର ମନୋଭାବ ମଧ ନାହିଁ । ଗୋଟିଏ ଲକ୍ଷ୍ୟ ମୟୂରଭଞ୍ଜର ଛଉ ବଞ୍ଚିବ, ଛଉ କଳାକାରମାନେ ବଞ୍ଚିବେ । ମୟୂରଭଞ୍ଜର ସଂସ୍କୃତି ସାଇତା ହୋଇ ରହିବ ଆଗାମୀ ପୀଢିମାନଙ୍କ କାମରେ ଲାଗିବା ପାଇଁ । ଜନ୍ମମାଟିକୁ ଏଭଳି ନିବଡ ଭାବରେ ଭଲ ପାଉଥିବା, ଚିହ୍ନିଥିବା ମଣିଷଟିଏ ଆଜି ମୟୂରଭଞ୍ଜ ମାଟିରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଛଉକଳାକାର ଓ ପ୍ରତିଷ୍ଠାନରେ ସେ ଗୁରୁଜୀ ଭାବେ ଖ୍ୟାତ । ପରିବାର କଥା ପଚାରିଲେ କହନ୍ତି, "ମୋର ଗୁଟେ ଛୁଆ, ସେଟା ହେଉଛି ମୟୂରଭଞ୍ଜ ସଂସ୍କୃତି ।"

ତାଙ୍କ ସଂସ୍ପର୍ଶରେ ଆସି ମୁଁ ଅନେକ କିଛି ଶିଖିଛି, ପ୍ରେରଣା ପାଇଛି ଓ ମୟୂରଭଞ୍ଜ ପାଇଁ କାମକରିବାକୁ ନିଜକୁ ପ୍ରସ୍ତୁତ କରିଛି ।

## ରାମକୃଷ୍ଣ ନନ୍ଦ

ମୋର ଡ.ଲିଟ୍‌ର ଗୋଟାଏ ଅନୁଚ୍ଛେଦ ଥିଲା "ମୟୂରଭଞ୍ଜ ବହୁ ପ୍ରବାସୀ କବି, ସାହିତ୍ୟିକଙ୍କର ପ୍ରେରଣାର ଭୂଇଁ", ଅର୍ଥାତ୍ ଯେଉଁମାନଙ୍କର ଜନ୍ମ ମୟୂରଭଞ୍ଜ ନୁହେଁ କିନ୍ତୁ ଜୀବିକାଦାୟରେ ମୟୂରଭଞ୍ଜ ଆସିଛନ୍ତି, ପରବର୍ତ୍ତୀ ସମୟରେ ମୟୂରଭଞ୍ଜ ପାଲଟିଛି ସେମାନଙ୍କ ପାଇଁ ସାରସ୍ୱତ ପ୍ରେରଣାର ଭୂଇଁ । ଏଥିପାଇଁ ଯଥାସମ୍ଭବ କେତେଜଣ ସାରସ୍ୱତ ପ୍ରତିଭାଙ୍କୁ ଭେଟିଥିଲି । ତନ୍ମଧ୍ୟରୁ ଥିଲେ ଶିଶୁ ସାହିତ୍ୟିକ, ସଂସାର ପତ୍ରିକାର ସମ୍ପାଦକ ତଥା କବି ରାମକୃଷ୍ଣ ନନ୍ଦ । ଏବେ ନାଚିଯାଏ ତାଙ୍କ ଡେଙ୍ଗା ଦୀର୍ଘ ଦେହ, ଉଜ୍ଜ୍ୱଳ ବୁଦ୍ଧିଦୀପ୍ତ କପାଳ, ପାହାଚ ଉପରୁ ଓହ୍ଲାଇ ଆସୁଥିବା ଡଗଡଗ ଚାଲି, ଧଳା ଫିନ୍ ଧୋତି, କାନ୍ଧରେ ଉତ୍ତରୀୟ । ମୋର ସୌଭାଗ୍ୟ ମୋର ଏ କ୍ଷୁଦ୍ର ଜୀବନରେ ତାଙ୍କୁ ଭେଟିବାର ସୁଯୋଗ ପାଇଥିଲି ।

୧୯୦୬ ଫେବୃୟାରୀ ୧୫ ତାରିଖରେ କଟକ ଜିଲ୍ଲାର ନିଆଳୀ ରାସ୍ତାରେ ବାଇରୋଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ଶିଶୁ ସାହିତ୍ୟିକ ରାମକୃଷ୍ଣ ନନ୍ଦ ।

ମାଟ୍ରିକ୍ୟୁଲେସନ୍ ପରେ ରେଭେନ୍‌ସା କଲେଜ୍‌ରୁ ଆଇ.ଏ., ଇଂରାଜୀ ଅନର୍ସରେ ବି.ଏ ପାଶ୍ କରିଥିଲେ । ୧୯୩୧-୩୨ ରେ ବାରିପଦା ହାଇସ୍କୁଲ୍‌ରେ ଶିକ୍ଷକତା କରିଥିଲେ । ୧୯୩୩ ମସିହାରେ ସେ ବାରିପଦାରେ ଶିକ୍ଷକତା କରୁଥିବା ବେଳେ ଓଡିଆ ବିଖ୍ୟାତ ପ୍ରାର୍ଥନା "ଆହେ ଦୟାମୟ ବିଶ୍ୱ ବିହାରୀ" ଲେଖିଥିଲେ ଓ ତାହା ସ୍କୁଲ୍‌ରେ ବୋଲା ଯାଉଥିଲା । ତା'ର ପ୍ରଥମ ପଦଟି ହେଲା:-

"ଆହେ ଦୟାମୟ ବିଶ୍ୱ ବିହାରୀ
ଘେନ ଦୟାବହି ମୋର ଗୁହାରି
ଜଳ, ସ୍ଥଳ, ବନ, ଗିରି, ଆକାଶ
ତୁମ ଲୀଳା ସବୁଠାରେ ପ୍ରକାଶ..."

ତା ପୂର୍ବରୁ ଭକ୍ତକବି ମଧୁସୂଦନ ରାଓଙ୍କ "ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ" ପ୍ରାର୍ଥନାଟି ସବୁ ସ୍କୁଲ୍‌ରେ ବୋଲା ଯାଉଥିଲା ।

ଶିଶୁ ସାହିତ୍ୟିକ ଭାବରେ ସେ ଥିଲେ ଜଣେ ସଫଳ ବିନ୍ଧାଣୀ । ଶିକ୍ଷକତାକୁ ଜୀବନର ବ୍ରତ ଭାବରେ ଆଦରି ନେଇଥିଲେ । ବହୁ ପାଠ୍ୟ ପୁସ୍ତକ ଓ ସୁଖପାଠ୍ୟ ଶିଶୁ ସାହିତ୍ୟ ସେ ରଚନା କରିଯାଇଛନ୍ତି । ତାଙ୍କର ଶିଶୁ ସାହିତ ସଂକଳନ 'ଝୁମ୍‌କା' ୧୯୭୭ ବର୍ଷ ପାଇଁ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । "ଜୀବନତରଙ୍ଗ" ତାଙ୍କର ଆତ୍ମଜୀବନୀ । କଟକ ତଳ ତେଲଙ୍ଗା ବଜାରରେ ଜମିକିଣି ଘର କଳାପରେ ୧୯୪୬-୪୭ରେ ପ୍ରେସ୍‌ଟିଏ ସ୍ଥାପନ କରିଥିଲେ । ଏହାର ନାଁ ରଖିଥିଲେ ପାରିଜାତ । ୧୯୫୧ ଅଗଷ୍ଟରେ ସେଠାରୁ ଶିଶୁପତ୍ରିକା 'ସଂସାର' ପ୍ରକାଶ ପାଇଲା ।

୧୯୯୨ରେ ମୁଁ ତାଙ୍କୁ ଭେଟିଥିଲି ତାଙ୍କର କଟକର ତଳ ତେଲେଙ୍ଗା ବଜାର ବାସଭବନରେ । ସେତେବେଳେ ମୁଁ ରାଉରକେଲା ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପିକା ଥିଲି । ଆଗରୁ ଚିଠି ମାଧ୍ୟମରେ ଯୋଗାଯୋଗ କରିଥିଲି । ସେ ସାଦରେ ସ୍ୱୀକୃତି ଜଣାଇଥିଲେ । ଓଡିଶା ବୁକ୍‌ଷ୍ଟୋରର ବିଜୟ ପାତ୍ରଙ୍କ ସହାୟତାରେ ପହଞ୍ଚିଥିଲି ତାଙ୍କ ପାଖରେ । ହସି ହସି ଅତି ଆନନ୍ଦରେ ସେ ପାଛୋଟି ନେଇଥିଲେ ଉପର ମହଲାକୁ । ପ୍ରବଳ ଖରା ହେଉଥିବାରୁ ଫ୍ୟାନ୍ ଖୋଲିଦେଇ ତଳକୁ ଓହ୍ଲାଇ ସେ ପୁଣି କିଛି ସମୟ ପରେ ଲେମ୍ବୁ ସର୍ବତର ଗ୍ଲାସ୍‌ଟିଏ ଆଣି ବଢାଇ ଦେଇଥିଲେ । ତାହା ଥିଲା ମୋ ପାଇଁ ଅମୃତ । ତାପରେ ମୋର ବିଭିନ୍ନ ପ୍ରଶ୍ନ ଓ ଜିଜ୍ଞାସାର ସେ ଉତ୍ତର ଦେଇଥିଲେ । ବାରିପଦାର ସ୍ମୃତିର ପୃଷ୍ଠା ଓଲଟାଇଲା ବେଳେ ସେ ବେଶ୍ ଭାବପ୍ରବଣ ହୋଇ ଉଠୁଥିଲେ । ତାଙ୍କ ତାରୁଣ୍ୟ ସମୟର ବାରିପଦା । ଫ୍ରେଜାର ହଷ୍ଟେଲ୍‌ରେ ରହୁଥିଲେ । ପ୍ରତିଦିନ ସେହି ଗୋଟିଏ

ପ୍ରାର୍ଥନା "ଅଖିଳ ବ୍ରହ୍ମାଣ୍ଡ ପତି" ନ ବୋଲି ଆଉ ଗୋଟିଏ ଦୁଇଟା ପ୍ରାର୍ଥନା ବୋଲା ଯାଇପାରନ୍ତା ବୋଲି ଚିନ୍ତା କରିଥିଲେ । ସେହି ଚିନ୍ତାରୁ ଜନ୍ମ ନେଇଥିଲା ତାଙ୍କର "ଆହେ ଦୟାମୟ ବିଶ୍ୱ ବିହାରୀ" ପ୍ରାର୍ଥନା । ତାହା କ୍ରମଶଃ ଏତେ ଲୋକପ୍ରିୟ ହୋଇପଡିଲା ଯେ ସାରା ଓଡିଶାର ସ୍କୁଲ୍ ଗୁଡିକରେ ବୋଲା ଯିବାରେ ଲାଗିଲା । ତେବେ ଦୁଃଖର ବିଷୟ ହେଲା ଏହାର ରଚନାକାର ଭାବରେ ଅନେକ ରାମକୃଷ୍ଣ ନନ୍ଦ ବୋଲି ଜାଣିନଥିଲେ । ଏ ପ୍ରାର୍ଥନାଟା ବି ମଧୁସୂଦନଙ୍କର ବୋଲି ମନେ ମନେ ଭାବିନେଇଥିଲେ । ବାରିପଦା ରହଣିକାଳରେ ସେ ଯେଉଁ ସବୁ କବିତାମାନ ଲେଖିଥିଲେ ତାର ଏକ ବିବରଣୀ ଦେଇଥିଲେ । ତାଙ୍କର "ଚିତ୍ରକର" କବିତାଟି ମୟୂରଭଞ୍ଜର ଶିମିଳିପାଳ, ଜଙ୍ଗଲ, ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଆଧାର କରି ରଚିତ । ୧୯୩୩ ମସିହାର ଜୀବନକୁ ୧୯୯୨ରେ ସେ ଏତେ ଜୀବନ୍ତ, ସ୍ପଷ୍ଟ ଭାବରେ ମନେ ପକାଉଥିଲେ ଯେ ମୋତେ ଆଶ୍ଚର୍ଯ୍ୟ ଲାଗିଥିଲା । ପ୍ରାୟ ଅଣଷାଠିଏ ବର୍ଷତଳେ ଆଜିର ବୃଦ୍ଧକବି ରାମକୃଷ୍ଣ ନନ୍ଦ ସେତେବେଳେ କିଭଳି ଦିଶୁଥିବେ (ଯୁବକ ରାମକୃଷ୍ଣ ନନ୍ଦ) ମୁଁ ତାଙ୍କ ସାମ୍ନାରେ ବସି ମନେମନେ କଳ୍ପନା କରୁଥିଲି । ତାଙ୍କର ଗୁଡାଏ ତଥ୍ୟ ସମ୍ବଳିତ ସ୍ମୃତିଚାରଣକୁ ମୋ ଡାଏରିରେ ଟିପି ନେଇଥିଲି ।

ଫେରିଲାବେଳେ ସେ ଦେଇଥିଲେ ତାଙ୍କର ଆତ୍ମଜୀବନୀ "ଜୀବନ ତରଙ୍ଗ" ଅତି ଶ୍ରଦ୍ଧାରେ । ତଳକୁ ଆସି ତାଙ୍କର ପ୍ରେସ୍‌ର ଜଣକୁ ଡାକି ରିକ୍ସାର ବ୍ୟବସ୍ଥା କରି ଦେଇଥିଲେ । ରିକ୍ସାରେ ବସି ମୁଁ ଚାଲିଥିଲି ବାଦାମ୍‌ବାଡି । ମୋତେ ଜଣା ନଥିଲା ଯେ ଏଇଟା ହେବ ତାଙ୍କ ସହିତ ମୋର ପ୍ରଥମ ଓ ଶେଷ ଦେଖା । ଆଉ ସେ ଢେଙ୍ଗା , ଉଚ୍ଚକପାଳର ଶ୍ରଦ୍ଧାଳୁ ମଣିଷଟି ସହିତ ଏ ଜୀବନରେ କେବେ ଦେଖାହେବ ନାହିଁ ।

୧୯୯୪ ମସିହା ଅକ୍ଟୋବରରେ ସେ ସ୍ୱର୍ଗାରୋହଣ କଲେ ।

# ଷୋହଳ

## ଅଧାଲେଖା ଗପ ଓ ମାମୀ

ମୁଁ ଏକ ସ୍ମୃତିର ମହୁମାଛି । ଜୀବନସାରା ମହୁ ଝରାଇଛି । ମହୁ ବାଣ୍ଟିଛି । କିଏ କେବେ ଜାଣିନାହିଁ ବୁନ୍ଦାଏ ମହୁ ପାଇଁ ମୋତେ କେତେ ଫୁଲଗଛ ଖୋଜିବାକୁ ପଡିଛି । କେତେ କେଉଁଠିକୁ ଧାଇଁବାକୁ ପଡିଛି । କେତେ କେତେ ସ୍ମୃତିର ଫୁଲ ସାଉଁଟିଛି ଓ ହଜାଇଛି । ନିଜ ଭିତରର ବ୍ୟଥା, କାରୁଣ୍ୟକୁ 'ମହୁ' ବୋଲି ହିଁ ମୁଁ ନାମିତ କରିଥାଏ । ତାକୁ ବାଣ୍ଟିବାରେ ହିଁ ମୋର ଆନନ୍ଦ । କିନ୍ତୁ କାହାକୁ ବାଣ୍ଟିବି ? କିଏ ବା ନେବା ପାଇଁ ହାତ ବଢାଇବ ? ତେଣୁ ଏହି କଲମ ହିଁ ମୋର ମାଧ୍ୟମ ସାଜିଛି ।

ବେଳେ ବେଳେ ସ୍ମୃତି ଛାଇ ପାଲଟିଯାଏ । ଦିନ ଯେତେ ବଢୁଥାଏ ତା ଧାସରେ ସ୍ମୃତିର ଛାଇ ସେତେ ଲମ୍ବା ପାଲଟୁ ଥାଏ । ରାଉରକେଲାର ଥିଲା ବେଳେ ମାମୀ ସେମିତି ଏକ ସ୍ମୃତିର ଲମ୍ବା ଛାଇ ପାଲଟି ଯାଇଛି ଯାହାକୁ ନେଇ ଲେଖିଥିବା ଗପଟିଏ ଅଧା ହୋଇ ପଡିରହିଥିଲା ଓ ତାକୁ ଶେଷ କରିବା ପାଇଁ ମୋତେ ଲାଗିଥିଲା ଦୀର୍ଘ ଅଠର ବର୍ଷ । ଗୋଟାଏ ଗପ ଲେଖିବା ପାଇଁ ଯେ ଅଠର ବର୍ଷ ଲୋଡା ହୁଏ ତାର ଅନୁଭବୀ ମୁଁ ନିଜେ । କେହି ବିଶ୍ୱାସ କରୁ କି ନକରୁ ଗୋଟିଏ ଦିନରେ ଗୋଟେ ଗପ ଲେଖିପାରିଥିବା ମୁଁ କବିତା ବାରିକ୍ ମାମୀକୁ ନେଇ ଲେଖିଥିବା ଗପଟିକୁ ସାରିବାକୁ ମୋ ଜୀବନର ଅଠର ବର୍ଷ ନେଇ ଯାଇଛି । ଏହା ଆଶ୍ଚର୍ଯ୍ୟ ହେଲେ ହେଁ ତ୍ରିବାର ସତ୍ୟ । ଗପଟିର ନାଁ ହେଲା 'ଅଧାଲେଖା ଗପ' ।

ମାମୀ ସମ୍ପର୍କରେ ନକହିଲେ 'ଅଧା ଲେଖାଗପ' ର ପୃଷ୍ଠଭୂମି ଓ ବିଳମ୍ବ ସମ୍ପର୍କରେ ବୁଝିହେବ ନାହିଁ । କହିବା ବାହୁଲ୍ୟ ଯେ ଲେଖକ ତା ଲେଖାର କାହାଣୀ, ବିଷୟବସ୍ତୁ କେଉଁଠି ଆଣିଥାଏ କି ? ନିଜ ଜୀବନରେ ଭେଟିଥିବା ଚରିତ୍ର, ନିଜର ଅନୁଭବ, ତା ଘରିପଟର ଦୁନିଆ ତଥା କିଛି ପାଠକୀୟ ଅନୁଭବ ତା ପାଇଁ ଗଳ୍ପ, ଉପନ୍ୟାସର କାହାଣୀ ପାଇଁ ଖୋରାକ ଯୋଗାଇଥାଏ । ସେଥିପାଇଁ ତ ସ୍ରଷ୍ଟାଟିଏ ନିଜ 'ଆତ୍ମଜୀବନ' ଲେଖିବାର ବହୁ ଆଗରୁ ନିଜକଥା ତା ସୃଷ୍ଟି ମାଧ୍ୟମରେ ପରୋକ୍ଷରେ ବହୁ ଆଗରୁ କହିଦେଇଥାଏ । ନିଜକୁ ନାୟକ କି ନାୟିକାର ଆସନରେ ରଖି ଚରିତ୍ର ମାଧ୍ୟମରେ ସେ ନିଜକୁ ହିଁ ଗୁନ୍ଥୁ ଥାଏ ସମୟ ସହିତ ଯୁଝି ହେଉଥାଏ, ନିଜସ୍ୱ ଗଭୀର ଅନୁଭବକୁ ଶବ୍ଦ ମାଧ୍ୟମରେ ବର୍ଷା କରୁଥାଏ ।

ରାଉରକେଲା ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପିକା ଭାବରେ ମୁଁ ଜୟେନ୍ କଲି ୨୯.୧.୧୯୯୦ରେ । କେଉଁଠି ରହିବିର ଚିନ୍ତା ଘାରୁଥାଏ । ଜୟେନ୍ କଲା ପରେ ଜାଣିଲି ସେଠି ଛାତ୍ରୀ ନିବାସଟିଏ ଅଳ୍ପଦିନ ହେଲା କାର୍ଯ୍ୟ କରୁଛି । ସେଠି ରହିବାର ସୁଯୋଗ ପାଇବା ଯୋଗୁଁ ହିଁ ମାମୀ ସହିତ ମୋର ପରିଚୟ ହୁଏ । ମାମୀ ମୋ ଆଗରୁ ମାସେ ହେଲା ଛାତ୍ରୀ ନିବାସକୁ ଆସିଥାଏ । ମନସ୍ତତ୍ତ୍ୱ ବିଭାଗରେ ଯୋଗ ଦେଇଥାଏ । ତା ରୁମ୍‌ରୁ ପାଖ କୋଠରିଟି ମୋତେ ମିଳିଥିଲା । ଅଳ୍ପଦିନ ଭିତରେ ତା' ସହିତ ମୋର ବେଶ୍ ବନ୍ଧୁତ୍ୱ ଗଢିଉଠିଥିଲ । ତାଙ୍କ ଘର ପୁରୀ । ବର୍ଷେ ହେଲା ତା ମାଆଙ୍କର ମୃତ୍ୟୁ ଘଟିଥାଏ । ବାପା କୃଷ୍ଣ ମୋହନ ମହାନ୍ତି ସରକାରୀ ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ଅବସର ନେଇ ସାରିଥାନ୍ତି ଓ ସତୁରି ବର୍ଷରୁ ଉର୍ଦ୍ଧ୍ୱ ତାଙ୍କର ବୟସ ହୋଇସାରିଥାଏ । ତାଙ୍କର ଅନେକ ପୁଅ ଝିଅ ଭିତରେ ମାମୀ ହେଲା ସବାସାନ ଝିଅ ଓ

ସବୁଠୁ ଗେହ୍ଲା । ଦିଲ୍ଲୀରେ ଏମ୍.ଫିଲ୍ ସାରି ସେ ରାଉରକେଲାରେ ଯୋଗ ଦେଇଥାଏ ।

ସେତେବେଳେ ରାଉରକେଲାର ଛାତ୍ରୀ ନିବାସଟିର ମାତ୍ର ନଅଜଣ ଝିଅ ଥାନ୍ତି । ମିତ୍ରା ଅପା, ମାମୀ ଓ ମୁଁ ଏଇ ତିନିଜଣଙ୍କ ସହ ନଅ ଜଣ ଛାତ୍ରୀ । ତେଣୁ ଗୁରୁଶିଷ୍ୟଙ୍କ ଭିତରେ ନିବିଡ ବନ୍ଧୁତ୍ୱ ମଧ୍ୟ ଗଢି ଉଠିବା ସହଜ ହୋଇ ଯାଇଥିଲା । ଦି'ମହଲା ବିରାଟ ହଷ୍ଟେଲ୍‌ଟା ଖାଲି ପଡିଥିଲା । ତେଣୁ ଆମଭଳି ଅବିବାହିତା ଅଧ୍ୟାପିକାମାନଙ୍କ ପାଇଁ ପିଲାଙ୍କ ଦାୟିତ୍ୱ ନେବା ସହିତ ରହିବାର ସୁଯୋଗ ମିଳିଯାଇଥିଲା ।

ମାମୀ ମୋ ଠାରୁ ଦୁଇବର୍ଷ ସାନ ଥିଲା । ତେବେ ଗୋଟିଏ ସାମଞ୍ଜସ୍ୟ ହେଲା ଦୁହେଁ ଥିଲୁ ମାତୃହରା । ମୁଁ ପିଲାଦିନୁ ମାଆକୁ ହରାଇଥିଲା ବେଳେ ମାମୀ ଯଦିଓ ବର୍ଷେ ତଳେ ମାତୃହରା ହୋଇଥିଲା । ତେବେ ମାଆକୁ ହରାଇବାର ଦୁଃଖ ସମାନ ଥିଲା । ମାମୀ ଚମତ୍କାର ଚିତ୍ର ଆଙ୍କୁଥିଲା ବେଳେ ମୁଁ ଗପ ଲେଖୁଥିଲି । ଦୁହେଁ ପୁରୁଣା ହିନ୍ଦୀ ଗୀତ, ଗଜଲର ପ୍ରେମୀ ଥିଲୁ । ତେଣୁ ଦୁଇ କଳାକାରଙ୍କ ଭିତରେ ନିବିଡ ବନ୍ଧୁତ୍ୱ ଗଢିଉଠିବା ସ୍ୱାଭାବିକ ଥିଲା । ମାମୀ କହୁଥିଲା ତମ ବହିର ପ୍ରଚ୍ଛଦ ମୁଁ ନିଶ୍ଚେ ଆଙ୍କିବି ଅପା । ତମେ କିନ୍ତୁ ତମର କୌଣସି ଗପରେ ମୋତେ ଚରିତ୍ରଟେ କରିଦେବ । ଚରିତ୍ର ହେବା ପାଇଁ ବି କାହାଣୀ ଦରକାର । ମାମୀ ପଛରେ କି କାହାଣୀ ଅଛି ଯେ ତାକୁ ଚରିତ୍ର କରିବି ବୋଲି ମନେ ମନେ ଭାବୁଥିଲି । ଆମ ସହିତ ଆଉ ଜଣେ ଶିକ୍ଷାବିଭାଗର ଅଧ୍ୟାପିକା ଜୁଟିଥିଲେ । ସେ ଥିଲେ ପଞ୍ଜାବୀ ଓ ନାଁ ଥିଲା ଦରବିନ୍ଦର କୋଓ୍ୱର । ସେ ଆମ ସମସ୍ତଙ୍କ ଠୁ ବଡ଼ ଥିଲେ । ତା ସହିତ ଆଉ ଜଣେ ହିନ୍ଦୀରେ ବଙ୍ଗାଳୀ ଅଧ୍ୟାପିକା ଅଞ୍ଜନା ଚକ୍ରବର୍ତ୍ତୀ ମଧ୍ୟ ଥିଲେ । ଆମ ଚାରିଜଣଙ୍କ ଭିତରେ ଏକ ସୌହାର୍ଦ୍ଦ୍ୟ ବାତାବରଣ ଗଢିଉଠିଥିଲା । ଦେବବ୍ୟାସ ମେଳାକୁ ସାଙ୍ଗ ହୋଇ ବୁଲିଯିବା ଅବସରରେ ମୁଁ ଲେଖିଥିଲି 'ମେଳା' ଗପ ଯାହା 'ଅମୃତାୟନ'ରେ ପ୍ରକାଶ ପାଇଥିଲା । ବୋଧହୁଏ ୧୯୯୨ରେ ହେବ । ମାମୀ ସବୁବେଳେ ଲଗାଇଥାଏ ମୋତେ ଚରିତ୍ର କରି ଗପଟିଏ ଲେଖନ୍ତ ନାହିଁ ଅପା ? ଦେଖ ତମ ବହିର ପ୍ରଚ୍ଛଦ ମୁଁ ଦିନେ ନା ଦିନେ ନିଶ୍ଚେ ଆଙ୍କିବି । ମୋତେ ସୁଯୋଗ ମିଳିବ ତ ? ଗପର ଚରିତ୍ର ପାଇଁ ବି କାହାଣୀ ଦରକାର । ମାମୀକୁ ନେଇ କି ଗପ ଲେଖିବି ଚିନ୍ତା କରୁଥିଲା ବେଳେ ଆବିର୍ଭାବ ହେଲ ତା ବାପାଙ୍କର । ମଉସାଙ୍କଠୁ ଶୁଣିଲି ଏମ୍.ଏ ପଢିଲା ବେଳେ ମାମୀ ଯେଉଁ ପିଲାଟିକୁ ଭଲ ପାଉଥିଲା ସେ ପରବର୍ତ୍ତୀ ସମୟରେ ତାକୁ ଧକ୍କା ଦେଇ ଅନ୍ୟତ୍ର ବାହା ହୋଇଗଲା । ମାମୀର ଖାଲି ଗୋଟେ ଜିଦ୍ ସେ ଆଉ ବାହା ହେବ ନାହିଁ । ଆମେ ସମସ୍ତେ ବୁଝାଇ ବୁଝାଇ ଥକିପଡିଲୁଣି । ତମେ ଲେଖାଲେଖି କର ବୋଲି ସେ କହୁଥିଲା । ତାକୁ ଟିକେ ବୁଝାନ୍ତ ନାହିଁ ? ମୁଁ ତ ପାଚିଲା ତାଳ ।

ଏକସ୍ତରି ପାରି ହେଲାଣି । ମୋ ପରେ କରିବ କ'ଣ ? ବିଶେଷକରି ଜଣେ ଅବିବାହିତା ଝିଅକୁ ସମାଜର ବିଭିନ୍ନ ସମସ୍ୟା, ପ୍ରଶଠ୍ନବାଚୀର ସାମ୍ନା କରିବାକ ପଡେ । କିଛି ନଥାଇ ବି ସଜ ମାଛରେ ପୋକ ପକାଇବାକୁ ଲୋକର ଅଭାବ ନାହିଁ । ଗୋଟିଏ ପିଲା ପ୍ରତାରଣା କଲା ବୋଲି ସଂସାରର ସବୁ ପିଲା କ'ଣ ଖରାପ ହୋଇଯିବେ ?

ତାପରେ ମାମୀକୁ ବିଭିନ୍ନ ଉଦାହରଣ ଦେଇ ବୁଝାଇବାକୁ ଚେଷ୍ଟା କଲି । ମଉସାଙ୍କ ପରେ ତା'ର ଜୀବନ ଓ ବୃଦ୍ଧାବସ୍ଥାର ନିଃସଙ୍ଗତା ସମ୍ପର୍କରେ ସୂଚାଇଲି । ସେ ଯାହାହେଉ ପ୍ରୟାସ ମୋର ବ୍ୟର୍ଥ ହେଲା ନାହିଁ । ମାମୀ ମନ ପରିବର୍ତ୍ତନ କଲା ଓ ପ୍ରଭାତ ନାମକ ଷ୍ଟିଲ୍ ପ୍ଲାଣ୍ଟର ଜଣେ ଇଞ୍ଜିନୟରଙ୍କ ସହ ତାର ବାହାଘର ହୋଇଗଲା । ମାମୀର ବାପା ମୋତେ ଆଶୀର୍ବାଦରେ ପୋତି ପକାଇଲେ । ପୁଣି ମାମୀ ସନ୍ତାନସମ୍ଭବା ହେବା ଶୁଣି ସେ ଦୁହିଁଙ୍କୁ ଖାଇବାକୁ ଡାକିଥିଲେ । ମୋର ସେତେବେଳେ ବି ବାହାଘର ହୋଇଯାଇଥିଲା । ମିତ୍ରା ଅପା, କୌର ମାଡାମ୍, ମାମୀ ଓ ତା ବର, ମୋ ସ୍ୱାମୀଙ୍କୁ ନେଇ ବେଶ୍ ଆସର ଜମିଯାଇଥିଲା ।

ଏମିତି କିଛି ମାସ ଗଡିଗଲା । ମାମୀ ଛୁଟିନେଲା । ଦିନେ କଲେଜ୍‌ରେ ଶୁଣିଲି ମାମୀର ଲେବରପେନ୍ ହେବାରୁ ତାକୁ ଆଇ.ଜି.ଏଚ୍‌ରେ ଭର୍ତ୍ତି କରାଯାଇଛି । ଓପରବେଳା ଯବି କହି ମୁଁ କ୍ଲାସ୍ ଚାଲିଗଲି । ଦୁଇଟା କ୍ଲାସ୍ ସାରି ଫେରିଲା ପରେ କମନ୍‌ରୁମ୍‌ରେ ଖବରଟା ଶୁଣି ରେଜିଷ୍ଟରଟା ଖସିପଡିଥିଲା ହାତରୁ । ଗମ୍ ଗମ୍ ଝାଳ ବୋହିପଡିଥିଲା । ମୁଁ ଥ' କରି ବସିପଡିଲି । ମାମୀର ପୁଅଟେ ହୋଇଛି ହେଲେ ପ୍ରଚୁର ବ୍ଲିଡିଂ ଯୋଗୁ ସେ ନୀଳ ପଡିଯାଇଥିଲା । କୌଣସି ଉପାୟରେ ଡାକ୍ତରମାନେ ବଞ୍ଚାଇ ପାରିଲେ ନାହିଁ । ମାମୀ ନାହିଁ ଏ ପୃଥିବୀ ଛାଡି ସବୁଦିନ ପାଇଁ ଚାଲିଯାଇଛି ? ବିଶ୍ୱାସ କରିପାରୁନଥିଲି ମୁଁ । କେମିତି ବା କରିଥାନ୍ତି ? ଯାହାର ଏକ ନୂଆ ଜୀବନ ଏଇମାତ୍ର ଆରମ୍ଭ ହୋଇଥିଲା ତାକୁ ନିଷ୍ଠୁର ମୃତ୍ୟୁ କେମିତି ଟାଣିନେଲା ? କେମିତି ହାତ ଗଲା ଯମର ? ଥପ୍ ଥପ୍ ହୋଇ ଅମାନିଆ ଲୁହ ନିଗିଡି ପଡୁଥିଲା । ଏ ଖବର ବାସ୍ତରି ବର୍ଷର ମଉସାଙ୍କ ପାଖରେ ପହଞ୍ଚିଲା ପରେ କେମିତି ସେ ନିଜକୁ ସମ୍ଭାଳୁଥିବେ ? ମୃତ ଝିଅ ପାଖରେ ସଦ୍ୟଜାତ ନାତିକୁ ଦେଖି କେମିତି ସେ ଦୃଶ୍ୟକୁ ସାମ୍ନା କରୁଥିବେ ?

ତାପରର ଘଟଣା ଦ୍ରୁତ ଥିଲା । ମିଷ୍ଟରଙ୍କ ସହ ତୁରନ୍ତ ମୁଁ ହସ୍‌ପିଟାଲରେ ପହଞ୍ଚିଥିଲି । ଅବୋଧ ଶିଶୁଟି ମାମୀର ବଡ଼ ଭାଉଜଙ୍କ କୋଳରେ ବେଶ୍ ଆରାମ୍‌ରେ ଶୋଇ ପଡିଥିଲା । ଗ୍ଭଲିଗଲା ମାମୀ ମୁଠାଏ ପାଉଁଶ ହେବା ପାଇଁ । ସେହିଦିନ ତାକୁ ନେଇ ଗପଲେଖା ଆରମ୍ଭ କରିଥିଲି । ବଞ୍ଚିଥିଲା ବେଳେ ଯିଏ ମୋ ଗଳ୍ପର ଚରିତ୍ରଟିଏ ହେବ ବୋଲି ଆଶା

ବାନ୍ଧିଥିଲା, ନିଜର ଅବଚେତନର ସତକୁ ସତ ଗଛଟିଏ ପାଲଟିଗଲା । ହେଲେ ଗପଟା ସାରିପାରିଲିନି । ତା ପୁଅକୁ କିଏ ପାଳିବ ? ତା ସ୍ୱାମୀଙ୍କ ପାଖରେ ରହିବ ନା ତା ଭାଉଜ କି ଭଉଣୀ ପାଖରେ ? ତା ସ୍ୱାମୀ ଆଜି ହେଉ କି କାଲି ହେଉ ବାହା ତ ହେବେ । ସେତେବେଳେ ଏ ପୁଅକୁ ଜୀବନ ରାସ୍ତାର କଣ୍ଟା ବୋଲି ମନେ କରିବେନିତ ? ପିଲାଟି ବଡ଼ ହେଲା ପରେ ଯେତେବେଳେ ଜାଣିବ ମାଆ ଜନ୍ମ ଦେଇ ଆଖି ବୁଜିଦେଲା, ସେତେବେଳେ କ'ଣ ଭାବାନ୍ତର ହେବ ? ଏମିତି ଗୁଡାଏ ପ୍ରଶ୍ନବାଚୀ ଭିତରେ ୧୯୯୨ରେ ଆରମ୍ଭ କରିଥିବା ଗପଟା ଅଧା ହୋଇ ପଡିରହିଲା ।

ତା କିଛିଦିନ ପରେ ମୋର ବଦଳି ହୋଇଗଲା ବରଗଡ । ଆଉ ମାମୀର ପୁଅ ଖବର ମିଳିପାରି ନାହିଁ ରାଉରକେଲା ଛାଡିଦେଲା ପରେ । ଏପରିକି କୌର ମାଡାମ୍ ରାଉରକେଲାରେ ଥିଲେ ବି ସେ ସମ୍ପର୍କରେ କହିପାରନ୍ତି ନାହିଁ । ତେବେ ଶୁଣିଥିଲି ମାମୀର ବଡ଼ ଭାଉଜ ପିଲାଟିକୁ ପୁଅ କରି ନେଇଛନ୍ତି ଓ ତାଙ୍କର ତାପରେ କଲିକତା ବଦଳି ହୋଇଯାଇଛି । ରାଉରକେଲା ଛାଡିଲା ପରେ ସ୍ମୃତି ସବୁ ହୋଇଗଲା ଅତୀତ । ଯଦିଓ ବେଳେ ବେଳେ ପୁରୁଣା ଡାଏରୀ ଓଲଟାଇଲା ବେଳେ ଅଧାଲେଖା ଗପଟି ଉପରେ ଆଖି ପଡେ । ତାର ପରିଣତି ଟାଣିପାରେ ନାହିଁ । ତା ପୁଅ ଯଦି ବଞ୍ଚିଥାଏ ତେବେ କେତେ ବଡ଼ ହୋଇଯିବଣି । କଣ ପଢୁଛି ? କେମିତି ଦେଖିବାକୁ ହେଲଣି ? ଏବେ କଲିକତାରେ ନା ଅନ୍ୟ କେଉଁଠି ? ମଉସା ବଞ୍ଚିଛନ୍ତି ନା ବିଦାୟ ନେଲେଣି ? ଏମିତି ଗଡାଏ ପ୍ରଶ୍ନ ଆସି ଠିଆ ହୁଅନ୍ତି । ମୁଁ ସେ ପ୍ରଶ୍ନର ଉତ୍ତର ଖୋଜି ହୁଏ । ଅଧା ଲେଖା ଗପଟିକୁ ସାରିପାରେ ନହିଁ ।

ଏ ଭିତରେ ଦୀର୍ଘ ଅଠର ବର୍ଷ ସମୟ ଅତିବାହିତ କରିଗଲାଣି । ୨୦୧୦ରେ ମୁଁ ଥିଲି ଭବାନୀପାଟଣା ସରକାରୀ ସ୍ୱୟଂ ଶାସିତ ମହାବିଦ୍ୟାଳୟରେ । ଦିନେ କଲେଜ୍ ଠିକଣାରେ ଚିଠିଟିଏ ପହଞ୍ଚିଲା । ଯାହା ମୋର ସମସ୍ତ ପ୍ରଶ୍ନର ଉତ୍ତର ଦେବା ପାଇଁ ଯଥେଷ୍ଟ ଥିଲା । ସେ ଚିଠି ମୋ ଭିତରେ ଶୋଇଥିବା ଧୂଳିଲଗା ସ୍ମୃତିକୁ ଜଗାଇ ଦେଲା । ଦୀର୍ଘ ୧୮ ବର୍ଷ ପରେ ଯିଏ ଚିଠି ଲେଖିଥିଲେ ସେ କୃଷ୍ଣ ମୋହନ ମହାନ୍ତି ଅର୍ଥାତ୍ ମାମୀର ବାପା । ମଉସା ବଞ୍ଚିଛନ୍ତି ? ମୋ ହିସାବରେ ଏବେ ତାଙ୍କର ବୟସ ନବେ ପାଖାପାଖି । ଏ ବୟସରେ ସେ ଦୀର୍ଘ ଚିଠିଟିଏ ଲେଖିବାକୁ କାର୍ପଣ୍ୟ କରି ନାହାନ୍ତି । ଚିଠିଟି ପଢୁ ପଢୁ ଆନନ୍ଦ ଓ ଲୁହରେ ମୁଁ ଭିଜିଯାଇଥିଲି । କାହାର ଚିଠି ପଢୁଛି ଓ ଏମିତି କଣ ଲେଖାଯାଇଛି ଯେ ମୁଁ କାନ୍ଦି ପକାଉଛି ବୋଲି ଆଶ୍ଚର୍ଯ୍ୟରେ କମନ୍‌ରୁମ୍‌ରେ ବସିଥିବା ପିଅନ୍ ମୁକୁନ୍ଦ ପଚାରୁଥିଲା ।

ମଉସା "ପକ୍ଷୀଘର" ପୂଜା ସଂଖ୍ୟା ୨୦୦୯ର ଗପ ତଳେ ଥିବା ମୋ ଠିକଣା ପାଇ ଚିଠି ଲେଖିଥିଲେ । ମାମୀର ପୁଅର ନାଁ ଦୀପାଂଶୁ । ଡାକନ୍ତି ଦୀପୁ । ଏବେ ତା ବୟସ ୧୮ । ଦ୍ୱାଦଶ କ୍ଳାସ୍‌ରେ ପଢୁଛି । ବାପା ନେବାକୁ ଅମଙ୍ଗ ହବାରୁ ମାମୁ ମାଇଁ ତାକୁ ପୁଅ କରି ନେଲେ । ପୁଅ ବୋହୂଙ୍କର ସେ ଅତ୍ୟନ୍ତ ଗେହ୍ଲାପୁଅ । ତାର ଜନ୍ମିତ ପିତା ଇଞ୍ଜିନିୟର ପ୍ରଭାତ ମାମୀର ଦେହାନ୍ତ ପରେ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ଚାକିରୀ ଛାଡି ସାଉଦିଆରବ ପଳାଇଗଲେ । ସେଠାରୁ ଫେରି ଦ୍ୱିତୀୟ ବିବାହ କରି ଦିଲ୍ଲୀରେ ଚାକିରୀ କରିଥିଲେ । ତାଙ୍କର ଗୋଟିଏ ଝିଅ ହୋଇଥିଲା ସେତେବେଳେ ସମ୍ପର୍କ ଥିଲା । ଏବେ ସେ ସମ୍ପର୍କ ରଖି ନାହାନ୍ତି । ଦୀପୁକୁ ତିନି ବର୍ଷ ହେବା ପରଠୁ ସେ ତାକୁ ଭୁଲି ସାରିଛନ୍ତି । ବାହାହେଲା ପରେ ସେ ଲେଖିଥିଲେ ମଉସାଙ୍କୁ ଯେ ତାଙ୍କୁ ଫୋନ୍, ସାକ୍ଷାତ, ସମ୍ପର୍କ ରକ୍ଷା କିଛି ନ କରିବାକୁ । ସେ କୁଆଡେ ତାଙ୍କ ଅତୀତକୁ ଭୁଲି ସାରିଛନ୍ତି । ଭୁଲି ବି ସାରିଛନ୍ତି ଯେ ତାଙ୍କର ଗୋଟାଏ ପୁଅ ଥିଲା ଯାହାର ମାଆ ଜନ୍ମ ଦେଲାପରେ ମରିଗଲା ।

ମଉସା ଲେଖିଛନ୍ତି ଦୀପୁର ପ୍ରକୃତ ବାପା ତେଣୁ ପନ୍ଦର ବର୍ଷ ତଳେ ଆପାତତଃ ଦୀପୁ ପାଇଁ ମରିସାରିଛନ୍ତି । ଆଜିର କଲେଜ ପଢୁଆ ଦୀପୁ ପ୍ରଭାତଙ୍କୁ ଚିହ୍ନେନା କି ଜାଣେନା । ସେ ପୁଅ ମିହିର ଓ ବୋହୂ ରେଣୁକୁ ତା' ବାପା ମାଆ ବୋଲି ଜାଣିଛି । ସେମାନେ ତାକୁ ଏତେ ସ୍ନେହ ଶ୍ରଦ୍ଧା ଦେଇଛନ୍ତି ଯେ ସେ ତା ଅତୀତ ସମ୍ପର୍କରେ କିଛି ବି ଜାଣିବାକୁ, ଝୁରିବାକୁ ଚାହେଁନା ।

ମଉସା ପୁଣି ଲେଖିଥିଲେ, ତମେ କୁହତ ମାଆ ! ପ୍ରଭାତ ସତରେ କ'ଣ ତା ପ୍ରଥମ ସନ୍ତାନକୁ ଭୁଲିଯାଇଥିବ ? ଅତୀତକୁ ସତରେ କ'ଣ ଭୁଲାଯାଇପାରେ ? ମୋ ଆୟୁଷରୁ କିଛି ନେଇ ମାମୀଟା ହେଲେ ବଞ୍ଚିଥାନ୍ତା !

ତାପରେ ଅଠର ବର୍ଷ ତଳେ ଅସମ୍ପୂର୍ଣ୍ଣ କରି ପକାଇଥିବା ଗପଟିକୁ ସେହି ରାତିରେ ହିଁ ମୁଁ ଶେଷ କରିଥିଲି । ଚିନ୍ତା କରିଥିଲି ଆଜି ଯଦି ଦୀପୁର ମାମୁଁ କି ମଉସା ଘର ନଥାନ୍ତା କିଏ ଦେଇଥାନ୍ତା ତାକୁ ଆଜି ଭଳି ଏକ ସୁନେଲି ଭବିଷ୍ୟ ଓ ମୁଣ୍ଡ ଉପରେ ଭରସାର ଆକାଶ ? ମାମୀ ନିଶ୍ଚେ କିଛି ପୁଣ୍ୟ କରିଥିଲା ସେଥିପାଇଁ ତା ପୁଅ ଅନାଥ ହୋଇଯାଇନାହିଁ । ବରଂ ପାଦତଳେ ପାଇଛି ସ୍ନେହ, ପ୍ରତିଶ୍ରୁତିର ଦୃଢ ମାଟି ମୁଠାଏ । ସତେତ ଜୀବନ ନୂଆ ନୂଆ ଜନ୍ମର ଚେରକୁ ନେଇ ମୁଣ୍ଡ ଟେକେ, କୁଆଁ ରାବ ଦିଏ । ମୃତ୍ୟୁ ତ ଏକ ସ୍ଥୁଳ ରୂପ । ମୃତ୍ୟୁରେ ଜୀବନର ପ୍ରବାହ କ'ଣ ଅଟକିପାରେ ?

ମଉସା କିନ୍ତୁ ତାଙ୍କର ଫୋନ୍ ନଂ ଲେଖିନଥିଲେ । ନହେଲେ ତୁରନ୍ତ ଫୋନ୍ କରି କଥା ହୋଇଥାନ୍ତି ଦୀପୁ ସହ । ଅଠର ବର୍ଷ ତଳେ ଜନ୍ମ ହୋଇଥିବା ଡାକ୍ତରଖାନାରେ

ସଦ୍ୟଜାତ ଛୁଆଟାର ଚେହେରା ଯଦିଓ ମୋର ମନେ ନଥିଲା, ତେବେ ଭୁବନେଶ୍ୱର ଗଲେ ମଉସା ଦେଇଥିବା ଠିକଣାରେ ମୁଁ ନିଶ୍ଚେ ପହଁଞ୍ଚିବି । ଦୀପୁକୁ ମନ ଭରି ଦେଖିବି । ମଉସା ପଚାରିଥିଲେ ଅତୀତକୁ ସତରେ କଣ ଭୁଲାଯାଇ ପାରେ ମା ? କ'ଣ ଉତ୍ତର ଦେବି ତାଙ୍କୁ ? ଅତୀତକୁ ଯଦି ସତକୁ ସତ ଭୁଲାଯାଇ ପାରନ୍ତା, ତେବେ 'ସ୍ମୃତି' ବୋଲି ଶବ୍ଦଟିଏ ଜୀବନ ପୃଷ୍ଠାରୁ କେବେଠୁ ଉଠିଯାଇଥାନ୍ତା । ଗପଟିର ନାଁ ରଖିଥିଲି "ଅଧାଲେଖା ଗପ" । ଗଳ୍ପର କାହାଣୀ ଗାଳ୍ପିକ କେଉଁଠୁ ସାଉଁଟେକି ? ନିଜର ଅନୁଭୂତି ଆଉ ନିଜ ପରିପଟର ପୃଥିବୀରେ ପଡିଥାଏ ଗଳ୍ପର ପିଞ୍ଜର । ତାକୁ ତ କଳା କାରିଗର ଭିତରେ ଚତୁରତାର ସହ ସଜାଏ କଥାକାର । ଅଠର ବର୍ଷ ପରେ ଗପଟା ସମ୍ପୂର୍ଣ୍ଣ କରି ମୋର ଡାଏରୀରେ ମାମୀ ଉଦ୍ଦେଶ୍ୟରେ ଲେଖିଥିଲି, "ମାମୀ ! ତୋତେ ନେଇ ଗପଟେ ଲେଖିବା ପାଇଁ କେତେଥର ଅଳି କରିଛୁ ଓ ମୁଁ ବି ପ୍ରତିଶ୍ରୁତି ଦେଇଥିଲି ଦିନେ ନା ଦିନେ ଗପଟେ ଲେଖିବି ବୋଲି । ଆଜି ମୋ ପ୍ରତିଶ୍ରୁତି ରଖିଛି । ତୋର ଅଧାଲେଖା ଗପ ସାରି ପାରିଛି । ଗପଟା ସାରିବା ପାଇଁ ମୁଁ ମୋ ଜୀବନର ସବୁଠାରୁ ଲମ୍ବା ସମୟ ଅଠରବର୍ଷ ନେଇଛି । କହତ ଗୋଟାଏ ଗପ ଲେଖିବାକୁ ଫେର୍ ଏତେ ବର୍ଷ ଲୋଡା ହୁଏ ?" (୨୪.୬.୨୦୧୦, ଗୁରୁବାର, ଭବାନୀପାଟଣା)

## ସତର

## ରାଉରକେଲା ମୋ ପାଇଁ ସ୍ମୃତିମୟ ଓ ଭିନ୍ନ ଏକ ଠିକଣା

ସ୍ମୃତିକୁ କିଏ କେମିତି ଗୁନ୍ଥେ କେଜାଣି ? ମୋ ପାଇଁ ତ ସ୍ମୃତି ହିଁ ଜୀବନ । ତାକୁ ରୋମନ୍ଥନ କରି ହିଁ ମୁଁ ଆନନ୍ଦ ପାଏ । ଆନନ୍ଦ ଭିତରେ ନିଜକୁ ପାଏ । ନିଜକୁ ପାଏ ବୋଲି ତ ସ୍ମୃତିର ଦାଗ ମୋ ଭିତରେ ଏତେ ଗଭୀର ।

ଆତ୍ମଜୀବନ ଆଉ କ'ଣ କି ? ସେହି ଅତୀତର ସ୍ମୃତି ରୋମନ୍ଥନ । ହଜିଯାଇଥିବା ଜୀବନ, ଅତୀତ ହୋଇଯାଇଥିବା ଦିନ ସବୁକୁ ପୁଣିଥରେ ମନେ ପକାଇବା । ଭିତରେ କେତେ ଥାଏ ଆନନ୍ଦ ଆଉ କେତେ କେତେ ବ୍ୟଥାର ପୀଡାର । କବି ଦୀପକ ମିଶ୍ର ତାଙ୍କର "ମଧ୍ୟାହ୍ନର ଛାଇ" କବିତା ସଂକଳନର ଏକ କବିତା ଯଥାର୍ଥରେ ଲେଖିଥିଲେ -

"ତେଣୁ ମୁଁ କହୁଛି ଶୁଣ ସମସ୍ତଙ୍କୁ ତୁମ ମାଧ୍ୟମରେ, / ମୋ ଜୀବନ ଲେଖାହେବ ଯେଉଁ ଅକ୍ଷରରେ / ତାହାର ଗର୍ଭରେ ପ୍ରେମ, ତାହାର ଦୃଷ୍ଟିରେ ପ୍ରେମ ଏବଂ / ଉଚ୍ଚାରଣ କାଳେ କାଳେ ଆଣୁଥବ ପ୍ରେମର ଶରୀର" ।

× × × × ×

ଜୀବନର ଗୋଟାଏ ଗୋଟାଏ ମୋଡ ଆସେ, ନଈ ବାଙ୍କ ବୁଲିଲା ଭଳି ଯାହା ଜୀବନକୁ ବଦଳାଇ ଦିଏ । ଭାବିନଥିବା ଘଟଣା ହିଁ ଘଟେ । ଭଲ ହେଉ କି ମନ୍ଦ ହେଉ ମଣିଷ ତାକୁ ଗ୍ରହଣ କରିନେବାକୁ ବାଧ ହୁଏ ।

ରାଉରକେଲାରେ ହିଁ ଅପେକ୍ଷା କରିଥିଲା ମୋ ଲାଗି ଅନ୍ୟ ଏକ ଜୀବନ, ସର୍ବାଁଲୁଆରୁ ପ୍ରଜାପତି ବନିବାର, ସନ୍ନ୍ୟାସିନୀରୁ ଘର ସଂସାରୀ ବନିବାର ଏକ ସମୟ । ଯେଉଁ ଇସ୍ପାତ ନଗରୀକୁ କୁଣ୍ଠିତ ପାଦରେ ଦିନେ ପାଦ ଥାପିଥିଲି ଜୀବିକା ଦାୟରେ ସେ ଇସ୍ପାତ ନଗରୀରେ ମୋତେ ଅପେକ୍ଷା କରିଥିଲା ଏକ ନୂଆ ସକାଳ । ଯଦିଓ ନୂଆ ସକାଳ ମୋର ଇପ୍‌ସିତ ସକାଳ ଥିଲା କି ନାହିଁ ଆଜି ବି ଏକ ପ୍ରଶ୍ନବାଚୀ ହୋଇ ମୋ ପାଖରେ ରହିଯାଇଛି । ସମସ୍ତେ ବି କଣ ତାଙ୍କ ଇପ୍‌ସିତ ସୁନେଲି ସକାଳକୁ ଭେଟି ପାରନ୍ତି ? ଅନେକ ଭାବନ୍ତି ଆମର ବିବାହଟା ଥିଲା ପ୍ରେମ ବିବାହ । କିନ୍ତୁ ବାସ୍ତବରେ ଏହା ଏକ ପ୍ରସ୍ତାବିତ ବିବାହ । ଦୀନବନ୍ଧୁ ହିଁ କଲ୍ୟାଣୀ ଅପାଙ୍କ ମାଧ୍ୟମରେ ପ୍ରସ୍ତାବ ଦେଇଥିଲେ । ମୁଁ ଚିନ୍ତା କରିବାକୁ ସମୟ ନେଇଥିଲି ।

ଇସ୍ପାତ ନଗରୀ ରାଉରକେଲାରେ ମୋର ପ୍ରଥମ ପୋଷ୍ଟିଂ ହୁଏ ସରକାରୀ ମହାବିଦ୍ୟାଳୟରେ । ଷ୍ଟିଲ୍‌ସିଟି ମୋ ପାଇଁ ସମ୍ପୂର୍ଣ୍ଣ ଅଜଣା ଥିଲା । ବହୁ କୁଣ୍ଠିତ ଭାବ ନେଇ ମୁଁ ସେଠି ପହଞ୍ଚିଥିଲି । ଅଜଣା ସିଟି ଆସ୍ତେ ଆସ୍ତେ ମୋର ପରିଚିତ ହେଲା । ସେଠି ଦେଖିଥିଲି ଶହ ଶହ ଘରଚଟିଆଙ୍କୁ । ସନ୍ଧ୍ୟାହେଲେ ଅସଂଖ୍ୟ ଘରଚାଟିଆ ମୁଖ୍ୟ ରାସ୍ତାରେ ଯାଇଥିବା ଇଲେକ୍ଟ୍ରି ତାରରେ ଧାଡି ଧାଡି ହୋଇ ବସିଯାଆନ୍ତି । କେଉଁଠି ଦିନସାରା ଥାନ୍ତି କେଜାଣି ସଞ୍ଜ ହେଉ ହେଉ ଅଦିନିଆ ମେଘ ଭଳି ଓଜାଡି ହୋଇ ପଡନ୍ତି । ଗୋଟେ ପଟେ ପ୍ରାଚୁର୍ଯ୍ୟ, ଅନ୍ୟପଟେ ଦାରିଦ୍ର୍ୟ, ବିଳାସ, ଅର୍ଥର ଖେଳ ଚାଲିଲା ବେଳେ ଅନ୍ୟପଟେ ବସ୍ତି, ଭୋକିଲା ପେଟ, କୋଇଲା ଧୂଆଁ , ଡ୍ରେନ୍, ମଶାମାଛିର ସଂସାର, ଛୋଟ ଛୋଟ କୁଲି ବସ୍ତି ଲେଭଲ କ୍ରସିଂ ପାଖରେ, ଜରିର ପାଲଟଣା କୁଡିଆ, ନଙ୍ଗଳାଫୁଙ୍ଗୁଳା ସାନସାନ ପିଲା, ପାଣିକଳ ପାଖରେ ଲମ୍ୱା ଧାଡି ।

ହଷ୍ଟେଲ୍‌ରେ ରହୁଥିଲି । ମୋ ରୁମ୍‌ର ଝର୍କା ଖୋଲି ଦେଲେ ଆଖିରେ ପଡେ ନଣ୍ଡା ପାହାଡ । ତା' ତଳେ ଟ୍ରେନ୍ ଲାଇନ୍, ନୀଳାଚଳ, କୋଣାର୍କ, କରମଣ୍ଡଳ ଏମିତି ଏକ୍ସପ୍ରେସ୍ ସବୁ ଧାଉଥାନ୍ତି । ସେପଟୁ ଦିଶୁଥାଏ ଷ୍ଟିଲ୍ ପ୍ଲାଣ୍ଟର କଳାଧୂଆଁ । ଦିନେ ଖୁବ୍ ସକାଳୁ ମୋ ରୁମ୍‌ର କବାଟରେ ଠକ୍ ଠକ୍ ଶୁଭିଲା । ନିଦ ମଳ ମଳ ଆଖିରେ ବିଛଣାରୁ ଉଠିଲି । ଏତେ ସକାଳୁ କିଏ ଡାକୁଛି ? ବିରକ୍ତ ଲାଗିଲା । କବାଟ ଖୋଲିଦେଲା ମାତ୍ରେ ଆଶ୍ଚର୍ଯ୍ୟ ହେଲି । ଆମ ହଷ୍ଟେଲ୍‌ର Watch manର ଛୋଟ ଝିଅଟି ଗୋଲାପ ଫୁଲଟିଏ ଧରି ଠିଆ ହୋଇଥିଲା ।

କବାଟ ଖୋଲିଲା ମାତ୍ରେ ଗୁଲୁରୁ ଗୁଲୁରୁ ହେଇ କହିଲା ଦିଦି ! ଫୁଲ ।

ମୋର ବିରକ୍ତି ତୋଫା ହସରେ ବଦଳିଗଲା । ଖୁସିରେ ଫୁଲଟି ନେଇ ତା ପିଠି ଥାପୁଡେଇ ଦେଲି ଓ ଥ୍ୟାଙ୍କ୍ୟୁ କହିଲି । ଝିଅଟି ଫୁର୍‌କି ଯେମିତି ଡେଇଁ ଡେଇଁ ଉଡିଗଲା ତଳକୁ । ଆଃ ସକାଳ ପେର୍ ଜଣକର ଉପସ୍ଥିତିରେ ଏତେ ସୁନ୍ଦର ପାଲଟି ଯାଇପାରେ ? ତେବେ ଫୁଲଟିକୁ ଧରି ତାର ବାସ୍ନା ଗ୍ରହଣ କରୁ କରୁ ଭାବୁଥିଲି ଏତେ ଟିକି ଝିଅଟିର ଟିକି ହୃଦୟରେ ମୋ ପାଇଁ ଫୁଲଟିଏ ଦେବାର ଏତେ ବଡ଼ ଭଲପାଇବାଟା କେବେ ଜନ୍ମ ନେଲା ? ସେ ଟିକି ଝିଅଟି ମୋତେ କଲେଜ୍ ଗଲା ଆସିଲା ବେଳେ ଖାଲି ନିରେଖି ଥାଏ । ଅନାଇଦେଲେ ମୁଚ୍‌କି ମୁଚ୍‌କି ଲାଜେଇ ହସି ଧାଇଁ ପଳାଏ । ସେ ଝିଅଟି ଏତେ ସକାଳୁ ତାର କୁନି କୁନି ପାଦରେ ପାହାଚ ଚଢି ସକାଳୁ କେହି ନ ଉଠିବା ଆଗରୁ ଫୁଲଟିଏ ନେଇ ପେର୍ ମୋ କବାଟ ଠକ୍ ଠକ୍ କରିଛି । ତାର ଭଲ ପାଇବା ପାଖରେ ସେ ଦିନ ମୁଁ ମୁଣ୍ଡ ନଇଁ ଦେଇଥିଲି ।

ସେହିଭଳି ରାଉରକେଲାର ମୋ ରୁମ୍‌ର ସ୍କାଇଲାଇଟ୍ ପାଇଁ ରଖା ଯାଇଥିବା ସ୍ଥାନରେ ଦୁଇଟି ଘରଚଟିଆ ବସା ବାନ୍ଧିଥିଲେ । ଦିନସାରା ଛୋଟ ଛୋଟ ଶୁଖିଲା ଘାସ ଥଣ୍ଟରେ ଆଣି ଗଦା କରିବାରେ ଲାଗୁଥିଲେ । ଘର ଅସନା ହେଉଥିଲା ତଥାପି ସେମାନଙ୍କୁ ମୁଁ ବହୁ ସମୟ ଚାହିଁ ରହୁଥିଲି । ତାଙ୍କର ଘରତୋଳା, କିଚିରିମିଚିରି ଶବ୍ଦ, ଖୁମ୍ପାଖୁମ୍ପି ଏମିତି କେତେ କ'ଣ । ସେମାନେ ସ୍ୱାମୀ ସ୍ତ୍ରୀ ନା ପ୍ରେମିକ ପ୍ରେମିକା ? ସେ ବସାରେ ଯୋଡେ ଅଣ୍ଡା ଦିଶୁଥିଲା । ପୁଣି ଛୁଆ ବାହାରିଲା । ଥଣ୍ଟରେ ଗୋଟେ ଭାତ କି ପୋକ ଧରି ସେମାନେ ତାଙ୍କ ଶାବକମାନଙ୍କୁ ଆହାର ଦେଉଥିଲେ । ମଣିଷ ଭଳି ସବୁ ପ୍ରାଣୀଜଗତ, କୀଟ ପତଙ୍ଗ ଭିତରେ ଭରି ରହିଛି ଅପତ୍ୟ ସ୍ନେହ । ସମଗ୍ର ପୃଥିବୀର ଜୀବଜଗତ ଏମିତି ବାତ୍ସଲ୍ୟ ମାୟାରେ ବନ୍ଧା । ତାରି ଭିତରେ କହିଁକି କେଜାଣି କ୍ଷୁଦ୍ର ପ୍ରଶ୍ନଟେ ଉଠି ମିଳାଇ ଯାଇଥିଲା । ମୋ ଘର ତୋଳା କେବେ ହେବ ? ନା ଅସମାପ୍ତ ଇଚ୍ଛାଟା ହେଇ ରହିଯିବ ? ଦିନେ ଦିନେ ସନ୍ଧ୍ୟାପରେ ହଷ୍ଟେଲ୍ ଛାତ ଉପରକୁ ଉଠିଯାଇ ଆଖି ପାଇବା ଯାଏଁ ସହରକୁ ନିରେଖୁ ଥିଲି । ଷ୍ଟିଲ୍ ପ୍ଲାଣ୍ଟରେ ବ୍ଲାଷ୍ଟ ଫର୍ଣ୍ଣେସ୍‌ରୁ ମୋଟା ଧୂଆଁ ତରଙ୍ଗାୟିତ ହୋଇ ଉଠୁଥିଲା । ଟ୍ରେନ୍ ଯାଉଥିଲା ଆସୁଥିଲା । ଆଲୋକମାଳାରେ ସଜାଇ ହୋଇ ରହୁଥିଲା ରାଉରକେଲାର ଇସ୍ପାତ ନଗରୀ । ନିଜକୁ କେମିତି ଅଜଣା ଲାଗୁଥିଲା । ବାରିପଦା ଭଞ୍ଜପୁରର ସେହି ଛୋଟ ଗଳିର କବିତା ଆଉ ରାଉରକେଲାର ସରକାରୀ ମହାବିଦ୍ୟାଳୟର ଅଧ୍ୟାପିକା କବିତା ଯିଏ ଦୋ ମହଲା ହଷ୍ଟେଲ୍ ଉପରେ ଠିଆ ହୋଇ ଅର୍ଦ୍ଧଶାୟିତ ରାଉରକେଲାକୁ ନିରେଖୁଛି, ତା ଭିତରେ କେତେକ ପାର୍ଥକ୍ୟ । କେତେ ପ୍ରାଚୁର୍ଯ୍ୟ ଭିତରେ

ମଣିଷ ଏଠି ବଞ୍ଚିଛନ୍ତି । ଜୀବନରେ କେବେ ଅଭାବର ସାମ୍ନା କରିନାହାନ୍ତି । ଦାରିଦ୍ର୍ୟ କଣ ଦେଖିବାର ଅନେକଙ୍କ ଜୀବନରେ ସୁଯୋଗ ନାହିଁ । ଅନୁଭବ କରିବା ତ ଦୂରର କଥା । ଯେ ଯାହାର ମହଲ ଭିତରେ ବନ୍ଦୀ । ତେବେ ଜୀବନକୁ କେତେ ଟିକିଏ ମୁଁ ମୋ ଗଳିରେ ଦେଖିଥିଲି । ଆଞ୍ଜୁଳା ଭିତରେ ମାପିଥିଲି । ଜୀବନ ଯେ ଏଡେ ବ୍ୟାପ୍ତ, ହରଗଙ୍ଗୀ ରାଉରକେଲା ଆସିଲା ପରେ ହିଁ ଜାଣିଲି । ଏଇଠି ଲେଖିଥିଲି "ଦୁର୍ଗ" ଗଳ୍ପ ଯାହା ସୁଚରିତାର ପ୍ରକାଶ ପାଇଥିଲା ।

ଏମିତି ଏକ ଭାବପ୍ରବଣ, ଅଧା ସ୍ୱପ୍ନ, ଅଧା ବାସ୍ତବତାକୁ ନେଇ ଷ୍ଟିଲ୍-ସିଟିରେ ଜୀଉଁଥିବା ବେଳେ ଅଚାନକ ମୋ ଜୀବନରେ ଆସିଲେ ଦୀନବନ୍ଧୁ । ଆମେ ଉଭୟେ ସରକାରୀ ମହାବିଦ୍ୟାଳୟ ଓଡିଆ ବିଭାଗର ଥିଲୁ । ଦୁଇବର୍ଷ କଲେଜରେ ରହିବା ଭିତରେ ମୋ ମନରେ ଦୀନବନ୍ଧୁଙ୍କୁ ନେଇ କେବେ ବି କୌଣସି ସ୍ୱପ୍ନ ଉଠିନଥିଲା । ତେବେ ସେଠି ଥିବା ମନସ୍ତତ୍ତ୍ୱ ବିଭାଗର ଅଧ୍ୟାପିକା କଲ୍ୟାଣୀ ମିତ୍ରଙ୍କ ମାଧ୍ୟମରେ ହିଁ ଦୀନବନ୍ଧୁ ପ୍ରସ୍ତାବଟି ଦେଇଥିଲେ । କଲ୍ୟାଣୀ ଅପାଙ୍କ ଠାରୁ ଶୁଣି ମୁଁ ତ ପ୍ରଥମେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ତାପରେ ତାଙ୍କରି ମାଧ୍ୟମରେ ହଷ୍ଟେଲ୍‌କୁ ଡାକି ସିଧାସଳଖ କଥା ଆରମ୍ଭ ହୋଇଥିଲା । ତାଙ୍କ ପରିବାର, ଯାନିଯୌତୁକ, ରୁଚି ଏମିତି କେତେ କ'ଣ । ମୋ ପ୍ରତିଭାର ସେ କୁଆଡେ ଥିଲେ ଜଣେ ମୁଗ୍ଧ ଉପାସକ । ମୋର ପ୍ରତିଭା ହିଁ ତାଙ୍କ ପାଇଁ ସବୁଠାରୁ ବଡ଼ ଯୌତୁକ । ପିନ୍ଧା ଶାଢୀଟିଏ ଛଡା ଆଉ କିଛି ଘରୁ ନଆଣିବାକୁ ସେ ଚାହାନ୍ତି । ପୁଣି ଯେହେତୁ ଆମେ ଦୁହେଁ ସାରା ସରକାରୀ ଚାକିରିଆ ଭବିଷ୍ୟତରେ ବାପାଟିଏ ଝିଅକୁ ଯୌତୁକ ଆକାରରେ ଯାହା ଯାହା ଦେଇପାରନ୍ତି ସେ ସବୁ ଆମେ କିଣି ପାରିବୁ । ମୋର ଲେଖାଲେଖି ପାଇଁ ସ୍କୋପ୍ ଦେବା ସହ ପ୍ରେସ୍ କାମ ବୁଝିବା, ସଭା ସମିତିକୁ ନେଇଯିବା ସବୁକିଛି ସେ କରିବେ । ମୋ ଭଳି ଲେଖିକା ଅଧ୍ୟାପିକାଙ୍କୁ ସ୍ତ୍ରୀ ହିସାବରେ ପାଇବାଟା ହେବ ତାଙ୍କର ପରମ ସୌଭାଗ୍ୟ । ମୋ ବାପାଙ୍କୁ ବିବାହ ପାଇଁ ସେ ଆଦୌ ଖର୍ଚ୍ଚାନ୍ତ କରିବାକୁ ଚାହାନ୍ତି ନାହିଁ । ମନ୍ଦିରରେ ଫୁଲମାଳ ବଦଳ କରି ବିବାହ କରିବାଟା କହିଲେ ବି ରାଜି । ଆନୁଷ୍ଠାନିକ ବେଦୀ ବିବାହ ହେଉ କି ରେଜେଷ୍ଟ୍ରି ଯାହା ମୁଁ କହିବି ତାହା ହିଁ ହେବ ।

ଏଥିପାଇଁ ଆପଣଙ୍କ ଘରେ କେହି ଆପତ୍ତି ଉଠାଇବେନି ?

ମୋ ପସନ୍ଦ, ମୋର ନିଷ୍ପତ୍ତି ବିରୋଧରେ କେହି କିଛି କହିବେ ନାହିଁ । ସେ ଦିଗରୁ କୌଣସି ବାଧା, ବିଘ୍ନ, ଆଶଙ୍କା ନାହିଁ ।

ଜୀବନ ସବୁବେଳେ ମୋ ପାଖରେ ଅଦ୍‌ଭୁତ, ବିଚିତ୍ର ହୋଇ ହିଁ ଠିଆ ହୋଇଛି ।

ଜୀବନର ଗତି, ପରିବର୍ତ୍ତନ ଅନେକ ସମୟରେ ମୋତେ ଆଶ୍ଚର୍ଯ୍ୟ କରିଛି । ତା'ର ଅପୂର୍ବ ଠାଣି କେବେ କେବେ ମୁଗ୍ଧ କରିଛି ତ କେବେ ତା'ର ଚ୍ୟାଲେଞ୍ଜକୁ ମୁଁ ହସି ହସି ଗ୍ରହଣ କରିଛି । ଜୀବନକୁ ନେଇ ମୋର ତନାଘନା ବା ଅନ୍ୱେଷାର ଶେଷ ନାହିଁ। ମୋର ବାହାଘର ବି ଥିଲା ବୋଧହୁଏ ଏମିତି ଏକ ଚ୍ୟାଲେଞ୍ଜ, ଜୀବନର ବାଙ୍କ ମୋଡିବାର ଏକ ଘଡିସନ୍ଧି ମୁହୂର୍ତ୍ତ ।

ଅବଶ୍ୟ ମୁଁ ବେଳେ ବେଳେ ଚିନ୍ତା କରୁଥିଲି ମୋ ଜୀବନରେ କ'ଣ ସକାଳଟିଏ ଆସିବନି ? ଏମିତି ଏକା ଏକା ଜୀବନର ଟ୍ରେନ୍‌ରେ ବସି ମୋତେ ରାସ୍ତା ପାରି ହେବାକୁ ପଡିବ ? ମୋର ବୟସ, ଶିକ୍ଷାଗତ ଯୋଗ୍ୟତା, ଚାକିରୀ, ଶ୍ୟାମଳ ରଙ୍ଗ ସହ ପ୍ରତିଭା ଏ ସବୁକୁ ନେଇ ଯୋଗ୍ୟପାତ୍ର ମିଳିବା ସହଜ ନଥିଲା । ପୁଣି ପ୍ରତିଭା ଅପେକ୍ଷା ଆଜିକାଲି ଯୌତୁକ ବଜାରରେ ଖୋଲା କାରବାର । ବାପାଙ୍କର ସାମର୍ଥ୍ୟ କାହିଁ ତାକୁ ସାମ୍ନା କରିବାକୁ ? ପୁଣି ଅଛି ଘରର ଦାୟିତ୍ୱ । କିଏ କାହିଁକି ଚାହିଁବ ମୁଁ ବାହାଘର ପରେ ବାପା, ଭାଇଭଉଣୀଙ୍କ ଦାୟିତ୍ୱ ତୁଲାଏ । ଏହିଭଳି ଏକ ଘଡିସନ୍ଧି ମୁହୂର୍ତ୍ତରେ ଦୀନବନ୍ଧୁଙ୍କ ବିବାହ ପ୍ରସ୍ତାବ ଯେମିତି ଆକସ୍ମିକ ସେମିତି ମୋ ପାଇଁ ଆଶ୍ଚର୍ଯ୍ୟଜନକ ଥିଲା । ମନେ ହେଲା ଅଯାଚିତ ଭାବେ ସତେକି ସେହି ବହୁ ପ୍ରତୀକ୍ଷିତ ଈପ୍‌ସିତ ସକାଳଟି ପହଞ୍ଚି ମୋତେ ହାତ ଠାରି ଡାକୁଛି । ଏଭଳି ଆଦର୍ଶ ଯୁବକ ବି ଏ ଯୁଗରେ ଅଛନ୍ତି ? ମୁଁ ଯାହା ଯେମିତି ଚାହିଁଥିଲି ସତେକି ଭଗବାନ୍ ଆପେ ଆପେ ଆଣି ପହଞ୍ଚାଇ ଦେଲେ । ସ୍ଥିର ହେଲା ଦୀନବନ୍ଧୁ ନିଜେ ଯାଇ ବାପାଙ୍କୁ ଭେଟିବେ । ତାଙ୍କ ଘରୁ ତାପରେ ପ୍ରସ୍ତାବ ଆସିବ । ଆମ ଘରୁ ଯାଇ ତାଙ୍କ ଘର ଲୋକଙ୍କୁ ବି ଭେଟିବେ । ସେ ଯାହାହେଉ ଶେଷରେ ବେଦୀରେ ବସି ଦୀନବନ୍ଧୁଙ୍କ ସହ ମୋର ବାହାଘର ହୋଇଗଲା ବ୍ରାହ୍ମଣଙ୍କ ଯଥା ରାବଣସ୍ୟ ମନ୍ଦୋଦରୀ, ରାମସ୍ୟ ସୀତାର ମନ୍ତ୍ର ଉଚ୍ଚାରଣ ଭିତରେ । କେମିତି ଅଚାନକ ଏସବୁ ଘଟିଗଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ୧୯୯୨ ମସିହା ଜୁନ୍ ୨୮ରେ ଆମେ ଆମର ତେଲ ଲୁଣର ସଂସାର ପାଇଁ ବୈଦିକ ରୀତିରେ ସ୍ୱାମୀ ସ୍ତ୍ରୀ ପାଲଟିଗଲୁ । ଦୀନବନ୍ଧୁଙ୍କ ଆପତ୍ତି ସତ୍ତ୍ୱେ ଆଟେଚି ଭର୍ତ୍ତି ଶାଢୀ, ଉଖୁଡା ମିଠେଇର କେତୋଟି କାର୍ଟୁନ୍ ଓ ନଣନ୍ଦପେଡି ଛଡା ଆଉ କିଛି ନେଇନଥିଲି । ଆମକୁ ଖର୍ଚ୍ଚାନ୍ତ ନ କରିବା ପାଇଁ କେବଳ ଆଠଜଣ ପାଖାପାଖି ବରଯାତ୍ରୀ ଆସିଥିଲେ । ଲାଇଟ୍, ମାଇକ୍ ପ୍ରସେସନ୍‌କୁ ସେ ବିରୋଧ କରିଥିଲେ । ବାପା ଯେମିତି ଅଯଥା ଖର୍ଚ୍ଚାନ୍ତ ନ ହୁଅନ୍ତୁ, ଧାର କରଜ୍ ନକରନ୍ତୁ ସେଥିପ୍ରତି ମଧ୍ୟ ତାଙ୍କର ଧ୍ୟାନ ଥିଲା ।

ବହୁ ଶୀଘ୍ର ଏଭଳି ଏକ ସୋପାନରେ ପହଞ୍ଚି ଯାଇଥିବାରୁ ମୋର ସମସ୍ତ ଶୁଭେଚ୍ଛୁ,

ପାଠକ, ସମ୍ପାଦକ, ଲେଖକମାନଙ୍କୁ ଜଣାଇ ପାରିନଥିଲି । ତେବେ ଯେଉଁମାନେ ଜାଣିଥିଲେ ସେମାନଙ୍କର କେତୋଟା ଚିଠିର କିୟଦାଂଶ ଉଲ୍ଲେଖ ନକରି ରହି ପାରୁନାହିଁ । ଆପଣାର ଭାବୁଥିବା ମଣିଷମାନେ ହିଁ ଏତେ ଆପଣାର ଚିଠି ଲେଖନ୍ତି, ପଦ୍ମଶ୍ରୀ ଡକ୍ଟର ସଚ୍ଚିଦାନନ୍ଦ ରାଉତରାୟ ଓ ଗାଳ୍ପିକ ରାଜକିଶୋର ରାୟ, ଡକ୍ଟର ସଂଘମିତ୍ରା ମିଶ୍ର ମୋର ବୈବାହିକ ଜୀବନ ପାଇଁ ଶୁଭେଚ୍ଛା, ଆଶୀର୍ବାଦ ଜଣାଇଥିଲେ । ବାଣୀବିହାରର ତତ୍‌କାଳୀନ ଦର୍ଶନ ବିଭାଗର ପ୍ରାଧାପିକା ଡକ୍ଟର ତନ୍ଦ୍ରା ପଟ୍ଟନାୟକ ଯାହାଙ୍କ ତତ୍ତ୍ୱାଧାନରେ ମୁଁ ନୀଳକଣ୍ଠ ଦାସ ଫେଲୋସିପ୍ ପାଇ ନୀଳକଣ୍ଠଙ୍କ ଗୀତାକୁ ନେଇ ଗବେଷଣାତ୍ମକ ସନ୍ଦର୍ଭ ଲେଖିଥିଲି ସେ ସୁନ୍ଦର ଚିଠିଟିଏ ଲେଖିଥିଲେ ।

"କବିତା ! ତୁମ ବାହାଘର ଠିକ୍ ହେବାର କୌଣସି ସୂଚନା ଆଗରୁ ପାଇନଥିବାରୁ ଆନନ୍ଦଟା ଯେମିତି ଆହୁରି ମଧୁର ଲାଗିଲା । ତୁମେ ମୋତେ କେବେ ନ କହିଲେ ମଧ ଜାଣିଛି ଜୀବନରେ ତୁମେ ବହୁତ ସଂଗ୍ରାମ କରିଛ । ସେଥିପାଇଁ ତମ ବ୍ୟକ୍ତିତ୍ୱରେ ରହିଛି ବିଜୟୀର ଛାପ । ମୁଁ ଜାଣେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ତୁମେ ସାଫଲ୍ୟ ପାଇବ × × × ଗାଳ୍ପିକା ହିସାବରେ, ଗବେଷକ ହିସାବରେ ଯେପରି ସାର୍ଥକତା ପାଇଛ, ସ୍ତ୍ରୀ ହିସାବରେ ମଧ ତାଠାରୁ ବେଶି ସାର୍ଥକ ହୁଅ । ତୁମେ ଦୁହେଁ ମୋର ଅଶେଷ ସ୍ନେହ ଓ ଶୁଭେଚ୍ଛା ଜାଣିବ ।

ଇତି

ତନ୍ଦ୍ରା ପଟ୍ଟନାୟକ"

ସେତେବେଳେ କଟକରୁ ପ୍ରକାଶ ପାଉଥିବା "ଅକ୍ଷପାଦ" ପତ୍ରିକାର ସମ୍ପାଦକ ଶ୍ରୀ ପ୍ରଫୁଲ୍ଲ କୁମାର ଦାସ (ସବ୍ୟସାଚୀ) ଲେଖିଥିଲେ, "ତୁମ ଦୁହିଁଙ୍କର ସୁଖୀ ଜୀବନ କାମନା କରୁଛୁ । × × × ଆଶାକରେ ଏଣିକି ଗଳ୍ପର ସ୍ରୋତରେ ନୂଆ ମୋଡ ସୃଷ୍ଟି ହେବ । × × × କହିବା ବାହୁଲ୍ୟ ମଣିଷ ବନ୍ଧନକୁ ଗ୍ରହଣ କରିବା ପରେ ପରିବାର ତା ପାଇଁ ମୁଖ୍ୟ ହୋଇଥାଏ । ତେଣୁ ପ୍ରଥମେ ପରିବାର, ତାପରେ ବୃତ୍ତି ଏବଂ ଶେଷରେ ହବି । × × × ତୁମ ଗଳ୍ପରେ ଜୀବନ ଅଛି । ଜୀବନର ମୂଲ୍ୟବୋଧ ଭରି ରହିଛି । ମୁଁ ତୁମ ଗଳ୍ପକୁ ବହୁତ ପସନ୍ଦ କରେ ମୋର ପାଠକୀୟ ଅଭିରୁଚିରେ । ତେଣୁ ତୁମ ଗଳ୍ପ ପରି ତୁମ ନୂଆ ଜୀବନରେ ଜୀବନ ରହୁ, ଜୀବନରେ ମୂଲ୍ୟବୋଧ ମଧ ଭରି ରହୁ । ସର୍ବୋପରି ତାହା ଅନ୍ୟମାନଙ୍କର ବେଶ୍ ପସନ୍ଦ ଯୋଗ୍ୟ ହୋଇ ଉତ୍ତମ ରଚିତ ବାର୍ତ୍ତା ପ୍ରେରିତ କରୁ ।। ଇତି ।।

ଶୁଭାନୁଧାୟୀ ଶ୍ରୀ ପ୍ରଫୁଲ୍ଲ କୁମାର ଦାସ ।"

ଦୀନବନ୍ଧୁ ଥିଲେ ଜାତି, ଜାତକ ଏବଂ ଯୌତୁକର ଘୋର ବିରୋଧୀ । ଟଙ୍କା, ସୁନା, ଆସବାବ ପ୍ରତି ତାଙ୍କର କେବେ ଲୋଭ ନଥିଲା । ମୋ ଶାଶୁଘରେ ବି ସମସ୍ତେ କେବେ ଯାନି ଯୌତୁକ ଚାହିଁ ନାହାନ୍ତି । ବରଂଚ ଚାକିରିଆ ବୋହୂ ବୋଲି ବେଶ୍ ସମ୍ମାନ, ଆଦର ପାଇଛି । ଶ୍ୱଶୁର ଅନେକ ବର୍ଷରୁ ଚାଲିଯାଇଥିଲେ । ଶାଶୁ ତ ମୋର ଥିଲେ ମା ଠାରୁ ବି ଅଧିକ । ବୋହୂ କଣ ଆଣିଛି ବୋଲି ସାଇ ପଡିଶା ପଚାରିଲେ ସେ କହୁଥିଲେ ଦୀନା ତ (ଦୀନବନ୍ଧୁଙ୍କ ଘରେ ଏଇ ନାଁରେ ଡାକନ୍ତି) କିଛି ଆଣିବନି ତାଗିଦ୍ କରିଛି । ତା ଉପରେ କେମିତି କ'ଣ ଦେବେ । ଜିନିଷ ଆମର କ'ଣ ହେବ ? ବୋହୂ ତ ଚାକିରିଆ । ଇଚ୍ଛାକଲେ ସବୁ କରିନେବେ । ଦୀନା ତ ଆଜି ଯାଏଁ ବାହା ହେଉନଥିଲା । କେଉଁଠି ତାର ପସନ୍ଦ ହେଉନଥିଲା । ସେ ଯେ ବାହା ହୋଇ ବୋହୂ ଆଣିଛି ସେତିକି ମୋ ପାଇଁ ବଡ଼କଥା ।

ପ୍ରଥମଥର ପାଇଁ ଡଙ୍ଗାରେ ବସିଲି ଶାଶୁଘର ଯିବା ପାଇଁ । ବାଲେଶ୍ୱର ମହାପଦା ଗାଁ । ଏବେ ଅବଶ୍ୟ ପୋଲ ହୋଇଗଲାଣି । ସେତେବେଳେ ସେ ସବୁ ନଥିଲା । ଡଙ୍ଗାରେ ଚଢ଼ିଲାବେଳେ ଖୁବ୍ ଡର ମାଡୁଥିଲା । ସିଧା ରାସ୍ତା ନଥିବାରୁ ଖଣ୍ଡେବାଟ ବିଲ ହୁଡାରେ ଚପଲ କାଢି ଖାଲି ପାଦରେ ଚାଲିବାକୁ ପଡୁଥିଲା । ଆଖପାଖ ଗାଁରୁ ଲୋକେ ଉଠି ଆସିଥିଲେ ଦୀନାବୋହୂକୁ ଦେଖିବା ପାଇଁ । ଶାଶୁଘର ଯୌଥ ପରିବାର । ଦୀନବନ୍ଧୁ ମୁକ୍ତ ହାତରେ ତାଙ୍କ ଭାଇମାନଙ୍କୁ ଟଙ୍କା ଦିଅନ୍ତି, ସମସ୍ତଙ୍କ କଥା ବୁଝନ୍ତି । ଜି.ପି.ଏଫ୍ ଉଠାଇ ନଣନ୍ଦ, ଦିଅରଙ୍କ ବାହାଘର, ପଢା କାମ ହେଇଛି । ସେଥିରେ ମୁଁ କେବେ ବାଧା ଦେଇନି କି ମୁଣ୍ଡ ଖେଳାଇନି । କାହିଁକିନା ମୋ ବାପା କେବେ ମୋତେ ଘର ଭାଙ୍ଗିବାର ଶିକ୍ଷା ଦେଇ ନାହାନ୍ତି । ମୁଁ ଯେ ରବୀନ୍ଦ୍ର ବାରିକଙ୍କ ଝିଅ ! ତାଙ୍କ ନାଁ ପକାଇବି କେମିତି ? ତାଙ୍କ ଆତ୍ମାକୁ କଷ୍ଟ ଦେବି କେମିତି ?

ଶାଶୁଘରେ କିଛିଦିନ ରହିଲା ପରେ ରାଉରକେଲା ଫେରି ଆସିଲି ଦୀନବନ୍ଧୁଙ୍କ କ୍ୱାର୍ଟରକୁ । ଅଳ୍ପ କେତୋଟି ବାସନ, କଳାଧଳା ଟି.ଭି. ଆଉ ଡବଲ ଖଟଟେ ଥିଲା ତାଙ୍କର । ଯିବା ପାଇଁ ସ୍କୁଟରଟେ । ସେତିକିରେ ଆମର ଘର ସଂସାର ଆରମ୍ଭ ହୋଇଥିଲା । ଆସ୍ତେ ଆସ୍ତେ ଘରକରଣା ଜିନିଷ ସୁବିଧା ଦେଖି ଗୋଟିଏ ପରେ ଗୋଟିଏ କିଣା ହୋଇଥିଲା । ଏହିଭଳି ଭାବରେ ଆମେ ଦୁହେଁ ଆମ ନୂଆ ସଂସାରକୁ ସଜାଇଥିଲୁ ।

ଆଜି ଭଳି ସେତେବେଳେ ୟୁଜିସି ମିଳୁନଥିଲା । ସ୍ୱଳ୍ପ ଦରମାରେ ଆମେ ଦୁହେଁ ପରସ୍ପର ଘରକୁ ଟଙ୍କା ଦେଉଥିଲୁ । ଆମ ପାଖରେ ପ୍ରଚୁର ଅର୍ଥ ନଥିଲା, ଥିଲା ସୁନ୍ଦର ଭଲ ପାଇବା ଯୋଡେ ମନ । ସେ ମନ ଭିତରେ ସନ୍ଦେହ, ଈର୍ଷା, ଦ୍ୱେଷ ନଥିଲା । ମନେ

ହେଉଥିଲା ପବନ ବି ପ୍ରେମର ଗୀତ ଶୁଣାଉଥିଲା । ଦୀନବନ୍ଧୁଙ୍କ ସ୍କୁଟର ପଛରେ ବସି କଲେଜ୍ ଯିବା ଆସିବା କଲାବେଳେ କିମ୍ବା ମାର୍କେଟିଂ କରିଗଲାବେଳେ ଲାଗୁଥିଲା ସତେକି କେଉଁ ଅଭିଶପ୍ତ ରାଜକୁମାରୀ ବୁଢ଼ୀ ଅସୁରୁଣୀ ଗୁମ୍ଫା ଭିତରୁ ଉଦ୍ଧାର ପାଇ ପକ୍ଷୀରାଜ ଘୋଡାରେ ରାଜକୁମାର ଦ୍ୱାରା ମୁକୁଳି ଉଡି ଯାଉଛି । ଯେଉଁ ଜୀବନ ମୋ ପାଇଁ ଧୂସର, ପତ୍ରଝଡା, ବିଷର୍ଣ୍ଣ, ଉଦାସ ଥିଲା, ଦୀନୁଙ୍କ ପରଶରେ ସତେକି ତାହା ସବୁଜ, ପତ୍ରହରା, ସୁନ୍ଦର, ସ୍ନିଗ୍ଧ ପାଲଟିଗଲା । ଆମେ ପରସ୍ପର ପାଖରେ ଥିଲୁ ଦୁଇଟି ଖୋଲା ଫର୍ଦ୍ଦ । ସେ ତାଙ୍କ ଅତୀତକୁ ଓ ମୁଁ ମୋ ଅତୀତକୁ ଖୋଲା ଖୋଲି ଭାବରେ ମେଲାଇ ଧରିଥିଲୁ । ତାଙ୍କର ମତ ଥିଲା ଆଉ ଅତୀତ ନୁହେଁ ବର୍ତ୍ତମାନ ଠୁ ହିଁ ଆମ ଜୀବନର ଆରମ୍ଭ । ଅତୀତରେ ଯେହେତୁ କେହି କାହା ଜୀବନରେ ନଥିଲୁ ସେଥିପାଇଁ ସେ ଅତୀତ ଆମ ପାଇଁ ଅଲୋଡା । ବେଳେବେଳେ ବେଲୁନ୍ ଭଳି ଅତୀତରେ କିଛି ପୃଷ୍ଠା ଆମେ ଉଡାଇ ଦେଉ । କେବେ ଯଦି ଅତୀତରେ କୌଣସି ଦୁଃଖଦ ସ୍ମୃତିକୁ ମନେ ପକାଇଲା ବେଳେ ଆଖିରେ ବର୍ଷା ଆସେ ଓ ବାଧା ମାନେନାହିଁ ସେ କହନ୍ତି ଯେଉଁ ଅତୀତ କଷ୍ଟ ଦିଏ ତାକୁ ଫିଙ୍ଗି ଦେଉନା କାହିଁକି ?

ଦୀନବନ୍ଧୁ ବି ମୋ ଭଳି ସଂଗ୍ରାମ କରି ପାଠ ପଢିଛନ୍ତି । ଆଖ ପାଖ ଗାଁର ସେ ପ୍ରଥମ ଗ୍ରାଜୁଏଟ୍ । ନଈ ପହଁରି, ଡଙ୍ଗାରେ ବସି ଯାଇଛନ୍ତି ପଢିବାକୁ । ବାପା ଧାନ ବିକି, ଗଛ ବିକି ବିଶ୍ୱବିଦ୍ୟାଳୟରେ ପଢାଇଛନ୍ତି । ଏମ୍.ଏ. ଏମ୍.ଫିଲ., ବି.ଇଡି., ଏମ୍.ଡି. ପରେ ପିଏଚ୍ ଡି କରି ସରକାରୀ କଲେଜ୍‌ରେ ଯୁଜିସିର ଅଧ୍ୟାପକ ହୋଇଛନ୍ତି । ଗାଁ ପିଲାଟେ ନିଜ ଗୋଡରେ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଠିଆ ହେବା, ବଡ଼ ହେବା, କିଛି କମ୍ କଥା ନୁହେଁ । ତେଣୁ ରବୀନ୍ଦ୍ର ଠାକୁରଙ୍କ ‘ଦୁଃଖେର ଯାଦେର୍ ଜୀବନଗଡା, ତାଦେର୍ ଅବାର୍ ଦୁଃଖ କି’ କହି ଆମେ ହସିଉଠୁ । କେବେ ହସୁ ହସୁ ଆଖିରେ ପାଣି ଆସିଯାଏ ।

ଦିନେ ଇସ୍ପାତ୍ ନଗରୀ ରାଉରକେଲାକୁ ଆସିବାକୁ ଅମଙ୍ଗ ହେଉଥିଲି । ଏଠି ଜୟେନ୍ ନକରି ଆଉ କେଉଁ ପାଖାପାଖି ହେଇ ପାରିବ କି ବୋଲି ବୁଝାବୁଝି କରୁଥିଲି । ମୁଁ କ’ଣ ଜାଣିଥିଲି ଏଇ ରାଉରକେଲାରେ ଜଣେ କିଏ ମୋ ଲାଗି ଶଙ୍ଖା, ସିନ୍ଦୂର ନେଇ ଅପେକ୍ଷା କରିଛି ବୋଲି । ଭଗବାନ ଆପେ ଆପେ ଆଣି ମୋତେ ବିଳମ୍ବରେ ହେଲେ ବି ତାଙ୍କ ପାଖରେ ପହଞ୍ଚାଇ ଦେଲେ । ସେହି ମୁହୂର୍ତ୍ତରେ ମୁଁ ଅନୁଭବ କଲି ମୁଁ କେବଳ ଜଣେ ନାରୀ । ସ୍ୱନାମଧନ୍ୟା ଗାଳ୍ପିକା ନୁହେଁ କି ସରକାରୀ କଲେଜର ଅଧ୍ୟାପିକା ନୁହେଁ । କେବଳ ସାଧାରଣ ରକ୍ତମାଂସର ନାରୀ । ଯେଉଁ ନାରୀଟି ସୁଖ ଖୋଜେ, ସ୍ୱପ୍ନ ଭିତରେ ବଞ୍ଚେ, ମା ହେବାର ବ୍ୟାକୁଳତାରେ ବିଭୋର ହୋଇ ଉଠେ । ସେତିକିବେଳେ ଅମୃତା

ପ୍ରୀତମ୍‌ଙ୍କ ଆତ୍ମଜୀବନୀ "ରେଭିନ୍ୟୁ ଟିକଟ"ର କେତୋଟି ଧାଡି ମନେପଡେ। ସେ ବି ମୋ ଭଳି ଚିନ୍ତା କରି ଲେଖିଥିଲେ, "ଯେତେବେଳେ ନିଦ ଭାଙ୍ଗିଯାଉଥିଲା ମୁଁ ଯେମିତିକି ସେମିତି ଥିଲି। ଶୂନ୍ୟ, ଏକାକୀ ଏବଂ ଦୁଃଖୀ। କେବଳ ଏକ ନାରୀ ଯିଏ ମା'ନହୋଇ ପାରିଲେ ବଞ୍ଚିବାକୁ ଚାହୁଁନଥିଲା। ଦ୍ୱିତୀୟ ଥର ଦିନେ ସାହିର୍ ଟିକିଏ ଜ୍ୱର ନେଇ ଆସିଲାବେଳେ ପୁଣି ତାଙ୍କୁ ଦେଖିଲି। ସାହିରଙ୍କ ଗଳାରେ ଦରଦ ଥିଲା। ସେଦିନ ମୁଁ ତାଙ୍କ ଗଳା ଓ ଛାତିରେ ଭିକ୍‌ସ ମାଲିସ୍ କରିଥିଲି। ସେତେବେଳେ ମୋତେ ଲାଗୁଥିଲା ଏହିଭଳି ଠିଆହୋଇ ଆସ୍ତେ ଆସ୍ତେ ତାଙ୍କ ଛାତି ମାଲିସ୍ କରି ମୁଁ ସାରା ଜୀବନ କଟାଇ ଦେଇ ପାରିବି। ମୋ ଭିତରେ କେବଳ ନାରୀଟିର ସେତେବେଳେ କୌଣସି କାଗଜ କଲମର ଆବଶ୍ୟକତା ନଥିଲା।"

ଏବଂ ତୃତୀୟ ଥର ମୁଁ ସେହି କେବଳ ନାରୀକୁ ଦେଖିଥିଲି ଯେତେବେଳେ ଇମ୍‌ରୋଜ୍ ଷ୍ଟୁଡିଓରେ ବସିଥିଲେ। ସିଏ ତାଙ୍କର ପତଳା ବ୍ରସ୍‌କୁ କାଗଜ ଉପରୁ ଉଠାଇ ନାଲି ରଙ୍ଗରେ ବୁଡାଇ ଦେଲେ। ତାକୁ ହିଁ ଆଣି ମୋ ମଥାରେ ବିନ୍ଦି ଲଗାଇଦେଲେ। ମୋ ଭିତରେ ଏଇ "କେବଳ ନାରୀ" ସହିତ "କେବଳ ଲେଖକ"ର କିଛି ସଂଘର୍ଷ ନାହିଁ। ଆଉ ଏଇ ତିନିଥର ସେ ଯେତେବେଳେ ନିଜ ଜାଗାକୁ ଆସିବାକୁ ଚାହୁଁଥିଲା, ମୋ ଭିତରର କେବଳ ଲେଖକ ପଛକୁ ହଟିଯାଇ ତା ପାଇଁ ଜାଗା ଖାଲି କରିଦେଇଥିଲା।"

ସତରେ କେତେ ଅଦ୍ଭୁତ ସାମଞ୍ଜସ୍ୟ ଅମୃତାଙ୍କ ନାରୀତ୍ୱ ସହିତ ମୋ ନାରୀତ୍ୱର ! ପ୍ରତ୍ୟେକ ଲେଖିକା ବା ଯେକୌଣସି ପ୍ରତିଷ୍ଠିତା ମହିଳାଙ୍କ ଭିତରେ ଏଇ 'ନାରୀ" ଟି ହିଁ ଶୋଇ ରହିଛି। ଏଇ ନାରୀକୁ ବି ସବୁବେଳେ ଅଣ୍ଡାଳିଲେ ମିଳେ ନହିଁ। ବିଶେଷ ମୁହୂର୍ତ୍ତରେ ସେ ସାକାର ହୁଏ ଆଉ ସେ ତାର ମର୍ଯ୍ୟାଦା, ସ୍ଥାନ ଖୋଜେ। ସେତେବେଳେ ପ୍ରତିଷ୍ଠା, ସମ୍ମାନ, ପ୍ରତିଭା ସବୁ ତା ପାଖରେ ମୁଣ୍ଡ ନଇଁ ଦିଅନ୍ତି। ନାରୀଟିଏ ନିଜ ଭିତରୁ ନାରୀକୁ ପାଇବା ବି କିଛି କମ୍ କଥା ନୁହେଁ। ସେତେବେଳେ ସତେକି ଦୁନିଆର ସବୁ ଅମୂଲ୍ୟ ରତ୍ନ ତା ପାଖରେ ଗୌଣ ହୋଇଯାଏ। ଆକର୍ଷଣ ହରାଏ। ଯେଉଁ ନାରୀକି Bascically an existent who gives life and does not risk her life.

ହଁ ଦୀନବନ୍ଧୁ ମୋ ଲେଖିକାର ସତ୍ତା ଭିତରୁ ସେହି ହଜାଇ ଦେଇଥିବା ନାରୀତ୍ୱକୁ ହିଁ ଜଗାଇ ଦେଇଥିଲେ। ସେଦିନ ମନେ ହୋଇଥିଲା ମୁଁ ତ ମଞ୍ଜିଲ୍ ପାଇ ଯାଇଛି ମୋର ଆଉ ଚିନ୍ତା କ'ଣ? ମୁଁ ତ ସ୍ୱପ୍ନକୁ ଛୁଇଁ ପାରିଛି। ଆପଣାଇ ନେଇଛି। ମୋର ଆଉ ବ୍ୟଥା କଣ? ମୁଁ ତ ଖୋଜୁଥିବା ସାଥୀ ପାଇଯାଇଛି ମୋର ଆଉ ଏକାକୀତ୍ୱ କଣ?

ଯେଉଁ ଝିଅଟି ଦିନେ ଭାବୁଥିଲା ସେ କେବଳ ନିଜ ନିଜର ଭିତ, ସଂସାରର ନିଜ କୋଳାହଳ, ଆଜି ସେହି ଝିଅଟି ପାଖରେ ଗୋଟାଏ ପୁରୁଷରୂପୀ ଘରଚଟିଆ ଆସି ବସିଛି । ସେଠି ନୀଡ ରଚନା ହେଲା । ସେଇ ବସାଘରକୁ ପୁଣି ଆସିଲା ଏକ ନୂଆ ଅତିଥି । ମୋର କୁନ୍‌ମୁନ୍ ନଟ୍‌ଖଟ୍ ପୁଅ ଲିପୁନ୍ । ଆମେ ତା'ର ଭଲ ନାଁ ରଖିଲୁ ମୋହିତ କୁମାର୍ । ଜାତି ଯୌତୁକରେ ଦୁହେଁ ବିଶ୍ୱାସ କରୁନଥିବା ଆମେ ଉଭୟେ ସହମତ ହୋଇ ତା'ର ସାଙ୍ଗିଆ ରଖିଲୁ ନାହିଁ । ସେ କେବଳ ମୋହିତ କୁମାର । ପ୍ରକୃତିଟା ବି ତା'ର ମୁଗ୍ଧ, ବିଭୋର କରିଦେବା, ଅନ୍ୟକୁ ସାଙ୍ଗେ ସାଙ୍ଗେ ଆପଣାଇ ନେବା ।

ଆମ ଟିକି ସଂସାର ଭିତରେ କେତେ କେତେ ସାନବଡ଼ ଝଡ ଉଠିଛି । ପୁଣି ସମୁଦ୍ର ଲହଡି ଭାଙ୍ଗିଲା ଭଳି ସେ ସବୁ ପାରି ହୋଇ ଯାଇଛି । ବେଳେବେଳେ ଭୁଲ୍ ବୁଝାମଣା, ରାଗରୁଷା ବି ସ୍ଥାନ ପାଇଛି । ଟିକିଏ ଟିକିଏ କଥାରେ ଭାଙ୍ଗି ପଡିବା, ଅଭିମାନ କରିବା ମୋର ଏକ ଖରାପ ଗୁଣ । ମୁଁ ଜଣେ ଅତ୍ୟନ୍ତ ସ୍ୱାଭିମାନୀ, କ୍ଷଣକୋପୀ, ଭାବପ୍ରବଣା ନାରୀ । ସେଥିପାଇଁ ତ ସିରିୟସ୍ ହୋଇ ଚିନ୍ତା କରେ । ସେଥିପାଇଁ ଭାବେ ମୋତେ କ'ଣ ସବୁଦିନେ ବଞ୍ଚିବାର ରାସ୍ତା ପାଇଁ ବାହାନା ଖୋଜିବାକୁ ପଡୁଥିବ ? ଏଭଳି ଜୀବନ ଯାତ୍ରାର କଣ ପୂର୍ଣ୍ଣଚ୍ଛେଦ ନାହିଁ ?

ଯେତେ ନୂତନ ତୀର୍ଥ ବାଛିଲେ ବି ମୋ ଲାଗି ସେଇ ଏକ ପ୍ରକାର ଯନ୍ତ୍ରଣା, କେମିତି ଗୋଟାଏ ଖାଲିପଣ । ପିଲାଦିନରୁ ମୁଁ ନିଃସଙ୍ଗ । ସ୍ତ୍ରୀ ହେଲି, ମା' ହେଲି କିନ୍ତୁ ଆଜିଯାଏ ନିଃସଙ୍ଗତା ମୋର ପିଛା ଛାଡୁନାହିଁ ।

ମନେ ପଡୁଛି ମୋର ପ୍ରଥମ ବିବାହ ବାର୍ଷିକୀ କଥା । ଆମର ବାହାଘରଟା ଗ୍ରୀଷ୍ମଛୁଟି ଭିତରେ ହଠାତ୍ ଗାଁରେ ହୋଇଯାଇଥିବାରୁ କାହାରିକୁ ଡାକି ପାରିନଥିଲୁ । ତେଣୁ ସ୍ଥିର କରିଥିଲୁ ପ୍ରଥମ ବିବାହ ବାର୍ଷିକୀ ରାଉରକେଲାରେ ପାଳନ କରିବା ଅବସରରେ କିଛି ଆତ୍ମୀୟ ବନ୍ଧୁଙ୍କୁ ଡାକିବୁ । ସେଥିପାଇଁ ଗାଁରୁ ଚାଲିଆସିଲୁ ବାରିପଦା । ବାରିପଦାରେ ଦିନେ ଦୁଇଦିନ ରହିଲା ପରେ ରାଉରକେଲା ଆସି ସବୁ ଆୟୋଜନ କରିବୁ । କିନ୍ତୁ ସେଇ ରାତିରେ ଦୀନବନ୍ଧୁଙ୍କୁ ପ୍ରବଳ ଜ୍ୱର ହେଲା । ତା ପରେ ପରେ ଡିସେଣ୍ଟ୍ରି । ଭାବିଲୁ ଯାଇନହେଲେ ଏଇ ବାରିପଦାରେ ପୂଜା କରି ମନ୍ଦିର ବୁଲି ଆସିବୁ ଓ କେତେ ଜଣଙ୍କୁ ଡାକିବୁ । ତା' ବି ଭଗବାନ କରେଇ ଦେଲେ ନାହିଁ । ଜୁନ୍ ୨୮ରେ ବିବାହ ବାର୍ଷିକୀ, ଜୁନ୍ ୨୫ତାରିଖରେ ମୋତେ ଜ୍ୱର ଆସିଲା । ଦୁହେଁ ଶାଶୁଘର ଗାଁ ପୋଖରୀରେ ଗାଧୋଇଥିଲୁ । ମୋର ତ ପୋଖରୀରେ ଗାଧୋଇବାର ଅଭ୍ୟାସ ନଥିଲା । ପାହାଚ ପାଣିରେ

ବୃତି ରହିଥିବାରୁ ଶିଉଳି ଧରିଯାଇଥିଲା । ଦୀନବନ୍ଧୁ କହିଲେ ଧୀରେ ଧୀରେ ପାଦରଖ । ନହେଲେ କଚଡି ପଡିବ । ତାଙ୍କ କଥା ସରୁ ନସରୁଣୁ ମୁଁ ସତରେ କଚଡି ପଡିଲି ଓ ମୋତେ ଟାଣି ଧରୁ ଧରୁ ସେ ବି ପଙ୍କ ଭିତରେ ପଶିଯାଇଥିଲେ । ତାରି ପରିଣାମ ଦୁହିଁଙ୍କ ଜ୍ୱର ଧରିବା । ଜୁନ୍ ୨୭ ତାରିଖରେ ଦୀନବନ୍ଧୁ ଜ୍ୱରରେ ବାଉଳି ଚଉଳି ହେଲେ । ଔଷଧ ଶୁଣିଲା ନାହିଁ । ଜୁନ୍ ୨୮ ତାରିଖ ଦିନ ବିବାହ ବାର୍ଷିକୀ ପାଳିବୁ କ'ଣ ସକାଳୁ ଭାଇ ଘରକୁ ଡାକ୍ତରଙ୍କୁ ଧରି ଆସିଲା । ସେ ପରୀକ୍ଷା କରି ଦେଖିଲେ ନିମୋନିଆ ହୋଇ ଗଲାଣି । ସଙ୍ଗେସଙ୍ଗେ ଇଞ୍ଜେକ୍‌ସନ୍ ଦେବାକୁ ପଡିବ । ପାଣି ଗରମ କରିଆଣ । ଦୀନବନ୍ଧୁ ସାତଦିନ ହେଲା ସେତେବେଳକୁ ଭାତ ଛାଡିଲେଣି । କିଛି ଖାଉ ନଥାନ୍ତି । ଉଠିପାରୁ ନଥାନ୍ତି । ଇଞ୍ଜେକ୍‌ସନ୍ ଲାଗି ପାଣି ଫୁଟାଇଲା ବେଳେ ମୋ ଆଖିରୁ ଗଳ୍‌ଗଳ୍ ଲୁହ ବହି ପଡିଲା । ମୋର ଅବଶ୍ୟ ଜ୍ୱର ଛାଡିଯାଇଥାଏ । ଭାଗ୍ୟର କି ବିଡମ୍ୱନା । ଡାକ୍ତର ଗଲା ପରେ ବାପା କହିଲେ ତୁ ରୀତା (ମୋ ସାନ ଭଉଣୀ) ସହ ଯାଇ ମହାଦେବ ମନ୍ଦିରରେ ପୂଜା କରି ଆସ । ରୀତା ଓ ମୁଁ ଗଲୁ ମନ୍ଦିର । ଦୀନୁଙ୍କୁ ନୂଆ ଗଞ୍ଜିଟିଏ ପିନ୍ଧାଇଦେଲୁ । ଏମିତି କପାଳ ଯେ, ସେହିଦିନ ହିଁ ତାଙ୍କୁ ସବୁଠୁ ବେଶି ଜ୍ୱର । ମୁଣ୍ଡ କ'ଣ ହୋଇଯାଉଥାଏ । ଜଳପଟି ବାରମ୍ୱାର କପାଳରେ ରଖାଯାଉଥାଏ । ଦିନ ତିନିଟା ପାଖାପାଖି ଜ୍ୱର ଟିକେ ଓହ୍ଲାଇଲା । ରାତିରେ ଛାଡିଲା । ଚାଲିଗଲା ମୋ ଜୀବନର ପ୍ରଥମ ବିବାହ ବାର୍ଷିକୀ ଏକ ଜ୍ୱାଳାମୟ ସ୍ମୃତି ହୋଇ ।

ମୁଁ ଜାଣେନା କାହିଁକି ମୋ ଜୀବନରେ ଭଲ ଦିନଟେ ଆସେ ନାହିଁ ? ଯଦି ଆସେ ତାହା ଏଭଳି କୌଣସି ଘଟଣା, ଦୁର୍ଘଟଣାର ରୂପ ନେଇ । ଥରେ କ'ଣ କଥାରେ ବାପାଙ୍କୁ କହିଥିଲି, ବାପା ଏବେ କାହିଁକି କେଜାଣି ଭାରି ଏକୁଟିଆ ଲାଗୁଛି । ଟିକେଟିକେ କଥାରେ ଥକି ପଡୁଛି । ହାରି ଯାଉଛି । ବାପା ଶ୍ରଦ୍ଧାରେ ମୋ କପାଳରେ ହାତ ବୁଲାଇ କହିଥିଲେ, ଛି ମା' ! ତୁ ମୋ ଝିଅ ହୋଇ ହାରିଯାଉଛୁ ? ଥକି ପଡୁଛୁ ? ମୋତେ ତ ଦେଖୁଛୁ, କେତେ ଧୈର୍ଯ୍ୟ ମୋର ? ତୋ ମା' ଗଲା, ସାନପୁଅ ତପନ ଗଲା, ତୋ ଆଈ ଗଲା, ଅଭାବ ସମୟରେ କେତେ ଘୃଣା, ନାକ ଛିଞ୍ଚଡା, ହତାଦର, ଅପମାନ ନ ପାଇଛି । ତଥାପି କେବେ ଥକିପଡିଛି ନା ପରିସ୍ଥିତି ସାମ୍ନାରେ ହାରିଯାଇଛି ? ତୁ କ'ଣ ମୋ ଠାରୁ କିଛି ଶିଖିଲୁ ନାହିଁ ?

ଏସବୁ ଅନେକ ବର୍ଷ ତଳର କଥା । ମୋର ମନେ ହୁଏ ଭଗବାନ ବୋଲି ଯଦି କିଛି ଐଶ୍ୱରିକ ସତ୍ତା ଥାଏ, ସେ ମୋତେ ନାନାଆଡୁ ପରୀକ୍ଷା କରୁଛନ୍ତି । ମୋର ଧୈର୍ଯ୍ୟ, ସହନଶୀଳତାକୁ ମାପୁଛନ୍ତି । ମୁଁ କଣ ହାରିଯିବି ? ଥକି ପଡୁଛି ବୋଲି ଅଧା ରାସ୍ତାରେ ଅଟକି ଯିବି ? ତାହେଲେ ମୋ ବାପାଙ୍କ ଠାରୁ ମୁଁ ଶିଖିଛି କଣ ? ପାଇଛି କ'ଣ ?

# ଏବଂ ଶେଷରେ

ମହାଦେବୀ ବର୍ମାଙ୍କର କବିତାର କେତୋଟି ଧାଡି ହେଲା-

"ମେଁ ନୀର୍-ଭରି ଦୁଃଖ୍ କୀ ବଦ୍‌ଲୀ
ବିସ୍ତୃତ୍ ନଭ୍‌କା କୋୟି କୋନା
ମେରା ନ କଭି ଅପ୍‌ନ ହୋନା
ପରିଚୟ ଇତ୍‌ନା, ଇତ୍‌ହାସ୍ ୟହୀ
ଉମ୍‌ଡୀ କଲ୍‌ଥୀ, ମିଟ୍ ଅଜ୍ ଚଲୀ..."

ପ୍ରକୃତରେ ବେଦନାକୁ ପ୍ରକାଶ କରିବା ଲାଗି ପ୍ରତ୍ୟେକ ମଣିଷର କିଛି ନା କିଛି ମାଧ୍ୟମ ଦରକାର । ମୋ ଜୀବନରେ ତାହା ହିଁ ଘଟିଛି । ନିଜକୁ ପ୍ରକାଶ କରିବାର ମାଧ୍ୟମ ନଥିଲେ ମୁଁ ପାଗଳ ହୋଇଯାଇଥାନ୍ତି କି ଆଉ କଣ ପଥ ବାଛିନେଇଥାନ୍ତି ତାହା ସମୟ କହିଥାନ୍ତା । ଭଗବାନଙ୍କୁ ଧନ୍ୟବାଦ୍ ମୋ ହାତରେ କଲମ ଦେଇଛନ୍ତି । କହିବା ବାହୁଲ୍ୟ ଜୀବନରେ ବେଦନାର ସାମ୍ନା କରିଛି ବୋଲି ହିଁ ମୋ ଗଳ୍ପ କରୁଣ ଆଉ ବିୟୋଗାତ୍ମକ । ପିଲାଦିନେ ବଞ୍ଚିରହିବାର ସଂଗ୍ରାମ, ପାଠ ପଢିବାର ସଂଗ୍ରାମ, ଚାକିରୀ ଲାଗି ନିଜ ଗୋଡରେ ଠିଆ ହେବାର ଅନେକ କିଛି ସଂଗ୍ରାମ । ତଥାପି ସ୍ୱପ୍ନ ଦେଖୁଥିଲି ଯେତେଯାହା ହେଲେ ବି ନିଜ ପାଖରେ କେବେ ହାରିବି ନାହିଁ । ନଈଟିଏ ଭଳି ବୋହିଯିବି ଆଉ ଦି'ପାଖକୁ ଶସ୍ୟ ଶ୍ୟାମଳା କରିବି । ଏହି ସ୍ୱପ୍ନ ଦୃଢତା ହିଁ ମୋତେ ନୂଆ ଶକ୍ତି ଦେଇଛି । ମୋ ଭିତରେ ଆଶାର ସଞ୍ଚାର କରିଛି । ଯାହା ପାଇଁ ମୁଁ ଆଜି ପ୍ରତିକୂଳ ସଂଗ୍ରାମ ସତ୍ତ୍ୱେ ନିଜ ଗୋଡରେ ଠିଆ ହୋଇଛି ଓ ମୋ ପାଦ ତଳର ମାଟିକୁ କ୍ରମଶଃ ଦୃଢ କରିବାରେ ଲାଗିଛି । ପଢାପଢି, ଲେଖାଲେଖି ଦୁନିଆରେ ହଜି ଯାଇଛି । ଜୀବନ ଚାଲିଛି ତ ଚାଲିଥାଉ ଏମିତି ଏକ ଉଦାସ ଶୀତଳଭାବ ମୋର ସାରାସତ୍ତାକୁ ବତୁରାଇ ଦେଇଛି ।

କେବେକେବେ ଦର୍ପଣ ସାମ୍ନାରେ ଠିଆ ହୋଇ ନିଜକୁ ନିରେଖିଛି । ନିଜ ବାହାରର ବଦଳୁଥିବା ଚେହେରାକୁ ନିରେଖିଛି । ଭିତରେ କିନ୍ତୁ ସେମିତି ଠିଆ ହୋଇଥାଏ ଫ୍ରକ୍‌ପିନ୍ଧା କୁନିଝିଅ । ଏ ଭିତରେ ବୟସର ନଈରୁ କେତେ ନା କେତେ ପାଣି ବୋହି ଗଲାଣି । ସତରେ ଜୀବନ କେତେ ଅଦ୍ଭୁତ । ଆଜି ଯଦି ସତରେ ସେ ଦିନର ଫ୍ରକ୍ ପିନ୍ଧା ସେହି ଝିଅଟା ସହିତ ଦେଖା ହୁଅନ୍ତା କ'ଣ ପଚାରନ୍ତି ତାକୁ ? ପଚାରନ୍ତି, କହିପାରିବୁ ଏତେ ପାଇବା ଭିତରେ ହରାଇବା ଜିନିଷଟିଏ କେମିତି ଯୋଡି ହୋଇଯାଏ ? ଜୀବନକୁ କ'ଣ ସତରେ ନିଜ ଇଚ୍ଛାନୁସାରେ କେବେ ବଦଳାଇ ହୁଏ ? ଅନେକାଂଶରେ ଜୀବନରେ ଯିଏ

ଯେଉଁ ସ୍ଥାନରେ ଥାଏ ତାହା ତାକୁ ସୁଖୀ କରାଏ ନାହିଁ । ଯିଏ ଯେଉଁଥିଲାଗି ପାଗଳ ହୋଇଥାଏ ତାହା ପାଇଗଲା ପରେ ମନେହୁଏ, ଏତିକି ନୁହେଁ ଆଉ କିଛି ।

ମୁଁ ଜାଣନା ପିଆଜରୁ ଛେପା ଛଡାଇଲା ଭଳି ଜୀବନକୁ ଛଡାଇ ଦେଖିବାର ଆଗ୍ରହ ମୋ ଭିତରେ ଏତେ ଭରପୂର କାହିଁକି ? ଯଦିଓ ମୋ ପାଇଁ ଜୀବନ ଅସଂଖ୍ୟ ସ୍ମୃତି ପ୍ରବାହ ଛଡା ଆଉ ଅଧିକ କ'ଣ ହୋଇପାରେ ? ତଥାପି ତାକୁ ପ୍ରାଣପଣେ ଭଲ ପାଇବାକୁ ଚାହିଁଛି ନିଜକୁ ବି ପଚାରିଛି ଏ ଯାତ୍ରାର ଶେଷ କେଉଁଠି ? ଏ ସବୁ ଅନୁଭୂତିର ପୂର୍ଣ୍ଣଚ୍ଛେଦ କେବେ ? ମୋ ପାଖରେ ଏତେ କାହିଁକି ପତ୍ରଝଡା ବିଷାଦର ଋତୁ ? ଏତେ କାହିଁକି ଉଦାସର ସାହାନାଇ ? ଯେତେବେଳେ ସବୁଜ ହେବାର କଥା ସେତେବେଳେ ଧୂସର ହୋଇଯାଇଛି । ଏମିତି ତ ପୃଥିବୀରେ ଋତୁର ବଦଳ ହୁଏ । ମୋ ଜୀବନରେ କିନ୍ତୁ ସେହି ଗୋଟାଏ ଋତୁ, ଯେ ଋତୁରେ କେବଳ ସବୁଜପତ୍ର ପାଚି ଝଡିଯାଏ । ସେଥିପାଇଁ ହୁଏତ ଅଜାଣତରେ ହେଉ କି ବାଧ ହେଉ ମୁଁ ଏକ ଶୀତଳ ପତଳା ବିଷାଦର ଚଦର ଘୋଡାଇଥାଏ । ତାରି ଭିତରେ ସବୁ ସ୍ୱପ୍ନ, ଭାବପ୍ରବଣ, ଆଶା, ଆକାଂକ୍ଷା, କାମନା କୁହୁଡି ଭଳି ମେଘୁଆ, ଅସ୍ପଷ୍ଟ, ଝାପ୍‌ସା । ସେଥିପାଇଁ ବୋଧହୁଏ ବର୍ଷ ବର୍ଷ ଧରି ମୁଁ ଗୋଟାଏ ସ୍ୱପ୍ନ ଦେଖିଛି ଯେ କୌଣସି ଏକ ଶୀତୁଆ କୁହୁଡିର ସକାଳରେ ଜଙ୍ଗଲର ନାଲି ପାଦଚଲା ରାସ୍ତାରେ ମୁଁ ଧାଇଁଛି, ଆଗକୁ, ଆଗକୁ, ଆହୁରି ଆଗକୁ । ଆଗରେ, ପଛରେ କି ମୋ ଚାରିପଟେ କେହି ନାହାନ୍ତି । କେବଳ ନିବିଡ ଜଙ୍ଗଲ ଓ ତା ମଝିରେ ପାଦଚଲା ରାସ୍ତା । ମୁଁ ଏକା । କୁଆଡେ କାହିଁକି ଧାଇଁଛି ମୋତେ ଜଣାନାହିଁ । ଯେତେବେଳେ ନିଦ୍ରା ଭାଙ୍ଗିଯାଏ ମୁଁ ଝାଳରେ ବୁଡିସାରିଥାଏ ।

ସେହି ଗୋଟିଏ ପ୍ରକାର ସ୍ୱପ୍ନ କାହିଁକି ନିଦ୍ରାରେ ଆସେ ତାର ରହସ୍ୟ ଏବେ ବି ମୁଁ ବୁଝିପାରେ ନାହିଁ । ଏହା କ'ଣ ମୋର ସେହି ନିଃସଙ୍ଗ ଜୀବନର ସୂଚନା ? ମୋତେ ସମସ୍ତେ ବୁଢା ବରଗଛ ଭଳି ପରିତ୍ୟକ୍ତ କରିବେ । ପାଖରେ କେହି ନଥିବେ । ଅସରନ୍ତି ଜୀବନରାସ୍ତାକୁ ସାମ୍ନାରେ ରଖି ମୁଁ ଠିକଣା ବିହୀନ ଭାବରେ ଆଗକୁ ମାଡିଚାଲିଥିବି, ଓ ଜୀବନର-ଜଙ୍ଗଲରେ ଦିନେ ଏକ୍‌ଲା ହଜିଯିବି, ଏହା ହିଁ କ'ଣ ସେ ସ୍ୱପ୍ନର ସଙ୍କେତ ? ମୋତେ କ'ଣ ସବୁଦିନେ ଏକାପରି ଏହି ସ୍ୱପ୍ନ ବାରମ୍ବାର ଦେଖିବାକୁ ପଡିବ ? ସତରେ କୁଆଡେ ଗଲା ସେଦିନ, ଯେଉଁ ଦିନରେ ମୋର କଅଁଳ ମୁହଁରେ ଶାଗୁଆ ସକାଳର ଅପେକ୍ଷା ଥିଲା ? କ'ଣ ପାଇଲି ଏ ଜୀବନରେ ? କେତେ ହରାଇଲି ? କେତେ ସାଉଁଟିଲି ? ମୋ ଜୀବନ ଗୋଟାଏ ବଡ଼ ଶୂନ୍ । ମୂଲ୍ୟହୀନ, ଅସଫଳ, ତଥାପି ପରିସ୍ଥିତି ଓ ସମୟ

ସହିତ ମୁଁ ବନ୍ଧୁତ୍ୱ କରି ନେଇଛି । ନିଜକୁ କୌଣସି ଦିନ କୌଣସି ପରିସ୍ଥିତିରେ ବି ଛୋଟ କରି ଦେଖିନାହିଁ । ଶ୍ରୀ ଅରବିନ୍ଦଙ୍କ ଭାଷାରେ କହିଛି, ଜୀବନକୁ ଛୋଟ କରି ଦେଖିବାର ଅର୍ଥ ହେଉଛି ତାକୁ ଅପମାନ ଦେବା ।

ହଁ, ମୁଁ ଜୀବନରେ କେବେ ଛଳନା କରିନାହିଁ । କାହାକୁ ଭଲପାଇ ଧୋକ୍‌କା ଦେଇ ନାହିଁ । କୌଣସି ପାପ କରି ନାହିଁ ଯାହା ମୋ ବିବେକକୁ କୋରି କୋରି ଖାଇଯିବ । ପାପ ପୁଣ୍ୟର ହିସାବୀ ଦୁନିଆରେ ନିଜକୁ ତଉଲି ପାରିନାହିଁ । ଜୀବନ ପାଖରେ ଅନେକ ଥର ହାରିଛି । ମରିଛି ପୁଣି ବଞ୍ଚିଛି, ଉଠିଛି, ଭୁଲିଛି । କାହିଁକି ନା ଜୀବନକୁ ଫିଙ୍ଗିଦେଇ ହୁଏନା । ରବୀନ୍ଦ୍ରନାଥଙ୍କର "ମାନସ ସୁନ୍ଦରୀ" କବିତାରୁ କହିଲେ:-

"ଏଇ ଯେ ବେଦନା, ଆଉ୍ କୋନ୍ ଭାଷା ଆଛେ ?<br>
ଏଇ ଯେ ବାସନା, ଏର୍‌କୋନ୍ ତୃପ୍ତି ଆଛେ ?<br>
ସବ୍‌କଥା ଗେଛି ଭୁଲେ<br>
ସୁଧୁ ଏଇ ନିଦ୍ରାପର୍ଣ୍ଣ ନିଶୀଥେର କୁଳେ..."

ସ୍ୱୀକାର କରୁଛି ମୋ ଭିତରେ ଏକ ଭଲପାଇବାର ମନ ଏବେ ବି ବଞ୍ଚିଛି । ନହେଲେ ମୋତେ କୃଷ୍ଣଚୂଡାର ରଙ୍ଗ ଭଲ ଲାଗନ୍ତା ନାହିଁ । ଭଲ ଲାଗନ୍ତା ନାହିଁ ନୀଳ ଆକାଶ, ସଂଗୀତ, ରେଖାଙ୍କିତ ପାହାଡ, କୋଇଲିର ସ୍ୱର ଅଥବା ଫୁଲର ସମ୍ଭାର, ହଳଦୀ ବସନ୍ତ, ଏ ସବୁ ଭଲ ଲାଗେ ବୋଲି ହିଁ ମୁଁ ଭାବେ ମୋ ଭିତରେ ଭଲ ପାଇବାର ଫୁଲବନ ସମ୍ପୂର୍ଣ୍ଣ ନଷ୍ଟ ହୋଇନାହିଁ । ତେଣୁ ତ ମଣିଷର ଦୁଃଖ, ଦାରିଦ୍ର୍ୟ, ହିପୋକ୍ରାସି, ନରସଂହାର, ସନ୍ତ୍ରାସବାଦୀ କ୍ରିୟାକଳାପ, ଲାଞ୍ଚ, ମିଛ, ଦୁର୍ନୀତି ମୋତେ ବ୍ୟଥିତ କରେ । ମଣିଷର ସ୍ୱାର୍ଥପରତାରୁ ମୁଁ ଦୁଃଖିତ ହୋଇଯାଏ । ଆତ୍ମୀୟଙ୍କ ସମାଲୋଚନା ମୋତେ ବାରମ୍ବାର ଆହତ କରେ ।

ଥରେ ଶରତଚନ୍ଦ୍ରଙ୍କ ଜୀବନୀ ପଢିଲାବେଳେ ଗୋଟାଏ ଧାଡି ମନେ ରଖିଥିଲି ବହୁଦିନ ଯାଏଁ । କୌଣସି ଏକ ପକ୍ଷୀର ଗୀତ ଶୁଣି ସେ କହିଥିଲେ, ଇତ୍‌ନା ସୁନ୍ଦର ମତ୍‌ଗାଓ, ଏକ୍‌ଦିନ୍ ମେରୀ ତରହ ହୀ ତୁମ୍ହାରା ମଧୁର କଣ୍ଠ ଭୀ ବନ୍ଦ ହୋ ଜାଏଗା ।'

ହଁ, ମୁଁ ବି ଦିନେ ଆଖି ବୁଜିଦେବି । ମଧୁର ଗୀତ ଗାଉଥିବା ପକ୍ଷୀର ସ୍ୱର ହଜିଯିବା ଭଳି ମୋର ଏ ମାଟିର ଦେହ ମିଳାଇଯିବ । ଏହା ହିଁ ଚରମ ସତ୍ୟ ।

ତେଣୁ ମୁଁ କହେ-

ତମକୁ କରୁଛି ହେ ଜୀବନ<br>
ମୋ ଜୀବନ ପୂର୍ଣ୍ଣ ସମର୍ପଣ ।

ପୂର୍ଣ୍ଣ ସମର୍ପଣ କରି ହିଁ ଦ୍ରୌପଦୀ ଶ୍ରୀକୃଷ୍ଣଙ୍କର ସାହାଯ୍ୟ ପାଇଥିଲେ । ଏକ ବସ୍ତ୍ର ପାଲଟି ଥିଲା ସହସ୍ର ବସ୍ତ୍ର । ହେଲେ ମୋର ପ୍ରକୃତ ସଖା କିଏ ? ମୋର ସମର୍ପଣ କିଛି ଅର୍ଥ ରଖେ ?

ତେବେ ଜୀବନର ରାସ୍ତାରେ ଚାଲୁ ଚାଲୁ ଦୀପ ଲିଭିଗଲା ଭଳି ଦିନେ ଲିଭିଯିବି ଏହା ମୁଁ ଜାଣେ । ଏହା ହିଁ ତ ସଂସାରର ନିୟମ । ସେ ନିୟମକୁ ମୋତେ ଗ୍ରହଣ କରିବାକୁ ହେବ । ତଥାପି ମୋ ବିଦାୟରେ ଯଦି ଜଣେ ବି ପାଠକ ମୋ ପାଇଁ ଲୁହଟୋପାଏ ଶ୍ରଦ୍ଧାରେ ଉପହାର ଦିଏ ତାହାହିଁ ଆଣିବ ମୋ ସାରସ୍ୱତ ଜୀବନରେ ପୂର୍ଣ୍ଣତା । ଏ ପୂର୍ଣ୍ଣତା ପାଖରେ ଲକ୍ଷେ ପୁରସ୍କାର ନିଶ୍ଚେ ଫିକା ଦିଶିବ । ମୋର ଏହି ଅଧୁରା ଜୀବନର ଗାଥା । ବାସ୍... ଆଜିପାଇଁ ଏତିକି । (ତା. ୫.୩.୨୦୧୧, ଶନିବାର : ବାଲେଶ୍ୱର)



ଚଢ଼େଇ ଚିନ୍ତା କରେନା ତା' ଗୀତକୁ କେହି କାନ ଡେରୁଛି କି ନା । ଫୁଲବି ଅପେକ୍ଷା କରେନା ତା' ଫୁଟିବା ବେଳକୁ କିଏ ଦେଖୁଛି କି ନାହିଁ । ସକାଳ ଅଟକି ଯାଏନା ତା' ସିନ୍ଦୂରା ଫିଟିଲାବେଳକୁ କେଉଁ ଚିତ୍ରକର ତାକୁ ନେଇ ଆଙ୍କୁଛି କି ନା । ଝରଣା ଝରିଲାବେଳେ ବୁଝେନା ତା' ଝରିବାର ମୂର୍ଚ୍ଛନାକୁ କେଉଁ ସଂଗୀତକାର ସୁରମହ୍ଲାରରେ ସଜାଉଛି କି ନା ।

ଏ ସବୁ ଅନେକାଂଶରେ ସ୍ୱତଃପ୍ରବୃତ୍ତ । ବିଧି ନିର୍ଦ୍ଧାରିତ । ମୋ ପାଇଁ ଜୀବନ ବି ସେମିତି । ଘଟଣା ଅଘଟଣା ଭିତରେ ସଂଗ୍ରାମମୁଖର, ଇଚ୍ଛାଅନିଚ୍ଛା ଭିତରେ ଦ୍ରୁତ ଧାବମାନ ।



ଡକ୍ଟର କବିତା ବାରିକ

ନିଜକୁ ନେଇ ମୋର ଭଙ୍ଗାଗଢ଼ା। ନିଜକୁ ନେଇ ମୋର ପାଇବା ହାରିବା। ପୁଣି ନିଜକୁ ନେଇ କଥା କାହାଣୀର କେତେକେତେ ନାନାବାୟା। କେତେ ସ୍ୱପ୍ନ ଆଉ ସ୍ୱପ୍ନଭଙ୍ଗ। ସେ ସବୁର ସମାହାର ହିଁ ମୋ 'ନିଜ କଥା'। କାଲି ଥିବି କି ନାହିଁ ଜାଣେନା ହେଲେ ଥାଉ ଆଜି ମୋ ପ୍ରିୟ ପାଠକଙ୍କ ପାଖରେ 'ନିଜ କଥା'ରୁ କିଛି କିଛି...। ପିଲାଦିନରୁ ଏ ଯାଏଁ ଅଙ୍ଗେନିଭା କଥା, ଲୁହପିଆ ଆଉ ସଂଘର୍ଷର ସିଢ଼ି ଚଢ଼ି ମୁଣ୍ଡ ଉପରେ ପ୍ରତିଶ୍ରୁତିର ଆକାଶ ଖୋଜା କଥା, ଅତୀତର ଝର୍କାରେ ପ୍ରତିବିମ୍ବିତ ହେଉଥିବା ବିଗତ ଦିନର ବହଳସ୍ମୃତି କଥା। କିଛି ପାଇବା ଆଉ ଅନେକ କିଛି ହଜାଇ ଦେବାର ବିଡ଼ମ୍ବିତ ଭାଗ୍ୟ କଥା। ନିଜ ଭିତରେ ଛଟପଟ ହେଉଥିବା ନିଃସଙ୍ଗତାର କଥା। ନିଜକୁ ବୁଝାଇ ନ ପାରିବାର ଅସହାୟତା କଥା।

ଜୀବନଟାକୁ ମୁଁ ସବୁଦିନେ ଚ୍ୟାଲେଞ୍ଜ୍ ଭାବରେ ହିଁ ଗ୍ରହଣ କରିଛି। ହାରି ବି ହାରିନାହିଁ ବରଂ ସୃଜନୀର ମହ୍ଲାର ଭିତରେ ବଞ୍ଚିବା ଗୋଟାଇଛି।

୧୨ ପଢ଼ାପଢ଼ି